**UTTARAKAKSHYA : 2nd and last part**
(Autobiography of **Dr. Satchidananda Rout-Ray**)
Published by : Manoj Kumar Mohapatra
**Grantha Mandir,** Binodbehari, Cuttack-2
Printed at : **OPTIMA PRINTS,** Sutahat, Cuttack-1
First Edition : July, 2000
Price Rs. 140/-

ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ମୁଦ୍ରକ : ତପନ କୁମାର ମହାପାତ୍ର
**ଅପ୍‌ଟିମା (ଅଫ୍‌ସେଟ୍) ପ୍ରିଣ୍ଟସ୍,**
ସୂତାହାଟ, କଟକ

ପ୍ରଥମ ସଂସ୍କରଣ : ଜୁଲାଇ, ୨୦୦୦

ମୂଲ୍ୟ : ଟ. ୧୪୦/-
ସାଦାବନ୍ଧେଇ : ଟ. ୧୨୦/-

# ପ୍ରାକ୍-କଥନ

ମୁଁ ଆଦ୍ୟଭାଗରେ କହିଛି ଯେ, ମୋର ଆତ୍ମଜୀବନୀ କେବଳ ମୋର ନୁହେଁ, ମୋ ସମୟର ମଧ୍ୟ ଏକ ଆତ୍ମଲିପି । ମୋ ଶତାବ୍ଦୀର ଗୁରୁତ୍ୱପୂର୍ଣ୍ଣ ଘଟଣାମାନ ଯାହା ସଂବଂଧରେ ମୋର କିଛି ଅନୁଭୂତି ଅଛି; କିଂବା ଯାହାର ପ୍ରଭାବ ମୋ ଉପରେ ଏବଂ ମୋ ସାହିତ୍ୟ ଉପରେ ପଡ଼ିଛି ଏଥିରେ ସ୍ଥାନ ପାଇବାକୁ ବାଧ୍ୟ । ସେହି ଦୃଷ୍ଟିରୁ ମୋ ଆତ୍ମଜୀବନୀ ମୋ ଶତାବ୍ଦୀର ଏବଂ କେବଳ ମୋ ଦେଶ ନୁହେଁ, ସମଗ୍ର ବିଶ୍ୱର ପରିଧି ସ୍ପର୍ଶ କରିଛି । ମଣିଷ ଜୀବନ ଏକ ବିଚ୍ଛିନ୍ନ ଏକକ ନୁହେଁ । ଏହା ତାର ପରିବେଶ ଏବଂ ତା' ସମୟର ଐତିହାସିକ ଘଟଣାବଳୀର ଏକ ପ୍ରତିଫଳନ ଏବଂ ପରିଣାମ ମଧ୍ୟ । ମୋ ସଂସାର ମୋର, ତେଣୁ ତାକୁ ମୋ ଲେଖାରୁ ବାଦ୍ ଦେଇପାରିବିନାହିଁ । ମୋ ସାହିତ୍ୟିକ ଜୀବନର କ୍ରମବିକାଶର ପ୍ରକ୍ରିୟାରେ ଯେଉଁସବୁ ଆଂତର୍ଜାତୀୟ ଓ ଜାତୀୟ ଘଟଣା, ମତବାଦ ଓ ଦର୍ଶନ ପ୍ରଭାବ ପକେଇଛଂତି ସମଗ୍ର ବିଶ୍ୱର ବହୁ ଘଟଣାପୁଂଜ ସହିତ ମୋର ପ୍ରତ୍ୟକ୍ଷ ଅନୁଭୂତି ଥିଲା । ତେଣୁ ମୁଁ ସେସବୁକୁ ବାଦ୍ ଦେଇ ପାରଂତି କେମିତି ? ସେସବୁର ସୂଚନା ନ ଦେଲେ ମୋ ସାହିତ୍ୟକୁ ବୁଝିବା ସଂଭବ ହୁଅଂତା ନାହିଁ । ପଟ ବିଚାର ନ କରି ସାହିତ୍ୟ ବିଚାର କରିବାକୁ ଗଲେ; ତାହା ବସ୍ତୁନିଷ୍ଠ ହେବନାହିଁ ।

ମୋର ବହୁ ଅଂତରଂଗ ମୁହୂର୍ତ୍ତ ମୋ ଜୀବନୀରେ ପ୍ରକାଶପାଇଛଂତି – ଯାହା ଅନ୍ୟତ୍ର ବିରଳ । ମୁଁ କେତେଦୂର ନିଷ୍କପଟ ଓ ନିରପେକ୍ଷ ଭାବରେ ସେସବୁକୁ ପ୍ରକାଶକରିଛି ତାହା ପାଠକମାନେ ବିଚାରକରିବେ । ଏ ପୁସ୍ତକ ପ୍ରକାଶନରେ ମୋତେ ଯେଉଁମାନେ ସାହାଯ୍ୟ କରିଛଂତି ସେମାନେ ମୋର ଧନ୍ୟବାଦର ପାତ୍ର । ସେମାନଙ୍କ ମଧ୍ୟରେ ଗ୍ରଂଥ ମଂଦିରର ସ୍ୱତ୍ୱାଧିକାରୀ ଶ୍ରୀ ଅଭିରାମ ମହାପାତ୍ର ବିଶେଷ ସ୍ମରଣୀୟ ।

ଶେଷରେ ଆଶାକରୁଛି ଯେ ମୋ ବହିଟି ସୁଧୀ ମହଲରେ ଆଦୃତ ହେବ ।

ମିଶନ୍‌ରୋଡ଼ — ସଚ୍ଚିଦାନଂଦ ରାଉତରାୟ
କଟକ-୭୫୩୦୦୧
ଫୋନ୍ : ୩୦୧୫୭୮

# ସୂଚୀପତ୍ର

□□□



ଭୂଦେବୀ

ଜନ୍ମ – ୨୪ । ୨ । ୧୯୨୪, ପ୍ରୟାଣ – ୮ । ୧୦ । ୧୯୯୯



Havard University International Seminar of Arts & Science, 1955. With the Governor of Masachusetts state, U.S.A.; June. – 1935



A reception to Sri Raut-Roy Art College, Bangkok, Thailand, January, 1952.



International Social Services Seminar, Australia & New Zeland, Asian Delegates, Melbourne, January, 1952



With Dr. Rajendra Prasad, President of India and Mrs. Bijoy Laxmi Pandit, – 1962.

# ଅଷ୍ଟାବିଂଶ ଉଲ୍ଲାସ

## ଭାରତ-ଦର୍ଶନ

### (ଥାଇଲ୍ୟାଂଡ, ଅଷ୍ଟ୍ରେଲିଆ ଓ ନିଉଜିଲ୍ୟାଂଡରେ ତିନିମାସ)

**ଗ୍ୱାଲିଅରରେ କିଛିଦିନ–** ଗ୍ୱାଲିଅରର ଜିଆଜି ରାଓ କଟନ୍ ମିଲ୍ସ ବିରଳା ବ୍ରଦର୍ସଂକର ଏକ ଶିଳ୍ପୋଦ୍ୟୋଗ ଥିଲା । ଏହି ମିଲ୍‌ର କର୍ତ୍ତୃପକ୍ଷ ମୋତେ ଶ୍ରମ-କଲ୍ୟାଣ ବିଷୟରେ ପରାମର୍ଶ ଦେବାପାଇଁ ଡାକିଥିଲେ । ମୁଁ ସେଠାରେ ପ୍ରାୟ ୧୫ ଦିନ ଥିଲି । ମିଲ୍‌ର ଶ୍ରମ-କଲ୍ୟାଣ କାର୍ଯକ୍ରମ କିପରି ଚାଲିଛି, ତାହା ପର୍ଯବେକ୍ଷଣ କରି କେତେକ ପରାମର୍ଶ ଦେଇଥିଲି ।

**ଝାନ୍‌ସି ରାଣୀ ଲକ୍ଷ୍ମୀବାଈଂକ ସମାଧି–**

ସେହି ଅବସରରେ ମୁଁ ଝାନ୍‌ସି ରାଣୀ ଲକ୍ଷ୍ମୀବାଈଂକ ସମାଧି ଦେଖିଥିଲି । ସମାଧିଟି ଧଳା ମାର୍ବଲ୍‌ର ଏକ ଛୋଟ ଚାଂଦିନି, ଖୁବ୍ ସାଦାସିଧା ଓ ନିରାଡ଼ଂବର । ଏ ସମାଧି ଦେଖିଲେ କେହି ବିଶ୍ୱାସ କରିବ ନାହିଁ ଯେ ଏହା ଭାରତର ପ୍ରାତଃସ୍ମରଣୀୟା ଝାନ୍‌ସି ରାଣୀ ଲକ୍ଷ୍ମୀବାଈଂକ ସମାଧି । ମୁଁ ସେହି ସମାଧି ପାଖରେ ପ୍ରାୟ ୨୦ ମିନିଟ୍ ନିର୍ବାକ୍ ନିସ୍ପଂଦ ହୋଇ ବସିରହିଲି । ମୋ ମନରେ ଅତୀତର କେତେ କଥା ଜୀବଂତ ହୋଇଉଠିଲା ।

୧୮୫୭ ଖ୍ରୀଷ୍ଟାବ୍ଦରେ ହୋଇଥିବା ସିପାହି-ବିଦ୍ରୋହ କଥା ମୋ ମନରେ ଖେଳିଗଲା । ସିପାହି-ବିଦ୍ରୋହର ନେତୃବର୍ଗ ଥିଲେ ନାନାସାହେବ, ଝାନ୍‌ସି ରାଣୀ ଲକ୍ଷ୍ମୀବାଈ ଏବଂ ତାତିଂଆ ଟୋପେ ପ୍ରଭୃତି । ବ୍ରିଟିଶ୍ ଶାସନର ବହୁ ଅନ୍ୟାୟ ଓ ଜନସ୍ୱାର୍ଥବିରୋଧୀ କାର୍ଯରେ ଭାରତବାସୀ ଅତିଷ୍ଠ ହୋଇଉଠିଥିଲେ । ସିପାହି-ବିଦ୍ରୋହ ଥିଲା ତାର ସଶସ୍ତ୍ର ପ୍ରତିବାଦ ଓ ପ୍ରତିରୋଧ । ଭାରତର ଗଭର୍ଣର ଜେନେରାଲ୍ ଡେଲ୍‌ହାଉସିଂକ ପ୍ରବର୍ତ୍ତିତ "Doctrine of Lapse" ଥିଲା ଏହାର ଅନ୍ୟତମ ରାଜନୈତିକ କାରଣ । ଯେଉଁ ଦେଶୀୟ ରାଜାମାନଂକର ଓ୍ୱାରସ୍ ନଥିଲେ, ସେ ସବୁ ରାଜାମାନଂକର ରାଜ୍ୟକୁ ଏବଂ ତାଂକର ସଂପତ୍ତିବାଡ଼ିକୁ ଇଂରେଜ ସରକାର ନିଜ ଶାସିତ ରାଜ୍ୟରେ ସାମିଲ୍ କରିଦେଉଥିଲେ । ସାତାରା, ନାଗପୁର, ଝାନ୍‌ସୀ, ଭରତ ଓ ସଂବଲପୁର ପ୍ରଭୃତି ରାଜ୍ୟ ଏହାର ଅଂତର୍ଗତ । ସଂବଲପୁରର ବୀର ସୁରେଂଦ୍ର ସାଏଂକ କଥା ସମସ୍ତେ ଜାଣଂତି । ଝାନ୍‌ସି ରାଣୀ ଲକ୍ଷ୍ମୀବାଈ ଏହାର ବିରୋଧକରି ଇଂରେଜ ସହିତ ଯୁଦ୍ଧ କରିଥିଲେ । ଯୁଦ୍ଧଭୂଇଁରେହିଁ ସେ ନିହତ ହୋଇଥିଲେ ।

ଅନ୍ୟାନ୍ୟ କାରଣ ମଧ୍ୟରେ ସୈନ୍ୟବାହିନୀରେ ଗୋରା ଅଫିସରମାନଂକର ଭାରତୀୟ ସୈନ୍ୟମାନଂକ ପ୍ରତି ନ୍ୟୂନ ବ୍ୟବହାର ଏବଂ ଇଂରେଜ ସରକାରଂକର କେତେକ ସଂସ୍କାରମୂଳକ କାର୍ଯ ସିପାହି-ବିଦ୍ରୋହର ମୂଳ କାରଣ ଥିଲା । ଶେଷରେ ଏନ୍‌ଫିଲଡ୍ ରାଇଫଲ୍‌ର ଗୁଳିରେ ଗୋରୁ ଚର୍ବି ବ୍ୟବହୃତ ହୋଇଛି ବୋଲି ଜନରବ ସୃଷ୍ଟିହୋଇଥିଲା, ଫଳରେ ପ୍ରଥମେ ବଂଗଦେଶରେ କଲିକତା ନିକଟସ୍ଥ ବ୍ୟାରକ୍-ପୁରଠାରେ ବିଦ୍ରୋହ ଆରଂଭହୋଇ କ୍ରମେ ଉତ୍ତର-ଭାରତର ଲକ୍ଷ୍ନୌ, କାନ୍‌ପୁର ଓ ଆଗ୍ରା ପ୍ରଭୃତି ସ୍ଥାନକୁ ବ୍ୟାପୀଯାଇଥିଲା । ମାତ୍ର ଗୋରାମାନଂକର ଉନ୍ନତ ଅସ୍ତ୍ରବଳ ଓ ବିଦ୍ରୋହୀମାନଂକ ପାଖରେ ଯାନବାହନର ଅଭାବ ଯୋଗୁଁ ବିଦ୍ରୋହ ବିଫଳହୋଇଥିଲା । ବିଦ୍ରୋହୀ ସୈନ୍ୟଂକର ନେତାମାନଂକୁ ମୃତ୍ୟୁଦଂଡରେ ଦଂଡିତ କରାଯାଇଥିଲା । ଏହାପରେ ୧୮୫୮ ସାଲ ନଭେଂବର ପହିଲାରେ ମହାରାଣୀ ଭିକ୍ଟୋରିଆ ଘୋଷଣାକରଂତି ଯେ, ଭାରତରେ ଇଷ୍ଟ ଇଂଡିଆ କଂପାନୀର ଶାସନ ଲୋପପାଇଲା । ତାହା ବଦଳରେ ଭାରତ ବ୍ରିଟିଶ୍ ସରକାରଂକ ଦ୍ୱାରା ଶାସିତ ହେବ ଏବଂ ଦେଶରେ ସୁଶାସନ ଓ ଉନ୍ନତ ଧରଣର ପ୍ରଶାସନପ୍ରଣାଳୀ ପ୍ରଚଳନ କରାଯିବ ।

ଲର୍ଡ ଡେଲହାଉସି ଭାରତରେ କେତେକ ସଂସ୍କାର ସାଧନ କରିଯାଇଛଂତି । ସେ ରେଳ ଓ ଡାକ-ତାରର ପ୍ରବର୍ତ୍ତନ ସତୀଦାହ ପ୍ରଥାର ଉଚ୍ଛେଦ କରିଥିଲେ ଏବଂ ୧୮୫୨ରେ ବିଧବା-ବିବାହ ଆଇନ୍ ପ୍ରଚଳନ କରିଥିଲେ । ଏହାଛଡ଼ା ସେ ଇଂରେଜୀ ଶିକ୍ଷା ମଧ ପ୍ରବର୍ତ୍ତନ କରିଥିଲେ; ମାତ୍ର ଏସବୁ ସଂସ୍କାରକୁ ରକ୍ଷଣଶୀଳ ହିଂଦୁ ସମାଜ ସଂଦେହଚକ୍ଷୁରେ ଦେଖୁଥିଲେ । କି ହିଂଦୁ କି ମୁସଲ୍‌ମାନ ସମସ୍ତଂକ ମନରେ ଧାରଣା ହୋଇଥିଲା ଯେ, ଇଂରେଜମାନେ ଭାରତକୁ ଖ୍ରୀଷ୍ଟିଆନ୍ ଦେଶ କରିଦେବେ । ଉଭୟ ହିଂଦୁ ଓ ମୁସଲ୍‌ମାନ ସଂପ୍ରଦାୟ ଇଂରେଜ ଶାସନ ବିରୋଧରେ ଉତ୍ତ୍ୟକ୍ତ ହୋଇଉଠିଥିଲେ । ସିପାହି-ବିଦ୍ରୋହ ତାର ଏକ ଜ୍ୱଳଂତ ପ୍ରମାଣ ।

**ତାନସେନଂକ ସମାଧିପୀଠ –**

ମୁଁ ତାନସେନଂକ ସମାଧିପୀଠ ଦର୍ଶନ କରିଥିଲି । ଏହା ଏକ ନିର୍ଜନ ପଡ଼ିଆରେ ସ୍ଥାପିତ । ତାନସେନ ଥିଲେ ଆକବର ବାଦଶାହାଂକ ଦରବାରର ଶ୍ରେଷ୍ଠ ଗାୟକ । ସମଗ୍ର ଭାରତରେ ତାଂକଭଳି କୃତୀ ସଂଗୀତ-ଶିଳ୍ପୀ ଅନ୍ୟ କେହି ନଥିଲେ । ତାନସେନଂକ ସମାଧିପୀଠରେ ପ୍ରତିବର୍ଷ ସଂଗୀତ-ମେଳା ବସେ । ଦେଶର ବହୁ ସଂଗୀତଜ୍ଞ ଓ ଗୀତିକାର ଏଥିରେ ଯୋଗଦିଅଂତି । ତାନସେନଂକ ଭଳି କଳାକାର ସମଗ୍ର ବିଶ୍ୱରେ ବିରଳ । କଥିତ ଅଛି ଯେ, ସେ ଥରେ ବାଦଶାହାଂକ କନ୍ୟାଂକ ବେଗ୍ରାମ ଆରୋଗ୍ୟ କରିବା ଉଦ୍ଦେଶ୍ୟରେ 'ଦୀପକ' ରାଗିଣୀ ଗାନକରିଥିଲେ । ଏଥିରେ ସମ୍ରାଟଂକ କନ୍ୟା ଆରୋଗ୍ୟ ହୋଇଥିଲେ; ମାତ୍ର ତାନସେନଂକ ଦେହ ଜଳିପୋଡ଼ିଉଠିଲା । ସେ ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲେ । ସେ କିଛି ଦିନ ଜଳାପୋଡ଼ା ଭୋଗିବାପରେ ତାଂକର ପ୍ରିୟା ତାଂକୁ 'ଦୀପକ'ର ବିପରୀତ

ରାଗିଣୀ 'ମେଘମହ୍ଲାର' ଗାଇବାକୁ ପରାମର୍ଶ ଦେବାରୁ ସେ ତାହା ଗାନକରି ନିଜର ଜଳାପୋଡ଼ା ଶାଂତକଲେ। ତା'ପରେ ତାନସେନ ସୁସ୍ଥ ହୋଇଉଠିଲେ।

ତାନସେନଂକ ସମାଧି ଆଗରେ ଏକ ତେନ୍ତୁଂଳିଗଛ ଅଛି। ଲୋକେ କହଂତି, ତାନସେନ ତେନ୍ତୁଂଳି ପତ୍ର ଖାଇ ସୁମଧୁର କଂଠ ଲାଭକରିଥିଲେ।

**ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ –**

ଦିଲ୍ଲୀ ଓ ଆଗ୍ରାକୁ ମୁଁ ବହୁବାର ଯାଇଛି। ସେଠାରେ ଥିବା ଲାଲ୍‌କିଲ୍ଲା ଏବଂ ତାଜମହଲ ପ୍ରଭୃତି ଦେଖିଛି। ଦିଲ୍ଲୀ ଓ ଲାଲ୍‌କିଲ୍ଲାରେ ଶିଶ୍‌ମହଲ୍ ବେଶ୍ ଆକର୍ଷଣୀୟ। ଏହାଛଡ଼ା ଜୁମ୍ମା ମସ୍‌ଜିଦ୍, ଫତେପୁର ଶିକ୍ରି, କୁତବ୍ ମିନାର ପ୍ରଭୃତି ଦେଖି ମୁଁ ଆଂନନ୍ଦ-ବିହ୍ୱଳ ହୋଇଉଠିଛି।

ମଥୁରା ଓ ବୃନ୍ଦାବନ ଆଦି ମୁଁ କେତେଥର ଯାଇଛି। ବୃନ୍ଦାବନରେ ଦିନେ ରହି ଶ୍ରୀକୃଷ୍ଣଂକ ଲୀଳାସ୍ଥଳୀ ପ୍ରଭୃତି ବୁଲି ଦେଖିଛି। ଲୋକେ କଂହତି, ରାସ ଉଦ୍ୟାନରେ ରାତିରେ ଭଗବାନ ଶ୍ରୀକୃଷ୍ଣ, ଶ୍ରୀରାଧା ଓ ଗୋପୀମାନେ କୁଆଡ଼େ ରାସଲୀଳା କରଂତି। ମଥୁରାରେ ଶ୍ରୀକୃଷ୍ଣ ଜନ୍ମହୋଇଥିବା କାରାଗାରର ଭଂଗା କାଂଥ ସବୁ ଦେଖି ଗଭୀର ଦୁଃଖପାଇଛି। ପରେ ପାର୍ଶ୍ୱରେ ଏକ ମସ୍‌ଜିଦ୍ ଗଢ଼ିଉଠିଥିଲା। ଲକ୍ଷ୍ନୌ, କାନପୁର, ବନାରସ ପ୍ରଭୃତି ମୁଁ ଏକାଧିକ ଥର ପରିଦର୍ଶନ କରିଛି ଏବଂ କାର୍ଯୋପଲକ୍ଷେ ସେଠାରେ କିଛି କିଛି ଦିନ ରହିଛି। ମୋ ସ୍ତ୍ରୀ ମଧ ମୋ ସଂଗରେ କେତେ ଥର ଦିଲ୍ଲୀ ଓ ଆଗ୍ରା ପ୍ରଭୃତି ଯାଇଛଂତି।

**ବଂବେ –**

ଫିଲ୍ମ ସେନ୍‌ସର୍ ବୋର୍ଡ ସଦସ୍ୟ ଥିବାରୁ ମୁଁ ଅନେକ ଥର ନିଜେ ଏବଂ କେତେଥର ମୋ ସ୍ତ୍ରୀଂକ ସହିତ ବଂବେ ଯାଇଛି ଏବଂ ସେଠାରେ ପ୍ରତିଥର କିଛି ଦିନ ରହିଛି। ମୁଁ କଲିକତାରେ ଭାରତ ସରକାରଂକର ଫିଲ୍ମ ସେନ୍‌ସର୍ ବୋର୍ଡରେ ବହୁବର୍ଷଧରି ସଦସ୍ୟ ଥିଲି। କୌଣସି ଆପତ୍ତିଜନକ ଫିଲ୍ମକୁ ପ୍ରଦର୍ଶନ ପାଇଁ ଅନୁମତି ଦିଆଯାଇନଥାଏ। ଏ ବିଷୟରେ କେବେ କେବେ ବିତର୍କ ମଧ ଉଠେ। ଏଭଳି ବିବାଦୀୟ ଫିଲ୍ମର ପୂର୍ଣାଂଗ ବୋର୍ଡରେ ପୁନଃ ସମୀକ୍ଷା କରାଯାଏ। ଏଭଳି କେତେକ ବୋର୍ଡ ବୈଠକ ବଂବେଠାରେ ବସିଥିଲା। ମୁଁ ସେଥିରେ ଯୋଗଦେବାକୁ ବଂବେ ଯାଇଥିଲି। ସେହି ବୈଠକରେ ପ୍ରଖ୍ୟାତ ଫିଲ୍ମ ନିର୍ଦ୍ଦେଶକ ଭି. ଶାଂତାରାମଂକ ସହିତ ମୋର ପରିଚୟ ଓ ଆଲୋଚନା ହୋଇଥିଲା।

ବଂବେର ମୋର କବି-ବଂଧୁ ଆର୍. କେ. ସେଠ୍ (ପେଡ଼ାର ରୋଡ୍) ମୋତେ କେତେଥର ରାତ୍ରିଭୋଜନକୁ ଆମଂତ୍ରଣ କରି ଆପ୍ୟାୟିତ କରିଛଂତି। ସେ ଆଉ ଇହଜଗତରେ ନାହାଂତି। ସେ ଭଲ ଇଂରାଜୀ କବିତା ଲେଖୁଥିଲେ। ତାଂକର କେତେକ ଇଂରାଜୀ କବିତାସଂକଳନ ପ୍ରକାଶ ପାଇପାଠକ ମହଲରେ ଆଦୃତ ହୋଇଥିଲା।

**ଦକ୍ଷିଣ ଭାରତ ଭ୍ରମଣ –**

ମୁଁ ବହୁବାର କୌଣସି ନା କୌଣସି କାମରେ ମାଡ୍ରାସ ଯାଇଛି; ସେଠାରେ କେତେଦିନ ରହିଛି। ଥରେ କଲିକତା ଚାକିରିରେ ଯୋଗଦେବା ପୂର୍ବରୁ, କଟକରେ ରହୁଥିବାବେଳେ, ଦକ୍ଷିଣଭାରତର ଶେଷସୀମା ଟ୍ୟୁଟି କୋରିନ୍ ପର୍ଯ୍ୟନ୍ତ ଯାଇଥିଲି। ଏହା କନ୍ୟାକୁମାରୀ ନିକଟରେ। ମୋର ଜଣେ ଆତ୍ମୀୟଙ୍କର ଛିଅଁତା ଶଂଖ ଦରକାର ପଡ଼ିଥିଲା। କୌଣସି ମଂତ୍ରୌଷଧି ପାଇଁ କବଚ ପ୍ରସ୍ତୁତି କରୁଥିଲେ ସାମଂତ ଚଂଦ୍ରଶେଖରଂକ (ପଠାଣିସାମଂତ) ପୁଅ ଗଦାଧର ସିଂହ ସାମଂତ ସିଂହ। ସେ ମୋର ପିଉସା ହେବେ। ମୁଁ ଟ୍ୟୁଟି-କୋରିନ୍‌ରୁ କେତେକ ଛିଅଁତା ଶଂଖ ଆଣିଦେଇଥିଲି।

ବିବାହ ପରେ ମାଡ୍ରାସ, ହାଇଦ୍ରାବାଦ ବା ଦକ୍ଷିଣ-ଭାରତ ଗଲେ, ମୋ ସ୍ତ୍ରୀ ପ୍ରାୟ ମୋ ସଂଗେ ବୁଲିବାପାଇଁ ଯାଉଥିଲେ। ଆଂଧ୍ରପ୍ରଦେଶର ୱାଲଟେୟାର୍ ମୁଁ ବହୁବାର ଯାଇଛି। ମୁଁ ସେଠାରେ ଆଂଧ୍ର ବିଶ୍ୱବିଦ୍ୟାଳୟର ଓଡ଼ିଆ ଓ ବଂଗଳା ବୋର୍ଡ ଅଫ୍ ଷ୍ଟଡିଜ୍‌ର ସଭ୍ୟ ଥିଲି। ତେଣୁ ବୋର୍ଡର ମିଟିଂ ହେଲେ ସେଥିରେ ଯୋଗଦେବାକୁ ଯାଏ। ଆଂଧ୍ର ବିଶ୍ୱବିଦ୍ୟାଳୟ ମୋତେ ୧୯୭୭ ମସିହାରେ ସମ୍ମାନସୂଚକ ଡି.ଲିଟ୍ ଡିଗ୍ରୀ (କଳାପ୍ରପୂର୍ଣ ଡିଗ୍ରି) ଦେଇଥିଲେ।

ତିରୁପତି ମୁଁ ଓ ମୋ ସ୍ତ୍ରୀ ଦୁଇ-ତିନି ଥର ଯାଇଛୁ। ଥରେ ତିରୁପତି ପାହାଡ଼ ଉପରେ ଏକ ବଂଗଳାରେ ଦୁଇଦିନ ରହିଥିଲୁ। ସେ ସ୍ଥାନଟି ଅତି ରମଣୀୟ ଓ ଅବିସ୍ମରଣୀୟ।

**ୟୁନିୟନ ପବ୍ଲିକ୍ ସର୍ଭିସ୍ କମିଶନ୍‌ର ପରାମର୍ଶଦାତା –**

ମୁଁ ୟୁ.ପି.ଏସ୍.ସି.ର କେତେବର୍ଷ ପରାମର୍ଶଦାତା ଥିଲି। ତେଣୁ କୌଣସି କୌଣସି ବୋର୍ଡ ବୈଠକରେ ଯୋଗଦେବାକୁ ଦିଲ୍ଲୀ ଯିବାକୁ ପଡୁଥାଏ। କେବେ କେବେ ମାସ ମାସ ଧରି ରହିବାକୁ ପଡୁଥିଲା। ମୁଁ ଦିଲ୍ଲୀରେ ୟୁ.ପି.ଏସ୍.ସି.ର ଅତିଥି-ଭବନରେ ଶାହାଜାହାନ ରୋଡ଼ରେ ପ୍ରାୟ ରହୁଥିଲି। ଏହା ଖୁବ୍ ପରିଚ୍ଛନ୍ନ ଏବଂ ଶସ୍ତା ମଧ୍ୟ। ମତେ ଏଠାରେ ରହିବାକୁ ଖୁବ୍ ଭଲଲାଗେ।

**ଅବିସ୍ମରଣୀୟ ବ୍ୟକ୍ତିତ୍ୱ –**

ଭାରତ-ଦର୍ଶନ ବର୍ଣନା କଲାବେଳେ କେତେଜଣ ଅବିସ୍ମରଣୀୟ ବ୍ୟକ୍ତିତ୍ୱଂକ କଥା ମନେପଡ଼େ। ସ୍ଥାନ ସହିତ କାଳ ଓ ପାତ୍ରର ବିନ୍ୟାସ ଅବଶ୍ୟଂଭାବୀ। କଲିକତା ନିକଟସ୍ଥ କଲ୍ୟାଣୀଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ପଂଡିତ ନେହରୁଂକ ସହିତ ୨-୩ ଥର ଦେଖା ଓ ଆଲୋଚନା ହୋଇଥିଲା। ଏହାଛଡ଼ା ୧୯୬୨ ମସିହାରେ ମୁଁ ପଦ୍ମଶ୍ରୀ ସମ୍ମାନ ପାଇବା ଅବସରରେ ସେହି ଉତ୍ସବରେ ତାଂକ ସହିତ ଅଳ୍ପ ସମୟ ଆଲୋଚନା ହୋଇଥିଲା। ଏହାଛଡ଼ା ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ, ରାଜାଗୋପାଳାଚାରୀ (ପରେ କେନ୍ଦ୍ରମଂତ୍ରୀ ଓ ବଡ଼ଲାଟ),

ଲାଲବାହାଦୁର ଶାସ୍ତ୍ରୀ (ପରେ ପ୍ରଧାନମଂତ୍ରୀ), ଇଂଦିରା ଗାଂଧୀ, ବିଜୟଲକ୍ଷ୍ମୀ ପଂଡିତ (ୟୁ.ଏନ୍.ଓ. ସଭାପତି) ପ୍ରଭୃତିଂକ ସହ ମୋର ଜଣାଶୁଣା ଥିଲା। ବିଭିନ୍ନ ବିଷୟରେ ସେମାନଂକ ସହ ଆଲୋଚନା କରିବାର ସୁଯୋଗ ଘଟିଥିଲା।

**ଡ. ଭୂପେଂଦ୍ରନାଥ ଦତ୍ତ –**

କଲିକତାରେ ୧୯୪୦ ଦଶକରେ ସ୍ୱାମୀ ବିବେକାନଂଦଂକ ସାନଭାଇ ଡ. ଭୂପେଂଦ୍ରନାଥ ଦତ୍ତଂକ ସହିତ ମୋର ଘନିଷ୍ଠ ସଂପର୍କ ସ୍ଥାପିତ ହୋଇଥିଲା। ଭାରତ-ଶୋଭିଏତ୍ ମୈତ୍ରୀ ସଂଘ ଏବଂ ଅନ୍ୟ କେତେକ ସାହିତ୍ୟ ସଭା ଓ ଆଲୋଚନା-ଚକ୍ରରେ ଆମେ ପରସ୍ପରକୁ ଭେଟୁଥିଲୁ ଏବଂ ଆଳାପ ଆଲୋଚନା କରୁଥିଲୁ। ଡ. ଦତ୍ତ ଭାରତୀୟ ସମାଜବିଜ୍ଞାନ ଉପରେ କେତେକ ମୂଲ୍ୟବାନ୍ ଗ୍ରଂଥ ଲେଖିଯାଇଚଂତି। ସେ ମୋଠୁ ବୟସରେ ଅନେକ ବଡ଼ ହେଲେ ମଧ୍ୟ ତାଂକ ବ୍ୟବହାର ବଡ଼ ଅମାୟିକ ଥିଲା।

ପ୍ରଫେସର ଡ. ବିନୟ ସରକାର ଏବଂ ପ୍ରଫେସର ଡ. କେ.ପି. ଚଟ୍ଟୋପାଧ୍ୟାୟ ପ୍ରଭୃତିଂକ ସହିତ ମୋର ଭଲ ଜଣାଶୁଣା ଥିଲା। ସେ ଦୁହେଁ କଲିକତା ବିଶ୍ୱବିଦ୍ୟାଳୟରେ ସମାଜବିଜ୍ଞାନର ପ୍ରଫେସର ଥିଲେ। ସେମାନଂକ ପ୍ରଣୀତ ବହୁ ପୁସ୍ତକ ମୁଁ ପଢ଼ିଛି ଏବଂ ସେମାନଂକ ସହିତ ଆଲୋଚନା କରିଛି।

**ଆଂଧ୍ର କବି-ବଂଧୁ –**

ଆଂଧ୍ରର ପ୍ରଖ୍ୟାତ କବି ଏବଂ ଔପନ୍ୟାସିକ ପ୍ରଫେସର ବିଶ୍ୱନାଥମ୍ ସତ୍ୟନାରାୟଣାଂକ ସହିତ ମୋର ଅଂତରଂଗ ବଂଧୁତା ଥିଲା। ସେ କଲିକତାରୁ ପ୍ରକାଶିତ ଦୈନିକ 'ହିଂଦୁସ୍ଥାନ ଷ୍ଟାଂଡାର୍ଡ'ର "A study in Sachi Rautroy" ଶୀର୍ଷକ ଏକ ଧାରାବାହିକ ପ୍ରବଂଧ ଲେଖିଥିଲେ। ଏହା ତିନି-ଚାରିଟି ସଂଖ୍ୟାରେ ସମାପ୍ତ ହୋଇଥିଲା। ସେ 'ଜ୍ଞାନପୀଠ' ପୁରସ୍କାର ପାଇଥିଲେ। ସେହିଭଳି ଆଂଧ୍ରର ଆଧୁନିକ କବି ଶ୍ରୀଂକ ସହିତ ମୋର ଖୁବ୍ ଭଲ ସଂପର୍କ ଥିଲା। ସେ ଥରେ କଟକରେ ମୋର ଘରକୁ ସସ୍ତ୍ରୀକ ଆସିଥିଲେ। ବ୍ରହ୍ମପୁରରେ ଅନୁଷ୍ଠିତ ତେଲଗୁ ସାହିତ୍ୟ ସମ୍ମିଳନୀରେ (୧୯୭୮) ସେ ଓ ମୁଁ ଅତିଥି ରୂପେ ଯୋଗଦେଇଥିଲୁ।

**ରାଜନୈତିକ ବ୍ୟକ୍ତିଂକ ସଂଗେ ପରିଚୟ –**

ରାଜନୈତିକ ବଂଧୁମାନଂକ ମଧ୍ୟରେ ମୋର ଆଂଧ୍ରର କଂଗ୍ରେସ ନେତା ସଂଜୀବ ରେଡ଼ି ଓ ଗୋପାଳ ରେଡ଼ି ପ୍ରଭୃତିଂକ ସଂଗେ ଘନିଷ୍ଠ ପରିଚୟ ଥିଲା। ସଂଜୀବ ରେଡି ଆଂଧ୍ରର ମୁଖ୍ୟମଂତ୍ରୀ ଥିଲେ; ପରେ ସେ କେଂଦ୍ରମଂତ୍ରୀ ଓ ରାଷ୍ଟ୍ରପତି ହୋଇଥିଲେ। ଗୋପାଳ ରେଡି କେଂଦ୍ରମଂତ୍ରୀ ହୋଇଥିଲେ। ମୁଁ ଓ ମୋ ସ୍ତ୍ରୀ ଦିଲ୍ଲୀ ଗଲେ ସେ ଆମକୁ ରାତ୍ରିଭୋଜନକୁ ଡାକୁଥିଲେ। ଥରେ ସେ ଆମ କେଂଦ୍ର ସାହିତ୍ୟ ଏକାଡେମୀର ସଂପାଦକ କ୍ରିଷ୍ଣା କ୍ରିପାଲିନୀ ଏବଂ ତାଂକ ସ୍ତ୍ରୀ ନଂଦିତା ଦେବୀଂକୁ ଖାଇବାପାଇଁ ତାଂକ ଘରକୁ ଡାକିଥିଲେ। ନଂଦିତାଦେବୀ

କବି ରବୀଂଦ୍ରନାଥଂକ ନାତୁଣୀ ଥିଲେ। ରବିଂଦ୍ରନାଥ ତାଂକ ଉପରେ ଏକ ଛୋଟ କବିତା ଲେଖିଥିଲେ। ତାଂକୁ ଦେଖି ସେ କବିତାର ପ୍ରଥମ ଧାଡ଼ି ମନେପଡ଼ିଗଲା। 'ନଂଦିତା, ନାଚେଚ୍ଚ ଛଂଦେ ଛଂଦିତା।'

ଏହାଛଡ଼ା ପଶ୍ଚିମବଂଗ ପ୍ରଧାନମଂତ୍ରୀ ଡ. ପ୍ରଫୁଲ ଘୋଷ ଏବଂ ମୁଖ୍ୟମଂତ୍ରୀ ପ୍ରଫୁଲ୍ଲ ସେନ, ଶ୍ରମ-ମଂତ୍ରୀ କାଳିପଦ ମୁଖାର୍ଜି ଓ ସୁରେଶ ବାନାର୍ଜୀ ପ୍ରଭୃତିଂକ ସହିତ ମୋର ଭଲ ଜଣାଶୁଣା ଥିଲା। ଏହିପରି ବହୁତ ବିଶିଷ୍ଟ ବ୍ୟକ୍ତିଂକ କଥା କୁହାଯାଇପାରେ, ଯେଉଁମାନଂକ ସହିତ ଜୀବନର ଚଲାପଥରେ ଘନିଷ୍ଠ ପରିଚୟ ହୋଇଥିଲା।

**ଅଷ୍ଟ୍ରେଲିଆଯାତ୍ରା –**

୧୯୫୨ ମସିହା ଜାନୁୟାରୀ ମାସ ୮ ତାରିଖରେ ମୁଁ କଲିକତାରୁ ବିମାନଯୋଗେ ଅଷ୍ଟ୍ରେଲିଆ ଯାତ୍ରା କରିଥିଲି। ସେ ବିମାନଟି ଡଚ୍ ଏୟାର ଲାଇନ୍ସ୍ K.L.M. ଏକ ବୋଇଂ ବିମାନ। ବିମାନରେ ଖାଦ୍ୟପେୟ ଖୁବ୍ ଭଲ ଥିଲା। ଏୟାର ହୋଷ୍ଟେସ୍‌ମାନେ ଖୁବ୍ ଭଲ ବ୍ୟବହାର କରୁଥିଲେ।

ମାତ୍ର ଏ ବିମାନ ସିଧାସଳଖ ଅଷ୍ଟ୍ରେଲିଆ ଯାଉନଥିଲା। ଏହା ଯାତ୍ରୀମାନଂକୁ ଥାଇଲ୍ୟାଂଡର (ଶ୍ୟାମ) ରାଜଧାନୀ ବ୍ୟାଂକକ୍ ନଗରୀରେ ଓହ୍ଲାଇଦେଇ ଟୋକିଓ ଯାଉଥିଲା। ଆମକୁ ବ୍ୟାଂକକ୍‌ରେ ପ୍ରାୟ ୮ ଦିନ ରହିବାକୁ ପଡ଼ିଥିଲା। ସେ ୮ ଦିନର ଅତିଥିଶାଳାରେ ରହିବା ଓ ଖାଇବା ଖର୍ଚ୍ଚ ଇତ୍ୟାଦି ଏୟାର କଂପାନୀ ବହନକରିଥିଲା। ଆମେ ଅତିଥିଶାଳାରେ ୮ ଦିନ ରହିଥିଲୁ। ତାପରେ ଅଷ୍ଟ୍ରେଲିଆ-ଗାମୀ ବିମାନ ଆସିଲା। ଆମେ ସେଥିରେ ଅଷ୍ଟ୍ରେଲିଆର ଭିକ୍ଟୋରିଆ ପ୍ରଦେଶର ରାଜଧାନୀ ମେଲବୋର୍ଣ ଗଲୁ।

**ବ୍ୟାଂକକ୍‌ରେ ୮ ଦିନ –**

ବ୍ୟାଗଂକକ୍‌ରେ ରହଣି ଭିତରେ ମୁଁ ସେଠାର ବିଶ୍ୱବିଖ୍ୟାତ ବୌଦ୍ଧ ମଂଦିର, ବୌଦ୍ଧମୂର୍ତ୍ତି ଏବଂ ସଂଗ୍ରହାଳୟ ପ୍ରଭୃତି ବୁଲି ଦେଖିଥିଲି। ମୋ ସଂଗରେ ଜଣେ ଥାଇ ତରୁଣୀ ଗାଇଡ୍‌ଭାବେ କେତେକ ସ୍ଥାନକୁ ଯାଇଥିଲେ। ସେ ଦର୍ଶନୀୟ ସ୍ଥାନମାନଂକର ମାହାତ୍ମ୍ୟ ବୁଝାଇଦେଇଥିଲେ।

ବ୍ୟାଂକକ୍ ନଗରୀ ମେନାମ ନଦୀର ଉଭୟ ତୀରରେ ଅବସ୍ଥିତ। ଏହା ଏକ ପ୍ରଧାନ ବଂଦର। ଏଠାରୁ ବହୁ ଜିନିଷ ବିଶେଷତଃ ଗୋଲମରିଚ, ମାଛ ଓ ହାତୀଦାଂତର କାମ ରପ୍ତାନୀ କରାଯାଇଥାଏ। ମୁଁ ଯେଉଁ ଅତିଥିଶାଳାରେ ଥିଲି ତାହା ଥାଇଲ୍ୟାଂଡର ଜଣେ ଭୂତପୂର୍ବ ପ୍ରଧାନମଂତ୍ରୀଂକର ବାସଭବନ। ତାହାକୁ ଏୟାର କଂପାନୀ ଭଡ଼ାରେ ନେଇ ଅତିଥିଶାଳା ରୂପେ ବ୍ୟବହାର କରୁଥିଲେ। ଥାଇଲ୍ୟାଂଡ ବା ଶ୍ୟାମ୍‌ର ରାଜା ଆନଂଦ ମହୀଦଳଂକ ପ୍ରାସାଦଟି ଏକ ରମଣୀୟ ଉଦ୍ୟାନ ଭିତରେ ଉଚ୍ଚ ପାଚିରିଘେରା ହୋଇ ରହିଥିଲା। ବ୍ୟାଂକକ୍

କେଂଦ୍ର ବୌଦ୍ଧ ମଂଦିରଟି ମେନାମ ନଦୀକୂଳରେ ଅବସ୍ଥିତ। ଏଥିରେ ୭-୮ଟି ଖୁବ୍ ବଡ଼ ଘଂଟି ଝୁଲାହୋଇ ରହିଛି। ଗୋଟିଏ ଗୋଟିଏ ଘଂଟି ପ୍ରାୟ ମଣିଷ ଉଚ୍ଚର ହେବ। ବ୍ୟାଂକକ୍‌ରେ ଥିବା ବିଶ୍ରାମରତ ବୁଦ୍ଧ (Reclining Budha) ଏକ ବିଶାଳକାୟ ପ୍ରସ୍ତର ମୂର୍ତ୍ତି।

**ବ୍ୟାଂକକ୍ ଆର୍ଟ କଲେଜରେ ସଂବର୍ଧନା –**

ମୋତେ ବ୍ୟାଂକକ୍ ଆର୍ଟ କଲେଜର ପ୍ରିନ୍‌ସପାଲ ମି. ତୋଇଶି ଓ ଛାତ୍ରଛାତ୍ରୀମାନେ ଏକ ସଂବର୍ଧନା ଦେବାପାଇଁ ଆମଂତ୍ରଣ କରିଥିଲେ। ଅଭ୍ୟର୍ଥନାପାଇଁ ଏକ ସଭା କରାଯାଇଥିଲା। ତା'ପରେ ଆମେ ମଧ୍ୟାହ୍ନଭୋଜନରେ ମିଳିତ ହୋଇଥିଲୁ। ଏହି ସଭାରେ କଲିକତାର ଚିତ୍ରଶିଳ୍ପୀ ଶୁଭୋ ଠାକୁର ଓ ତାଂକର ସହକାରୀ କୁମାରୀ ଷ୍ଟେଲା ବିଶ୍ୱାସ ଏବଂ ଶ୍ୟାମ୍‌ର ରାଜକୁମାରୀ ମିସ୍ ପିଲ୍ଲାଇ ଯୋଗଦେଇଥିଲେ। ବହୁ ତରୁଣ ଛାତ୍ରଛାତ୍ରୀ, ଅଧ୍ୟାପକ ଓ ଅଧ୍ୟାପିକା ସଭାରେ ଉପସ୍ଥିତ ଥିଲେ।

ମୁଁ ବ୍ୟାଂକକ୍‌ରେ ପହଂଚି ଏକ ଖବରକାଗଜରୁ ଜାଣିଲି ଯେ ଚିତ୍ରଶିଳ୍ପୀ ଶୁଭୋ ଠାକୁର ସେଠାରେ ତାଂକର ଚିତ୍ର ପ୍ରଦର୍ଶନୀ କରୁଛଂତି। ସେ ଓ କୁମାରୀ ଷ୍ଟେଲା ବିଶ୍ୱାସ, ବ୍ୟାଂକକ୍‌ରେ ଥିବା ଭାରତୀୟ ଆଶ୍ରମରେ କେତୋଟି ରୁମ୍ ନେଇ ରହିଥିଲେ। ତାଂକ ଚିତ୍ର ପ୍ରଦର୍ଶନୀ ସେଠାରେ ଖୁବ୍ ଆଦୃତ ହୋଇଥିଲା। ସଂବର୍ଧନା ସଭାରେ ଆର୍ଟ କଲେଜର ପ୍ରିନ୍‌ସପାଲ୍ ମି. ତୋଇଶି ମୋତେ ଓ ଶୁଭୋ ଠାକୁରଂକୁ ଉପସ୍ଥିତ ବିଶିଷ୍ଟ ବ୍ୟକ୍ତିମାନଂକ ସହିତ ପରିଚୟ କରାଇଦେଇଥିଲେ। ସେ ମୋ ସାହିତ୍ୟ କୃତିର ସଂକ୍ଷିପ୍ତ ପରିଚୟ ଦେଇଥିବା ଓ ଶୁଭୋ ଠାକୁରଂକ ଶିଳ୍ପକର୍ମ ସଂବଂଧରେ ମଧ୍ୟ ସୂଚନା ଦେଇଥିଲେ। ସଭାରେ ଯେଉଁ ବିଶିଷ୍ଟ ଶିଳ୍ପୀମାନେ ଯୋଗଦେଇଥିଲେ ସେମାନଂକ ଭିତରେ ବିଖ୍ୟାତ ସ୍ଥପତି ପ୍ରଫେସର କ୍ରେଟନ୍ (ସିଂଗାପୁର ଇଂଜିନିୟରିଂ କଲେଜ), ଚିତ୍ରଶିଳ୍ପୀ ବୀରଶ୍ରୀ ମି. ଖିମ୍‌ୟିମଜି, ମି.ଥୋଂଗିଓ ଓ ମି. ସାତୋମି ଉପସ୍ଥିତ ଥିଲେ।

ଥାଇଲାଂଡ ୧୯୪୧ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନୀମାନଂକ ଦ୍ୱାରା ଅଧିକୃତ ହୋଇଥିଲା। ବର୍ମାକୁ ଯିବାପାଇଁ ସେମାନେ ଥାଇଲ୍ୟାଂଡ ଅଧିକାର କରିଥିଲେ। ଥାଇଲ୍ୟାଂଡ ୧୯୪୨ ଜାନୁୟାରୀ ୨୫ରେ ବ୍ରିଟିଶ ସରକାର ଓ ମିତ୍ରଶକ୍ତିଂକ ବିପକ୍ଷରେ ଯୁଦ୍ଧ ଘୋଷଣା କରିଥିଲା। ଏହା ପୂର୍ବରୁ ୧୯୪୦ ମସିହା ଜୁନ୍ ୧୨ ତାରିଖରେ ଥାଇଲ୍ୟାଂଡ ବ୍ରିଟେନ୍ ଓ ଫ୍ରାନ୍‌ସ ସହ ଅନାକ୍ରମଣ ଚୁକ୍ତିରେ ଆବଦ୍ଧ ଥିଲା; ମାତ୍ର ଏହି ଚୁକ୍ତି ଭଂଗକରିଥିଲା ଜାପାନୀମାନଂକ ଚାପରେ। ୧୯୪୫ ମସିହା ଅଗଷ୍ଟ ୧୬ ତାରିଖ ଥାଇଲ୍ୟାଂଡର ରାଜା ଆନଂଦ ମହିଦଲ ଘୋଷଣାକରିଥିଲେ ଯେ, ସେ ବ୍ରିଟିଶ ଓ ମିତ୍ରଶକ୍ତି ବିରୁଦ୍ଧରେ ଯୁଦ୍ଧଘୋଷଣା ପ୍ରତ୍ୟାହାର କରିନେଇଛନ୍ତି।

ବ୍ୟାଂକକ୍ ଏକ ସୁଂଦର ଆଧୁନିକ ନଗରୀରୂପେ ଗଢ଼ିଉଠିଛି। ସହରରେ

ଟ୍ରାମୱେ ଏବଂ ୱାରଲେସ ଷ୍ଟେସନ ପ୍ରଭୃତି ପ୍ରବର୍ତ୍ତନ କରାଯାଇଛି। ସହରରେ ଘରଦ୍ୱାର ଓ ଅଫିସମାନଂକ କୋଠାବାଡ଼ି ଅତି ଆଧୁନିକ ଢଂଗରେ ନିର୍ମିତ ହୋଇଛି।

**ଥାଇ ରାମାୟଣ –**

ମୁଁ ବ୍ୟାଂକକ୍ ମ୍ୟୁଜିୟମ ପରିଦର୍ଶନ କରିଥିଲି। ସେଠାରେ ଖଂଡିଏ ଥାଇ ରାମାୟଣ କିଣି ପଢ଼ିଥିଲି। ତାହା ଆମ ରାମାୟଣର କଥାବସ୍ତୁଠାରୁ ଅନେକ ସ୍ଥଳରେ ଭିନ୍ନ। ଏହି ରାମାୟଣଟି ଖୁବ୍ କ୍ଷୁଦ୍ରକାୟ। ଏଥିରେ ହନୁମାନ ଚରିତ୍ରଟି ଏକ ଲଂପଟ ଚରିତ୍ରପରି ଚିତ୍ରିତ ହୋଇଛି।

**ବ୍ୟାଂକକ୍ ମ୍ୟୁଜିୟମ୍ –**

ବ୍ୟାଂକକ୍ ମ୍ୟୁଜିୟମରେ ଅନେକ ପୁରାତନ ବୌଦ୍ଧ ମୂର୍ତ୍ତି ଓ ବୌଦ୍ଧ ଭାସ୍କର୍ଯ ରହିଛି। ପଥର ଓ ପିତଳର ବହୁ ମୂର୍ତ୍ତି ସଂରକ୍ଷିତ ଅଛି। ଭାରତୀୟ ସ୍ଥାପତ୍ୟର କେତେକ ନିଦର୍ଶନ ଏଠାରେ ରଖାଯାଇଛି। ମ୍ୟୁଜିୟମଟି ମୋତେ ଖୁବ୍ ଭଲଲାଗିଲା। ମୁଁ ନେତନ୍ନ କରି ସମସ୍ତ ଜିନିଷ ବୁଲି ଦେଖିଥିଲି ଏବଂ କେତେକ ନୋଟ୍ସ୍ ମଧ କରିଥିଲି।

**'ମୋ' କବିତାରେ ବ୍ୟାଂକକ୍–** ବ୍ୟାଂକକ୍ ନଗରୀଟି ମୋ' କବିତାରେ ଉଲ୍ଲିଖିତ ହୋଇଛି, 'ଏସିଆର ସ୍ୱପ୍ନ' ବହିରେ।

''ଆଖି ମେଲେ ଚିତ୍ରିତ ବ୍ୟାଂକକ୍।
ବୁଦ୍ଧଂ ଶରଣଂ ଗଚ୍ଛାମି
ମେନାମ୍‌ର ଉର୍ମିମାନେ ସତେ ବା ପ୍ରଣମି
ତଥାଗତ ପଦେ, ଟେକୁଛଂତି ଏଇ ମାତ୍ର ଶିର
ମହୀଦଳ ପ୍ରାସାଦବେଢ଼ାରେ
ଅଜସ୍ର ଫୁଆର ମୁଖୁ ଜଳକଣା ଛୁଟଇ ଫୁତ୍କାରେ,
ଟିଣ ଆଉ ସିସାର ଖଣିରେ
ସକାଳର ସାଇରେନ୍ ଶୁଭେ ତେଣେ ଦୂରେ'' (ଏସିଆର ସ୍ୱପ୍ନ)

**ଅଷ୍ଟ୍ରେଲିଆରେ ଦୁଇମାସ –**

ବ୍ୟାଂକକ୍‌ରୁ ଅଷ୍ଟ୍ରେଲିଆର ମେଲବୋର୍ଣ ଗଲି। ମେଲବୋର୍ଣର ସମାଜ କଲ୍ୟାଣ ବିଭାଗର ଜଣେ ମହିଳା କର୍ମଚାରୀ ମୋତେ ବିମାନଘାଟିରେ ଭେଟି ମୋର ରହିବା ସ୍ଥାନ ପାର୍କ ଗେଷ୍ଟହାଉସ୍‌ରେ ନେଇ ଛାଡ଼ିଦେଲେ। ତାଂକଠାରୁ ଜାଣିଲି ଯେ ଆଉ ଦୁଇ-ତିନିଦିନ ପରେ ଭାରତରୁ ଆଉ ତିନିଜଣ ପ୍ରତିନିଧି ଆସିବେ। ସେମାନେ ମଧ ଏହି ଗେଷ୍ଟ ହାଉସରେ ରହିବେ।

ତିନିଦିନପରେ ଭାରତରୁ ତିନିଜଣ ପ୍ରତିନିଧି ଆସି ପହଂଚିଲେ। ସେମାନେ ହେଉଛଂତି ବଂବେର ଲେବର କମିସନର ଚଂଦ୍ରଶେଖର ଭଟ୍ଟ, ପୁନାର ଏକ ସମାଜକଲ୍ୟାଣ କର୍ମସଂସ୍ଥାର କର୍ମକର୍ତ୍ତା ଭି.ଭି. କାର୍ନିକ୍ ଏବଂ ପଶ୍ଚିମବଂଗ ସରକାରଂକ

ପ୍ରୌଢ଼ ଶିକ୍ଷା Adult Education ବିଭାଗର ନିର୍ଦ୍ଦେଶକ ଏସ୍. ଭଟ୍ଟାଚାର୍ଯ୍ୟ। ଆମେ ଚାରିଜଣ ପାର୍କ ଗେଷ୍ଟ ହାଉସ୍‌ରେ କେତୋଟି ରୁମ୍‌ରେ ରହିଲୁ।

**ମେଲବୋର୍ଣ ନଗରୀ –** ମେଲବୋର୍ଣ ଅଷ୍ଟ୍ରେଲିଆର ଭିକ୍ଟୋରିଆ ରାଜ୍ୟର ରାଜଧାନୀ। ଏହା ୟାରା ନଦୀ କୂଳର ଅବସ୍ଥିତ। ନଦୀଟି ବେଶ୍ ବଡ଼। ଏହା ଫିଲିପ ପୋତାଶ୍ରୟର ଉତ୍ତର ଦିଗରେ ଅବସ୍ଥିତ। ୟାରା ନଦୀ ହବସନ ବେ ଉପସାଗରରେ ପଡ଼ିଛି। ମେଲବୋର୍ଣ ସହରଟି ଆଧୁନିକ ଢାଂଚାରେ ନିର୍ମିତ। ସହରରେ ଟ୍ରାମ୍ ଲାଇନ ଅଛି। ସହରର ଆୟତନ ପ୍ରାୟ ୮ ହଜାର ଏକର। ଏଥିରେ ଅନେକ ସୁନ୍ଦର ଅଟ୍ଟାଳିକାମାନ ରହିଛି। ପବ୍ଲିକ କୋଠାସବୁ ପୃଥିବୀର ଏହି ଆକାରର ଅନ୍ୟାନ୍ୟ ନଗରୀମାନଂକର କୋଠାବାଡ଼ିର ସମତୁଲ୍ୟ। ସେଥିମଧ୍ୟରେ ପାର୍ଲିଆମେଂଟ ଗୃହ (୧୮୫୫), ଏକ୍‌ଜିବିସନ୍ ବିଲଡ଼ିଂ (୧୮୮୧), ଟ୍ରେଡସ୍‌ହଲ ଏବଂ ଟାଉନହଲ ଅଂତର୍ଗତ। କାନବେରା ଅଷ୍ଟ୍ରେଲିଆ କମନୱେଲ୍‌ଥର ରାଜଧାନୀ ହେବା ପର୍ଯ୍ୟଂତ ଏହିଠାରେ ପାର୍ଲିଆମେଂଟ ବସୁଥିଲା। ଆସେଂବ୍ଲି ହଲଟି ମଧ୍ୟ ଅତି ଚମତ୍କାର। ଅନ୍ୟାନ୍ୟ ଆକର୍ଷଣୀୟ ବିଲଡ଼ିଂମାନଂକ ମଧ୍ୟରେ ଜି.ପି.ଓ., କଷ୍ଟମସ ହାଉସ, ପବ୍‌ଲିକ୍ ଲାଇବ୍ରେରି, ନେସନାଲ୍ ଆର୍ଟ ଗ୍ୟାଲେରି, ଟେକ୍ନୋଲଜିକାଲ୍ ମ୍ୟୁଜିୟମ, ଡାକ୍ତରଖାନା ଏବଂ ବିଶ୍ୱବିଦ୍ୟାଳୟ ଅନ୍ୟତମ। ଏହାଛଡ଼ା ସହରରେ ବହୁ ଥିଏଟର, ଅପେରା ହାଉସ୍, ସଂଗୀତ ପ୍ରତିଷ୍ଠାନ, କାଥିଡ୍ରାଲ୍ ପ୍ରଭୃତି ରହି ସହରର ଶୋଭାବର୍ଦ୍ଧନ କରୁଛଂତି। ଏହାର ଦୋକାନ ବଜାର ଆଧୁନିକ ଧରଣର ଏବଂ ସୁଂଦର। ୧୯୭୭ରେ ସହରର ଜନସଂଖ୍ୟା ୧୨ ଲକ୍ଷ ଥିଲା।

ମେଲବୋର୍ଣ ନଗରୀଟି ଉଲିୟମ୍ ଲ୍ୟାଂବକ ଦ୍ୱାରା ୧୭୮୧ ଖ୍ରୀଷ୍ଟାବ୍ଦରେ ସ୍ଥାପିତ ହୋଇଥିଲା। ସହର ଉପକଂଠରେ ବହୁ କଳକାରଖାନା ଗଢ଼ିଉଠିଛି। ଉଲ୍ ମିଲ, କଟନ ମିଲ୍, ଜୋତା କାରଖାନା, ସାବୁନ କାରଖାନା ଏବଂ ସୁନା ପ୍ରସେସିଂ କାରଖାନା ପ୍ରଭୃତି ରହିଛି। ଅଷ୍ଟ୍ରେଲିଆରେ କେତେକ ସୁନାଖଣି ବାହାରିଥିଲା। ବିଭିନ୍ନ ଦେଶରୁ ବହୁଲୋକ ସୁନାଲୋଭରେ ଅଷ୍ଟ୍ରେଲିଆ ଆସିଥିଲେ। ଏହାକୁ 'Gold rush' କୁହାଯାଉଥିଲା।

**ସମାଜ ମଂଗଳ ସେମିନାର –**

ଆଂତଃରାଷ୍ଟ୍ରୀୟ ସମାଜମଂଗଳ ସେମିନାରରେ ଆମେ ନିୟମିତ ଅଂଶ ଗ୍ରହଣ କରୁଥିଲୁ। ଭାରତରେ ଶ୍ରମିକମଂଗଳ କାର୍ଯ୍ୟକ୍ରମ ବିଷୟରେ ମୁଁ ଦୁଇ-ତିନୋଟି ଭାଷଣ ଦେଇଥିଲି। ମିସ୍ ସ୍ୟାଂଡାର୍ସ ଆମ ସେମିନାର ପରିଚାଳନା ଦାୟିତ୍ୱରେ ଥିଲେ। ସେ ମୋଠାରୁ ବୟସରେ ୫ ବର୍ଷ ବଡ଼ହେବେ। ସେ ମତେ ଖୁବ୍ ସ୍ନେହ କରୁଥିଲେ; କେତେ ଥର ଖାଇବାକୁ ମଧ୍ୟ ଡାକିଥିଲେ। ସେମିନାର ନିର୍ଦ୍ଦେଶିକା ଥିଲେ ମିସ୍ ଟେଲର୍। ସେ ଜଣେ ପ୍ରୌଢ଼ା ଭଦ୍ରମହିଳା। ସେ ଆମକୁ ମଝିରେ ମଝିରେ ତାଂକ ଅଫିସକୁ ଡାକି ବିଭିନ୍ନ ବିଷୟରେ ଆଲୋଚନା କରୁଥିଲେ।

**ସାହିତ୍ୟିକ ମହଲରେ –**

ମେଲବୋର୍ଣରେ ମୁଁ ବହୁ ଲେଖକ ଲେଖିକାମାନଂକ ସହିତ ପରିଚିତ ହୋଇଥିଲି। କବି ନ୍ୟାନ୍ସି କ୍ୟାଟୋଂକ ସହିତ ମୋର ଘନିଷ୍ଠ ଆଳାପ ହୋଇଥିଲା। ସେ "Flitting Image" ନାମକ ଏକ କବିତା ସଂକଳନ ପ୍ରକାଶକରିଥିଲେ। ତାହା ସୁଧୀମହଲରେ ଉଚ୍ଚପ୍ରଶଂସିତ ହୋଇଥିଲା। ଏହାଛଡ଼ା ଅଷ୍ଟ୍ରେଲିଆର ପ୍ରସିଦ୍ଧ ଔପନ୍ୟାସିକ ଭ୍ୟାନ୍‌ସ ପାମର ମୋତେ ଥରେ ତାଂକ ଘରକୁ ନିମଂତ୍ରଣ କରିଥିଲେ। ତାଂକର କେତେ ଖଂଡି ଉପନ୍ୟାସ ମୋତେ ଉପହାରଦେଇଥିଲେ।

ପ୍ରସିଦ୍ଧ ଔପନ୍ୟାସିକ ମିସ୍ ଏଲଡରସ୍ ମୋତେ ଏବଂ ମିସ୍ ସ୍ୟାଂଡାରସଂକୁ ମଧ୍ୟାହ୍ନ-ଭୋଜନକୁ ନିମଂତ୍ରଣ କରିଥିଲେ। ସେଠାରେ ଆମେ ଭାରତୀୟ ଓ ଅଷ୍ଟ୍ରେଲୀୟ ସାହିତ୍ୟ ସଂବଧରେ ବହୁ ସମୟ ଆଲୋଚନା କରିଥିଲୁ।

**ଅଭ୍ୟର୍ଥନା –**

ମିସ୍ ଉଡହାଉସ୍ ଏକ ଫ୍ୟାକ୍ଟ୍ରିରେ ଶ୍ରମମଂଗଳ ଅଫିସର ଥିଲେ। ତାଂକର ବହୁ ସାହିତ୍ୟିକଂକ ସହିତ ଆଳାପ ପରିଚୟ ଥିଲା। ସେ ଦିନେ ମୋତେ ଏକ ରାତ୍ରିଭୋଜନକୁ ଡାକିଥିଲେ। ସେଇ ଅବସରରେ ମେଲବୋର୍ଣର ବହୁ ଲେଖକ-ଲେଖିକାଂକ ସହିତ ପରିଚିତୟ କରାଇଦେଇଥିଲେ ଏବଂ ମୋ ସାହିତ୍ୟ କୃତିର ସୂଚନା ଦେଇ ମୋର ଅଭ୍ୟର୍ଥନା କରିଥିଲେ। 'ଝଂବେ କ୍ରନିକ୍ଲ' ପତ୍ରିକାରେ ମୋ ସଂବଂଧରେ ଏକ ବଡ଼ ପ୍ରବଂଧ ପ୍ରକାଶପାଇଥିଲା। ମୁଁ ସେ ପତ୍ରିକା ସଂଗରେ ନେଇଯାଇଥିଲି। ମିସ୍ ଉଡ୍‌ହାଉସ୍ ସେ ପତ୍ରିକାର ପ୍ରବଂଧଟି ପଢ଼ି ଶୁଣାଇଥିଲେ। ସେଥିରେ ମୋର ଜୀବନୀ ଏବଂ ମୋର ପୁସ୍ତକମାନଂକର ସମୀକ୍ଷା କରାଯାଇଥିଲା। ଅଷ୍ଟ୍ରେଲିଆ ସରକାର କୃତୀ ସାହିତ୍ୟିକମାନଂକୁ ପୁସ୍ତକ ଲେଖିବାପାଇଁ ଫେଲୋସିପ୍ ଦେଉଥିଲେ। ସେଇ ଫେଲୋସିପ୍ ପାଇ ଜଣେ ସାହିତ୍ୟିକ ବଂଧୁ 'Twenty Thousand Thieves' ନାମକ ଏକ ଚମତ୍କାର ଉପନ୍ୟାସ ଲେଖିଥିଲେ। ତାଂକ ପୂରାନାମ ମୋର ମନେପଡୁନାହିଁ। ସେ ମଧ୍ୟ ସେ ଅଭ୍ୟର୍ଥନା ସଭାକୁ ଆସିଥିଲେ।

ଆଉ ଦିନେ ମିସେସ୍ ସ୍ମିଥ୍ ନାମକ ଜଣେ ଭଦ୍ରମହିଳା ମୋତେ ରାତ୍ରିଭୋଜନକୁ ଡାକିଥିଲେ। ଆଉ କେତେଜଣ ବଂଧୁବାଂଧବୀଂକୁ ମଧ୍ୟ ଡାକିଥିଲେ। ସେ ମୋତେ ପଚାରିଲେ "What do you do?" (ତୁମେ କ'ଣ କର) ମୁଁ କହିଲି, "I am a poet"। ସେ କହିଲେ – "then you must be doing a very hard job" (ତମକୁ ବଡ଼ କଠିନ କାମ କରିବାକୁ ପଡୁଥିବ।) ମିସ୍ ସ୍ୟାଂଡାର୍ସ ଓ ମୁଁ ଦ୍ୱିପହର କଟାଇବା ଛୁଟିରେ ରେଷ୍ଟୋରାଁରୁ ଆମ ଖାଇବା ପ୍ଲେଟ ନେଇ ଗଛମୂଳରେ ଲଂଚ ଖାଇଥିଲୁ। ଏହିପରି କେତେଦିନ ଆମେ ଏକତ୍ର ଲଂଚ୍ ଖାଇଛୁ। ତାଂକ ସ୍ନେହ ଭୁଲିହେବନାହିଁ।

**ମିସେସ୍ ଓ ମି. କ୍ୟାଶିଂକ ଆତିଥ୍ୟ –**

ମୁଁ ମେଲବୋର୍ଣରେ ଥିଲାବେଳେ ମିଷ୍ଟର୍ କ୍ୟାଶିଂକ ଘରକୁ ଯାଇଥିଲି। ସେମାନଂକ ଘର ମେଲବୋର୍ଣରେ। କ୍ୟାଶି ଘରେ ନଥିଲେ। ତାଂକ ପୁଅ ମଧ୍ୟ ନଥିଲା। ମିସେସ୍ ମ୍ୟାଗିନୀ କ୍ୟାଶି ମୋତେ ଦେଖି ଖୁବ୍ ଖୁସିହେଲେ ଏବଂ ଘରଭିତରକୁ ଡାକିନେଇ କଲିକତା ସଂବଂଧରେ ଏବଂ ମୋ ସଂବଂଧରେ ଅନେକ କଥା ପଚାରିଲେ। ସେ ମୋତେ ଚା' ଓ ଏକ ପ୍ଲେଟ୍‌ରେ ଗୋଲାପି ରଂଗର ସଂଦେଶ ଆଣି ଖାଇବାକୁ ଦେଲେ। ସେ ନିଜେ ସେହି ସଂଦେଶଗୁଡ଼ିକ ବନାଇଥିଲେ, ବୋଧହୁଏ କଲିକତାରୁ ଶିଖିଥିବେ। ରାଇଟ୍ ଅନ୍‌ରେବଲ୍ ଆଇ.ଜି. କ୍ୟାଶି ଅବିଭକ୍ତ ବଂଗଦେଶର ରାଜ୍ୟପାଳ ଥିଲେ। ସେ ଥରେ ଆମ ମିଲ୍ ପରିଦର୍ଶନରେ ଆସିଥିଲେ। ମୁଁ ମଧ୍ୟ ତାଂକ ସହିତ ଥରେ କଲିକତା ରାଜଭବନରେ ସାକ୍ଷାତ କରିଥିଲି।

ମିସେସ୍ କ୍ୟାଶି ଓ ମୁଁ କଥାବାର୍ତ୍ତା କରୁଥିବାବେଳେ ମି. କ୍ୟାଶି ଆସି ପହଂଚିଲେ। ସେ ଅଷ୍ଟ୍ରେଲିଆ ରାଜଧାନୀ କାନବେରାରେ କମନ୍‌ୱେଲ୍‌ଥ ସରକାରର ମଂତ୍ରିମଂଡଳରେ ଜଣେ ମଂତ୍ରୀ ଥିଲେ। କାନବେରା ମେଲବୋର୍ଣଠାରୁ ପ୍ରାୟ ୧୫୦ ମାଇଲ ଦୂରରେ। ସେ ରୋଜ ନିଜେ ନିଜ ଏରୋପ୍ଲେନ୍ ଚଳାଇ କାନବେରା ଯାଉଥିଲେ ଏବଂ ସଂଜବେଳେ ଫେରିଆସୁଥିଲେ। ମିସେସ୍ କ୍ୟାଶି ମଧ୍ୟ ଏରୋପ୍ଲେନ୍ ଚଳାଇ ଜାଣଂତି ବୋଲି ମୋତେ କହିଥିଲେ। ମି. କ୍ୟାଶି ଘରେ ପହଂଚି ମୋତେ ଦେଖି ଖୁବ୍ ଖୁସି ହେଲେ। ସେ କଲିକତାର ରାଜନୈତିକ ପରିସ୍ଥିତି ସଂବଂଧରେ କେତେ କଥା ପଚାରି ବୁଝିଥିଲେ। ସେତେବେଳକୁ ଆଉ ଅବିଭକ୍ତ ବଂଗଦେଶ ନଥିଲା। ତାହା ପଶ୍ଚିମ-ବଂଗ ଓ ପୂର୍ବ-ପାକିସ୍ତାନରେ ବିଭକ୍ତ ହୋଇଯାଇଥିଲା। ସ୍ୱାଧୀନ ଭାରତରେ ବିଶେଷକରି ପଶ୍ଚିମ-ବଂଗରେ କ'ଣ ସବୁ ପରିବର୍ତ୍ତନ ହୋଇଛି, ସେ ବିଷୟରେ ମି. କ୍ୟାଶି ବହୁ ପ୍ରଶ୍ନ ପଚାରିଥିଲେ। ମୁଁ ରାତି ୯ଟା ପର୍ଯ୍ୟଂତ ତାଂକ ଘରେ ଥିଲି। ତା'ପରେ ମୁଁ ମୋ ଗେଷ୍ଟହାଉସକୁ ଫେରିଆସିଲି।

**'ମିଆଁଜିନ୍ ପତ୍ରିକା' (Meanjin) –**

ମେଲବୋର୍ଣ ୟୁନିଭରସିଟି ଆନୁକୂଲ୍ୟରେ ମିଆଁଜିନ ନାମକ ଏକ ଉଚ୍ଚସ୍ତରର ସାହିତ୍ୟ ପତ୍ରିକା ପ୍ରକାଶପାଉଥିଲା। ଏଥିରେ ଉଚ୍ଚ ମାନର ଗଳ୍ପ, କବିତା ଓ ଆଲୋଚନା ପ୍ରକାଶପାଉଥିଲା। ପତ୍ରିକାର ସଂପାଦକ ମି. ଖ୍ରୀଷ୍ଟୋଫର୍ ଏବଂ ତାଂକ ସ୍ତ୍ରୀ ମୋତେ ତାଂକ ଅଫିସ୍‌କୁ ନିମଂତ୍ରଣ କରିଥିଲେ। ଆମେମାନେ ଅଷ୍ଟ୍ରେଲୀୟ ସାହିତ୍ୟ ଏବଂ ଭାରତୀୟ ସାହିତ୍ୟ ସଂବଂଧରେ କିଛି ସମୟ ଆଲୋଚନା କରିଥିଲୁ। ସେ ମୋତେ ତାଂକ ପତ୍ରିକାର କେତେକ ସଂଖ୍ୟା ଉପହାର ଦେଇଥିଲେ। ମିଆଜିନ୍ (Meajin) ଏକ ଅଷ୍ଟ୍ରେଲୀୟ ଆଦିବାସୀ ଶବ୍ଦ। ଏହାର ଅର୍ଥ 'ଦୁଇ ଆଙ୍ଗୁଠିର ସଂଧି'।

**ଅଷ୍ଟ୍ରେଲିଆରେ ବର୍ଣ-ବୈଷମ୍ୟ –**

ଯାହା ମୋତେ ଅଷ୍ଟ୍ରେଲିଆରେ ସବୁଠୁ ଖରାପ ଲାଗିଲା, ତାହା ହେଉଛି ଉତ୍କଟ ବର୍ଣ-ବୈଷମ୍ୟ। ଅଷ୍ଟ୍ରେଲିଆର କଳା ଅଧିବାସୀମାନଂକୁ ସ୍ୱତଂତ୍ର ସ୍ଥାନରେ ବସତି କରି ରଖାଯାଇଥିଲା। ସେମାନେ ଗୋରା ଲୋକ ରହିବା ସ୍ଥାନରେ ରହିବାକୁ କଡ଼ା ନିଷେଧ ଥିଲା। ଅବଶ୍ୟ ସେମାନେ କେବେ କେବେ ହାଟ-ବଜାରକୁ ଆସି ସଉଦାକରୁଥିଲେ। ସେମାନଂକ ଶିକ୍ଷାଳୟ ସେମାନଂକ ବସତି ଭିତରେ ଥିଲା। ଗୋରାଲୋକଂକୁ ସେମାନେ 'ପେକିଆ' କହୁଥିଲେ। ସେମାନଂକୁ ଏଭଳି ବାସଂଦ କରି ରଖିବା ମୁଁ ଆଦୌ ପସଂଦ କରିନଥିଲି। ଏ ବିଷୟରେ ଅଷ୍ଟ୍ରେଲିଆର ବିଭିନ୍ନ ବ୍ୟକ୍ତିଂକ ସହିତ ଆମର ଯୁକ୍ତିତର୍କ ହୋଇଛି। ଆମ ସେମିନାର୍‌ରେ ମଧ୍ୟ ଏ ବିଷୟ ବହୁବାର ଆଲୋଚିତ ହୋଇଛି।

ଥରେ ମୁଁ କେତେଜଣ ଅଷ୍ଟ୍ରେଲିଆନ୍ ଆଦିବାସୀ କଳାକାରଂକୁ ଏକ ଅର୍କେଷ୍ଟ୍ରାରେ ଭେଟିଥିଲି। ସେମାନଂକର ବେଶଭୂଷା, ଚାଲିଚଳଣ ଓ କଥାବାର୍ତା ସବୁ ଶ୍ୱେତାଂଗ-ମାନଂକ ପରି; କେବଳ ବର୍ଣଟା ଯାହା କଳା। ଆଦିବାସୀ ଜନଜାତି ଲୋକସଂଖ୍ୟା କ୍ରମେ କମିଯାଉଛି ବୋଲି ଶୁଣିଥିଲି।

**ସେମିନାର୍ ଆଲୋଚନା –**

ସେମିନାର୍‌ରେ ଅଷ୍ଟ୍ରେଲିଆ କଳକାରଖାନାମାନଂକରେ ଯେଉଁ ଶ୍ରମମଂଗଳ କାର୍ଯସବୁ ହେଉଥିଲା, ସେ ବିଷୟରେ ଆମେ କେତେକ ଆଲୋଚନା କରିଛୁ। ସେଥିମଧ୍ୟରେ Suggestions Pay Dividend ଅନ୍ୟତମ। ମୁଁ ଭାରତ ଫେରିଆସି କେଶୋରାମ କଟନ ମିଲ୍‌ରେ ତାହା ପ୍ରବର୍ତନ କରିଥିଲି। ତାହା ବେଶ୍ ଜନପ୍ରିୟ ହୋଇଥିଲା। ସେ ସ୍କିମ୍‌ଟି ହେଉଛି କଳକାରଖାନାମାନଂକରେ ବିଭିନ୍ନ ବିଭାଗରେ ଉତ୍ପାଦନ କିପରି ବଢ଼ାଯାଇପାରିବ, ସେ ବିଷୟରେ ଶ୍ରମିକମାନେ ତାଂକର ସୂଚନା ଦେବେ। ସେମାନେ କାଗଜରେ ସେମାନଂକ Siggestion ଲେଖି ସେମାନଂକ ନାମ ଓ ଠିକଣା ସହ ତାହାକୁ ଏକ ବଡ଼ ବାକ୍‌ସରେ ଗଳାଇଦେବେ। ସେ ବାକ୍‌ସ ଏକ ଲେଟରବାକ୍‌ସ ଭଳି। ମିଲ୍‌ର ଅଫିସର୍ ତାହାକୁ ସଂଗ୍ରହକରି ଏକ କମିଟିରେ ଦାଖଲ କରିବେ। କମିଟି ଯେଉଁ ୩ଟି Siggestionକୁ ଭଲ ବୋଲି ବାଛିବେ, ସେ Siggestion ଦେଇଥିବା ଶ୍ରମିକମାନଂକୁ ମିଲ୍ ମ୍ୟାନେଜ୍‌ମେଂଟ ଉପଯୁକ୍ତ ପୁରସ୍କାର ଟଂକା ଆକାରରେ ଦେବେ। ପ୍ରଥମ ପୁରସ୍କାର ୩୦୦ ଟଂକା ରଖାଯାଇଥିଲା। ଆମ ମିଲ୍‌ର ବହୁ ଶ୍ରମିକ ଏ ଯୋଜନାରେ ଭାଗନେଉଥିଲେ ଏବଂ ତାଂକର Siggestion ପଠାଉଥିଲେ। ପ୍ରତିମାସରେ ଏ ପୁରସ୍କାର ସଂପୃକ୍ତ ଶ୍ରମିକଂକୁ ଦିଆଯାଉଥିଲା।

ସମାଜମଂଗଳ କ୍ଷେତ୍ରରେ ଅଷ୍ଟ୍ରେଲିଆ କମନଓଏଲଥ୍ ଅନ୍ୟ ପାଶ୍ଚାତ୍ୟ ରାଜ୍ୟମାନଂକଠାରୁ ଅଗ୍ରଣୀ ଥିଲା। ବାର୍ଦ୍ଧକ୍ୟ ପେନ୍‌ସନ୍ ମ୍ୟାଟରନିଟୀ ବେନିଫିଟସ୍ ଏବଂ କର୍ମ-ସଂସ୍ଥାନ କ୍ଷେତ୍ରରେ ଏହା ଉଲ୍ଲେଖନୀୟ ଅଗ୍ରଗତି କରିଥିଲା।

ଅଷ୍ଟ୍ରେଲିଆନମାନଂକର ଇଂରାଜୀ ଉଚ୍ଚାରଣ ଟିକିଏ ଭିନ୍ନ। ସେମାନେ 'Day'କୁ 'ଦାଇ' ବୋଲି ଉଚ୍ଚାରଣ କରନ୍ତି। ଆହୁରି କେତେକ ଶବ୍ଦ ମଧ୍ୟ ସେମାନେ ଭିନ୍ନ ପ୍ରକାରରେ ଉଚ୍ଚାରଣ କରନ୍ତି।

**କଂଗାରୁ ଓ ଗମ୍ ଗଛ—**

ଅଷ୍ଟ୍ରେଲିଆର ବିଶେଷ ପ୍ରାଣୀମାନଂକ ମଧ୍ୟରେ କଂଗାରୁ ପ୍ରଧାନ। ସେଠାର ଜଂଗଲମାନଂକରେ ଏମାନେ ରହିଥାଂତି। ଏମାନେ ସେମାନଂକ ପେଟତଳେ ଝୁଲୁଥିବା ଥଳିରେ ଛୁଆକୁ ରଖି ଖୁବ୍ ଜୋର୍‌ରେ ଦୌଡ଼ିପାରନ୍ତି। ଗମ୍ ଟ୍ରି ମଧ୍ୟ ଅଷ୍ଟ୍ରେଲିଆରେ ବହୁଳଭାବେ ଦେଖାଯାଏ। ଅଷ୍ଟ୍ରେଲିଆନ୍ ସାହିତ୍ୟରେ ଗମ୍ ଗଛର ବହୁ ଉଲ୍ଲେଖ ମିଳେ।

ଅଷ୍ଟ୍ରେଲିଆ ପଶମ ଉତ୍ପାଦନ ପାଇଁ ପୃଥିବୀବିଖ୍ୟାତ। ବିଶ୍ୱର ଏକ-ଚତୁର୍ଥାଂଶ ପଶମ ଅଷ୍ଟ୍ରେଲିଆରୁ ଉତ୍ପନ୍ନ ହୁଏ। ଶ୍ରେଷ୍ଠ ମାରିନୋ ଉଲ୍ ତା' ମଧ୍ୟରେ ଅଂତର୍ଗତ। ଏହାର ବଂଦରମାନଂକ ମଧ୍ୟରେ ସିଡ୍‌ନୀ (ପୋର୍ଟ ଜାକ୍‌ସନ୍), ମେଲ୍‌ବୋର୍ଣ, ପର୍ଥ, ଏଡ୍‌ଲେଡ୍ ପ୍ରଭୃତି ଉଲ୍ଲେଖଯୋଗ୍ୟ। ଏଠାରେ ସୁନାଖଣି, କୋଇଲା ଖଣି ପ୍ରଭୃତି କାର୍ଯକାରୀ ହେଉଛି।

ଅଷ୍ଟ୍ରେଲିଆରେ ସେମିନାର ପ୍ରାୟ ଦୁଇମାସ ଚାଲିଥିଲା। ଏହାପରେ ସେମିନାର ନ୍ୟୁଜିଲ୍ୟାଂଡରେ ଦୁଇ ସପ୍ତାହ ଚାଲିବାର କଥା ଥିଲା। ତେଣୁ ଅଷ୍ଟ୍ରେଲିଆନ୍ ସେମିନାର ଶେଷହେବାପରେ ଆମେ ସମସ୍ତେ ନ୍ୟୁଜିଲ୍ୟାଂଡ୍ ଯାତ୍ରାକଲୁ। ନ୍ୟୁଜିଲ୍ୟାଂଡ ଯିବା ଆଗରୁ ଆମେ ସିଡ୍‌ନୀ ଯାଇ ୫ ଦିନ ସେଠାରେ ରହିଥିଲୁ ଏବଂ ସେଠାରେ କେତେକ ସମାଜମଂଗଳ କାର୍ଯ ପର୍ଯବେକ୍ଷଣ କରିଥିଲୁ। ସିଡ୍‌ନୀ ବିଶ୍ୱବିଦ୍ୟାଳୟର ସୁଖ୍ୟାତି ଅଛି— ତାହା ମଧ୍ୟ ଦେଖିଥିଲୁ।

**ମେଲବୋର୍ଣର ସ୍ମୃତି—**

ମେଲବୋର୍ଣ ମୋ ସ୍ମୃତିରେ ସଂଜୀବିତ ହୋଇ ରହିଛି। ଏହାକୁ ଭୁଲି ହୁଏ ନାହିଁ। 'କବିତା ୧୯୬୨'ରେ ମେଲବୋର୍ଣ ଉପରେ ଲିଖିତ ମୋର 'ସ୍ମୃତି ଲେଖା' କବିତାଟି ସ୍ଥାନିତହୋଇଛି। ଏହାର ନାୟିକା ମେଲବୋର୍ଣ ନଗରୀ; ଯାହା କାଳିଦାସଂକ 'ଦଶାର୍ଣ ଗ୍ରାମ'। ଏବେ ଅଦୂରେ ପୃଷ୍ଠପଟରେ ଉଜ୍ଜୟିନୀ ନଗରୀ ପଲ୍ଲବିତ ହୋଇଉଠିଛି। ଏହାର ଲଳିତ ଇସ୍‌ପାତର କୋମଳ ତନୁଲତା ମୋ କବିତାରେ ଅଲିଭା ରେଖା କାଟିଛି।

**'ସ୍ମୃତି ଲେଖା'**

''ଗୋଧୂଳି ଆକାଶର ପୋଷ୍ଟକାର୍ଡ ଗାଲେ
'ଭଲଅଛି ଆଶାକରେ ଭଲଥିବ' ବାଣୀ
ହଠାତ୍ ମନେପଡ଼ିଲା ସେ ବିସ୍ମୃତ ନଗରୀ
(କାଳିଦାସଂକ ନାୟିକା ପରି ସେ . . .)

ସେ ବିକଳ୍ପ ନାରୀ
ଉତ୍କଳ-ବ୍ୟଥିତଗତିଗିରିନଦୀ କୂଳେ
ଅସଂଖ୍ୟ ପ୍ରାସାଦମେଳେ
ଏକାଂତେ ଓ କୋଳାହଳେ, ଦିନ ଗଣେ
ତା ସାଦା ବିଷର୍ଣ୍ଣ ଗାଲେ
ବିଦାୟ ବେଳର ଛାପ
ତାର ସ୍ପର୍ଶ
ତା' ଦେହର ଗଂଧ ଆଉ ତରଳିତ ହର୍ଷ
ଲୀଳାୟିତ ସ୍ତ୍ରୀୟୋଚିତ ଲଳିତ ଇସାର୍
ଆଖିର୍ ଶିଖୀର ଭଂଗୀ
ଅଗଣିତ କାମନାର ଅନିଦ୍ରିତ ନୀଳା ଚୌରଂଘି
ମନେ ପଡ଼େ, ମନେପଡ଼େ, ମନେପଡ଼େ
ଅତି ଦୂରେ
ଫୁଲଭରା ଜାମୁବନ ଛାୟା ଗହଳରେ
ସେ ମୋର ଦଶାର୍ଣ
ଗ୍ରାମ ନାମ
ମେଲବୋର୍ଣ।
ମୋ ପ୍ରିୟ ନଗରୀ।।''

**ସିଡ୍‌ନୀରେ ୬ ଦିନ –**

ସିଡ୍‌ନୀ ନ୍ୟୁସାଉଥ୍‌ଓୟେଲସର ରାଜଧାନୀ। ଏହା ଏକ ବଡ଼ ନଗରୀ; ପୋର୍ଟ ଜାକସନକୁ ଲାଗି ଅବସ୍ଥିତ। ଏହା କ୍ୟାପ୍‌ଟେନ ଫିଲିପଂକ୍‌ ଦ୍ୱାରା ୧୭୮୮ରେ ସ୍ଥାପିତ ହୋଇଥିଲା। ସିଡ୍‌ନୀ ପୃଥିବୀର ବୃହତ୍ତମ ପ୍ରାକୃତିକ ବଂଦରମାନଂକ ମଧ୍ୟରେ ଅନ୍ୟତମ। ଏହାର ଏୟାରପୋର୍ଟ ଏକ ଗୁରୁତ୍ୱପୂର୍ଣ ଆଂତର୍ଜାତିକ ଏୟାରପୋର୍ଟ। ସିଡ୍‌ନୀ ଅଷ୍ଟ୍ରେଲିଆର ବୃହତ୍ତମ ବାଣିଜ୍ୟ ଓ ଶିଳ୍ପ କେଂଦ୍ର। ଏହା ଦକ୍ଷିଣ ପ୍ରଶାଂତ ମହାସାଗରର ବୃହତ୍ତମ ନଗରୀ।

## ଊନତ୍ରିଂଶ ଉଲ୍ଲାସ

## ନ୍ୟୁଜିଲ୍ୟାଂଡରେ ତିନି ସପ୍ତାହ

ସିଡ଼ନୀଠାରୁ ଆମେ ପ୍ଲେନ୍‌ରେ ଯୋଗେ ନ୍ୟୁଜିଲ୍ୟାଂଡର ରାଜଧାନୀ ୱେଲିଂଟନ ଯାତ୍ରାକଲୁ। ସେ ପ୍ଲେନ୍‌ଟି ଖୁବ୍ ବଡ଼, ତାହା ପାଣି ଉପରେ ରହେ। ପାଣିରେ ଖଂଡେବାଟ ଦଉଡ଼ିଯାଇ ଉପରକୁ ଉଠେ। ତଳକୁ ଖସି, ପାଣିରେ ପଡ଼ି ଖଂଡେ ବାଟ ଦଉଡ଼ିଯାଇ ଏୟାରପୋର୍ଟ ଜେଟିରେ ଲାଗେ। ଏହା ହଜାର ହଜାର ଫୁଟ ଉପରୁ ଖସି ପାଣିରେ ପଡ଼ିବାବେଳେ ବଡ଼ ଭୟଲାଗେ। ମନେହୁଏ ଏହା ଯେପରି ପାଣିରେ ବୁଡ଼ିଯିବ।

ସିଡ୍‌ନୀ ଛାଡ଼ିଲାବେଳେ ଅନେକ ବଂଧୁ ମୋତେ ବିମାନବଂଦରରେ ଭେଟିବାକୁ ଆସିଥିଲେ। ସିଡ୍‌ନୀରେ ଯେଉଁ କେତେଦିନ ଥିଲୁ, ସେଠାରେ କେତେକ ସାହିତ୍ୟିକ ବଂଧୁ ଓ ପ୍ରକାଶକଂକ ସହିତ ମୋର ପରିଚୟ ହୋଇଥିଲା। ସେମାନଂକ ମଧ୍ୟରେ ଥିଲେ ସିଡ୍‌ନୀ ବୁକ୍ ସେଲର୍ସର ସତ୍ତ୍ୱାଧିକାରୀ ମିଃ ଚିସେଲମ, ଔପନ୍ୟାସିକା ମିସ୍ ଫ୍ରାଙ୍କେଲିନ୍ ('All That Sswaggers' ଉପନ୍ୟାସର ଲେଖିକା), ଫିଟ ଗାର୍ଲସ୍ ଏବଂ ଖ୍ରୀଷ୍ଟୋଫର ସନ୍ ପ୍ରକାଶନ ସଂସ୍ଥାର ମାଲିକ ପ୍ରମୁଖ।

ମେଲ୍‌ବୋର୍ଣରେ ଥିବାବେଳେ ଯେଉଁ ଲେଖକବଂଧୁମାନଂକ ସହିତ ଘନିଷ୍ଠ ସଂପର୍କରେ ଆସିଥିଲି, ସେମାନଂକ ମଧ୍ୟରୁ କେତେକ ବଂଧୁ ମୋର ମେଲବୋର୍ଣ ଛାଡ଼ିବା ସମୟରେ ଆସି ଭେଟିଥିଲେ। ସେମାନଂକ ମଧ୍ୟରେ କବି ଉଇଲିୟମ, ଏକ୍‌ଷ୍ଟରନାଲ୍ ଆଫାୟାରସ ଅଫିସର ମିସ୍ ମେରି ଷ୍ଟୁୱାର୍ଟ ପ୍ରଭୃତି।

ନ୍ୟୁଜିଲ୍ୟାଂଡ ଦ୍ୱୀପଟି ବ୍ରିଟିଶ କମନ୍‌ୱେଲ୍‌ଥ୍‌ର ଅଂଗରାଷ୍ଟ୍ର। ଏହା ପ୍ରଶାଂତ ମହାସାଗରର ଉପକୂଳରେ ଅବସ୍ଥିତ। ଏହା ଉତ୍ତର ଓ ଦକ୍ଷିଣ ଦ୍ୱୀପ ଦୁଇଟିର ସମଷ୍ଟି। ଏହାଛଡ଼ା ଆହୁରି ଅନେକ ଛୋଟ ଛୋଟ ଦ୍ୱୀପ ଏହାଠୁ ଅଳ୍ପ ଦୂରରେ ରହିଛି। ସେମାନଂକ ମଧ୍ୟରେ ଅକଲ୍ୟାଂଡ ଓ କେରମାଡ଼େପ ଦ୍ୱୀପପୁଂଜ ଅଂତର୍ଭୁକ୍ତ। ନ୍ୟୁଜିଲ୍ୟାଂଡ ଓ ଆଖପାଖ ଦ୍ୱୀପପୁଂଜର ଆୟତନ ୧,୦୩,୯୩୫ ବର୍ଗମାଇଲ। ୧୯୪୫ ମସିହା ବେଳକୁ ଏହାର ଲୋକସଂଖ୍ୟା ଥିଲା ପ୍ରାୟ ୧୭ ଲକ୍ଷ। ସେମାନଂକ ମଧ୍ୟରୁ ପ୍ରାୟ ୧୬ ଲକ୍ଷ ଶ୍ୱେତାଂଗ ଏବଂ ଅବଶିଷ୍ଟ ୧ ଲକ୍ଷ ହେଉଛଂତି ମାଓରି ବା ସ୍ଥାନୀୟ ଆଦିବାସୀ। ଏହି ମାଓରିମାନଂକର ଦେହର ରଂଗ ଆମ ଭାରତବାସୀଂକ ପରି ଶ୍ୟାମଳ ଓ ଈଷତ୍ ବାଦାମୀ। ଏମାନେ ଅଷ୍ଟ୍ରେଲୀୟ ଆଦିବାସୀଂକ ପରି ଗାଢ଼ କଳାବର୍ଣ ନୁହଂତି। ଚାରୋଟି ବଡ଼ ସହର ମଧ୍ୟରେ ଅକ୍‌ଲ୍ୟାଂଡର ଲୋକସଂଖ୍ୟାଥିଲା ୨,୮୧,୯୦୦। ନ୍ୟୁଜିଲ୍ୟାଂଡର

ରାଜଧାନୀ ୱେଲିଂଟନ୍‌ର ଲୋକସଂଖ୍ୟା ୧,୮୩,୧୦୦ ଥିଲାବେଳେ କ୍ରାଇଷ୍ଟଚର୍ଚ୍ଚରେ ଲୋକସଂଖ୍ୟା ଥିଲା ୧,୫୯,୪୦୦ ଏବଂ ଡୁନେଡିନର ଲୋକସଂଖ୍ୟା ଥିଲା, ୮୭,୭୦୦ ।

ନ୍ୟୁଜିଲ୍ୟାଂଡ ପ୍ରଚୁର ପରିମାଣରେ ପଶମ, ଲହୁଣି, ଛେନା ଏବଂ ଜମାଟ (Frozen) ରପ୍ତାନି କରିଥାଏ । ଏହା ବିଦେଶରୁ କପଡ଼ା ଉତ୍ପାଦନର ଯଂତ୍ରପାତି, ମେସିନାରୀ, ବିଦ୍ୟୁତ୍ ଉପକରଣ ଏବଂ ଗହମ ଓ ଚିନି ଆମଦାନି କରିଥାଏ । ନ୍ୟୁଜିଲ୍ୟାଂଡରେ କେତୋଟି ସୁନାଖଣି ଅଛି । ସେଥିରୁ ସୁନା ଉତ୍ପାଦନ କରାଯାଏ ।

**ସମାଜ-କଲ୍ୟାଣ କାର୍ଯକ୍ରମ –**

ଆମ ସେମିନାର୍‌ର ପ୍ରଧାନ କାର୍ଯ ଥିଲା ସମାଜମଂଗଳ କାର୍ଯକ୍ରମର ପର୍ଯବେକ୍ଷଣ । ନ୍ୟୁଜିଲ୍ୟାଂଡର ସମାଜକଲ୍ୟାଣ କାର୍ଯକ୍ରମ ଉନ୍ନତ ଧରଣର । ୧୯୦୪-୧୯୦୫ ମଧ୍ୟରେ ପ୍ରଧାନମଂତ୍ରୀ ରିଚାର୍ଡ ସେଡଡନ୍ ବାର୍ଦ୍ଧକ୍ୟ ପେନସନ୍ ପ୍ରବର୍ତ୍ତନ କରିଥିଲେ । ୧୬୩୮ରେ ସୋସିଆଲ୍ ସିକ୍ୟୁରିଟ୍ ଆକ୍ଟ ପ୍ରଚଳିତ ହେବା ଫଳରେ ବାର୍ଦ୍ଧକ୍ୟଭତ୍ତା ଓ ପେନ୍‌ସନ୍ ବୃଦ୍ଧିପାଇଥିଲା ଏବଂ ଲୋକଂକର ସ୍ୱାସ୍ଥ୍ୟସେବା ଦିଗରେ ବ୍ୟାପକ ପଦକ୍ଷେପ ନିଆଯାଇଥିଲା ।

**ଇତିହାସ –**

ନ୍ୟୁଜିଲ୍ୟାଂଡ ୧୬୪୨ ଖ୍ରୀଷ୍ଟାବ୍ଦରେ ଟାସ୍‌ମାନଂକଦ୍ୱାରା ଆବିଷ୍କୃତ ହୋଇଥିଲା । ଏହାପରେ କ୍ୟାପଟେନ କୁକ୍ ୧୭୬୯ ମସିହାରେ ନ୍ୟୁଜିଲ୍ୟାଂଡରେ ପହଂଚିଥିଲେ, ୧୮୨୫ ଖ୍ରୀଷ୍ଟାବ୍ଦରେ ନ୍ୟୁଜଲ୍ୟାଂଡକୁ ବ୍ରିଟିଶ ଉପନିବେଶରେ ପରିଣତ କରିବାକୁ ପ୍ରଥମେ ଉଦ୍ୟମ କରାଯାଇଥିଲା; ମାତ୍ର ଏହା ବିଫଳ ହୋଇଥିଲା । ୧୮୪୦ ଖ୍ରୀଷ୍ଟାବ୍ଦରେ କ୍ୟାପ୍‌ଟେନ୍ ହବସନ୍ ୱେଲିଂଟନ ଅଧିକାର କରିଥିଲେ ଏବଂ ଇଂରେଜ ରାଜତ୍ୱ ସ୍ଥାପନକରିଥିଲେ । ପରବର୍ତ୍ତୀ ଦଶଂଧି ମଧ୍ୟରେ ଅକ୍‌ଲ୍ୟାଂଡ ଓ ଅନ୍ୟାନ୍ୟ ଦ୍ୱୀପପୁଂଜ ଇଂରେଜ ରାଜତ୍ୱରେ ଅତଂର୍ଭୁକ୍ତ ହୋଇଥିଲା ।

**ରୋଟୋରୁଆ –**

ରୋଟେରୁଆ ଜିଲ୍ଲାଟି ଆଦିବାସୀ ମାଓରି-ଅଧ୍ୟୁସିତ । ଏହାର ଉଷ୍ଣପ୍ରସ୍ରବଣ ପୃଥିବୀବିଖ୍ୟାତ । ଏହି ପାଣିରେ ମାଓରିମାନେ ଆଳୁ ବୁଡାଇ ସିଦ୍ଧ କରଂତି । ଆଗ୍ନେୟଗିରିମାନଂକ ମଧ୍ୟରେ Ruapehu ପ୍ରଧାନ । ଏହା ଉପରେ ବରଫର ଢାଂକୁଣି ଥାଏ । ଏହାର ଉଷ୍ଣଜଳ ଏକ ହ୍ରଦ ସୃଷ୍ଟି କରିଛି । ଏହାର ଉଷ୍ଣବାଷ୍ପ ନିକଟବର୍ତ୍ତୀ ଅଂଚଳରେ ବରଫକୁ ତରଳାଇଦିଏ । ଏହାଛଡ଼ା Ngauruheo (୭,୫୧୫ ଫୁଟ), Tongarir (୬,୧୪୦ ଫୁଟ) ଏବଂ White Psland ଯାହା Bay of Plentyରେ ଅବସ୍ଥିତ । ଏସବୁ ସକ୍ରିୟ ଆଗ୍ନେୟଗିରରି । ଦକ୍ଷିଣ ଦ୍ୱୀପରେ ବହୁ ଉଷ୍ଣପ୍ରସ୍ରବଣ ଅଛି । ଏହା ଅନେକ ସମୟରେ ଜମାଟ ବରଫକୁ ତରଳାଇଦିଏ । ୨୩୮ ବର୍ଗମାଇଲବିଶିଷ୍ଟ Taupo ହ୍ରଦଟି ନିଷ୍କ୍ରିୟ ହୋଇପଡ଼ିଛି ।

ଅନ୍ୟାନ୍ୟ ହ୍ରଦ ମଧ୍ୟରେ ଦକ୍ଷିଣ ଦ୍ୱୀପରେ ଆଲପାଇନ୍ ଏବଂ ୱାକାଟିପୁ ହ୍ରଦ ପ୍ରଭୃତି ଉଲ୍ଲେଖନୀୟ। ଦକ୍ଷିଣ ଦ୍ୱୀପରେ ଅବସ୍ଥିତ glaciers ବା ବରଫଖଂଡ ୧୮ ମାଇଲ ଲଂବ। Murchison ୧୧ ମାଇଲ ଲଂବ। ଏହା ବାମ ଦିଗରେ ଅବସ୍ଥିତ। ନଦୀମାନଂକ ମଧ୍ୟରେ ୱାଇକାଟୋ, ୱାଂଗାନୁ୍ୟ ପ୍ରଭୃତି ପ୍ରଧାନ ନଦୀ। ଦକ୍ଷିଣ ଦିଗରେ କ୍ଲାଥା ବୁଲାର ଏବଂ ଗ୍ରେ ନଦୀଗୁଡ଼ିକ ପ୍ରଧାନ। ଏହି ନଦୀମାନଂକ ମଧ୍ୟରେ ଅଳ୍ପ କେତୋଟି ନଦୀ ନୌ-ଚଳାଚଳ ପାଇଁ ପ୍ରଶସ୍ତ। ଏହି ନଦୀଗୁଡ଼ିକ ସମୁଦ୍ରରେ ପଡ଼ିବା ବାଟରେ ବହୁ ପ୍ରଚଂଡ ପ୍ରତିବଂଧକ ରହିଛି।

ସମୁଦ୍ରକୂଳସ୍ଥ ନଗରଗୁଡ଼ିକ ରେଳପଥ ଦ୍ୱାରା ସଂଯୁକ୍ତ ହୋଇଛଂତି। ଏହାଛଡ଼ା ଏକ ଉପକୂଳବର୍ତ୍ତୀ ଷ୍ଟିମର୍ ଲାଇନ ଚଳାଚଳ ହେଉଛି। ଅନେକ ଭଲ ଭଲ ରାସ୍ତା ରହିଛି। ଲୋକସଂଖ୍ୟା ଅନୁପାତରେ ନ୍ୟୁଜିଲ୍ୟାଂଡରେ ଯେତେ ମଟରଗାଡ଼ି ଅଛି, କାନାଡ଼ା ଓ ଯୁକ୍ତରାଷ୍ଟ୍ର ଆମେରିକାକୁ ଛାଡ଼ିଦେଲେ ପୃଥିବୀର ଅନ୍ୟ କୌଣସି ଦେଶରେ ତାହା ନାହିଁ।

**ଶିକ୍ଷା –**

ନ୍ୟୁଜିଲ୍ୟାଂଡରେ ବହୁ ସ୍କୁଲ ଅଛି। ଏଥିରେ ମାଓରି ପିଲାମାନେ ମଧ୍ୟ ପଢ଼ଂତି। ୧୮୭୭ ଖ୍ରୀଷ୍ଟାବ୍ଦରେ କେନ୍ଦ୍ର ସରକାର ଆଇନ କରି ଶିକ୍ଷାକୁ ବାଧ୍ୟତାମୂଳକ ଏବଂ ଧର୍ମନିରପେକ୍ଷ କରିଦେଇଛଂତି। ଏହାଛଡ଼ା ଶିକ୍ଷାଦାନ ପାଇଁ ସ୍କୁଲ ଫି ପଡ଼େନାହିଁ। ବାଇବେଲ ପାଠ କରିବା ନିଷେଧ କରାଯାଇଛି। ତିନିବର୍ଷ ବୟସ ହେଲେ ଶିଶୁମାନେ Kindergarten ସ୍କୁଲରେ ଭର୍ତ୍ତି ହୋଇପାରିବେ। ୫ ବର୍ଷ ବୟସ ହେଲେ ପିଲାମାନେ ପ୍ରାଇମେରି ସ୍କୁଲରେ ଭର୍ତ୍ତି ହେବେ। ସେଠାରେ ମାଗଣାରେ ଦଂତ ଚିକିତ୍ସା, ବିନା ପଇସାରେ କ୍ଷୀର ଏବଂ ସେଉ ଖାଇବାକୁ ଦିଆଯାଏ।

ନ୍ୟୁଜିଲ୍ୟାଂଡରେ ବିଶ୍ୱବିଦ୍ୟାଳୟଗୁଡ଼ିକ ସୁପରିଚାଳିତ। ସେମାନଂକ ମଧ୍ୟରେ ଓଟାଗୋ ବିଶ୍ୱବିଦ୍ୟାଳୟ ଡୁନେଡିନ୍‌ଠାରେ ସ୍ଥାପିତ। ଅକ୍‌ଲ୍ୟାଂଡ, ୱେଲିଂଟନ ଏବଂ କ୍ରାୟଷ୍ଟଚର୍ଚ୍ଚଠାରେ ୟୁନିଭରସିଟି କଲେଜମାନ ରହିଛି। ଏହାଛଡ଼ା ଧର୍ମଶିକ୍ଷା ଦେବା-ପାଇଁ କେତେଗୁଡ଼ିଏ ଘରୋଇ ସ୍କୁଲ ଅଛି; ଯେଉଁଠାରେ ଦରମା ଦେବାକୁ ପଡ଼େ। ଅନେକ ଛାତ୍ର ନ୍ୟୁଜିଲ୍ୟାଂଡରେ ଶିକ୍ଷା ଶେଷକରି ବିଦେଶରେ ଯାଇ ପଢ଼ିବାପାଇଁ ଇଚ୍ଛା କରଂତି। ଏହା ଏକ ସମସ୍ୟା ସୃଷ୍ଟି କରିଛି।

**ମାଓରି ଜାତି –**

ନ୍ୟୁଜିଲ୍ୟାଂଡର ଆଦିମ ଅଧିବାସୀ ମାଓରିମାନେ ଶ୍ୱେତାଂଗମାନେ ଆସିବାର ଶହ ଶହ ବର୍ଷ ପୂର୍ବରୁ ନ୍ୟୁଜିଲ୍ୟାଂଡରେ ବସତି ସ୍ଥାପନ କରିରହିଥିଲେ। ସେମାନେ ନର-ମାଂସାଶୀ ଥିଲେ ଏବଂ ଶତ୍ରୁମାନଂକୁ ମାରି ଖାଇଯାଉଥିଲେ। କ୍ରମେ ସେମାନେ ସଭ୍ୟତାର ଆଲୋକରେ ନୂତନ ସ୍ତରରେ ପହଂଚିଲେ। ସେମାନଂକ ମଧ୍ୟରେ

ଶିକ୍ଷାର ପ୍ରଚଳନହେଲା । ଅଷ୍ଟ୍ରେଲିଆ ପରି ଏଠାରେ ବର୍ଣ-ବୈଷମ୍ୟ ଉତ୍କଟ ନୁହେଁ । ଜଣେ ନ୍ୟୁଜିଲ୍ୟାଂଡୀୟ କବି ଜଣେ ମାଓରି ମହିଳାଂକୁ ବିବାହ କରିଥିବାର ଦେଖିଲି । ଶିକ୍ଷା ଅନୁଷ୍ଠାନମାନଂକରେ ଏବଂ ଚାକିରିକ୍ଷେତ୍ରରେ ଧର୍ମନିରପେକ୍ଷତା ଗୁରୁତ୍ୱପୂର୍ଣ ସ୍ଥାନ ଅଧିକାର କରିଛି । ମାଓରିମାନେ ସ୍ୱଛଂଦରେ ଶ୍ୱେତାଂଗମାନଂକ ସହିତ ମିଳିମିଶିପାରଂତି । ହୋଟେଲ, ବିଦ୍ୟାଳୟ ଏବଂ କର୍ମକ୍ଷେତ୍ରରେ ବର୍ଣ-ବିଭେଦ ନାହିଁ କହିଲେ ଚଳେ । ରୋଟୋରୋଓ୍ୱା ପ୍ରସଂଗରେ ସେମାନଂକ ସଂସ୍କୃତି ବିଷୟ କୁହାଯାଇଛି ।

ନ୍ୟୁଜିଲ୍ୟାଂଡରେ ଗଭର୍ଣର ଜେନେରାଲ୍ ସାର୍ ଜର୍ଜ ଗ୍ରେ ୧୮୪୬ରେ ଶାସନ ଦାୟିତ୍ୱରେ ଥିଲେ । ସେ ଥିଲେ ଜଣେ ମାନବବାଦୀ । ମାଓରିମାନଂକ ସାମାଜିକ ଅବସ୍ଥା ବଢ଼ାଇବାପାଇଁ ସେ ଆଂତରିକ ଚେଷ୍ଟା କରିଥିଲେ । ସେ ପୁଣି ୧୮୬୧ରୁ ୧୮୭୦ ପର୍ଯଂତ ଗଭର୍ଣର ଜେନେରାଲ ହୋଇଥିଲେ । ତା'ପରେ ୧୮୭୭-୧୮୮୪ ଯାଏଁ ସେ ନ୍ୟୁଜିଲ୍ୟାଂଡର ପ୍ରଧାନମଂତ୍ରୀ ହୋଇଥିଲେ । ସେ ମାଓରି ଓ ଶ୍ୱେତକାୟମାନଂକ ମଧ୍ୟରେ ବଂଧୁତ୍ୱ ସଂପର୍କ ଏବଂ ପାରସ୍ପରିକ ସମ୍ମାନ ବଢ଼ାଇବା ଦିଗରେ ଅକ୍ଳାଂତ ଉଦ୍ୟମ କରିଥିଲେ ।

**ଜଳବାୟୁ –**

ନ୍ୟୁଜିଲ୍ୟାଂଡର ଜଳବାୟୁ ସମତା ପୂର୍ଣ ବା ବରାବର (equable) । ପାଣିଘେରରେ ରହିଥିବା ଟାପୁର ଜଳବାୟୁ Insular ଜଳବାୟୁରେ ଏହା ପୃଥିବୀରେ ଶ୍ରେଷ୍ଠ । ବର୍ଷକେ ପ୍ରାୟ ୨୦୦୦ ଘଂଟା ସୂର୍ଯ୍ୟକିରଣ ମିଳେ । ଏହା ଗ୍ରେଟବ୍ରିଟେନରେ ମିଳୁଥିବା ସୂର୍ଯ୍ୟକିରଣଠାରୁ ୬ ଶହ ଘଂଟା ବେଶି । ଉତ୍ତର ଦ୍ୱୀପଟି ଦକ୍ଷିଣ ଦ୍ୱୀପଠାରୁ ଟିକିଏ ଗରମ । ଉତ୍ତର ଦ୍ୱୀପରେ ବର୍ଷା ଯଥେଷ୍ଟ ପରିମାଣରେ ହୁଏ ।

**ଓ୍ୱେଲିଂଟନ ନଗରୀ –**

ନ୍ୟୁଜିଲ୍ୟାଂଡର ରାଜଧାନୀ ଓ୍ୱେଲିଂଟନ ଏକ ସମୃଦ୍ଧିଶାଳୀ ସହର । ଏଠା ବଂଦରରୁ ପ୍ରଚୁର ପରିମାଣରେ ଉଲ୍, ଛେନା, ଛେଳିମାଂସ, ମେଂଢାମାଂସ, ଗୋରୁମାଂସ, ସେଓ ଏବଂ କାଠ ପ୍ରଭୃତି ଦରିଆପାରି ଦେଶମାନଂକୁ ରପ୍ତାନି ହୋଇଥାଏ । ଏଠାର ଘରଗୁଡ଼ିକ ଦେଖିବାକୁ କାଠର ବଂଗଳାପରି । ସହରଟି ଦେଖିବାକୁ ଖୁବ୍ ସୁଂଦର । ଲୋକମାନେ ଯେଉଁଭଳି ସୌଜନ୍ୟପୂର୍ଣ, ସେହିପରି ବଂଧୁଭାବାପନ୍ନ । ଏଠାରେ ବହୁତ ବଡ଼ ବଡ଼ ପବ୍ଲିକ୍ ବିଲ୍‌ଡିଂ ରହିଛି; ଯଥା – ପାର୍ଲିଆମେଂଟ ହାଉସ୍ ୟୁନିଭରସିଟି କଲେଜ ଏବଂ ସରକାରୀ ଭବନ ଇତ୍ୟାଦି । ଏଠାରେ ଏକ ସୁଂଦର କ୍ୟାଥିଡ୍ରାଲ୍ ୧୯୫୧ରେ ନିର୍ମିତ ହୋଇଛି । ଓ୍ୱେଲିଂଟନ ପୂର୍ବେ ଓ୍ୱେଲିଂଟନ ନାମକ ଜଣେ ଆର୍ଚ ବିଶପଂକ ବାସସ୍ଥଳୀ ଥିଲା । ଏଠାରେ ବଡ଼ ବଡ଼ କଳକାରଖାନା ବିଶେଷ କିଛି ନ ଥିଲେ ମଧ୍ୟ ବହୁ ଗୃହସ୍ଥଳୀ ହସ୍ତଶିଳ୍ପ ଯଥା ସାବୁନ୍, ମହମବତି, ଦଉଡ଼ି ଏବଂ ଉଲ୍ ଜିନିଷ ବନାଇଥାଂତି । ଓ୍ୱେଲିଂଟନ

ସହରରେ ବହୁ ଝରଣା ଓ ଜାହାଜଘରମାନ ରହିଛି। ୱେଲିଂଟନ ରେଳୱେ ଦ୍ୱାରା ଆକ୍‌ଲ୍ୟାଂଡ ଏବଂ ନାପିଏର୍ ସହିତ ସଂଯୁକ୍ତ ହୋଇଛି। ଏହାର ଜନସଂଖ୍ୟା ୧୯୪୬ ମସିହାରେ ୧,୮୩,୧୦୦ ଥିଲା ବୋଲି ଜଣାଯାଏ।

**ସ୍ୱପ୍ନ-ନାୟିକା –**

ଆମେ ମାର୍ଚ୍ଚମାସ ପ୍ରଥମ ସପ୍ତାହରେ ସକାଳ ପ୍ରାୟ ୧୦ଟାବେଳେ ୱେଲିଂଟନ ବଂଦରରେ ପହଂଚିଲୁ। ମୋ ସଂଗରେ ଭାରତର ଅନ୍ୟ ତିନିଜଣ ପ୍ରତିନିଧି ଚଂଦ୍ରଶେଖର ଭଟ୍ଟ, ଭି.ଆର୍. କାର୍ନିକ ଏବଂ ଶୁଶିଲ ଚାଟାର୍ଜୀ ମଧ୍ୟ ଥିଲେ। ଆମେ ବଂଦରରେ ପହଂଚିଲାବେଳକୁ ଉଦୁଉଦିଆ ଖରା ପଡ଼ିଥାଏ। ଆମେ ବଂଦରରେ ଓହ୍ଲାଇ ନିଜ ନିଜ ଲଗେଜ୍ ଖୋଜି ବାହାରକରି କଷ୍ଟମ୍‌ସକୁ ଗଲୁ। ସେଠାରେ ଯାଂଚପତ୍ର ସରିବାପରେ ଆମେ ବାହାରକୁ ଗୋଡ଼ ବଢ଼ାଇଛୁ କି ନାହିଁ, ହଠାତ୍ ଜଣେ ଏୟାରପୋର୍ଟ ଅଫିସ ଦଉଡ଼ିଆସି ମୋ ହାତକୁ ଖଂଡେ ଟେଲିଗ୍ରାମ୍ ବଢ଼ାଇଦେଲେ। ମୁଁ ଟେଲିଗ୍ରାମ ଖୋଲି ପଢ଼ି ଦେଖିଲି, ଲେଖାଅଛି– ''Please be my guest today. Meeting you at Airport. Sonia Toulkeo.''

ଏ ଶୋନିଆ ତୁଲକେ କିଏ, ମୁଁ କିଛି ବୁଝିପାରିଲି ନାହିଁ। ମୁଁ ହତଭଂବ ହୋଇଗଲି। ସେ ଯାହାହେଉ, ମୁଁ କିଛିଦୂର ଆଗକୁ ଯାଇଛି କି ନାହିଁ, ମୋ ପଛରୁ ଜଣେ ୨୪-୨୫ ବର୍ଷର ସୁଂଦର ଶ୍ୱେତାଂଗିନୀ ଝିଅ ଦଉଡ଼ିଆସି ପଛରୁ ମୋ ବାହୁକୁ ଧରି ମୋତେ ଅଟକାଇଦେଲା। ତା'ପରେ ମୋ ସାମନାକୁ ଆସି ଇଂରାଜୀରେ କହିଲା, ''ମୁଁ ଶୋନିଆ ତୁଲକେ, ତୁମକୁ ଟେଲିଗ୍ରାମ୍ କରିଥିଲି।''

ମୁଁ କହିଲି, ''ମୋତେ କ'ଣ କରିବାକୁ ହେବ?'' (What do you want me to do?) ସେ କହିଲା, ''You will be my guest today (ତମେ ମୋର ଆଜି ଅତିଥି ହେବ)।''

ମୁଁ ହଁଭରିଲି। ମୋର ଅନ୍ୟ ତିନିଜଣ ସହଯାତ୍ରୀ ଟିକିଏ ଦୂରରେ ଛିଡ଼ା ହୋଇ ସବୁ ଦେଖୁଥାଂତି। ମୁଁ ତାଂକ ଆଡ଼କୁ ଚାହିଁଲି। ସେମାନେ କହିଲେ, ''ହଉ ତମେ ଯାଅ, ସଂଧ୍ୟାରେ ଗେଷ୍ଟହାଉସକୁ ଫେରିବ। ଆମେ ଯାଉଛୁ।'' ସେମାନେ ଅନ୍ୟ ଦିଗକୁ ମୁହଁ ବୁଲାଇ ଚାଲିଗଲେ। ସେମାନେ ବୈଦେଶିକ ବିଭାଗ ପଠାଇଥିବା ଗାଡ଼ିରେ ଗଲେ।

ଶୋନିଆ ମୋତେ ତା' କାର୍‌ରେ ବସିବାକୁ କହିଲା। ସେ ମୋ ଲଗେଜ୍ ବା ଜିନିଷପତ୍ର କିଛି ମୋ ହାତରୁ ନେଇ ତା' ଗାଡ଼ି ପଛରେ ଲଗେଜ୍ ବକ୍‌ସରେ ରଖିଲା। ତା' ଘରେ ପହଂଚି ମୋତେ ବୈଠକଖାନାରେ ବସିବାକୁ କହିଲା। ମୋ ଜିନିଷପତ୍ର ଭିତରେ ରଖିଦେଇଥିଲା।

ମୋତେ ସେଦିନ ବାୟୁ ଓ ଜଳଯାତ୍ରାରେ ଆସି କିପରି ଟିକିଏ ଆସିଡିଟି

ହେଲାପରି ଲାଗୁଥାଏ। ବାଂତି ବାଂତି ଲାଗୁଥାଏ। ମୁଁ କହିଲି, ''ମୋତେ କିପରି ଅସୁସ୍ଥ ଲାଗୁଛି।''

ସେ କହିଲା, ''ତମେ ମୋ ବିଛଣାରେ ଟିକେ ଶୋଇପଡ଼; ଭଲଲାଗିବ।'' ସେ ମୋତେ ଭିତରକୁ ନେଇଯାଇ ତା' ଶୋଇବା ବିଛଣାରେ ଶୁଆଇଦେଲା। ମୁଁ ଟିକିଏ ପାଣି ମାଗିଲି, ତା'ପରେ ପାଣି ପିଇ ଟିକିଏ ଶୋଇପଡ଼ିଲି। ମୁଁ ପ୍ରାୟ ଗୋଟାଏବେଳକୁ ଉଠିଲି। ଶୋନିଆ ତା'ର ଡାଇନିଂ ଘରେ ଟେବୁଲ ଉପରେ କିଛି ଖାଇବା ଜିନିଷ ରଖିଥାଏ। ଆମେ ଦୁହେଁ ବସି ମଧ୍ୟାହ୍ନଭୋଜନ କଲୁ। ଶେଷରେ ସେ ମୋତେ କପେ ଚା' ଓ ଗୋଟିଏ ଏଲେର୍‌ଜିନାଶକ ବଟିକା ଖାଇବାକୁ ଦେଲା। ଟିକିଏ ପରେ ମୁଁ କ୍ରମେ ସୁସ୍ଥ ବୋଧକଲି।

ଶୋନିଆ କହିଲା, ୱେଲିଂଟନରେ ଥିବା ଭାରତୀୟ ହାଇକମିଶନ ଅଫିସ୍‌ର ପ୍ରଥମ ଓ ଦ୍ୱିତୀୟ ସେକ୍ରେଟାରୀ ଏବଂ ଅନ୍ୟ ଦୁଇ-ତିନିଜଣ ବଂଧୁଂକୁ ମୋ ସହିତ ମିଶିବାକୁ ଦୁଇଟାବେଳେ ସେ ଡାକିଛି।

ମୁଁ ପଚାରିଲି, ''ତୁମେ ମୋତେ କିପରି ଜାଣିଲ ?''

ସେ ଅଳ୍ପ ହସି କହିଲା– ସେ ତାଂକ ବୈଦେଶିକ ବିଭାଗରୁ ମୁଁ ଆସୁଛି ବୋଲି ଜାଣିଥିଲା। ମୋର ପରିଚୟ ମଧ୍ୟ ତାଂକ ଅଫିସ ରେକର୍ଡ଼ରୁ ପାଇଥିଲା। ମୁଁ ତାଂକ ଘରେ ଆଉ କିଏ ଅଛଂତି ବୋଲି ପଚାରିଲି। ସେ କହିଲା, ''ମୋ ମାଆ ଅଛଂତି। ମାତ୍ର ସେ ଆଉ ଏକ ସହରରେ କାମ କରଂତି। ଟ୍ରେନରେ ରାତିରେ ଫେରଂତି।''

ଦୁଇଟାବେଳେ ଆମେ ତା' ବୈଠକଖାନାରେ ଯାଇ ବସିଲୁ। କେତେଜଣ ଭଦ୍ରଲୋକ ଆସି ପହଂଚିଲେ। ସେଥିମଧ୍ୟରେ ଭାରତୀୟ ହାଇକମିଶନ ଅଫିସର ପ୍ରଥମ ଓ ଦ୍ୱିତୀୟ ସେକ୍ରେଟାରୀ ଏବଂ ଜଣେ ଦୁଇଜଣ ସାଂବାଦିକ ଥିଲେ। ସେମାନଂକ ସହିତ ମୋର କଥାବାର୍ତ୍ତା ବେଶି ଜମିଲାନାହିଁ, କାରଣ ମୁଁ ତଥାପି ଅସୁସ୍ଥ ବୋଧକରୁଥିଲି। ସେ ଯାହାହେଉ, ପ୍ରାୟ ଘଂଟାଏ ସମୟ ଆମେ ଆଳାପ-ଆଲୋଚନା କଲୁ। ଭାରତୀୟ ଲେଖକମାନଂକ ଅବସ୍ଥା, ଭାରତୀୟ ସାହିତ୍ୟ ଓ ରାଜନୈତିକ ପରିସ୍ଥିତି ସଂବଂଧରେ ମୁଁ ତାଂକୁ କିଛି ସୂଚନା ଦେଲି। ଘଂଟାକ ପରେ ସେମାନେ ବିଦାୟ ନେଇ ଚାଲିଗଲେ।

ମୁଁ ଓ ଶୋନିଆ ଏକୁଟିଆ ବସିରହିଲୁ। ମୁଁ ଶୋନିଆକୁ ତା'ର ପରିସ୍ଥିତି ବିଷୟରେ ପଚାରିଲି। ସେ କହିଲା– ମୁଁ ଏଠାରେ ଗୋଟିଏ ଅଫିସରେ କାମ କରେ। ମୋର ଭାଇ ଭଉଣୀ କେହି ନାହାଂତି; କେବଳ ମାଆ ଅଛଂତି। ବାପା ଆର୍ମିରେ କାମକରୁଥିଲେ, ତାଂକର ଦେହାଂତ ହୋଇଯାଇଛି ଇତ୍ୟାଦି, ଇତ୍ୟାଦି। ତା'ପରେ ଆମେ କିଛି ସମୟ ସାହିତ୍ୟ ଓ ନ୍ୟୁଜିଲାଂଡର ଥିଏଟର୍ସ ବିଷୟରେ ଆଲୋଚନା କଲୁ। ନ୍ୟୁଜିଲାଂଡ଼ୀୟ କବିମାନଂକର ଏକ ଆଂଥୋଲଜି

ସେ ମୋତେ ପଢ଼ିବାକୁ ଦେଲା। ମୁଁ ଦେଖିଲି, ବହୁତ ଆଧୁନିକ କବି ସୁଂଦର ସୁଂଦର କବିତା ଲେଖିଛଂତି।

ଚାରିଟା ବାଜିଲା ପରେ ଶୋନିଆ ମୋ ହାତକୁ ଟାଣି କହିଲା, ''ଚାଲ ଟିକିଏ ବୁଲିଆସିବା। ପାଖରେ ଗୋଟିଏ ପାହାଡ଼ ଅଛି। ତା' ତଳେ ଏକ ସୁଂଦର କୁଳୁକୁଳିଆ ଝରଣା ମଧ ଅଛି।''

ଆମେ ଦୁହେଁ ପଦାକୁ ବାହାରିପଡ଼ିଲୁ। ଶୋନିଆ ମୋତେ କିଛି ଦୂରରେ ଗୋଟିଏ ପାହାଡ଼ ଉପରକୁ ନେଇଗଲା। ପାହାଡ଼ଟି ପ୍ରାୟ ଫାଂକା; ଗଛ ପତ୍ର ବେଶି ନାହିଁ, କେବଳ କେତେଗୁଡ଼ିଏ ବୁଦା ଏବଂ ୪-୫ଟା ଗମ୍ ଗଛ ଅଛି; ଅନ୍ୟ କେତୁଟା ଗଛ ମଧ ଅଛି– ଯାହାଂକ ନାମ ମୁଁ ଜାଣେନାହିଁ। ଆମେ ଗୋଟିଏ ଗଛମୂଳେ ବସି କଥାବାର୍ତା ହେବାକୁ ଲାଗିଲୁ। ମୁଁ ଶୋନିଆକୁ ତା ବ୍ୟକ୍ତିଗତ ଜୀବନ ବିଷୟରେ ପଚାରିଲି। ସେ କାହିଁକି ବିବାହକରିନାହିଁ ପଚାରିଲି। ସେ କହିଲା, ସେ ଜଣେ ଯୁବକକୁ ଭଲପାଉଥିଲା। ସେ ଆର୍ମିରେ ଅଛି। ମାତ୍ର ଗତ କେତେ ମାସ ହେଲା ତା'ଠୁ କିଛି ଖବର ମିଳିନାହିଁ।

କିଛି ସମୟ କଥାବାର୍ତା ହେଲା ପରେ ଆମେ ପାହାଡ଼ ଉପରେ କିଛିଦୂର ବୁଲିଲୁ। ଶୋନିଆ ଓ ମୁଁ ପରସ୍ପର ବାହୁ ଛଂଦାଛଂଦି ହୋଇ ବୁଲୁଥିଲୁ। ପଶ୍ଚିମ ଦିଗରେ ସୂର୍ଯ ବୁଡ଼ିଯାଉଥିଲେ। କେତେଟା ଚଢ଼େଇ ଚେଁ-ଚାଁ ଶବ୍ଦ କରି ପାହାଡ଼ ଉପରେ ଉଡ଼ିଯାଉଥାଂତି। ତଳୁ ଝରଣାର କୁଳୁକୁଳୁ ଶବ୍ଦ ଭାସିଆସୁଥାଏ। କିଛି ସମୟ ବୁଲି ଆମେ ଗଛମୂଳେ ବସିପଡୁ; ପୁଣି କିଛି ସମୟ ପରେ ବୁଲିବାକୁ ଲାଗୁ। ଏହିପରି ପ୍ରାୟ ୪ ଘଂଟା ବିତିଗଲା। ସଂଧ୍ୟା ଡେରିରେ ହୁଏ; ତେଣୁ ବୁଲିବାକୁ ଯଥେଷ୍ଟ ସମୟ ମିଳିଥିଲା।

ଏହି ସମୟ ଖୁବ୍ ଦ୍ରୁତଗତିରେ ବହିଯାଉଥାଏ। ଆମେ ଦୁହେଁ ପରସ୍ପର ଭିତରେ ଲୀନହୋଇଯାଇଥାଉ। ମନେହେଉଥାଏ, ଶୋନିଆ ଯେପରି ମୋ ସତ୍ତାରେ ମିଶିଯାଇଛି ଏବଂ ମୁଁ ତା ସତ୍ତାରେ ମିଶିଯାଇଛି। ଏହି ତନ୍ମୟ ଅବସ୍ଥା ବରାବର ଲାଗିରହିଥାଏ। ଏହାକୁ ବୌଦ୍ଧ ବଜ୍ରଜାନିମାନେ ଯୁଗନଧ ଅବସ୍ଥା କହିପାରଂତି। ସେ ମୋର ପ୍ରତ୍ୟେକ ଭାବୋଚ୍ଛ୍ୱାସର ସୁଂଦର ଉତ୍ତର ଦେଇଛି। ସଂଧ୍ୟା ୯ଟା ପରେ ଆମେ ଘରକୁ ଫେରିଲୁ। ସେ ମୋତେ କାର୍‌ରେ ନେଇ ଗେଷ୍ଟଉସରେ ଛାଡ଼ିଦେଲା। ସେଠାରେ ବଂଧୁମାନେ ଆମକୁ ଦେଖି ମୁରୁକି ମୁରୁକି ହସୁଥାଂତି। ଗଲାବେଳେ ଶୋନିଆ ମଳିନ ମୁହଁରେ 'ବିଦାୟ' କହି ଚାଲିଗଲା।

ମୁଁ ନ୍ୟୁଜିଲ୍ୟାଂଡରେ ଯେଉଁ ତିନି ସପ୍ତାହ ଥିଲି, ସେ ମଝିରେ ମଝିରେ ଆସି ମୋତେ ତା' ଗାଡ଼ିରେ ବୁଲିବାକୁ ନେଇଯାଏ। ଏହିପରି ତା' ସହିତ ମୋର ସହୃଦୟ ସଂପର୍କ ସ୍ଥାପିତହୋଇଥିଲା। ମୋର ଶେଷ ବିଦାୟବେଳେ ତା' ମୁହଁ ଖୁବ୍ ଶୁଖିଯାଇଥିଲା।

**ନ୍ୟୁଜିଲ୍ୟାଂଡ ଗଭର୍ଣର ଜେନେରାଲ ଦମ୍ପତିଂକ ନିମଂତ୍ରଣ –**

ମୁଁ ନ୍ୟୁଜିଲ୍ୟାଂଡରେ ପହଂଚିବାର ୮-୧୦ ଦିନ ପରେ ଗଭର୍ଣର ଜେନେରାଲ ଲର୍ଡ ଜାଫରସନଂକଠାରୁ ତାଂକ ସହିତ ଅପରାହ୍ଣରେ ଚା' ପାନ କରିବାକୁ ନିମଂତ୍ରଣ ପାଇଲି। ମୁଁ ମେଲବୋର୍ଣରେ ଥିଲାବେଳେ ଜଣେ ଲେଖକବଂଧୁଂକଠାରୁ ତାଂକ ବିଷୟରେ ଅନେକ କଥା ଜାଣିବାକୁ ପାଇଥିଲି। ସେ ବଂଧୁଜଣକ ଗଭର୍ଣର ଜେନେରାଲ ଓ ତାଂକ ସ୍ତ୍ରୀ ଲେଡି ଜାଫରସନଂକୁ ଭଲଭାବେ ଜାଣିଥିଲେ। ନ୍ୟୁଜିଲ୍ୟାଂଡ ଗଲେ ସେମାନଂକ ସହିତ ଦେଖାକରିବାକୁ ମୁଁ ଯେପରି ଭୁଲିନଯାଏ, ସେ ବିଷୟରେ ସେ ମୋତେ ସୂଚାଇଦେଇଥିଲେ। ମୁଁ ମେଲବୋର୍ଣରେ ଥିଲାବେଳେ ସେଇ ଲେଖକ-ବଂଧୁ ଗଭର୍ଣର ଜେନେରାଲଂକୁ ମୋ ସଂବଂଧରେ ଖଂଡିଏ ଚିଠି ଲେଖି ମୋର କାର୍ଯକ୍ରମ ଜଣାଇଦେଇଥିଲେ।

ମୁଁ ଗଭର୍ଣର ହାଉସ୍‌ରେ ପହଂଚି ମୋ ପରିଚୟ କାର୍ଡ ଗଭର୍ଣର ଜେନେରାଲଂକ ସେକ୍ରେଟାରିଂକୁ ଦେଇଥିଲି। ସେମାନେ ମୋତେ ଅପେକ୍ଷାକରୁଥିଲେ। ତେଣୁ ମୁଁ ପହଂଚିବାମାତ୍ରେ ମତେ ସଂଗେ ସଂଗେ ନେଇ ଗଭର୍ଣର ଜେନେରାଲଂକ ବସିବା ରୁମ୍‌ରେ ପହଂଚାଇ ଦେଲେ। ଗଭର୍ଣର ଜେନେରାଲ ଓ ତାଂକ ପତ୍ନୀ ଛିଡ଼ାହୋଇପଡ଼ି ମୋ ସହିତ କରମର୍ଦନ କଲେ। ମୁଁ କିପରି ଅଛି ପଚାରିଲେ। ତା'ପରେ ମୋତେ ପାଖ ଚଉକିରେ ବସିବାକୁ କହିଲେ। ମୁଁ ଗଭର୍ଣର ଜେନେରାଲଂକ ସହିତ ଦେଖାକରିବାକୁ ଯିବା ପୂର୍ବରୁ ମୋର ବଂଧୁମାନେ ମୋତେ ଗେଷ୍ଟହାଉସ୍‌ରେ ତାଲିମ ଦେଇଥିଲେ। ଚଂଦ୍ରଶେଖର ଭଟ୍ଟ ଜଣେ ଅକ୍ସଫୋର୍ଡ଼ ଗ୍ରାଜୁଏଟ। ସେ ଇଂରାଜୀ ଆଦବକାଇଦା ଖୁବ୍ ଭଲଭାବେ ଜାଣଂତି ବୋଲି ଆମେ ଧରିନେଇଥିଲୁ। ସେ କହିଥିଲେ ଲେଡି ଜାଫରସନଂକ ସମ୍ମୁଖରେ ମୁଁ ଆଂଠୁ ମାଡ଼ି ବସି ତାଂକ ଡାହାଣ ପାପୁଲି ପଛରେ ଧୀର ଚୁମା ଦେବାକୁ ହେବ। ସେ ଗ୍ଲୋବ ପିଂଧିଥିବେ; ତାହାରି ଉପରେ ଚୁମା ଦେବାକୁ ହେବ। ମାତ୍ର ମୋତେ ଏସବୁ କିଛି କରିବାକୁ ପଡ଼ିଲାନି। ମୁଁ ପହଂଚିବା ମାତ୍ରେ ଗଭର୍ଣର ଜେନେରାଲ ଦଂପତି ଶୋଫାରୁ ଉଠିଆସି ମୋ ହାତଧରି ପାଛୋଟିନେଲେ। ମୁଁ ଭଟ୍ଟଂକ ଟ୍ରେନିଂରୁ ଅବ୍ୟାହତି ପାଇଗଲି।

ସାର୍ ଏବଂ ଲେଡି ଜାଫରସନ ମୋତେ ଭାରତ ବିଷୟରେ ଅନେକ କଥା ପଚାରିଲେ। ସେମାନେ ଥରେ ଦି'ଥର ଭାରତ ଯାଇଛଂତି ଏବଂ ଦିଲ୍ଲୀ ଓ ଆଗ୍ରା ବୁଲି ଦେଖିଛଂତି ବୋଲି କହିଲେ। ତାଜମହଲ ତାଂକୁ ଖୁବ୍ ଭଲ ଲାଗିଥିଲା। ସେମାନେ ଭାରତବର୍ଷର କଳା ଓ ସ୍ଥାପତ୍ୟର ବହୁତ ପ୍ରଶଂସା କରିଥିଲେ। ସେମାନଂକ ସହ ଚା' ଓ ଜଳଖିଆ ସମାପନ କରି ମୁଁ ସସମ୍ମାନ ଗେଷ୍ଟହାଉସ୍‌କୁ ଫେରିଥିଲି।

**ଗୁଜୁରାଟୀ ପରିବାରର ଆତିଥ୍ୟ –**

ୱେଲିଂଟନ୍‌ରେ ବହୁ ଭାରତୀୟ ପରିବାର ଘରଦ୍ୱାର କରି ରହିଯାଇଛନ୍ତି। ସେମାନଂକ ଭିତରେ କେତୋଟି ଗୁଜୁରାଟୀ ପରିବାର ଅଛନ୍ତି। ଏକ ଗୁଜୁରାଟୀ ପରିବାର ଦିନେ ଆମକୁ ମଧ୍ୟାହ୍ନ-ଭୋଜନ କରିବାକୁ ଆମଂତ୍ରଣ କରିଥିଲେ। ବହୁଦିନ ପରେ ଭାରତୀୟ ଖାନା ଖାଇବାର ସୁଯୋଗ ମିଳିଲା। ତେଣୁ ଆମେ ଖୁବ୍ ଖୁସିହେଲୁ। ଆମକୁ ସେମାନେ ଭଲଭାବେ ଖାଇବା-ପିଇବାକୁ ଦେଲେ। କ୍ଷୀରରେ ତିଆରି କେତେକ ଆଇଟମ୍ ଥିଲା। ସେମାନେ ଖୁବ୍ ବଡ଼ ବଡ଼ ଗାଈ ରଖିଛନ୍ତି। ଗାଈମାନଂକୁ ମେସିନ୍‌ରେ ଦୁହାଁଯାଏ।

**କବି ଓ ଲେଖକମାନଂକ ସହ –**

ନ୍ୟୁଜିଲ୍ୟାଂଡର କେତେକ କବି ଓ ଲେଖକ ମୋତେ ଭେଟିବା ପାଇଁ ଏକ ବଂଧୁ-ମିଳନର ଆୟୋଜନ କରିଥିଲେ। ମୁଁ ମୋର ଦୁଇଟି ଇଂରାଜୀ କବିତା ପଢ଼ିଥିଲି। ସେମାନେ ମଧ୍ୟ କେତେକ କବିତା ପଢ଼ିଥିଲେ। ଏହାଛଡ଼ା କେତେକ ଲେଖକବଂଧୁ ସାହିତ୍ୟିକ ଦୃଶ୍ୟପଟ ସଂବଂଧରେ ସୂଚନା ଦେଇଥିଲେ।

**ରୋଟୋଗେୱାରେ ଦିନେ –**

ମାଓରି ସଂସ୍କୃତିର କେଂଦ୍ରପୀଠ ରୋଟୋଗେୱାରେ ଆମେ ଗୋଟିଏ ଦିନ ଏବଂ ଗୋଟିଏ ରାତି କଟାଇଥିଲୁ। ରାତିରେ ମାଓରି ନୃତ୍ୟ ଦେଖିବାର ସୁଯୋଗ ପାଇଥିଲି। ମାଓରିମାନେ ପଲିନେସିଆନ୍ ଜାତିର ଏକ ଶାଖା। ସେମାନେ ୧୩୫୦ ଖ୍ରୀଷ୍ଟାବ୍ଦରେ ରାରୋଟୁଂଗାରୁ ଆସି ନ୍ୟୁଜିଲ୍ୟାଂଡରେ ବସତି ସ୍ଥାପନ କରିଥିଲେ। ମାଓରିମାନଂକର ସଂଖ୍ୟା ସେତେବେଳେ ୯୮,୦୦୦ ବା ୧ ଲକ୍ଷ ଥିଲା। ନ୍ୟୁଜିଲ୍ୟାଂଡରେ ଥିବା ପପୁଏସିଆନଂକ ସହିତ ମିଳିମିଶି ସେମାନେ ଚଳୁଥିଲେ। ସେମାନେ କ୍ରମେ ଶ୍ୱେତାଂଗମାନଂକ ସହିତ ମିଳିମିଶି ଏବଂ ଆଂତର୍ବିବାହ କରି ପାଶ୍ଚାତ୍ୟ ସଭ୍ୟତାର ଆଲୋକ ପାଇଲେ। ସେମାନଂକର ପାରଂପରିକ ରଣନୃତ୍ୟ ରହିଛି। ସେମାନେ ଅସ୍ତ୍ରଶସ୍ତ୍ର ଧରି ହାକା ନୃତ୍ୟରେ ଯୋଗଦେଇଥାଂତି। ଜାପାନୀମାନଂକର ଯେପରି ହାରିକାରି ନାମକ ରଣନୃତ୍ୟ ଅଛି, ମାଓରି ଜନଜାତିର ସେହିପରି ହାକା ନୃତ୍ୟ ଅଛି। ଏମାନେ ମୁହଁରେ ଚିତା କୁଟାଇଥାଂତି। ମାଓରି ଜାତିର ନାରୀମାନେ ଶୁଖିଲା ବଲରସ ପତ୍ର ପିଂଧି 'ପୋଇ' ନୃତ୍ୟ କରଂତି। ଏମାନଂକ ଦେହର ରଂଗ ବାଦାମୀ; ଲଂବା କୁଂଚୁକୁଂଚିଆ ବାଳ ରଖିଥାଂତି। ଏମାନେ ପ୍ରଥମେ ନରମାଂସ ଭକ୍ଷଣ କରୁଥିଲେ; ମାତ୍ର ଶିକ୍ଷାଦୀକ୍ଷା ପାଇବାପରେ, ଏମାନେ ଶ୍ୱେତାଂଗମାନଂକ ପରି ପୋଷାକ-ପରିଚ୍ଛେଦ, ଚାଲିଚଳଣ ଓ ଖାଦ୍ୟପେୟରେ ପାଶ୍ଚାତ୍ୟ ଜୀବନଧାରା ଅନୁସରଣ କରୁଛନ୍ତି। ଏମାନଂକ ଭିତରୁ କେତେକ ଶିକ୍ଷିତ ମାଓରି ବିଧାନସଭା ସଭ୍ୟ ଏବଂ ମଂତ୍ରୀ ହୋଇପାରିଛନ୍ତି। ଏମାନଂକର କାଠନିର୍ମିତ ବହୁପ୍ରକାର ଅସ୍ତ୍ରଶସ୍ତ୍ର ଓ ଶିଳ୍ପ-କର୍ମ ରହିଛି। ଆମେ

ସେଠାରେ ସଂଗ୍ରହାଳୟରେ ମାଓରି ଶିଳ୍ପର ବହୁ ଚମତ୍କାର ନିଦର୍ଶନ ଦେଖିବାକୁ ପାଇଥିଲୁ ।

**ସମାଜ କଲ୍ୟାଣ ସେମିନାର –**

ନ୍ୟୁଜିଲ୍ୟାଂଡରେ ସମାଜକଲ୍ୟାଣ ସେମିନାରର ପ୍ରଧାନ କାର୍ଯ୍ୟସୂଚୀ ଥିଲା, ସେ ଦେଶର ସମାଜକଲ୍ୟାଣ ଅନୁଷ୍ଠାନଗୁଡ଼ିକ ପରିଦର୍ଶନ ଏବଂ ସେ ସଂବଂଧୀୟ ବିଧି-ବ୍ୟବସ୍ଥାର ଅଧ୍ୟୟନ । ଆମେ ଏ ଦେଶର ବିଭିନ୍ନ ସମାଜକଲ୍ୟାଣ ଅନୁଷ୍ଠାନଗୁଡ଼ିକ ଯଥା ବାର୍ଦ୍ଧକ୍ୟ ଭତ୍ତା ପାଉଥିବା ବ୍ୟକ୍ତିମାନଂକ ଆଶ୍ରୟଭବନ ଓ ଶିଶୁ-କଲ୍ୟାଣ ଅନୁଷ୍ଠାନ ପ୍ରଭୃତି ପରିଦର୍ଶନ କରିଥିଲୁ । ଏହାଛଡ଼ା ଆମେ କେତୋଟି ଫ୍ୟାକ୍ଟରୀ ବୁଲି ଦେଖିଥିଲୁ । ନ୍ୟୁଜିଲ୍ୟାଂଡର ଫ୍ୟାକ୍ଟରୀ ଆକ୍ଟରେ ନାରୀ ଓ ପୁରୁଷ ଉଭୟ ଶ୍ରେଣୀର ଶ୍ରମିକ ଦୈନିକ ଆଠ ଘଂଟା କାର୍ଯ୍ୟ କରିବା ନିର୍ଦ୍ଦିଷ୍ଟ ଥିଲା । ଭାରତରେ ମଧ୍ୟ ସେଇଆ ଥିଲା । ନ୍ୟୁଜିଲ୍ୟାଂଡରେ ଅଧିକାଂଶ ଶିଳ୍ପ ପ୍ରତିଷ୍ଠାନ ଓ ଅଫିସ୍‌ରେ ଶନିବାର ଓ ରବିବାର ଦୁଇଦିନ ଛୁଟି ଥିବା ସ୍ଥଳେ ଭାରତରେ ସେପରି ବ୍ୟବସ୍ଥା ନ ଥିଲା । ଏହାଛଡ଼ା ନ୍ୟୁଜିଲ୍ୟାଂଡରେ ବାର୍ଦ୍ଧକ୍ୟ ଭତ୍ତାର ପରିମାଣ ସଂତୋଷଜନକ ଥିଲା । ଭାରତରେ ସେତେବେଳକୁ ବାର୍ଦ୍ଧକ୍ୟ ଭତ୍ତା ପ୍ରଚଳିତ ହୋଇନଥିଲା । ନ୍ୟୁଜିଲ୍ୟାଂଡ ଆଦିବାସୀ ମାଓରୀ ଓ ଶ୍ୱେତାଂଗମାନଂକୁ ଯେପରି ଶିକ୍ଷା ଓ ଚାକିରି କ୍ଷେତ୍ରରେ ସମାନ ସୁଯୋଗ ଓ ଅଧିକାର ଦିଆଯାଉଥିଲା, ଭାରତରେ ସେପରି ବ୍ୟବସ୍ଥା ନଥିଲା । ଆମ ଦେଶରେ ଆଦିବାସୀମାନଂକ ପାଇଁ ସଂରକ୍ଷଣ ପ୍ରଥା ବହୁ ଡେରିରେ ଆରଂଭକରାଗଲା; ମାତ୍ର ସେ ଦେଶରେ ସେଭଳି କୌଣସି ବ୍ୟବସ୍ଥାର ପ୍ରୟୋଜନ ନଥିଲା । ଧର୍ମନିରପେକ୍ଷତା ସେ ଦେଶର ରାଷ୍ଟ୍ରନୀତି ଥିଲା । ସେଠାରେ ସମସ୍ତେ ସମାନ ଅଧିକାର ପାଉଥିଲେ ।

ଭାରତ ଛଡ଼ା ସିଂହଳ, ଇଂଡୋନେସିଆ ଏବଂ ଅନ୍ୟାନ୍ୟ ଦକ୍ଷିଣ-ଏସୀୟ ଦେଶମାନଂକର ପ୍ରତିନିଧିମାନେ ମଧ୍ୟ ସେମିନାରରେ ଅଂଶ ଗ୍ରହଣ କରିଥିଲେ । ସେସବୁ ଦେଶର ସମାଜମଂଗଳ କାର୍ଯ୍ୟକ୍ରମ ବିଶେଷ ସଂତୋଷଜନକ ଥିଲା । ଏ ସବୁର ତୁଳନାମୂଳକ ଆଲୋଚନା ସେମିନାର୍‌ର ବିଷୟୀଭୂତ ଥିଲା । ସେମିନାର ପ୍ରାୟ ତିନି ସପ୍ତାହ ଚାଲିଥିଲା ।

**ପ୍ରତ୍ୟାବର୍ତ୍ତନ –**

ବର୍ତ୍ତମାନ ଭାରତକୁ ଫେରିବା କଥା । ଆମ ଭିତରୁ କାହାରି କାହାରି ମୁଂଡରେ ଗୋଟିଏ ଖିଆଲ ପଶିଲା ଯେ, ଆମେ ସମୁଦ୍ରପଥରେ ଜାହାଜରେ ଯିବା । ଆମର କାହାରି ସମୁଦ୍ରଯାତ୍ରାର ଅଭିଜ୍ଞତା ନଥିଲା । ତେଣୁ ସମସ୍ତେ ଏଥିରେ ହଁ ଭରିଲେ । ମୋର କିଂତୁ ସମୁଦ୍ରପଥରେ ଯିବାକୁ ସେତେ ଇଚ୍ଛା ନଥିଲା, ତା'ର କାରଣ ବଂବେରେ ପହଂଚିବାକୁ ପ୍ରାୟ ୧୨ ଦିନ ସମୟ ଲାଗିବ । ଏତେ ସମୟ ନଷ୍ଟ କରିବାକୁ ଭଲଲାଗୁନଥିଲା ।

ସେ ଯାହାହେଉ, ଆମେ ଶେଷରେ ଜାହାଜରେ ଫେରିବା ପାଇଁ ସ୍ଥିର କଲୁ। ସେମିନାର କର୍ତ୍ତୃପକ୍ଷଂକୁ ଆମ ଉଡାଜାହଜ ଟିକେଟ ବଦଳରେ **P&O** କମ୍ପାନୀର କୌଣସି ଏକ ଜାହାଜରେ ଡିଲକ୍ସ କ୍ଲାସ୍ ଟିକେଟ କରିଦେବାକୁ ଅନୁରୋଧ କଲୁ। ସେମାନେ ମଧ ରାଜିହେଲେ ଏବଂ ଆମକୁ ଏକ ବଡ଼ ବିଳାସପୂର୍ଣ ଜାହାଜରେ ଯିବାପାଇଁ ଟିକେଟ ଦେଲେ। ଆମେ ଆଡଲେଡ, ପର୍ଥ ପ୍ରଭୃତି ବଂଦର ଦେଇ ଜାହାଜରେ ଆସିଲୁ। ପ୍ରତି ବଂଦରରେ ଜାହାଜ ଦିନେ କିଂବା ଦେଢ଼ଦିନ ରହୁଥିଲା; କାରଣ ବହୁ ମାଲପତ୍ର ବୋଝେଇହେଉଥାଏ ଏବଂ ଯାତ୍ରୀ ମଧ ଉଠୁଥାଂତି। ଏହାଛଡ଼ା ଜାହାଜକୁ କୋଇଲା ଓ ପାଣି ପ୍ରଭୃତି ନେବାକୁ ପଡ଼େ। ଯେଉଁ ଯେଉଁ ବଂଦରରେ ଜାହାଜ ରହେ, ମୁଁ ସେ ସହରରେ ଦିନଟି ଯାକ ବୁଲି କଟାଏ ଏବଂ ସଂଜବେଳେ ଜାହାଜକୁ ଫେରେ। ମୁଁ ପର୍ଥ, ଆଡଲେଡ଼ ପ୍ରଭୃତି ସହର ବୁଲି ମ୍ୟୁଜିୟମ, ଚିତ୍ରଶାଳା (Art Gallery), ଦୋକାନ ବଜାର ସବୁ ବୁଲି ଦେଖେ। ଖାଏ ମଧ ବାହାରେ; କେଉଁ ହୋଟେଲରେ।

ଜାହାଜଟି ଖୁବ୍ ବଡ଼ ଥିଲା ଏବଂ ସେଥିରେ ବହୁ ପ୍ରକାର ଖେଳର ବ୍ୟବସ୍ଥା ଥିଲା– ଟେବୁଲ ଟେନିସ, ବିଲିଆର୍ଡ, ବ୍ୟାଡମିଂଟନ ପ୍ରଭୃତି। ଆମେ ସକାଳୁ ବ୍ରେକଫାଷ୍ଟ ସାରି ମୁକ୍ତ ଆକାଶ ତଳେ ଡେକ୍ ଉପରେ ଆର୍ମ ଚେୟାର ନେଇ ବସୁ ଏବଂ ମ୍ୟାଗାଜିନ, ଖବରକାଗଜ କିଂବା ବହିପତ୍ର ପଢୁ। ମଝିରେ ମଝିରେ ବେଲ୍ ଟିପିଲେ ବୟ ଆସି ଚା' ପାନୀୟ, ସିଗାରେଟ ପ୍ରଭୃତି ଯାହା ଦରକାର, ଦେଇଯାଉଥାଏ।

ପ୍ରଥମ ତିନିଦିନ ବେଶ୍ କଟିଲା। ତା'ପରେ ଆରଂଭ ହେଲା ମୋର ଓ ଅନ୍ୟ କେତେକଂକର Sea Sickness (ସମୁଦ୍ର ବେରାମ)– କିଛି ଖାଇବାକୁ ଇଚ୍ଛା ହେଲାନାହିଁ; ସବୁବେଳେ ବାଂତି ବାଂତି ଭାବ; ଦେହ ମୁଂଡ ଦରଜ। ଅଧିକାଂଶ ସମୟ ଶୋଇରହିବାକୁ ଇଚ୍ଛାହେଉଥାଏ। ଯାହାହେଉ ଦୁଇଦିନ ପରେ ମୋର ସମୁଦ୍ର ବେରାମ କଟିଗଲା ଏବଂ ପୁଣି ଯାଇ ଖୋଲା ଡେକ୍‌ରେ ବସି ସମୁଦ୍ର ହାୱା ଖାଇବାକୁ ଇଚ୍ଛାହେଲା।

ବ୍ରେକ୍‌ଫାଷ୍ଟ ଟେବୁଲରେ ମୋର ସଂଗିନୀ ଥାଏ ୨୨ ବର୍ଷର ଏକ ସୁଂଦରୀ ଝିଅ– ମେରିଆ। ମୁଁ ଆସି ବସିବାମାତ୍ରେ ସେ ଯେଉଁଠି ଥାଏ, ଦଉଡ଼ି ଆସି ମୋ ପାଖରେ ବସିପଡ଼େ ଏବଂ କିଛି କଥାବାର୍ତା ଆରଂଭ କରେ– ଆଜି ହାୱା ବଡ଼ ଜୋର୍ କିଂବା ମେଘୁଆ ପାଗ ଯୋଗୁଁ ସୂର୍ଯ୍ୟକିରଣ ସେତେ ତେଜ ନୁହେଁ... ଇତ୍ୟାଦି ଇତ୍ୟାଦି।

ସେ ମୋର କପ୍‌ରେ ଚାଆ ଢାଳିଦିଏ। ମୁଁ ତା' କପ୍‌ରେ ଚା' ଢାଳିଦିଏ। ଚିନି ଦେଲାବେଳେ ସେ ଏକ ଚାମଚ଼ ଚିନିଧରି ମୋ ଚା' କପ୍‌ରେ ପକାଏ, ଆଉ ଦରକାର କି ନାହିଁ ପଚାରେ। ମୁଁ ତା' କପ୍‌ରେ ଏକ ଚାମଚ ଚିନି

ଦେବାକୁ ଗଲାବେଳେ ସେ କହିଲା, No, thanks. I am sweet enough. ('ଅର୍ଥାତ୍ ନା ଥାଉ, ଧନ୍ୟବାଦ, ମୋର ଚିନି ଦରକାର ନାହିଁ; ମୁଁ ନିଜେ ଯଥେଷ୍ଟ ମିଠା') ତା'ର ଏ କଥାପଦକ ମୋର ଆଜି ବି ମନେପଡ଼େ। କେତୁଟା ବନ୍ଦର ପାରିହେବା ପରେ ସେ ଓହ୍ଲାଇଗଲା। ଗଲାବେଳେ ମୋଠୁ ବିଦାୟ ନେଇ ହାତ ମିଳାଇ ବିଷର୍ଣ୍ଣ କଂଠରେ 'Bye' ବୋଲି କହି ଚାଲିଗଲା।

**କଲୋଂବୋରେ ଦୁଇଦିନ—**

ଜାହାଜ ଆସି ସିଂହଳର ରାଜଧାନୀ କଲୋଂବୋରେ ଲାଗିଲା। ସେତେବେଳେ ଖୁବ୍ ଝଡ଼ି ବର୍ଷା ହେଉଥାଏ। ସେ ରାତିରେ ଆମେ ଏକ ପଂଚତାରକା ହୋଟେଲକୁ ଗଲୁ। ସେଠାରେ ଦୁଇ ରାତି ରହିବାର ବ୍ୟବସ୍ଥା ଜାହାଜ କଂପାନୀ କରିଥାଏ। ହୋଟେଲରେ ଖାଇସାରି ରାତିରେ ଶୋଇଲାବେଳେ ମୋର ଅନେକ କଥା ସିଂହଳ ଦ୍ୱୀପ ସଂବଂଧରେ ମନେପଡ଼ିଯାଉଥାଏ। ସେତେବେଳେ ସିଂହଳର ନାମ ଶ୍ରୀଲଂକା ହୋଇନଥାଏ। ଏହି ସିଂହଳବାସୀମାନେ ଆମ କଳିଂଗର ଉତ୍ତରଦାୟାଦ। କଳିଂଗ ରାଜବଂଶର ଜଣେ ରାଜପୁତ୍ର ଗଂଜାମ ଜିଲ୍ଲା ସିଂହପୁରରୁ ସୈନ୍ୟ-ସାମଂତଂକୁ ନେଇ ସିଂହଳ ଅଧିକାର କରିଥିଲେ। ତାଂକ ନାମ ନିଶଂକ ମଲ୍ଲ। ଏହା ୧୧୦୦ ଶତାବ୍ଦୀର କଥା। କଲୋଂବୋ ନଗରୀର ଆଂବୁଲତୋଟା ଡାକବଂଗଳା ନିକଟରେ ତାଂକର ଶିଳାଲିପି ଏବେ ମଧ୍ୟ ରହିଛି। ସେ ଶିଳାଲିପିରେ ବହୁ ପ୍ରାଚୀନ ଓଡ଼ିଆ ଓ ସିଂହଳୀ ଶବ୍ଦ ରହିଛି। ସେଥିରେ ନିଶଂକ ମଲ୍ଲ କଳିଂଗ "ରାଜଚକ୍ରବର୍ତୀ" ବଂଶୀୟ ବୋଲି ଉଲ୍ଲିଖିତ ଅଛି। ଏଥିରୁ ସେ କଳିଂଗ ବଂଶୋଦ୍ଭବ ବୋଲି ସ୍ପଷ୍ଟ ପ୍ରମାଣ ମିଳେ। ସେ ତାଂକ ରାଜତ୍ୱର ତୃତୀୟ ବର୍ଷରେ ତାଂକ ଓଜନର ପାଂଚଗୁଣ ମୁଦ୍ରା ପ୍ରଜାମାନଂକୁ ବାଂଟିଦେଇଥିଲେ ବୋଲି ଶିଳାଲିପି କହେ। ସେ ବହୁତ କେନାଲ ଖୋଳାଇଥିଲେ . . . ଇତ୍ୟାତି ଇତ୍ୟାଦି।

ତା'ପରଦିନ ସକାଳେ ଓ ଦ୍ୱିପ୍ରହରରେ କଲୋଂବୋ ନଗରୀ ବୁଲି ଦେଖିଲୁ। ନଗରୀଟି ବେଶ୍ ଭଲଲାଗିଲା। ନଗରୀରେ ବହୁ ବଡ଼ ବଡ଼ ଅଫିସ ରହିଛି। ଜାହାଜରେ ବଂବେ ଆସିଲାବେଳେ କଲୋଂବୋରୁ କେତେଜଣ ଆଡ଼ଭୋକେଟ ମୋ ସଂଗେ ଆସୁଥିଲେ। ସେମାନେ ମଧ୍ୟ ବାଟରେ କଥାପ୍ରସଂଗରେ କହିଲେ ଯେ, ସେମାନେ ନିଜକୁ ଓଡ଼ିଆ ବଂଶଧର ବୋଲି ମନେକରଂତି। ସିଂହଳରେ ବାହୁବଂଶ ପରେ କଳିଂଗରୁ ନିଶଂକ ମଲ୍ଲ ଯାଇ ସେଠାରେ ରାଜତ୍ୱ କରିଥିଲେ। ତେଣୁ ସିଂହଳବାସୀଂକ ସହିତ ଯେ ଆମର ରକ୍ତ-ସଂପର୍କ ଅଛି, ଏହା ନିଃସଂଦେହ। ଆଜି ଯେଉଁ ତାମିଲ ମାନେ କାଳନେମୀ ପରି ଲଂକା ଭାଗ କରିବାକୁ ଚାହୁଁଛଂତି, ସେମାନେ ଏହାର ବହୁ ପରେ ସିଂହଳକୁ ଯାଇ ବସତି ସ୍ଥାପନ କରିଥିଲେ।

ଦୁଇଦିନ ପରେ ସକାଳ ୯ଟାରେ ଜାହାଜ ବଂବେରେ ପହଂଚିଲା। ଆମର ଜଳଯାତ୍ରା ଏଇଠି ଶେଷହେଲା।

ବଂବେର ନରିମ୍ୟାନ ପଏଂଟ୍‌ରେ ଏକ ହୋଟେଲରେ ମୁଁ ଦୁଇଦିନ ଥିଲି। ସେହି ସମୟରେ ବଂବେର ମାଲାବାର ହିଲ୍ ସୁପେତାର୍ ରୋଡ଼ରେ ମୋର ଜଣେ କବି-ବଂଧୁ ଆଦି. କେ. ଶେଠଂକ ନିମଂତ୍ରଣକ୍ରମେ ତାଂକ ଘରେ ରାତ୍ରି ଭୋଜନ କରିଥିଲି। ସେହି ଅବସରରେ ତାଂକ ସହିତ ମୋର ସାହିତ୍ୟ ସଂବଂଧରେ ଆଲୋଚନା ହୋଇଥିଲା। ଏହାପରେ ମୁଁ ବଂବେରୁ ଟ୍ରେନ୍‌ଯୋଗେ ଗୋଲ୍ଲାପଲ୍ଲୀ ଗଲି। ସେଠାରେ ମୋର ସ୍ତ୍ରୀ ଭୂଦେବୀ ଏବଂ ପିଲାମାନେ ରହୁଥିଲେ। ମୁଁ ଟ୍ରେନ୍‌ରେ ନୁଜ୍‌ଭିଦ୍ ଷ୍ଟେସନରେ ପ୍ରାୟ ଦିନ ଗୋଟାକରେ ପହଂଚିଲି। ଷ୍ଟେସନକୁ କାର୍ ନେଇ ଡ୍ରାଇଭର ଓ ଜଣେ ଗୁମାସ୍ତା ଆସିଥିଲେ। ତାଂକ ସହିତ ଶ୍ରୀହର୍ଷ ଆସିଥିଲା। ତାକୁ ଦେଖି ମୁଁ ବଡ଼ ଖୁସିହେଲି।

ଗୋଲ୍ଲାପଲ୍ଲୀରେ ସାତ-ଆଠ ଦିନ ରହି ମୁଁ ପିଲାପିଲିଂକୁ ନେଇ କଲିକତା ଫେରି ମୋ କାମରେ ଯୋଗଦେଲି।

**ମିଲ୍‌ରେ ସଂବର୍ଧନା ସଭା –**

କଲିକତା କେଶୋରାମ କଟନ୍ ମିଲ୍‌ର ମଜଦୁରମାନେ ମୋର ସଫଳ ବିଦେଶଯାତ୍ରା ଉପଲକ୍ଷରେ ଏକ ସଭା କରି ମୋତେ ସଂବର୍ଧନା ଜଣାଇଥିଲେ। ଏଥିରେ ପ୍ରାୟ ତିନି-ଚାରି ହଜାର ଶ୍ରମିକ ଯୋଗଦେଇଥିଲେ। ଆଖପାଖ ମିଲ୍‌ମାନଂକରୁ ମଧ ବହୁ ଶ୍ରମିକ ସଭାରେ ଉପସ୍ଥିତ ଥିଲେ। ଏହି ସଭା ମିଲ୍ ସମ୍ମୁଖସ୍ଥ ଶ୍ରମିକ ବସ୍ତିରେ ହୋଇଥିଲା। ଏଥିରେ ମିଲ୍‌ର ମ୍ୟାନେଜର ଆର୍.ଏମ୍. ଶର୍ମା ସଭାପତିତ୍ୱ କରିଥିଲେ। ମୋର ସହକାରୀ ବିଜୟ ବାହାଦୁର ସିଂ ଏବଂ କେତେକ ଅଫିସର ଉପସ୍ଥିତ ଥିଲେ। ମୁଁ କହିଥିଲି ଯେ ଅଷ୍ଟ୍ରେଲିଆର ନ୍ୟୁଜିଲ୍ୟାଂଡ, ଥାଇଲ୍ୟାଂଡ ପ୍ରଭୃତି ଦେଶମାନଂକରେ ସାମାଜିକ ସୁରକ୍ଷା ଉପରେ ଗୁରୁତ୍ୱ ଦିଆଯାଇଛି। ଆଧୁନିକ ଯୁଗରେ ସାମାଜିକ ନିରାପତ୍ତା ମଣିଷର ଉଦ୍‌ଭାବନୀ ଶକ୍ତିର ଜନ୍ମଦାତ୍ରୀ (Security is the mother of invention); ମାତ୍ର ଧନତାଂତ୍ରିକ ଦେଶମାନଂକର ତତ୍ତ୍ୱକାରମାନେ କହିଥାଂତି ଯେ Necessity is the mother of invention; ଅର୍ଥାତ୍ ମଣିଷ ଅଭାବରେ ପଡ଼ି ସଢୁଥିଲେ ତା'ର ଉଦ୍‌ଭାବନି ଶକ୍ତି ଜନ୍ମଲାଭକରେ। ଏ ତତ୍ତ୍ୱ ସଂପୂର୍ଣ ଭୁଲ। ସାମାଜିକ ନିରାପତ୍ତାହିଁ ମଣିଷର ଧୀଶକ୍ତିକୁ ବଢ଼ାଏ ଏବଂ ମଣିଷ ନୂଆ ନୂଆ ଉଦ୍‌ଭାବନ କରିବାକୁ ସୁଯୋଗ ଓ ପ୍ରେରଣା ପାଏ। ମୋ ବକ୍ତୃତା ଶୁଣି ଶ୍ରମିକମାନେ ଖୁବ୍ ଆନଂଦିତ ହୋଇଥିଲେ; ମାତ୍ର ମିଲ୍ ମ୍ୟାନେଜର କିପରି ଟିକିଏ ଅପ୍ରସନ୍ନ ହେଲାପରି ଜଣାପଡୁଥିଲେ।

# ତ୍ରିଂଶ ଉଲ୍ଲାସ

## ଓଡ଼ିଶା ପରିସ୍ଥିତି – ପାରିବାରିକ ପ୍ରସଂଗ

ମୁଁ ଅଷ୍ଟ୍ରେଲିଆର ମେଲ୍‌ବୋର୍ଣରେ ଥିଲାବେଳେ ଭାରତୀୟ ହାଇକମିଶନର୍ ଯେଉଁ ବୁଲେଟିନ୍ ପ୍ରକାଶକରୁଥିଲେ, ତାହା ମଗାଇ ପଢୁଥିଲି । ସେଥିରେ ଭାରତର ସଂକ୍ଷିପ୍ତ ଖବର ପ୍ରକାଶପାଉଥିଲା । ମୁଁ ସେଥିରୁ ଜାଣିବାକୁ ପାଇଥିଲି ଯେ ଓଡ଼ିଶାରେ ୧୯୫୨ ମସିହାରେ ଯେଉଁ ନିର୍ବାଚନ ହୋଇଥିଲା, ସେଥିରେ କଂଗ୍ରେସର ୬୭ ଜଣ ସଦସ୍ୟ ନିର୍ବାଚିତ ହୋଇଥିଲେ । ଆସେଂବ୍ଲିର ମୋଟ ସଭ୍ୟ ସଂଖ୍ୟା ଥିଲା ୧୪୦ ଜଣ । ନବକୃଷ୍ଣ ଚୌଧୁରୀ ମୁଖ୍ୟମଂତ୍ରୀ ହୋଇଥିଲେ ।

ଏଥିପୂର୍ବରୁ ୧୯୪୬ ମସିହାରେ ଭାରତ ସ୍ୱାଧୀନ ହେବ ବୋଲି ଘୋଷିତ ହେବା ପରେ ଯେଉଁ ନିର୍ବାଚନ ହୋଇଥିଲା, ସେଥିରେ ଆସେଂବ୍ଲିର ମୋଟ ସଭ୍ୟସଂଖ୍ୟା ୬୦ଜଣ ଥିଲା । ସେଥିରୁ ୪୭ ଜଣ କଂଗ୍ରେସ ପ୍ରାର୍ଥୀ ଜୟଯୁକ୍ତ ହୋଇଥିଲେ । ହରେକୃଷ୍ଣ ମହତାବ ପ୍ରଧାନମଂତ୍ରୀରୂପେ ନିର୍ବାଚିତ ହୋଇଥିଲେ । ବିଶ୍ୱନାଥ ଦାସ ଇଲେକ୍‌ସନ୍ ଟ୍ରିବୁନାଲ୍ ଦ୍ୱାରା ଛଅବର୍ଷ ପାଇଁ ଆସେଂବ୍ଲି ସଭ୍ୟ ହୋଇପାରିବେ ନାହିଁ ବୋଲି ଦଂଡିତହୋଇଥିଲେ । ସେ ବାଲିଗୁଡ଼ା ଉପନିର୍ବାଚନରେ କଂଗ୍ରେସ ପ୍ରାର୍ଥୀଂକ ପୋଲିଂ ଏଜେଂଟ୍ ଭାବେ ନିର୍ଧାରିତ ପରିମାଣରୁ ଅଧିକ ଖର୍ଚ୍ଚ କରିଥିବା ଦୋଷରେ ଛଅବର୍ଷ ପାଇଁ ଆସେଂବ୍ଲି ସଭ୍ୟ ହେବା ଅଧିକାରରୁ ବଂଚିତହୋଇଥିଲେ । ତେଣୁ ମହତାବ ଅକ୍ଳେଶରେ ଓଡ଼ିଶା ବିଧାନସଭା କଂଗ୍ରେସ ଦଳର ନେତୃତ୍ୱ ନେଇପାରିଥିଲେ ।

**କଂଗ୍ରେସ ଟିକେଟ୍ ପାଇଁ ପ୍ରାର୍ଥୀ –**

ମୁଁ ସେହି ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ହେବାପାଇଁ ଆବେଦନ କରିଥିଲି । ମୋ ବାପା ଅର୍ଥାତ୍ ସାନଦଦେଇ ପ୍ରସନ୍ନ କୁମାର ରାଉତରାୟ ଖୋରଧାର ବିଶିଷ୍ଟ କଂଗ୍ରେସ ନେତା ଥିଲେ । ସେ ମହତାବଂକ ନିକଟକୁ ଯାଇ ମୋତେ ଖୋରଧା ନିର୍ବାଚନମଂଡଳୀରୁ କଂଗ୍ରେସ ଟିକେଟ ଦେବାପାଇଁ ଅନୁରୋଧ କରିଥିଲେ । ମୁଁ ମଧ କଲିକତାରୁ ମହତାବଂକୁ ୨-୩ ଖଂଡ ଚିଠି ଲେଖିଥିଲି । ମହତାବଜୀ ମୋତେ ଖୁବ୍ ଭଲଭାବରେ ଜାଣିଥିଲେ । ମାତ୍ର ମୋତେ ଖୋରଧାରୁ କଂଗ୍ରେସ ଟିକେଟ ମିଳିଲାନାହିଁ; ବନମାଳୀ ପଟ୍ଟନାୟକଂକୁ କଂଗ୍ରେସ ଟିକେଟ ମିଳିଲା । ଯଦିଓ ରାଜନୀତିରେ ସେ ମୋର ଜୁନିଅର ଥିଲେ ।

ଏହାର ୭-୮ ବର୍ଷ ପରେ ମୋତେ ରାଜ୍ୟସଭାକୁ ପ୍ରାର୍ଥୀ କରିବା ପାଇଁ

ମୁଁ ମହତାବଂକୁ ବାରଂବାର ଅନୁରୋଧ କରିଥିଲି । ମାତ୍ର ମୋତେ କଂଗ୍ରେସ ପ୍ରାର୍ଥୀରୂପେ ନବାଛି ଶିଳ୍ପପତି ଜି.ଡି. ବିରଲାଂକ ଜ୍ୱାଇଁ ଥିରାନୀଂକୁ ଓଡ଼ିଶାରୁ ରାଜ୍ୟସଭାକୁ ପଠାଗଲା । ସେ ଓଡ଼ିଶାର ଲୋକ ନଥିଲେ ବା ଓଡ଼ିଶାରେ ରହୁନଥିଲେ; ମାତ୍ର ବ୍ରଜରାଜନଗରରେ ଥିବା ବିରଲା ବ୍ରଦର୍ସର ଓରିଏଂଟ ପେପର୍ ମିଲ୍‌ର ଉଚ୍ଚ ପଦାଧିକାରୀ ଥିଲେ । ତାଂକ ହେଡ୍‌ଅଫିସ୍ କଲିକତାରେ ଥିଲା ।

ଓଡ଼ିଶାରେ ମୋର ବିଡ଼ଂବନା ସୀମା ଟପିଥିଲା । ମୋତେ ରାଜନୀତିକ କ୍ଷେତ୍ରରେ କୌଣସି ସୁଯୋଗ ନଦେବାପାଇଁ ଓଡ଼ିଶାର କଂଗ୍ରେସ ନେତୃତ୍ୱ ଯେପରି ବଦ୍ଧପରିକର ଥିଲା ।

**ନେତୃତ୍ୱ ପରିବର୍ତ୍ତନ –**

ସେ ଯାହାହେଉ ମହତାବଜୀଂକ ମଂତ୍ରିମଂଡଳ ବେଶୀ ଦିନ ତିଷ୍ଠିପାରିଲାନାହିଁ । ତାଂକୁ କଂଗ୍ରେସ ସୋସାଲିଷ୍ଟ ପାର୍ଟି, ବିଶେଷକରି ସୁରେନ୍ଦ୍ରନାଥ ଦ୍ୱିବେଦୀ ପ୍ରଭୃତି ବିରୋଧକରୁଥିଲେ । ନବକୃଷ୍ଣ ଚୌଧୁରୀ ଯେ କି ମହତାବଂକ ମଂତ୍ରିମଂଡଳରେ କ୍ୟାବିନେଟ୍ ପାହ୍ୟାରେ ଥିଲେ, ସେ ତାଂକର ଅକାଳ ପୁତ୍ରବିୟୋଗ ଦୁଃଖରେ ଏପ୍ରିଲ୍ ୨୩ ତାରିଖ ୧୯୪୮ ମସିହାରେ ମଂତ୍ରୀପଦରୁ ଇସ୍ତଫାଦେଇଦେଲେ । ଫଳରେ ମହତାବ ମଂତ୍ରିମଂଡଳ ଦୁର୍ବଳ ହୋଇପଡ଼ିଲା । ମହତାବ ହୀରାକୁଦ ଡ୍ୟାମ୍ ନିର୍ମାଣ କରାଇଥିଲେ । ଏଥିପାଇଁ ତାଂକୁ ସଂବଲପୁର ଆଖପାଖ ଅଞ୍ଚଳର ବାସଚ୍ୟୁତ ଲୋକେ ପ୍ରବଳ ବିରୋଧ କରୁଥିଲେ । ଏପରି କି ଜଣେ ପୂର୍ବତନ ମଂତ୍ରୀ ବୋଧରାମ ଦୁବେ ସତ୍ୟାଗ୍ରହ କରି ଜେଲ୍ ବରଣ କରିଥିଲେ । ଷଢ଼େଇକଳା ଓ ଖରସୁଆଁ ବିହାରରେ ମିଶିବା ଯୋଗୁଁ ଲୋକମତ ମହତାବଂକ ବିପକ୍ଷରେ ଯାଇଥିଲା । ତାଂକୁ ଜନ-ଅସଂତୋଷର ସମ୍ମୁଖୀନହେବାକୁ ପଡ଼ିଥିଲା । ଶେଷରେ ମହତାବଂକୁ କେନ୍ଦ୍ରରେ ନେହେରୁ ସରକାରରେ ଶିଳ୍ପମଂତ୍ରୀ ହିସାବରେ ସ୍ଥାନଦିଆଗଲା । ଡ. ମହତାବ ମଇମାସ ୧୨ ତାରିଖ ୧୯୫୦ ମସିହାରେ ଓଡ଼ିଶା ତ୍ୟାଗକଲେ ଏବଂ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମଂତ୍ରୀ ଭାବରେ କାର୍ଯଭାର ଗ୍ରହଣକଲେ ।

ନବକୃଷ୍ଣ ଚୌଧୁରୀ ପ୍ରାୟ ୬ ବର୍ଷ ମୁଖ୍ୟମଂତ୍ରୀ ଥିଲେ । ତାଂକ ସମୟରେ ଭାଷା-ଆଂଦୋଳନ ଖୁବ୍ ପ୍ରବଳ ହୋଇଥିଲା । ଓଡ଼ିଶାରେ ଓଡ଼ିଆଭାଷାଭାଷୀଅଂଚଳ ବିଶେଷତଃ ଷଢ଼େଇକଳା ଓ ଖରସୁଆଁକୁ ମିଶାଇବା ପାଇଁ ବ୍ୟାପକ ଆଂଦୋଳନ ହୋଇଥିଲା । କଂଗ୍ରେସର ଉଚ୍ଚ ମହଲ ଏହି ଆଂଦୋଳନକୁ ଦୃଢ଼ ହସ୍ତରେ ଦମନ କରିବାପାଇଁ ଓଡ଼ିଶା ସରକାରଂକୁ ନିର୍ଦ୍ଦେଶ ଦେଇଥିଲେ । କଟକରେ ଗୌରୀଶଂକର ପାର୍କ ଆଗରେ ବିକ୍ଷୁବ୍ଧ ଜନତାକୁ ଘଉଡ଼େଇବାପାଇଁ ପୋଲିସ ଗୁଳିଚାଳନା କରିଥିଲା । ଫଳରେ ସୁନୀଲ ଦେ କଟକରେ ଏବଂ ବେଂଗପାଣିଆ ନାମକ ଜଣେ ୧୦-୧୨ ବର୍ଷର ବାଳକ ପୁରୀରେ ଗୁଳିମାଡ଼ରେ ନିହତହୋଇଥିଲେ । ଏହି ଭାଷା-ଆଂଦୋଳନକୁ ଏସ୍.ଆର୍.ସି. ଆଂଦୋଳନ ବା ରାଜ୍ୟ ପୁନର୍ଗଠନ ଆଂଦୋଳନ

କୁହାଯାଉଥିଲା । କଲିକତାରେ ପ୍ରବାସୀ ଓଡ଼ିଆମାନେ ମଧ୍ୟ ବହୁ ସଭା- ସମିତି କରି ରାଜ୍ୟ ପୁନର୍ଗଠନ ଏବଂ ଓଡ଼ିଶାରେ ଷଢ଼େଇକଳା, ଖରସୁଆଁ ପୁନଃ ମିଶ୍ରଣ ଦାବିକରିଥିଲେ । ମୁଁ ଏହି ସବୁ ସଭାସମିତିମାନଂକରେ ବିଶେଷ ଅଂଶଗ୍ରହଣ କରିଥିଲି ।

ନବବାବୁ ଖୁବ୍ ଭଲଲୋକ ଥିଲେ । ମାତ୍ର ପ୍ରଶାସନିକ କ୍ଷେତ୍ରରେ ତାଂକର କୋହଳ ନୀତି ଓ ଅପାରଗତାଯୋଗୁ ସେ ଜଣାଶୁଣା ମହଲରେ ସମାଲୋଚିତ ହେଉଥିଲେ । ସେ ନିଜେ ଜଣେ ସାଧୁ ଓ ସଚ୍ଚୋଟ ବ୍ୟକ୍ତି ବୋଲି ସମସ୍ତେ ସ୍ୱୀକାର କରୁଥିଲେ । ତାଂକ ରାଜନୀତି ମୂଲ୍ୟବୋଧଭିତ୍ତିକ ଥିଲା । ସେ କଂଗ୍ରେସ ସମାଜବାଦୀ ଦଳର ନେତା ଥିଲେ । ତାଂକୁ ତାଂକର ସମାଜବାଦୀ ନୀତି ଓ ଆଦର୍ଶକୁ ବଳି ଦେବାକୁ ପଡ଼ିଥିଲା । ଅବଶ୍ୟ ସେ ଓଡ଼ିଶା ଭୂସଂସ୍କାର ଆଇନରେ କେତେକ ପରିବର୍ତ୍ତନ ଆଣିଥିଲେ; ଏହା ଫଳରେ କୃଷକ, ଭାଗଚାଷୀ ଓ ରୟତମାନେ କିଛି ପରିମାଣରେ ଉପକୃତ ହୋଇଥିଲେ । ସେ ଛଅବର୍ଷ ମୁଖ୍ୟମଂତ୍ରୀ ଥିଲେ ମଧ୍ୟ ନିଜେ ରହିବାପାଇଁ ଘର ଖଂଡେ କରିପାରିନଥିଲେ । ସେ ଏବଂ ତାଂକ ସ୍ତ୍ରୀ ମାଳତୀ ଦେବୀ ଶେଷ ଜୀବନ ଅନୁଗୁଳ ଉପକଂଠରେ ଥିବା ବାଜିରାଉତ ଛାତ୍ରାବାସରେ କଟାଇଛଂତି ।

ଡ. ହରେକୃଷ୍ଣ ମହତାବ ଦୁଇବର୍ଷ ପରେ ଅବିଭକ୍ତ ବଂବେ ପ୍ରଦେଶର ରାଜ୍ୟପାଳ ହୋଇ ଯାଇଥିଲେ, କାରଣ ତାଂକୁ ନୂଆ ନେହେରୁ ସରକାରରେ ନିଆଯାଇନଥିଲା । ସେ ବଂବେ ରାଜଭବନରୁ ବହୁ ଚିଠି ଲେଖି ଓଡ଼ିଶାରେ ତାଂକ ଅନୁଗତମାନଂକୁ ତାଂକୁ ଓଡ଼ିଶାରେ ମୁଖ୍ୟମଂତ୍ରୀ ଭାବେ ଫେରାଇନେବାକୁ କଂଗ୍ରେସ କର୍ତ୍ତୃପକ୍ଷଂକ ନିକଟରେ ଦାବି କରିବାଲାଗି ଚାପପକାଉଥିଲେ । ବରେନ୍ ମିତ୍ର, ନୀଳମଣି ରାଉତରାୟ ଏବଂ ବନମାଳୀ ପଟ୍ଟନାୟକ ପ୍ରଭୃତିଂକୁ ତାଂକର ଏହି ସମୟରେ ଲିଖିତ କେତେକ ଚିଠି ଦୈନିକ 'ସମାଜ' ପତ୍ରିକାରେ ବାରଂବାର ପ୍ରକାଶପାଇଛି । ବନମାଳୀ ପଟ୍ଟନାୟକ, ଯିଏ କି ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥିଲେ ଏବଂ ବିଜୁ ପଟ୍ଟନାୟକ, ବରେନ୍ ମିତ୍ର ଓ ଦୀନବଂଧୁ ସାହୁ ପ୍ରମୁଖ ଓଡ଼ିଶାରେ ଭାଷା-ଆଂଦୋଳନର ସୁଯୋଗ ନେଇ କଂଗ୍ରେସ ମହଲରେ ନବବାବୁଂକ ବିରୁଦ୍ଧରେ ପ୍ରଚାର ଚଳାଇଥିଲେ । ୧୯୫୨ ମସିହା ନିର୍ବାଚନରେ କୌଣସି ପାର୍ଟି ସଂଖ୍ୟାଗରିଷ୍ଠ ହୋଇ ଆସିନଥିଲା । ଫଳରେ ଚୌଧୁରୀ ମଂତ୍ରିମଂଡଳ କୌଣସି ଟାଣୁଆ ପଦକ୍ଷେପ ନେଇପାରୁନଥିଲେ । ପ୍ରଥମ ପଂଚବାର୍ଷିକ ଯୋଜନା ସଫଳ ହେବାର ବିଶେଷ ଆଶା ଦେଖାଯାଉ ନଥିଲା । ପୂର୍ବତନ ଗଡ଼ଜାତମାନଂକରୁ ବହୁ ରାଜାରାଜୁଡ଼ା ଓ ତାଂକ ଅନୁଚରମାନେ ବିଧାନସଭାକୁ ନିର୍ବାଚିତ ହୋଇ ଆସିଥିଲେ । ସେମାନେ ଗଣତଂତ୍ର ପରିଷଦ ଗଢ଼ି ଏକ ଶକ୍ତ ବିରୋଧୀ ଦଳ ଗଠନକରିଥିଲେ । ସେମାନଂକୁ କଂଗ୍ରେସ ଭିତରେ ଲାଗିଥିବା ଅନ୍ତର୍ବିବାଦ ଏବଂ ଚୌଧୁରୀ-ବିରୋଧୀ କାର୍ଯକଳାପ ବେଶ୍ ସୁହାଉଥିଲା ।

ଏଣେ ସାଧାରଣ ନିର୍ବାଚନ ପାଖେଇଆସୁଥିବାରୁ କଂଗ୍ରେସର ଉଚ୍ଚମହଲ

ଚୌଧୁରୀ ସରକାରର ଦୁର୍ବଳ ସ୍ଥିତି ଦେଖି ଆତଂକିତ ହୋଇଥିଲେ। କଂଗ୍ରେସରେ ଥିବା ମହତାବ ପକ୍ଷ ସଭ୍ୟମାନଂକ ଚାପ ଫଳରେ କଂଗ୍ରେସ ସଭାପତି ୟୁ.ଏନ୍. ଧେବର ଶେଷରେ ନବକୃଷ୍ଣ ଚୌଧୁରୀଂକୁ ଇସ୍ତଫା ଦେଇଦେବାକୁ ନିର୍ଦ୍ଦେଶ ଦେଲେ; ଫଳରେ ନବବାବୁ ୧୯୫୬ ମସିହା ଅକ୍ଟୋବର ୧୮ ତାରିଖରେ ଇସ୍ତଫାଦେଇଥିଲେ।

ନବବାବୁ ଯେଉଁ ଦିନ ଇସ୍ତଫା ଦେଲେ, ସେଦିନର ଗୋଟିଏ ଘଟଣା ଶ୍ରମିକନେତା ବିଶ୍ୱନାଥ ପଂଡିତଂକଠାରୁ ଶୁଣିଥିଲି। ନବବାବୁଂକ ଇସ୍ତଫା ଗୃହୀତ ହୋଇଯାଇଥିଲା। ସେ ନିଜ ଅଫିସରେ ବସି କାମ କରୁଥାଂତି। ପ୍ରାୟ ୪ଟାବେଳେ ବିଶ୍ୱନାଥ ପଂଡିତ ତାଂକୁ ଅଫିସରେ ଭେଟିଥିଲେ। ସେ ନବବାବୁଂକୁ ପଚାରିଲେ, ''ଆପଣ ପରା ଇସ୍ତଫା ଦେଇଦେଲେଣି, ଅଫିସରେ କାହିଁକି ବସିଛଂତି।'' ନବବାବୁ କହିଲେ– ''ମୁଁ ଆଜିର ଦରମା ପାଇବି; ତେଣୁ ପୂରା ସମୟ କାମ କରିବାକୁ ହେବ।'' ଠିକ୍ ପାଂଚଟା ବାଜିବାପରେ ସେ ଅଫିସରୁ ଚିରବିଦାୟ ନେଇ ଚାଲିଗଲେ।

**ମହତାବ ପୁଣି ଫେରିଲେ –**

ନବବାବୁଂକ ପରେ ଡ. ହରେକୃଷ୍ଣ ମହତାବ ବଂବେ ରାଜ୍ୟପାଳ ପଦରୁ ଇସ୍ତଫାଦେଇ ଓଡ଼ିଶାରେ ମୁଖ୍ୟମଂତ୍ରୀ ହେଲେ। ୧୯୫୬ ମସିହାରେ ମୁଁ ତାଂକୁ ଭେଟି ମୋତେ ରାଜ୍ୟସଭାକୁ ପଠାଇବାପାଇଁ କେତେ ଥର ଅନୁରୋଧ କରିଥିଲି। ସେ ହଁ-ହାଁ କରି କିଛି କଲେନି। ଶେଷରେ ମୁଁ ତାଂକୁ ମୋତେ କେଂଦ୍ରସରକାର ଅର୍ଥାତ୍ ରାଷ୍ଟ୍ରପତି ଯେପରି ରାଜ୍ୟ ସଭାକୁ ମନୋନୀତ କରଂତି, ସେଥିପାଇଁ ସୁପାରିଶ କରିବାକୁ ଏବଂ ବ୍ୟକ୍ତିଗତ ଭାବରେ ରାଷ୍ଟ୍ରପତି ଡ. ରାଜେଂଦ୍ର ପ୍ରସାଦଂକୁ ଚିଙ୍କେ ଚୋର୍ ଦେଇ ଲେଖିବାକୁ ଅନୁରୋଧ କରିଥିଲି। ରାଜ୍ୟସଭା ହେବାଦିନୁ କୌଣସି ଓଡ଼ିଆ ବୁଦ୍ଧିଜୀବି ରାଷ୍ଟ୍ରପତିଂକଦ୍ୱାରା ରାଜ୍ୟସଭାକୁ ମନୋନୀତ ହୋଇ-ନଥିଲେ। କେବଳ ଶ୍ରୀମତୀ ଶୈଳବାଳା ଦାସ (ମଧୁବାବୁଂକ ପୋଷ୍ୟା କନ୍ୟା) କେତେ ମାସ ପାଇଁ ମନୋନୀତ ହୋଇଥିଲେ। ଅଥଚ ଅନ୍ୟ ରାଜ୍ୟମାନଂକରୁ ବହୁ ଲେଖକ, କଳାକାର ଓ ବୁଦ୍ଧିଜୀବୀ ରାଜ୍ୟସଭାକୁ ରାଷ୍ଟ୍ରପତିଂକଦ୍ୱାରା ମନୋନୀତ ହୋଇ ସାରିଛଂତି। ଡ. ମହତାବ ସେଦିନ ଅସୁସ୍ଥ ଥିଲେ ବୋଲି ତାଂକ ପି.ଏ. ରାମଚଂଦ୍ରନ୍ ମୋତେ କହିଲେ। ସେ ପୁଣି ମୋତେ କହିଲେ– ''ଯାହା ସବୁ କାଗଜପତ୍ର ଓ Bio-data ଅଛି, ମୋତେ ଦେଇଯାଆଂତୁ, ଡ. ମହତାବ ରାଜେଂଦ୍ର ପ୍ରସାଦଂକୁ ମୋ ନାମ ସୁପାରିଶ କରି ଚିଠି ଦେବେ ବୋଲି କହିଛଂତି।'' ମୁଁ ତାଂକୁ ସମସ୍ତ କାଗଜପତ୍ର ବୁଝାଇଦେଇ ଚାଲିଆସିଲି। ମାତ୍ର ଆଜିପର୍ଯଂତ ମୋତେ କିଂବା ଓଡ଼ିଶାର ଅନ୍ୟ କାହାକୁ ରାଜ୍ୟସଭାକୁ ରାଷ୍ଟ୍ରପତି ମନୋନୀତ କରି ନାହାଂତି; ଅଥଚ ଅନ୍ୟ ପ୍ରଦେଶରୁ ବହୁ ମଧ୍ୟମ କାଟର ଲେଖକ ଓ କଳାକାର ରାଷ୍ଟ୍ରପତିଂକଦ୍ୱାରା ମନୋନୀତ ହୋଇପାରିଛଂତି। ଏହା ଓଡ଼ିଶା ପକ୍ଷରେ ଏକ ଘୋର ଦୁର୍ଭାଗ୍ୟର କଥା।

**ମୋ ପାହ୍ୟାରେ ଉନ୍ନତି**– ଅଷ୍ଟ୍ରେଲିଆରୁ ଫେରିବା ପରେ ମିଲ୍‌ରେ ମୋ

ପାହ୍ୟାରେ ଉନ୍ନତି କରାଗଲା । ମୁଁ ଦଶବର୍ଷ ମୁଖ୍ୟ ଲେବର ୱେଲ୍‌ଫେୟାର ଅଫିସର ରୂପେ କାମ କରିବା ପରେ ମୋତେ ଏକ୍‌ଜିକ୍ୟୁଟିଭ ଅଫିସର ପଦକୁ ଉତ୍ତୀର୍ଣ୍ଣ କରାଗଲା । ମୋ ଅଫିସ୍ ମଧ୍ୟ ବଦଳିଗଲା । ମୁଁ ଆଉ ଲେବର ଅଫିସରେ ନ ବସି ବଡ଼ ଅଫିସରେ ଯେଉଁଠାରେ ମ୍ୟାନେଜର ପ୍ରଭୃତିଂକର ଅଫିସ୍ ଅଛି, ସେଠାରେ ବସିଲି । ମୋ ଅଧୀନରେ ଲେବ୍‌ରୱେଲ୍‌ଫେୟାର ବିଭାଗ ଏବଂ ମୁଖ୍ୟ ଅଫିସ୍ ପରିଚାଳନା ବିଭାଗ ରହିଲା । ମୁଁ ପୂର୍ବପରି ଶ୍ରମିକମାନଂକ ଭବିଷ୍ୟନିଧି ପାଂଠିର (Provident Fund) ସେକ୍ରେଟାରୀ ରହିଲି । ଏହାଛଡ଼ା ମିଲ୍ ସ୍କୁଲର ସେକ୍ରେଟେରୀ ମଧ୍ୟ ଆଗ ଭଳି ରହିଲି । ମିଲ୍ ସ୍କୁଲଟି ସେତେବେଳକୁ ହାଇସ୍କୁଲରେ ପରିଣତ ହୋଇସାରିଥାଏ । ଏହା ନି. ପ୍ରା. ସ୍କୁଲ ଥିବାବେଳୁ ଏ ପର୍ଯ୍ୟଂତ ମୁଁ ଏହାର ସଂପାଦକ ଥିଲି । ମିଲ୍‌ର ହାସପାତାଲ ଓ ୱାଚ୍ ଏଂଡ ୱାଡ୍ ବିଭାଗ ପ୍ରଭୃତି ମଧ୍ୟ ମୋ ତତ୍ତ୍ୱାବଧାନରେ ରହିଲା । ଏହାଛଡ଼ା ପବ୍ଲିକ୍ ରିଲେସନ୍ ଇତ୍ୟାଦି, ଯାହା ଖୁବ୍ ଗୁରୁତ୍ୱପୂର୍ଣ୍ଣ, ମୋ ଅଧୀନରେ ପୂର୍ବପରି ରହିଲା । ରାଜ୍ୟ ଓ କେଂଦ୍ରମଂତ୍ରୀମାନଂକ ସହିତ ଏବଂ ସରକାରୀ ଅଫିସରମାନଂକ ସହିତ ଓ ମିଲ୍ ମାଲିକ ସଂଘ ଓ ଚେଂବର-ଅଫ-କମର୍ସ ପ୍ରଭୃତି ସହିତ ଯୋଗାଯୋଗ ମୋ ଦାୟିତ୍ୱ ଥିଲା । ମାତ୍ର ବିଭାଗରେ ଉନ୍ନତି ହେଲେ ମଧ୍ୟ ମୋର ଅଧସ୍ତନ କର୍ମଚାରୀମାନଂକୁ ଯଥା– ବିଜୟ ବାହାଦୂର ସିଂ ଓ ସୁଧୀର ସେନ୍ ପ୍ରଭୃତି ମିଲ୍ ମ୍ୟାନେଜମେଂଟର ଅଧିକ ବିଶ୍ୱାସଭାଜନ ଥିଲେ । ମୋତେ କେଜାଣି କାହିଁକି ମିଲ୍ ମ୍ୟାନେଜ୍‌ମେଂଟ ଟିକିଏ ଦୂରେଇରଖୁଥିଲେ ।

**ବୁଚିର ଜନ୍ମ –**

ମୋ ସାନପୁଅ ବୁଚି ବା ଉଦୟନ ୧୯୫୩ ମସିହା ଫେବୃୟାରୀ ମାସ ୨୮ ତାରିଖରେ ମୋ ମିଲ୍ କ୍ୱାଟରରେ ଜନ୍ମଗ୍ରହଣକରିଥିଲା । ସେଦିନ ଥାଏ ହୋଲି ସକାଳେ ଆମେ ହୋଲି ଖେଳିବାକୁ ସଜବାଜ ହେଉଥିବାବେଳେ ମୋ ସ୍ତ୍ରୀ ଭୂଦେବୀର ଲେବର ପେନ୍ ଆରଂଭହୁଏ । ତେଣୁ ତାଂକୁ ବାହାରେ କୌଣସି ହସ୍‌ପିଟାଲ ବା ନର୍ସିଂହୋମକୁ ପଠାଇବାକୁ ବେଳ ନଥିଲା । ଆମ ମିଲ୍ ହସ୍‌ପିଟାଲରେ ଥିବା ଜଣେ M.B.B.S. ଲେଡି ଡକ୍ଟର ମିସେସ୍ ଭଟ୍ଟାଚାର୍ଯ୍ୟଂକୁ ଖବରଦେଲି । ସେ ଦୁଇଜଣ ନର୍ସ ଧରି ମୋ କ୍ୱାଟରରେ ପହଂଚିବାବେଳକୁ ବୁଚି ଜନ୍ମହୋଇ-ସାରିଥାଏ । ସେମାନେ ନବଜାତ ଶିଶୁର ହେପାଜତ୍ କରିବାରେ ଲାଗିଗଲେ । ମୋ ଶାଶୁ ଗୋଲ୍ଲାପଲ୍ଲୀ ରାଣୀ ମଧ୍ୟ ସେତେବେଳେ ଆମ ପାଖରେ ଥାଆଂତି । ସେ ପୁଅ ହେବାର ଦେଖି ଖୁବ୍ ଖୁସିହେଲେ । ଏଥିପୂର୍ବରୁ ମୋର ତିନୋଟିଯାକ ସଂତାନ ଯଥା– ମଂଜୁଶ୍ରୀ, ଚିତ୍ରୋତ୍ପଳା (ଚିତ୍ରା) ଏବଂ ପୁଅ ଶ୍ରୀହର୍ଷ ଆଂଧ୍ରର ବିଭିନ୍ନ ସ୍ଥାନରେ ଜନ୍ମହୋଇଥିଲେ । କଲିକତାରେ କେବଳ ବୁଚି ଜନ୍ମହୋଇଥିଲା । ବୁଚି ଦୁଇବର୍ଷ କେଶୋରାମ୍ କଟନ୍ ମିଲ୍ ସ୍କୁଲରେ ପଢ଼ିଥିଲା । ତାପରେ ସେ

ଓ ଶ୍ରୀହର୍ଷ କଲିକତା ଚୌରଂଗୀରେ ଅବସ୍ଥିତ ବିରଳା ସ୍କୁଲରେ ପଢ଼ିଥିଲେ। ଏହା କଲିକତାର ଏକ ସଂଭ୍ରାଂତ ସ୍କୁଲ ଥିଲା। ବୁଚ୍ଚି ବା ଉଦୟନ କଟକ ଖ୍ରୀଷ୍ଟକଲେଜରୁ ଇତିହାସରେ ଅନର୍ସ ନେଇ B.A. ପାଶ୍ କରିଥିଲା। ୧୮ ବର୍ଷ ବୟସରେ ସେ ଉଚ୍ଚଶିକ୍ଷା ପାଇଁ ଲଂଡନ ଚାଲିଯାଏ। ସେ ଲଂଡନ ଓ ଇଜିନ୍‌ବାରୁ ବିଭିନ୍ନ ଡିପ୍ଲୋମା ହାସଲ କରି ଶେଷରେ ଇଜିନ୍‌ବାରୁ M.A. ଓ M.B.A. ବା ବିଜିନେସ ମ୍ୟାନେଜମେଂଟ ପାଶ କରେ। ଏହା ପରେ ଲଂଡନ ବିଶ୍ୱବିଦ୍ୟାଳୟରେ କିଛି ବର୍ଷ ଲେକ୍‌ଚରର ରୂପେ କାର୍ଯ କରେ। ତା'ପରେ ସେ କେଂବ୍ରିଜ ବିଶ୍ୱବିଦ୍ୟାଳୟରେ ନିଯୁକ୍ତିପାଏ। ବର୍ତମାନ ସେ କେଂବ୍ରିଜ୍ ବିଶ୍ୱବିଦ୍ୟାଳୟରେ ବିଜିନେସ୍ ମ୍ୟାନେଜ୍‌ମେଂଟ ବିଭାଗରେ ପ୍ରିନ୍‌ସିପାଲ୍ ଲେକ୍‌ଚରରରୂପେ କାର୍ଯ୍ୟ କରୁଛି। ସେ ବେଲ୍‌ଜିୟମ୍ ନିବାସୀ ଜଣେ ରାଷ୍ଟ୍ରଦୂତଂକ କନ୍ୟା ଡୋମିନିକ୍‌କୁ ବିବାହକରିଛି। ତାର ଗୋଟିଏ ଝିଅ ମାଳିନୀ ଓ ତିନିବର୍ଷର ପୁଅ ନିକେଶ୍ ବର୍ତମାନ କେଂବ୍ରିଜ୍‌ରେ ପଢୁଛଂତି। ଡୋମିନିକ୍ ଜଣେ ମେଡ଼ିକାଲ୍ ନର୍ସ।

**ସଂତାନ ସଂତତିଂକ ଶିକ୍ଷା –**

ବଡ଼ଝିଅ ମଂଜୁଶ୍ରୀ କଲିକତାର ଲର୍ଡ ସିହ୍ନା ରୋଡ଼ସ୍ଥିତ ଶ୍ରୀ ଶିକ୍ଷାୟତନରେ ଶିକ୍ଷାଲାଭ କରିଥିଲା। ସେ ସେଠାରେ ଏକାଦଶ ଶ୍ରେଣୀ ଅର୍ଥାତ୍ ମ୍ୟାଟ୍ରିକ୍ ପାଶ୍ କରିଥିଲା। ଆମେ ତା'ର ଶେଷବର୍ଷ ବେଳକୁ କଲିକତା ଛାଡ଼ି କଟକ ଚାଲିଆସିଥିଲୁ। ତାକୁ ସ୍କୁଲ୍ ହଷ୍ଟେଲରେ ରହିବାକୁ ପଡ଼ିଥିଲା ତା'ପରେ ସେ ମ୍ୟାଟ୍ରିକ୍ ପାଶ୍‌କରି କଟକ ଆସି ଆମ ସଂଗେ ରହି ଶୈଳବାଳା ମହିଳା କଲେଜରୁ ବି.ଏ. ପାଶ୍ କରେ। ସେ ହିଂଦୀରେ ମଧ 'ରତ୍ନ' ପାଶ୍‌କରିଥିଲା। ମଂଜୁଶ୍ରୀ ଗତ ୩୦ ବର୍ଷ ହେଲା ବିବାହ କରି ତାର ସ୍ୱାମୀ ଓ ପରିବାର ସହ ଲଂଡନରେ ଅଛି। ତାର ସ୍ୱାମୀ ପ୍ରଶାଂତ ରାଉତ ମେଦିନାପୁରର ଜଣେ ଓଡ଼ିଆ ଜମିଦାରଂକ କନିଷ୍ଠ ପୁତ୍ର। ସେମାନେ ପୁରୁଷାନୁକ୍ରମେ କଲିକତାର ବାଲିଗଂଜରେ ଘର କରି ରହିଆସିଛଂତି। ସେମାନେ ନିଜକୁ ଓଡ଼ିଆ କହିଲେ ମଧ ଘରେ ବଂଗଳା କହଂତି। ସେମାନେ ଓଡ଼ିଆ ଭାଷା ସଂପୂର୍ଣ ରୂପେ ଭୁଲିଗଲେଣି। ମଂଜୁଶ୍ରୀର ସ୍ୱାମୀ ପ୍ରଶାଂତ ରାଉତ ଲଂଡନରେ କଷ୍ଟଆକାଉଟେଂଟ୍ ଭାବେ କାର୍ଯ କରୁଛି। ଏହା ଛଡ଼ା ସେମାନଂକର ଲଂଡନରେ ଗୋଟିଏ ଦୋକାନ ଅଛି; ଏଷ୍ଟେଟ୍ ବିଜିନେସ୍ ମଧ ରହିଛି। ସେମାନେ ଘର କିଣି ତାକୁ remodel କରି ବିକ୍ରିକରିଦିଅଂତି।

ସାନଝିଅ ଚିତ୍ରା ଆମ ସଂଗେ ଓଡ଼ିଶା ଆସି ସେଂଟ ଜୋସେଫ କନ୍‌ଭେଂଟ ସ୍କୁଲରୁ H.S.C.ପାଶ୍ କରିବା ପରେ ରେଭେନ୍‌ସା କଲେଜରୁ ଇଂରାଜୀରେ M.A. ପାଶ୍ କରିଥିଲା। ଏହାପରେ ସେ ମଧ କିଛିଦିନ କନ୍‌ଭେଂଟ ସ୍କୁଲରେ ଇଂରାଜୀ ଶିକ୍ଷୟିତ୍ରୀ ଭାବେ କାର୍ଯକରିଥିଲା। ଚିତ୍ରା ଗତ ୨୦ ବର୍ଷ ହେଲା ଆମେରିକାରେ ତାର ପରିବାର ସହିତ ଅଛି। ତାର ସ୍ୱାମୀ ଡ. ରବୀଂଦ୍ର କୁମାର ରାଉତ ଯାଜପୁର

ନିକଟସ୍ଥ ଏକ ଗ୍ରାମରେ ଜନ୍ମ। ସେ ଆମେରିକାରୁ ସ୍ପେସ୍ ଇଂଞ୍ଜିନିଅରିଂ ପାଶ କରି ଏବଂ ସେଥିରେ ଡକ୍ଟରେଟ୍ ପାଇ ସେଠାରେ ସ୍ପେସ୍ ଇଂଞ୍ଜିନିଅର ରୂପେ କାର୍ଯ୍ୟ କରୁଛନ୍ତି। ସେ ବର୍ତ୍ତମାନ ଡେଟ୍ରୟଟ୍‌ରେ ଫୋର୍ଡ଼ ମୋଟର କଂପାନୀରେ କାର୍ଯକରୁଛନ୍ତି। ଚିତ୍ରା ଆମେରିକାରୁ ଲାଇବ୍ରେରୀଆନ୍‌ସିପ୍ ପାଶ୍ କରି ସେଠାରେ ଲାଇବ୍ରେରୀଆନ୍ ରୂପେ କାର୍ଯକରୁଛି।

ପୁଅ ଶ୍ରୀହର୍ଷ କଲିକତା ବିରଳା ସ୍କୁଲରେ ପଢୁଥିଲା। ଆମେ ଓଡ଼ିଶା ଆସିବା ପରେ ସେ କଟକରେ ଷ୍ଟୁଆର୍ଟ ସ୍କୁଲରୁ ବି.ଏସ୍.ସି. ପାଶ୍‌କରେ। ସେ ପିଲାଦିନୁ ଷ୍ଟେଟ୍ ବ୍ୟାଡ୍‌ମିଂଟନ ଚଂପିଆନ ରୂପେ (ପ୍ରଥମେ ଜୁନିଅର ପରେ ସିନିଅର ବିଭାଗରେ) ପ୍ରାୟ ଦଶ-ବାର ବର୍ଷ ଚଂପିଆନ ହୋଇଛି। ଓଡ଼ିଶା ବାହାରେ ମଧ ସେ ବହୁ ଟୁର୍ନାମେଂଟରେ ଚଂପିଆନ୍ ହୋଇଛି। ରାଉରକେଲା ଷ୍ଟିଲ୍ କାରଖାନାର କର୍ତ୍ତୃପକ୍ଷ ବି.ଏସ୍.ସି. ପାଶ୍ କଲାପରେ ତାକୁ ଡାକିନେଇ ଉକ୍ତ କାରଖାନାରେ ସହକାରୀ ସ୍ପୋର୍ଟସ୍ ଅଫିସର ରୂପେ ନିଯୁକ୍ତି ଦେଇଥିଲେ। ଏହାପରେ ସେ ଆସିଷ୍ଟାଂଟ୍ ମ୍ୟାନେଜର ରୂପେ କାର୍ଯକରେ। ଗତ ଦୁଇ ବର୍ଷ ହେଲା ସେ ଭୁବନେଶ୍ୱରରେ ଥିବା ରାଉରକେଲା ଷ୍ଟିଲ୍ ପ୍ଲାଂଟ୍ ଅଫିସ୍‌ରେ ରେସିଡେଂଟ୍ ଲିଆସନ୍ ଅଫିସର ରୂପେ କାର୍ଯ୍ୟ କରୁଛି। ସେ କଟକରୁ ଏଲ୍.ଏଲ୍.ବି. ଏବଂ କଲିକତା ବିଶ୍ୱବିଦ୍ୟାଳୟରୁ ସୋସିଆଲ ଓ୍ୟାଲ୍‌ଫେୟାର କୋର୍ସ ଡିପ୍ଲୋମା ଏବଂ ସେଲ୍‌ସର ବିଜିନେସ୍ ମ୍ୟାନେଜମେଂଟ୍ କୋର୍ସ ପାଶ୍ କରିଛି। ଏହାଛଡ଼ା କଷ୍ଟଆକାଉଟ୍‌ଟାଂସିରେ ଇଂଟର ମିଡିଏଟ୍ ପାଶ୍‌କରିଛି। ସେ ଆଂଧ୍ରର କାକିନାଡାର ଜଣେ ଆତ୍ମୀୟକ କନ୍ୟା ଉଷାକୁ ବିବାହକରିଛି।

**ନୂତନ ପ୍ରଜନ୍ମ : ନାତିନାତୁଣୀ –**

ମଂଜୁଶ୍ରୀର ଗୋଟିଏ ପୁଅ ଶାଂତନୁ ଋଷିଭାଲି ସ୍କୁଲରୁ +୨ ପାଶ୍ କରି ୧୯୯୬ ମସିହାରେ ବ୍ରହ୍ମପୁର M.K.C.G.ମେଡ଼ିକାଲ କଲେଜରୁ M.B.B.S.ପାଶ୍ କରିଛି। ବର୍ତମାନ ସେ ସେଠାରେ ହାଉସ୍‌ସର୍ଜନ ରୂପେ କାର୍ଯ କରୁଛି। ତାର ବାଲ୍ୟଶିକ୍ଷା କଟକ, ଲଂଡନରେ ଓ ଋଷିଭାଲି ସ୍କୁଲରେ ହୋଇଥିଲା। ମଂଜୁଶ୍ରୀର ଏକମାତ୍ର ଝିଅ ଶ୍ୱେତା ଋଷୀଭାଲି ସ୍କୁଲରୁ +୨ ପାଶ୍ କରି ଲଂଡନରେ ବି.ଏ. ପଢୁଛି। ଚିତ୍ରାର ଦୁଇ ଝିଅ ମଧ୍ୟରୁ ବଡ଼ଝିଅ ପ୍ରୀତି ଆମେରିକାରୁ ସ୍କୁଲଶିକ୍ଷା ସମାପ୍ତକରି ବର୍ତମାନ ମିଚ଼ିଗାନ୍ କଲେଜରେ ପଢୁଛି। ସେ ସେଠାରେ ନ୍ୟାସନାଲ ବୃତ୍ତି ପାଇଥିଲା। ଦ୍ୱିତୀୟ ଝିଅ ଶ୍ୱାତୀ ଆମେରିକାର ଏକ କଲେଜରେ ପଢୁଛି।

ଶ୍ରୀହର୍ଷର ସଂତାନ ମଧ୍ୟରୁ ବଡ଼ଝିଅ ଶୁଭ୍ରା (ଛିନୁ) କଟକର କେଂବ୍ରିଜ୍ ସ୍କୁଲରେ ଅଷ୍ଟମ କ୍ଲାସରେ ପଢୁଛି। ସାନଝିଅ ଶ୍ରୁତି (ରାନୁ) କଟକର ସେଂଟ ଜୋସେଫ୍ କନଭେଂଟ ସ୍କୁଲରେ ସପ୍ତମ କ୍ଲାସ୍‌ରେ ପଢୁଛି। ପୁଅ ମାନସ କଟକ କେଂବ୍ରିଜ୍ ସ୍କୁଲରେ ଚତୁର୍ଥ କ୍ଲାସରେ ପଢୁଛି। ଏହି ହେଲା ମୋ ପରିବାରର ଇତିବୃତ୍ତ।

# ଏକତ୍ରିଂଶ ଉଲ୍ଲାସ

## ପତ୍ନୀ ଭୂଦେବୀ

**ବିଦେଶ ଯାତ୍ରାରେ ଭୂଦେବୀ –**

ଖାଲି ଘରେ ନୁହେଁ, ଅନେକଥର ଭୂଦେବୀ ମୋ ସଂଗେ ବିଦେଶ ଯାଇ ମୋର ସାଂସ୍କୃତିକ କାର୍ଯକ୍ରମରେ ସାହାଯ୍ୟ କରିଛି। ୧୯୮୨ ମସିହାରେ ଲଂଡନ ବିଶ୍ୱବିଦ୍ୟାଳୟର ଆମଂତ୍ରଣରେ ମୁଁ ସେଠାରେ ଓଡ଼ିଶା ପଟ୍ଟଚିତ୍ର ଓ ପୋଥିଚିତ୍ରର ଏକ ତିନି ମାସବ୍ୟାପୀ ପ୍ରଦର୍ଶନୀ କରିଥିଲି। ଭୂଦେବୀ ମୋ ସଂଗେ ଲଂଡନ ଯାଇ ମୋତେ ସାହାଯ୍ୟ କରିଥିଲା। ୧୯୮୮ ମସିହାରେ ସେ ମୋ ସଂଗେ ଲଂଡନରେ ପ୍ରାୟ ଚାରିମାସ ରହି କେତେକ ସାଂସ୍କୃତିକ କାର୍ଯକ୍ରମ ନିର୍ବାହ କରିବାରେ ସାହାଯ୍ୟ କରିଥିଲା। ମୋ ପରିବାରର ପ୍ରାଣ-କେଂଦ୍ର ମୋର ପତ୍ନୀ ଭୂଦେବୀ। ବିବାହ ପରେ ସେ ୧୯୪୫ ମସିହାରୁ ମୋର ଘର-ସଂସାର ପିଲାପିଲି ଓ ମୋତେ ଯେପରି ସଂଭାଳିଆସିଛି, ତାହା ସତରେ ଅବିସ୍ମରଣୀୟ। ମୁଁ ମଝିରେ ମଝିରେ ଦୀର୍ଘଦିନ ପାଇଁ ବିଦେଶଯାତ୍ରା କରୁଥିଲି। ସେ ସମୟରେ ସେ ଘର-ସଂସାର ସୁଂଦର ଭାବରେ ଚଳାଇ ନେଉଥିଲା। ମୁଁ ବିଶେଷ ସଂସାରୀ ନଥିଲି। ଘର ସଂସାରର ଦୈନଂଦିନ ବ୍ୟାପାରରେ ମୁଁ ପ୍ରାୟ ଉଦାସୀନରହେ। ସେଥିପାଇଁ ଭୂଦେବୀ ମୋ ଉପରେ ବେଳେବେଳେ ଚିଡ଼ିଉଠେ। ଆମ ଭିତରେ ବେଳେବେଳେ 'ମୃଦୁ ଝଗଡ଼ା ମଧ୍ୟ ଲାଗିଯାଏ; ଯାହାକୁ ଦାଂପତ୍ୟ କଳହ କୁହାଯାଇପାରେ। ମୁଁ ଘରେ ପ୍ରାୟ ଚୁପ୍‌ଚାପ୍ ରହେ, କିଛି ଲେଖାଲେଖି ବା ପଢ଼ାଶୁଣା କରିବାରେ ମନ ଦିଏ। କିଛି ନ ହେଲେ ଚୁପ୍‌ଚାପ୍ ଗଂଭୀର ରହି ଚିଂତା କରୁଥାଏ। ତେଣୁ ମୋ ସ୍ତ୍ରୀ ଖୁବ୍ ନିଃସଂଗ ଓ ଏକୁଟିଆ ବୋଧକରେ। ସେ ଘର ଭିତରେ ଏକା ଏକା ଖୁବ୍ ଅସ୍ୱସ୍ତିବୋଧକରେ। ଗୋଲାପଲ୍ଲୀ ରାଜବାଟୀରେ ବହୁ ଚାକର ଚାକରାଣୀ ମେଳରେ ତା'ର ଶୈଶବ ଓ କୈଶୋର କଟିଥିଲା। କଲିକତାରେ କେବଳ ଜଣେମାତ୍ର ଚାକରାଣୀ ବହୁ କଷ୍ଟରେ ମିଳିଥିଲା। ଆଂଧ୍ରରୁ ଶ୍ୱଶୁରଘର ଜଣେ ଜଣେ ଚାକରାଣୀ ପଠାଉଥିଲେ। ସେମାନେ କେତେବର୍ଷ ରହୁଥିଲେ। ଚାକର ଚାକରାଣୀ ନଥିଲାବେଳେ କଲିକତାରେ ଏବଂ ସେଠାରୁ ଆସି କଟକରେ ରହିବାପରେ ଭୂଦେବୀକୁ କେବେ କେବେ ନିଜ ହାତରେ ରୋଷେଇବାସ କରିବାକୁ ପଡ଼ିଛି; ଯଦିବ୍ ବାହାର କାମ କରିବାପାଇଁ ଲୋକର ଅଭାବ ଘଟିନାହିଁ। ଚାରୋଟି ପିଲାଂକୁ ସଂଭାଳିବା ଏବଂ ସେମାନଂକୁ ପ୍ରସ୍ତୁତ କରି ସ୍କୁଲକୁ ପଠାଇବା କିଛି କମ୍ କାମ ନୁହେଁ। ପିଲାମାନଂକ ପାଇଁ ଟିଉସନ ମାଷ୍ଟର ରଖିବାର ସେ ଆଦୌ

ପକ୍ଷପାତୀ ନଥିଲା। ସେ ନିଜେ ଯେତେଟା ପାରେ ସେମାନଙ୍କର ପଢ଼ାଶୁଣାର ତତ୍ତ୍ୱାବଧାନ କରୁଥିଲା।

ଭୂଦେବୀ ମୋର ବହୁ କବିତାର ପ୍ରେରଣାର ଉତ୍ସ। 'ଜ୍ୟାମିତି' କବିତାରେ –

"କୃଷ୍ଣାନଦୀରେ ଉଠିଚି କି ଆଜି ଢେଉ
ବର୍ଷା-ବିହ୍ୱଳ ଗଂଗାର ଉପତ୍ୟକା,
ତିସ୍ତା, ମେଘନା କୂଳେ ତରୀ ନେଉ ନେଉ
ଦକ୍ଷିଣ ପଥେ ଘୂରି ଯେ ମୁଁ ଗଲି ସଖୀ।
ହୀରାର ମାଛର ତୀର୍ଯକ ଗତି-କୋଣ
ହଠାତ୍ ଫେରିଲା, କିପରି ଫେରିଲା ଜାଣ ?
ସୁନାର ମାଛର ଆଖିର ପ୍ରସ୍ରବଣ
ହଠାତ୍ ଯେ ତାର ତରୀପଥେ ଦେଲା ଧକ୍କା॥
ଦିଗ ଓ ଆକାଶ ମୁହାଣ ସେ ପାରେ ଏକା
ଦିନ ରାତି ଥିଲା ବିତି,
ଆକାଶରେ ମୋର ହଠାତ୍ ତୁମର ଡେଣା
ଉଡ଼ିବାର କଳ-ଗୀତି
ରଚିଲା, ବାଜିଲା, ନିର୍ଜନ ରାତି କାନେ,
ସେଥିରେ ତ ଥିଲା ଜୀବନର ସବୁ ମାନେ।
ରହିଲା ଯା ବାକି, ଅବୁଝା, ଅର୍ଥହୀନେ
ସକଳର ହେଲା ଇତି।
ସୁନାର ମାଛର କରୁଣ ଅବୁଝା ଆଖି
ଶଂଖଚିଲରେ ଆକାଶୁ ଆଣିଲା ଡାକି।
ମେଘ ଆଉ ଧାନ, ବର୍ଷା ଓ ମାଟି ମିଳି
ଗଢ଼ିଲେ କି ଆଉ ଜୀବନର ଜ୍ୟାମିତି ?" ('ଜ୍ୟାମିତି', ପାଂ.ଲି. ୧୯୪୭)

ଏ କବିତାଟି ୧୯୪୫ ସାଲ ଆଶ୍ୱିନ ସଂଖ୍ୟାରେ ସଂବଲପୁରରୁ ଡ. ମାୟାଧର ମାନସିଂହଙ୍କ ସଂପାଦକତ୍ୱରେ ପ୍ରକାଶିତ 'ଶଂଖ' ପତ୍ରିକାରେ ପ୍ରକାଶପାଇଥିଲା।

'କୃଷ୍ଣା ନଦୀ ବୋହିଯାଏ ଧୀରେ' –

କୃଷ୍ଣା ନଦୀ ବୋହିଯାଏ ଧୀରେ –
ପ୍ରଥମ ଆଷାଢ଼ ଜାଗେ ଭୂଦେବୀର କରୁଣ ଆଖିରେ
ପଢ଼ିଅଛି କବିତାରେ, ଏତେବେଳେ କାଂଦେ ଯକ୍ଷ-ବଧୂ
ଯକ୍ଷର ଲୋତକ ହୁଏ କାଳିଦାସ ଲେଖନୀରେ ମଧୁ
ମୁହିଁ ଚିର ପଥଚାରୀ,
ନୁହେଁ ମୁଁ ତ ଉଜ୍ଜୟିନୀବାସୀ,

ସୀପ୍ରାର ଶ୍ୟାମଳ ତଟେ ହୋଇଥିଲି କେବେ ପରବାସୀ
ଆଜି ତାହା ମନେନାହିଁ, ବରଷାର ନୀଳ ଅତ୍ୟାଚାର
ବାରେ ବାରେ ମନେ ମୋର ଢେଉ ତୋଳେ ଗୋଟିଏ କଥାର
ଛଦ୍ମବେଶୀ, ମୁଁ ତ ଛଦ୍ମବେଶୀ
ତୁମେ ମୋର ଶମୀଶାଖା, ତୁମ କୋଳେ ମୁହିଁ ପରଦେଶୀ
ଲୁଚାଇଚି ଅସ୍ତ୍ର ମୋର, ହଜାଇଚି ମୋର ଅଗ୍ନି-ତୂଣୀ
ଆଷାଢ଼ର ରହସ୍ୟରେ ରଚିଚି ମୋ ସୁବର୍ଣ୍ଣ ଛାଉଣୀ ।।
ଗଢ଼ିଅଛି ଶଂଖ-ନୀଡ଼, ତୁଟିଚି ମୋ ପଥରୁ ବିଶ୍ୱାସ ।
ତୁମରି ଶୀତଳ ଛାୟା କି ଭୀଷଣ ।।
ମୋ' ଅଜ୍ଞାତବାସ
ଶେଷ ହୋଇ ଆସେ — ।
ପ୍ରଥମ ପ୍ରଣୟ ନିଶା ତୁଟିଚି ମୋ' ମାଟିର ନିଃଶ୍ୱାସେ
ଫେରିଯିବା — ଚାଲ ଯିବା ଫେରି,
ଉଜ୍ଜୟିନୀ ପଥ ହୋଇ, ସୀପ୍ରା ନଦୀ ଲହରୀ ପହଁରି
ରାମଗିରି ପାଦେ ନୋଇଁ ମଥା —
ଫେରିଯିବା ଚାଲ ପ୍ରିୟା ଶୁଣ, ଶୁଣ ବଡ଼ ରୁକ୍ଷ କଥା
ଫେରିଯିବା ଇସ୍ପାତ୍ ନଗରେ,
ଲୁହାର ଆହ୍ୱାନ ଆସେ, ମୋର ଏଇ ମାଂସପେଶୀତଳେ
ଜାଗିଲାଣି ଦିନର ଇସାରା,
ଲୁହ, ଲହୁ ଝାଳେ ଓଦା ଲୁହାର ଏ ରାଜଧାନୀ ସାରା
ସଜାଡ଼ିଚି ଆମ ପାଇଁ ଦେଖ, ଦେଖ କିପରି ତୋରଣ —
ପଛେ ଆମ କୃଷ୍ଣା ନଦୀ ପଡ଼ିରହେ ନୀଳ ଶାଳବନ ।
ରହିଯାଏ ବହୁଦୂରେ ଆଷାଢ଼ର ରହସ୍ୟର ସୀମା
ଆମର ଜଗତ ଛୁଇଁ ବାସ୍ତବର ଧୂସର ଦ୍ରାଘିମା ।।
ଡେଇଁ ଶତ ଗଡ଼ାଣି, ଉଠାଣି
ଜୁଆର ଉଜାଣି . . .
ସରୁ ସରୁ ମାଟିର ସଡ଼କ
ଏଇ ବିଂଶ ଶତାବ୍ଦୀର ଅଂକ
ଇଟା, ମାଟି, ପଥରର କଠିଣ ଜଗତେ
ମୁହିଁ ଆଗେ ତୁମେ ମୋ ପଶ୍ଚାତେ . . .
ଚାଲିଯିବା — ଫେରିଯିବା ପୁଣି . . .
ପଡ଼ିରହୁ ଆମ ପଛେ ଆଷାଢ଼ର ଶ୍ୟାମଳ ଛାଉଣୀ ।।        (ପାଂଡୁଲିପି)

'ପାଂଡୁଲିପି'ରେ ଗ୍ରଥିତ 'ରାଜକ୍ଷେମା' କବିତାରେ ମୋର ଇସ୍ତାହାର ପ୍ରକାଶ ପାଇଛି ବୋଲି ବହୁ ପାଠକ ଓ ସମାଲୋଚକଂକ ମତ। ସେଥିରୁ କେତେକ ଧାଡ଼ି ତଳେ ଦିଆଗଲା।

''ମୁଁ ସଚ୍ଚି ରାଉତରା'
(ନୁହେଁ ଟାଗୋର ବା ଶେଲୀ)
ମୁଁ ଏଇ ମାଟିର ଧରା
ଆଉ ଆକାଶର କବି
କାମ ନୁହେଁ ମୋ ଖାଲି ଆଂକିବା କାଗଜରେ ଛବି।
ପେଶାଦାର ଗାୟକ ମୁଁ ନୁହଁ
ତୁମେ ମୋ ଛପା ବହି ଯେତେବେଳେ ଛୁଅଁ
ଛୁଅଁ ନୂଆ ମଣିଷର ଛାତି,
ଏଇ ପୃଥିବୀର ସବୁ ମଣିଷ ଜାତି
ତାର ପ୍ରତିଟି ଖବର
ରୂପ ପାଏ କବିତାରେ ମୋର।
ଖାଲି ମୋ ସମାଜ ବା ଦେଶର ନୁହଁ,
ଆଗାମୀ ସମାଜର ହାସ୍ୟ-ଉଜ୍ଜ୍ୱଳ ମୁହଁ,
ତାର ନୂତନ ଖସଡ଼ା
ମଣିଷର ପ୍ରେମ, ଅଶ୍ରୁ, ସୁଖ, ଦୁଃଖ
ଖାପଛଡ଼ା,
ରୂପ ପାଏ ଇସ୍ତାହାରେ ମୋର
ଷୋଳଅଣା,
ସେ ଏକ ସଂବୋଧନ
ନୁହଁ ତା ତ ତଂତ୍ର, ମଂତ୍ର,
ଦ୍ୱାର କିଳି ଯୋଗର ସାଧନ।
ମଣିଷର ଲହୁ ଲୁହେ କବିତା ମୋ ନୀଳ,
ଜୀବନର
ସୁବର୍ଣ ଦଲିଲ୍।''

'କବିତା– ୧୯୬୨' ପୁସ୍ତକରେ ମଧ୍ୟ ବହୁ କବିତାରେ ଭୂଦେବୀର ମଧୁସ୍ପର୍ଶ ଅଛି। 'ପ୍ରେମ ଓ ଭୟ' କବିତାର ପ୍ରଥମ କେତୋଟି ଧାଡ଼ିରେ–

''ଭଲଲାଗେ ତାର
ନୀଳ ଭେଲ୍‌ଭେଟି ଦ୍ରାବିଡ଼ ଆଖିର କଂଠସ୍ୱର।
ସୁଂଦର ତାର ସ୍ଫଟିକ ଗ୍ରୀବାରେ

(ଦେଖାଯାଏ ଅବା)
ରେଶମୀ ଶ୍ବାସର ଚଳପ୍ରଚଳ
ଭଲ ଲାଗେ ତାର ଗ୍ରୀକ୍-ନାସିକା
ଭୃରୁ ତଳୁ ଉଁଚା ଖଂଡାଧାର।
ଭୟଲାଗେ ଯେଣୁ ସତରେ ମିଛରେ
ଶୁଂଘେ ମୋ ମୁହେଁ ଆଲ୍‌କୋହଲ।
(ମିଛ ବୋଲି ଯାହା ହୁଏ ପ୍ରମାଣିତ ଶତକଡ଼ା ପଂଚାନବେ ଥର)
ଭଲଲାଗେ ତାର ବୈଦେଶିକତା,
ଭଲ ଲାଗେ ତାର ନରମ-ରୁକ୍ଷ
ନାନା ଶବ୍ଦର ପତଂଗ – ଯା' ଘେରି
ଗୁଂଜନ କରେ ଦେହର ବୃକ୍ଷ। (କବିତା – ୧୯୬୨)

× × × ×

ଭୂଦେବୀ ଖୁବ୍ ଉଚ୍ଚମନା। ଛୋଟ ଛୋଟ ଜିନିଷକୁ ନଜରଦିଏନାହିଁ। ସେ ଅତିମାତ୍ରାରେ ଧର୍ମପରାୟଣା। ପ୍ରତି ସପ୍ତାହରେ ମଂଦିରକୁ ଯାଏ। କଲିକତାରେ ଥିଲାବେଳେ ଆମେ କୌଣସି ବାର ବା ତିଥି ମାନୁନଥିଲୁ। ଆମିଷ ଖାଇବାରେ କିଛି କଟକଣା ନଥିଲା। ମାତ୍ର ୧୯୬୨ ମସିହାରେ କଟକକୁ ଆସି ସ୍ଥାୟୀଭାବେ ରହିବା ପରେ ସେ ପ୍ରଥମେ ଗୁରୁବାର ଆମିଷଭକ୍ଷଣ ନିଷେଧକରିଦେଲା। ପରେ ତା ସହିତ ଶନିବାର ମଧ ଆମିଷ ନିଷିଦ୍ଧ ହେଲା। ଏସବୁ ସେ କୌଣସି ବୟସ୍କା ଆତ୍ମୀୟାଂକଠାରୁ ଦେଖାଦେଖି ଆରଂଭକରିଦେଲା। ମୋର ପିଲାମାନେ କିଂତୁ ବିଦେଶରେ ଥିବାରୁ ଏ ସବୁ ମାନଂତି ନାହିଁ।

**ମାର୍କସୀୟ ଦୃଷ୍ଟାଂତ** –ଅନେକ ବଂଧୁ ପ୍ରଶ୍ନ କରଂତି ଯେ ମୋର ମାର୍କସୀୟ ଦୃଷ୍ଟିକୋଣ ସତ୍ତ୍ୱେ ମୁଁ କାହିଁକି ଏବଂ କିପରି ଜଣେ ରାଜକୁମାରୀଂକୁ ବିବାହ କଲି; ବିଶେଷତଃ ସାକ୍ଷାତ୍‌କାରୀମାନେ ଏଭଳି ବହୁ ପ୍ରଶ୍ନ କରିଥାଂତି। ମୁଁ ସେମାନଂକୁ କହେ, ବିବାହ ଏକ ବ୍ୟକ୍ତିଗତ ପ୍ରଶ୍ନ; ଏଥିରେ କୌଣସି ମତବାଦର ସ୍ଥାନ ନାହିଁ। କିଏ କାହାକୁ ଭଲପାଇଲା ଏହା ତାର ଅଭିରୁଚି ଉପରେ ନିର୍ଭର କରେ। ନିଜେ କାର୍ଲ ମାର୍କସ୍ ମଧ ଜଣେ ରାଜବଂଶୀୟା ମହିଳାଂକୁ ବିବାହ କରିଥିଲେ। ପ୍ରିନ୍‌ସେସ୍ ଜେନୀ ମାର୍କସଂକ ପତ୍ନୀ ଥିଲେ। ତାଂକ ସମାଧି ମଧ ଲଂଡନରେ ହାଇଗେଟ୍ ଷ୍ଟ୍ରିଟ୍‌ରେ ଥିବା କବର ସ୍ଥାନରେ ମାର୍କସଂକ ସମାଧିକୁ ଲାଗି ରହିଛି। ମୁଁ ବହୁବାର ଲଂଡନ ଯିବା ଅବସରରେ ସେମାନଂକ ସମାଧି ନିକଟକୁ ଯାଇ ମୋର ଗଭୀର ସମ୍ମାନ ଜଣାଇଛି। ମାର୍କସ୍ ନିଜେ ଅଜସ୍ର ଦୁଃଖ, କଷ୍ଟ ଭିତରେ ଲଂଡନରେ ନିର୍ବାସିତ ଜୀବନ ଯାପନ କରୁଥିଲେ। ପ୍ରିନ୍‌ସେସ୍ ଜେନୀ ତାଂକର ସମସ୍ତ ଦୁଃଖ-କଷ୍ଟରେ ସମାନ ଅଂଶ ନେଉଥିଲେ।

**ବାଂଧବୀ ନୀତା –**

୧୯୫୩ ମସିହାରେ ମୋ ଜୀବନରେ ନୀତାର ଆବିର୍ଭାବ ହୁଏ। ନୀତାର ପୂରାନାମ ଥିଲା ନୀତା ଚକ୍ରବର୍ତୀ। ସେ ତାମିଲବଂଶଜାତ। ସେମାନଂକର କଲିକତାରେ ନିଜସ୍ୱ ଘର ଥିଲା॥ ନୀତା ମି. ଚକ୍ରବର୍ତୀ ନାମକ ଜଣେ ବଂଗାଳୀ କର୍ମଚାରୀଂକୁ ବିବାହକରିଥିଲା। ନୀତାର ବିବାହର ଅଳ୍ପ କେତେ ବର୍ଷ ପରେ ତାର ସ୍ୱାମୀ ମୃତ୍ୟୁମୁଖରେ ପଂଡତି। ନୀତାର ଇଂରାଜୀ ଜ୍ଞାନ ଖୁବ୍ ଭଲ ଥିଲା ଏବଂ ସେ ଭଲ ଟାଇପ୍ କରିପାରୁଥିଲା। ସେ ବଂଗଳାରେ ଭଲ କଥାବାର୍ତା କରିପାରୁଥିଲା। ସେ ମୋର ଇଂରାଜୀ କବିତା ଏବଂ ପ୍ରବଂଧ ଆଦି ଟାଇପ୍ କରିଦେଉଥିଲା। ସେ ଆମ ଘରକୁ ପ୍ରତି ସପ୍ତାହରେ ଥରେ ଦୁଇଥର ଆସୁଥିଲା। ମୋର ସ୍ତ୍ରୀ ଓ ପିଲାପିଲି ଛୁଟିସମୟରେ ଗୋଲାପଲ୍ଲୀ ଚାଲିଯାଉଥିଲେ। ତେଣୁ ମୁଁ ବଡ଼ ଏକାକୀ ବୋଧକରୁଥିଲି। ନୀତା ବେଳେବେଳେ ଆସି ମୋର ନିଃସଂଗତା ଦୂରକରୁଥିଲା ଏବଂ ଲେଖାଲେଖିରେ ଆତଂରିକ ସାହାଯ୍ୟ କରୁଥିଲା। ମୋର ସ୍ତ୍ରୀ ଓ ପିଲାପିଲାଂକ ସହିତ ଭଲଭାବରେ ସେ ମିଶିପାରୁଥିଲା। ସେ ବରାବର ଆମ ଘରକୁ ଆସୁଥିଲା।

ସାହିତ୍ୟକ୍ଷେତ୍ରରେ ତାର ବେଶ୍ ପ୍ରବେଶଥିଲା। ସେ ମୋ'ଠୁ ବହୁ ଗଳ୍ପ ଉପନ୍ୟାସ ନେଇ ପଢୁଥିଲା। ଟଲଷ୍ଟୟ, ଗର୍କି, ଜୋଲା, ଆଲଡ଼ସ୍ ହକସିଲି ପ୍ରଭୃତି ପଢ଼ିବାକୁ ସେ ଭଲପାଉଥିଲା। କାୟମନୋବାକ୍ୟରେ ସେ ଥିଲା ମୋର ବଂଧୁ। କେତେଥର ମୁଁ ତାକୁ ପଚାରିଛି, ଆମ ସଂପର୍କକୁ କଣ କୁହାଯିବ? କଣ ଏହାର ସଂଜ୍ଞା? ନୀତା କହେ, ଫ୍ରେଂଡ୍। ଫ୍ରେଂଡ୍ ହିଁ ଏକମାତ୍ର ଶବ୍ଦ, ଏହାଠୁ ବଡ଼ କିଛିନାହିଁ। ସେ ମୋତେ ବହୁ ଚିଠିପତ୍ର ଲେଖୁଥିଲା। ମୁଁ ତାର ପ୍ରତ୍ୟେକ ଚିଠିର ଜବାବ ଦେଇଛି। ସବୁ ଆବେଗ ଓ ଅନୁଭୂତି ଅଭିଜ୍ଞତାରେ ପରିଣତ ହୋଇଛି। ଏହାକୁ ମଧ୍ୟ କବିତାର ଏକ ସଂଜ୍ଞା ବୋଲି କୁହାଯାଇଥାଏ।

ଆମ ସଂପର୍କ ଯେତେ ଦେହତାପ-ତପ୍ତ ଥିଲା, ତା'ଠାରୁ ବେଶି ଥିଲା ବୌଦ୍ଧିକ ଅତଂରଂଗ; ଯାହା ସ୍ୱେଚ୍ଛ୍ୟା ତୋରଣ ଛୁଇଁପାରିଥିଲା। ଆମେ କଟକ ଆସିବା ପରେ ସେ କେତେ ଥର ତାର ଦ୍ୱିତୀୟ ସ୍ୱାମୀ ମିହିର୍ ଦାସଂକ ସଂଗେ କଟକ ଆସି ଆମକୁ ଦେଖିଯାଇଛି।

ନୀତା ଉପରେ ଲିଖିତ ମୋ କବିତା 'ଉତ୍ତରତିରିଶ', ଯାହା ଝଂକାରରେ ପ୍ରକାଶପାଇଥିଲା। ତାହା 'ସ୍ୱଗତ' ପୁସ୍ତକରେ ସ୍ଥାନିତହୋଇଛି।

**ଉତ୍ତର-ତିରିଶ –**

(ନୀତାକୁ –)

''ବର୍ଷାଢ଼୍ୟ ଜୁଲାଇ ପରେ / ଅଂଧକାରେ – ନକ୍ଷତ୍ର ଉହାଡ଼େ
ସ୍ତବ୍ଧ ନୀଳ ଇନ୍ଦ୍ରନୀଳ ରାତି / (ଟପି ଗୁହା, ନିମ୍ନ ଭୂମି, ସିକ୍ତ ତୋଟା
ଚକ୍‌ଚକ୍ ସାଦା ରାତି / ବୈଦ୍ୟୁତିକ ସତ୍ତାର ଆଷାଢ଼େ)

ନୀଳ ଦୁଧେ ଧୁଆ ସାଦାମାଟି / ଉତ୍ତର-ତିରିଶ ଟପି
ନୂତନ ଘାସର ହ୍ରଦେ / ଲଂଘି ଏଇ ପ୍ରାତ୍ୟହିକ
ଧଳା ଧଳା ଉଡ଼ଂତା ହଂସର / ସୀମିତ ଶୋଲକେ
ଛାୟା ଖେଳେ, ମନେହୁଏ / ନୂତନ ନକ୍ଷତ୍ର ଆଶେ
କି ଆଶ୍ଚର୍ଯ୍ୟ ଉଡ଼ଂତା ମାଛର / ଜଳି ପୋଡ଼ି ତୁମଗି ସେ
ଡେଣାର କଂପନ ଲାଗେ / ଚବିଶ ବୈଶାଖେ
ସମାବୃତ ଜୀବନେ ବା ମୋର / ମୁଁ ଜଣ ସୁନାର ସିଂହ
ଅନଂତ ପରିଧି ପଥେ / ତୁମଗି ସେ ପ୍ରାଣଘନ
ମୋର ଓ ତୁମର'' / ସାଂଦ୍ର ତମସାରେ
ସରଳ ମରାଳରେଖା / ବର୍ଷଣ ସୁରଭି କେଶେ
ତରଳ ଇଥର୍ ନୀଳ ଭେଦି / ପଥ ଭୁଲି ପଥ ଖୋଜି
ଧୂସର ଆକାଶ କୋପେ / ପୁଣି ଭୁଲି ପଥ ବାରେ ବାରେ
ସୃଷ୍ଟି କରେ ଗତିର ଧ୍ରୁପଦୀ, / ଜାଗି ଉଠେ, ଜଳି ଉଠେ
ମୁଁ କି ସୀମାଂତରକ୍ଷୀ / ସ୍ୱପ୍ନ ସ୍ୱପ୍ନାଂତରେ
ପ୍ରତ୍ୟାବୃତ୍ତ ନିରୋଳା ସୈନିକ / ପ୍ରାଂଗଣୁ ପ୍ରାଂତରେ।
ଏଇ କି ଛାଉଣୀ ମୋର / ଜୀବନେ ନୂତନ ବନ୍ୟା
ଦୁଇଟି ଆଖିର ଛାୟାଲୋକ ? / ଘୁମଘୋର କେଶର ଶ୍ରାବଣ
ପୃଥିବୀ ଆମର ନୁହେଁ / ବନ୍ୟା ଫୁଲେ ସୁରଭିତ
ଆମେ ଦୁଇ ସୌର ନରନାରୀ / ରାତ୍ରି, ତାରା ଆକାଶ ଅଂଗନ।
ତୀର୍ଯକ୍ ଜୀବନପଥେ / ଗୃହରୁ ପ୍ରାଂତରେ, ପଥେ
ବିକେଂଦ୍ରିତ ସୂର୍ଯ ସାକ୍ଷୀ କରି / ପୃଥିବୀରୁ ଦିଗ୍‌ବଳୟ ଯାଏ
ପ୍ରତିଷ୍ଠିତ ପ୍ରାଣକେଂଦ୍ରେ ? / ଉତ୍ତର-ତିରିଶ ଡେଇଁ
ଆକାଶେ ପ୍ରାଂତରେ / (ମୁଁ ଜଣ ବଳାକା)
ଗୃହର ଅଂଗନ ଡେଇଁ / ସ୍ୱପ୍ନରୁ ସ୍ୱପ୍ନାଂତରେ ଧାଏଁ ?
ଦୈନଂଦିନ ଜୀବନତତ୍ତ୍ୱରେ / ପ୍ରାଣର ଉତ୍ତାପ ପାଇଁ
ତୁମକୁ ଭେଟେ ମୁଁ ନଭେ ଚକ୍ରବାଳେ / ହିମ ଜଡ଼ ଶୀତେ –
ସପ୍ତର୍ଷିର ଦ୍ୱାରେ / ଏକ ମୂଳ ଇଂଗିତରୁ
ମୁଁ ଜଣ ସୁନାର ସିଂହ / ଆଉ ଏକ ସ୍ୱପ୍ନିଳ ଇଂଗିତେ।''
ଜାଗିଉଠେ ପାହାଡ଼େ ପାହାଡ଼ / ବନୁ ବନାଂତରେ ପୁଣି (ସ୍ୱଗତ)

ମୋର-ନୀତାର ସଂପର୍କ ଥିଲା ସଂପୂର୍ଣ ମାନବିକ। ଯେପରି ''ପଥ ବାଂଧିଦେଇଥିଲା ବଂଧନହୀନ ଗ୍ରଂଥି''। ଏହାର ଆରଂଭ ଓ ଶେଷ କେବଳ ମୁକ୍ତି, ମୁକ୍ତି, ମୁକ୍ତି।

# ଦ୍ୱାତ୍ରିଂଶ ଉଲ୍ଲାସ

## ଆମେରିକା ଓ ୟୁରୋପରେ ଛଅ ମାସ

**ହାର୍ଭାଡ଼ ବିଶ୍ୱବିଦ୍ୟାଳୟ ଆଂତର୍ଜାତିକ କଳା-ବିଜ୍ଞାନ ସେମିନାର୍ –**

୧୯୫୫ ମସିହାରେ ମୁଁ ଆମେରିକାର ହାର୍ଭାଡ଼ ବିଶ୍ୱବିଦ୍ୟାଳୟରେ ଆଂତର୍ଜାତିକ କଳା-ବିଜ୍ଞାନ ସେମିନାର୍‌ରେ ଭାରତୀୟ ସାହିତ୍ୟର ପ୍ରତିନିଧି ହିସାବରେ ଯୋଗଦେବା ପାଇଁ ନିମଂତ୍ରଣ ପାଇଥିଲି । ପତ୍ରଟି ଲେଖିଥିଲେ ହାର୍ଭାଡ଼ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗର ଆସୋସିଏଟ୍ ପ୍ରଫେସର ଡ. ହେନରୀ ଏ. କିସିଂଜର । ଡ. କିସିଂଜର ପରେ ଆମେରିକାର ସ୍ୱରାଷ୍ଟ୍ର ସଚିବ ହୋଇଥିଲେ । ସେ ଭିଏତ୍‌ନାମର ପ୍ରଧାନ-ମଂତ୍ରୀଂକ ସହିତ ଶାଂତି ପାଇଁ ଯୁଗ୍ମ-ଭାବରେ ନୋବେଲ ପୁରସ୍କାର ପାଇଥିଲେ । ତାଂକ ଚିଠିଟି ତଳେ ଦିଆଗଲା ।

Harvard University International Seminar of Arts & Science
Cambridge, U.S.A. 7.4.1955

Dear Mr. Rout-Ray

I am happy to inform you that you have been selected as a participant in the 1955 session of the Harvard International Seminar of Arts & Science lasting from July 4 to August 24,1955. I wish the technical arrangements were less complex making it possible for me to write you a more personal letter. But technical problems loom so large at the moment, I will avail myself of the opportunity to speak to you them.

The Harvard University will assume all your expenses, including air passage to and from the United States, room, board and an adequate weekly allowance for your personal expenses.

In order to assist our planing, we should appreciate your notifying us whether you can take your place in the seminar.

Looking forward to meeting you in Harvard.

Sincerely yours
Henry A. Kissinger.

ଡ. କିଂସିଜର ହାର୍ଭାଡ଼ ବିଶ୍ୱବିଦ୍ୟାଳୟ ଆଂତର୍ଜାତିକ କଳା-ବିଜ୍ଞାନ ସେମିନାରର ଏକ୍ଜିକ୍ୟୁଟିଭ୍ ଡିରେକ୍ଟର ଥାଂତି। ତାଂକ ଚିଠିର ସାରମର୍ମ ହେଲା— ଆମେରିକାର କେମ୍ବ୍ରିଜ୍ ନଗରୀରେ ଅବସ୍ଥିତ ହାର୍ଭାଡ଼୍ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଆଂତର୍ଜାତିକ କଳା-ବିଜ୍ଞାନ ସେମିନାର ୧୯୫୫ ମସିହା ଜୁଲାଇ ୪ ତାରିଖରୁ ଅଗଷ୍ଟ ୨୪ ତାରିଖ ପର୍ଯଂତ ଅନୁଷ୍ଠିତ ହେବ। ଏଥିରେ ମୁଁ ଭାରତର ପ୍ରତିନିଧି ହିସାବରେ ଅଂଶଗ୍ରହଣ କରିବାକୁ ମନୋନୀତ ହୋଇଛି। ଯିବାଆସିବା ଉଡ଼ାଜାହାଜ ଖରଚ ଏବଂ ସେଠାରେ ରହିବାର ବ୍ୟବସ୍ଥା ଓ ଖାଇବା-ପିଇବା ଖରଚ ହାର୍ଭାଡ଼ ବିଶ୍ୱବିଦ୍ୟାଳୟ ବହନକରିବ। ଏହାଛଡ଼ା ସେଠାରେ ରହଣି ସମୟରେ ଯଥେଷ୍ଟ ପରିମାଣରେ ସାପ୍ତାହିକ ଭତ୍ତା ମଧ୍ୟ ବ୍ୟକ୍ତିଗତ ଖରଚ ପାଇଁ ବିଶ୍ୱବିଦ୍ୟାଳୟ ଦେବ। ମୁଁ ସେମିନାର୍‌ରେ ଯୋଗଦେବି କି ନାହିଁ, ତାହା ତାଂକୁ ଜଣାଇବାକୁ ସେ ଅନୁରୋଧ କରିଥିଲେ।

କେଶୋରାମ କଟନ୍ ମିଲ୍‌ରେ ଜେନେରାଲ୍ ମ୍ୟାନେଜର ଥାଂତି ବି.ଏମ୍. ବାଗ୍ରୀ ଏବଂ ମ୍ୟାନେଜର ଥାଂତି ଆର୍.ଏନ୍. ଶର୍ମା ଏବଂ ଡି.ପି. ତିୱାରୀ। ସେମାନେ ମୋ ଚିଠିଟି ଦେଖି ଖୁସିହେଲେ। ମୋତେ ଛଅମାସ ସବେତନ ଛୁଟି ମଂଜୁର କରିବାକୁ ରାଜିହେଲେ। ହାର୍ଭାଡ଼ ବିଶ୍ୱବିଦ୍ୟାଳୟ ସେମିନାର୍‌ରେ ମୁଁ ପ୍ରାୟ ଦୁଇମାସ ରହିବାର କାର୍ଯକ୍ରମ ଥିଲା। ଏହାଛଡ଼ା ଆମେରିକାରେ ବିଭିନ୍ନ ବଡ଼ ବଡ଼ କାରଖାନାମାନଂକରେ ଇଂଡଷ୍ଟ୍ରିଆଲ୍ ରିଲେସନ୍‌ସ ଇତ୍ୟାଦି ପର୍ଯବେକ୍ଷଣ କରିବାପାଇଁ ଏକମାସ ଏବଂ ସୁଇଜରଲ୍ୟାଂଡ଼ର ଜେନଭାଠାରେ ଆଇ.ଏଲ୍.ଓ. ବା International Labour Organigationରେ ଶ୍ରମିକ ମଂଗଳ କାର୍ଯକ୍ରମ ଅଧ୍ୟୟନ କରିବାପାଇଁ ଏକ ମାସ— ଏହିପରି ଛଅମାସ ଛୁଟି ମିଲ୍ ମଂଜୁର କରିଥିଲେ। ପରେ କିଂତୁ ମୁଁ ଆମେରିକାରେ ପହଂଚିବା ପରେ ଲଂଡନର କେତେକ ସାହିତ୍ୟିକ ସଂସ୍ଥା କେତେକ ସଭାସମିତି ଓ ଆଲୋଚନା-ଚକ୍ରରେ ଯୋଗଦେବାପାଇଁ ମୋତେ ଆମଂତ୍ରଣକଲେ। ଇଟାଲୀର ରୋମ୍‌ରେ ଥିବା 'ଇଟାଲିୟା' ନାମକ ସାହିତ୍ୟପତ୍ରିକା ଏବଂ ସଂସ୍ଥା ଏବଂ ଫ୍ରାନ୍‌ସର ରାଜଧାନୀ ପ୍ୟାରିସ୍‌ରେ ଥିବା ଶର୍‌ବୋଁ ବିଶ୍ୱବିଦ୍ୟାଳୟ ସହିତ ସଂପୃକ୍ତ ସାହିତ୍ୟ ସଂସ୍ଥା, ମୋତେ ସେଠାରେ ସେମାନଂକ ସାହିତ୍ୟ ସଭାରେ ଭାଷଣ ଦେବାପାଇଁ ଆମଂତ୍ରଣ ଜଣାଇଥିଲେ। ଏହାଛଡ଼ା ପଶ୍ଚିମ ଜର୍ମାନୀରେ ଫ୍ରାନ୍‌କ ଫୋର୍ଟର ଏକ ସାଂସ୍କୃତିକ କାର୍ଯକ୍ରମରେ ଯୋଗଦେବାପାଇଁ ସେମାନେ ନିମଂତ୍ରଣ କରିଥିଲେ। ଆମେରିକାରୁ ଫେରି ମୁଁ ଲଂଡନରେ ଦୁଇମାସ ରହିଥିଲି। ଲଂଡନର ଏକ ବୃହତ୍ତମ ଶିଳ୍ପନଗରୀ ମାଂଚେଷ୍ଟରରେ ପ୍ରବାସୀ ଭାରତୀୟମାନଂକର ଏକ ସାଂସ୍କୃତିକ ସମ୍ମିଳନୀରେ ଭାଷଣ ଦେବାପାଇଁ ମୁଁ ତତ୍‌କାଳିନ ଭାରତୀୟ ହାଇକମିସନ୍‌ର ବିଜୟଲକ୍ଷ୍ମୀ ପଂଡିତଂକ ସହ ଯୋଗଦେଇଥିଲି। ଆମେ ଗୋଟିଏ ଟ୍ରେନ୍‌ରେ ଲଂଡନରୁ ମାଂଚେଷ୍ଟର ଯାଇଥିଲୁ। ସେସବୁ ବିଷୟ ପରେ ଯଥାକ୍ରମେ କୁହାଯିବ। ଏହିପରି ବିଦେଶରେ ବିଭିନ୍ନ

ଦେଶରେ ମୋର କାର୍ଯକ୍ରମ ସାରି ଭାରତକୁ ଫେରିବାପାଇଁ ମୋତେ ପ୍ରାୟ ଆଠମାସ ସମୟ ଲାଗିଯାଇଥିଲା। ହେଲେ ଏହା ମୋର ଆଂତର୍ଜାତିକ ସଂପର୍କ ଏବଂ ଯୋଗାଯୋଗ ପରିସର ବଢ଼ାଇବାରେ ବିଶେଷ ସାହାଯ୍ୟ କରିଥିଲା। ବର୍ତମାନ ମୁଁ ପୂର୍ବପ୍ରସଂଗକୁ ଫେରିଯାଉଛି।

ଭୂଦେବୀ ଓ ମୋ ପିଲାପିଲି ଗୋଲାପଲ୍ଲୀ ଚାଲିଗଲେ। ମୁଁ ହାର୍ଭାଡ୍ ବିଶ୍ୱବିଦ୍ୟାଳୟ ଟ୍ରାଭେଲ୍ ଏଜେଂଟଂକ ବ୍ୟବସ୍ଥା ଅନୁଯାୟୀ କଲିକତାରୁ ଉଡ଼ାଜାହାଜ ଯୋଗ ଦିଲ୍ଲୀ ଗଲି। ସେଠାରେ ଦୁଇଦିନ ରହି ବଂବେ ହୋଇ ଏୟାର ଇଂଡିଆର ଏକ ବୋଇଂଗ ବିମାନରେ ଲଂଡନ ଯାତ୍ରାକଲି। ବିମାନଟି ପ୍ରାୟ ରାତି ୧୦ଟାବେଳେ ବଂବେ ବିମାନଘାଟି ଶାଂତାକ୍ରୁଜ୍ ଛାଡ଼ିଲା। କିଛି ସମୟ ପରସ୍ପର ସହିତ କଥାବାର୍ତା କରିବାପରେ ଆମେ ଯାତ୍ରୀମାନେ ବିମାନରେ ପ୍ରାୟ ଶୋଇପଡ଼ିଥିଲୁ। ରାତି ପ୍ରାୟ ୧ଟାରେ ଏୟାର ହୋଷ୍ଟେସ୍‌ର ଘୋଷଣା ବାଜିଉଠିଲା –

''ଉଠିପଡ଼ଂତୁ; ଆମେ ବଂବେ ବିମାନଘାଟିରେ ଓହ୍ଲାଉଛୁଁ।''

ଆମେ ସବୁ ଧଡ଼ପଡ଼ ହୋଇ ଉଠିପଡ଼ିଲୁ। କଥା କ'ଣ, ଆମେ ତ ରାତି ୧୦ଟାରେ ବଂବେ ଛାଡ଼ିଥିଲୁ; ପୁଣି ବଂବେରେ ଓହ୍ଲାଉଛୁ କ'ଣ ? ପରସ୍ପରଠାରୁ ବୁଝିଲୁ, ବିମାନଟି ଆରବସାଗର ଉପରେ କିଛି ଦୂର ଯିବା ପରେ ଯାଂତ୍ରିକ ତ୍ରୁଟି ଯୋଗୁଁ ପୁଣି ବଂବେ ଫେରିଆସିଛି। ଆମେ ବଂବେରେ ପହଂଚିବା ପରେ ବିମାନ କଂପାନୀର ଆୟୋଜିତ ବ୍ୟବସ୍ଥା ଅନୁସାରେ ଆମକୁ ତାଜ ହୋଟେଲ୍‌ରେ ପହଂଚାଇଦିଆଗଲା। ଆମେ ସେଠାରେ ଦୁଇଦିନ ରହିଲୁ; ତା'ପରେ ଅନ୍ୟ ଗୋଟିଏ ବିମାନରେ ଲଂଡନ ଗଲୁ। ବାଟରେ ଫ୍ରାଂକ୍‌ଫର୍ଟ, ପ୍ୟାରିସ ଓ ରୋମ୍ ପ୍ରଭୃତି ବିମାନ ବନ୍ଦରରେ କିଛି ସମୟ ରହିଥିଲୁ।

ଲଂଡନରେ ପହଂଚି ମୁଁ ରସେଲ୍ ସ୍କୋୟାରରେ ଥିବା ଇଂପିରିୟାଲ୍ ହୋଟେଲ୍‌ରେ ପାଂଚଦିନ ରହିବାପାଇଁ ବ୍ୟବସ୍ଥା କରାଯାଇଥିଲା। ମୁଁ ଲଂଡନରେ ଥିବା ସମୟରେ ଭାରତର ପ୍ରସିଦ୍ଧ କୃଷକନେତା ଏବଂ ପାର୍ଲାମେଂଟ ସଭ୍ୟ ପ୍ରଫେସର ରାଂଗା ସେତେବେଳେ କୌଣସି କାମରେ ଲଂଡନ ଯାଇଥିଲେ। ସେ ଅନ୍ୟ ଏକ ହୋଟେଲରେ ରହୁଥିଲେ। କେଜାଣି କିପରି, ମୁଁ ଲଂଡନରେ ଅଛି ଜାଣି ସେ ଇଂପିରିୟାଲ ହୋଟେଲ୍‌କୁ ଆସି ମୋତେ ଦେଖିଯାଇଥିଲେ। ତାଂକୁ ବହୁଦିନ ପରେ ଭେଟି ମୁଁ ବଡ଼ ଆନଂଦିତ ହୋଇଥିଲି। ଲଂଡନରେ ଥିବାବେଳେ ମୁଁ ମୋର ଦାଦାଝିଅ ଭଉଣୀ ସତ୍ୟବତୀର ସ୍ୱାମୀ ମଧୁସୂଦନ ଦାସଂକୁ ସେ ରହୁଥିବା ସ୍ଥାନରେ ଭେଟି ତାଂକୁ ଭାରତ ଫେରିଆସିବା ପାଇଁ ବୁଝାଇଥିଲି।

**ଆମେରିକା ଅଭିମୁଖେ –**

ଲଂଡନରେ ଛଅ-ସାତ ଦିନ ରହଣି ଭିତରେ ମୁଁ ବ୍ରିଟିଶ୍ ମ୍ୟୁଜିୟମ୍‌ରେ ବହୁତ ସମୟ କଟାଇଥିଲି। ସେଠାରେ ଥିବା କୋଣାର୍କରୁ ଆନୀତ ନବଗ୍ରହ

ମୂର୍ତ୍ତି ବିଶେଷ ଆଗ୍ରହ ସୃଷ୍ଟିକରିଥିଲା। ଏଭଳି ସୁଂଦର ନିଖୁଣ ଭାସ୍କର୍ଯ୍ୟ ସମଗ୍ର ପୃଥିବୀରେ ମୁଁ ଅନ୍ୟ କେଉଁଠାରେ ଦେଖିନାହିଁ। ସେଗୁଡ଼ିକୁ ଓଡ଼ିଆ ଶିଳ୍ପୀର ଉତ୍‌କୃଷ୍ଟ କଳାକୃତିର ଶ୍ରେଷ୍ଠ ନିଦର୍ଶନ କୁହାଯାଇପାରେ। ସେ ମୂର୍ତ୍ତିଗୁଡ଼ିକୁ ବ୍ରିଟିଶ୍ ସରକାର ଓଡ଼ିଶାରୁ ନେଇଯାଇ ବ୍ରିଟିଶ୍ ମ୍ୟୁଜିୟମ୍‌ରେ ସ୍ଥାପନକରିଛଂତି। ଏହାଦ୍ୱାରା ଓଡ଼ିଶା ଦରିଦ୍ରତର ହୋଇଛି ସତ, ମାତ୍ର ବିଶ୍ୱ ପରିପ୍ରେକ୍ଷୀରେ ଏହି କଳାକୃତିଗୁଡ଼ିକ ଓଡ଼ିଶାର ଶିଳ୍ପନୈପୁଣ୍ୟ ଓ ସୃଜନୀ ପ୍ରତିଭାର ପରିଚୟ ପ୍ରଦାନ କରୁଛଂତି।

ମୁଁ ଲଂଡନରୁ କ୍ୱିନ୍ ମେରୀ ନାମକ ଜାହାଜରେ ଆମେରିକା ଯାଇଥିଲି। ଭାରତରୁ ଲଂଡନ୍ ପର୍ଯ୍ୟଂତ ବିମାନ ଯୋଗେ ଯାଇ ସେଠାରୁ ଜଳପଥରେ ଆମେରିକା ଯିବା ଆମ ଗନ୍ତବ୍ୟକ୍ରମରେ ନିର୍ଦ୍ଦିଷ୍ଟ ଥିଲା। ଲଂଡନରୁ ଜଳପଥରେ ଆମେରିକା ଯିବାକୁ ପ୍ରାୟ ପାଂଚଦିନ ସମୟ ଲାଗିଥିଲା। ଆଂଟଲାଂଟିକ୍ ମହାସାଗର ଉପରେ କ୍ୱିନ୍ ମେରୀ ତାର ପତିଆରା ମେଲାଇ ସଗର୍ବରେ ଚାଲିଥାଏ।

ପୃଥିବୀର ସବୁଠାରୁ ବିଳାସପୂର୍ଣ୍ଣ ଜାହାଜ ହେଉଛଂତି କ୍ୱିନ୍ ମେରୀ ଏବଂ କ୍ୱିନ୍ ଏଲିଜାବେଥ୍। ଏହି ଦୁଇଟିଯାକ ଜାହାଜ ଲଂଡନରୁ ଆଂଟଲାଂଟିକ୍ ମହାସାଗର ଦେଇ ନିୟୁୟର୍କ ଯାତ୍ରା କରିଥାଆଂତି। ଏହି ଜାହାଜରେ ସବୁ ପ୍ରକାର ସୁବିଧା-ସୁଯୋଗ, ଯଥା– ନାଚଘର, କ୍ରୀଡ଼ାସ୍ଥଳି ପ୍ରଭୃତି ବିଶେଷ ଆକର୍ଷଣୀୟ। ବ୍ୟାଡ୍‌ମିଂଟନ୍, ଭଲିବଲ୍, ଟେବୁଲ୍‌ଟେନିସ୍ ପ୍ରଭୃତି ଖେଳିବାର ବ୍ୟବସ୍ଥା ଥାଏ। ତାହାଛଡ଼ା ବଲ୍‌ଡାନ୍‌ସ ରୁମ୍ ଓ ଅର୍କେଷ୍ଟ୍ରା ପ୍ରଭୃତି ଥାଏ।

ମୁଁ ସକାଳ ନଅଟାରେ ପ୍ରାତଃରାଶ ସାରି ଡେକ୍ ଉପରେ ଯାଇ ଦୁଇ-ତିନି ଘଂଟା ସୂର୍ଯ୍ୟକିରଣ ଓ ମୁକ୍ତ ସମୁଦ୍ରବାୟୁ ସେବନ କରୁଥିଲି। ଉପରବେଳା ସଂଧ୍ୟାରୁ ରାତି ଆଠଟା ପର୍ଯ୍ୟଂତ ଡେକ୍ ଉପରେ ଏକ ଆରାମ ଚୌକିରେ ବସି କଟାଇଦେଉଥିଲି। ସଂଗୀ ଓ ସଂଗିନୀ ମଧ୍ୟ ମିଳିଯାଉଥିଲେ। ତାରକାଖଚିତ ମୁକ୍ତ ଆକାଶ ତଳେ ଆଂଟଲାଂଟିକ୍‌ର ଉତ୍ତାଳ ଲହରିମାଳା ଉପରେ ବିରାଟ ଜାହାଜଟା ହଲି ହଲି ଚାଲିଥାଏ। ସେ ଦୃଶ୍ୟ ଜୀବନରେ ଭୁଲିହେବନାହିଁ। ଜାହାଜରେ ଖାଦ୍ୟପେୟର ସୁଂଦର ବ୍ୟବସ୍ଥା ଥିଲା।

ପାଂଚଦିନ ପରେ ଜାହାଜ ନିୟୁୟର୍କରେ ପହଂଚିଲା। ସେଠାରେ ଦୁଇଦିନ ନିର୍ଦ୍ଦିଷ୍ଟ ହୋଟେଲ୍‌ରେ ରହି ବିମାନଯୋଗେ ମାସାଚୁସେଟ୍‌ସ୍ ରାଜ୍ୟର କେଂବ୍ରିଜ୍ ନଗରୀରେ ପହଂଚିଲି।

**ହାର୍ଭାଡ଼ ବିଶ୍ୱବିଦ୍ୟାଳୟ –**

କେଂବ୍ରିଜ୍‌ଠାରେ ହାର୍ଭାଡ଼ ବିଶ୍ୱବିଦ୍ୟାଳୟ ଅବସ୍ଥିତ। ଏହି ବିଶ୍ୱବିଦ୍ୟାଳୟଟି ଆମେରିକାର ପ୍ରାଚୀନତମ ଏବଂ ମର୍ଯ୍ୟାଦାବଂତ ଶିକ୍ଷାନୁଷ୍ଠାନ। ଏହା ମାସାଚୁସେଟ୍‌ସ 'ବେ' କଲୋନୀ ଜେନେରାଲ୍ କୋର୍ଟ ଦ୍ୱାରା ୧୬୩୬ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ ହୋଇଥିଲା। ଜନ୍ ହାର୍ଭାଡ଼ଂକ ନାମାନୁସାରେ ଏହା ନାମିତ ହୋଇଥିଲା। ସେ

ହାର୍ଭାଡ଼ ବିଶ୍ୱବିଦ୍ୟାଳୟର ଅନ୍ୟତମ ପ୍ରତିଷ୍ଠାତା ଥିଲେ। ଜନ୍ ହାର୍ଭାଡ଼ ଥିଲେ ଜଣେ ଇଂରେଜ ପ୍ୟୁରିଟାନ୍। ତାଂକର ଜନ୍ମହୋଇଥିଲା ଲଂଡନ୍‌ର ସାଉଥ୍‌ୱାର୍କଠାରେ ୧୬୦୭ ମସିହାରେ। ସେ ୧୬୩୮ ମସିହାରେ ପ୍ରାଣତ୍ୟାଗ କରିଥିଲେ। ହାର୍ଭାଡ଼ ବିଶ୍ୱବିଦ୍ୟାଳୟର ପରିସର ମଧ୍ୟରେ ତାଂକର ଏକ ପ୍ରକାଂଡ ବ୍ରୋଂଜ୍‌ମୂର୍ତି ରହିଛି। କେଂବ୍ରିଜ୍ ସହରଟି ବୋଷ୍ଟନ୍ ନଗରୀର ଉପକଂଠରେ ଅବସ୍ଥିତ। ପ୍ରଥମେ ଏ ସ୍ଥାନର ନାମ ନିୟୁଏଟାଉନ୍ (Newetowne) ଥିଲା। ଇଂଗ୍ଲାଂଡ୍‌ର ସୁପ୍ରସିଦ୍ଧ ବିଦ୍ୟାନଗରୀ କେଂବ୍ରିଜ୍ ନାମାନୁସାରେ ଏହା ନାମାଂତରିତ ହୋଇଥିଲା। କ୍ରମେ ହାର୍ଭାଡ଼ କଲେଜ୍‌ଟି ହାର୍ଭାଡ଼୍ ବିଶ୍ୱବିଦ୍ୟାଳୟରେ ପରିଣତ ହେଲା। ଇଂଲଂଡର ଅକ୍‌ସଫୋର୍ଡ ଓ କେଂବ୍ରିଜ୍ ବିଶ୍ୱବିଦ୍ୟାଳୟ ପରି ଏହା ମଧ୍ୟ ଆମେରିକାରେ ଏକ ସ୍ୱତଂତ୍ର ମର୍ଯାଦାର ଅଧିକାରୀ।

**ଆଂତର୍ଜାତିକ କଳା-ବିଜ୍ଞାନ ସେମିନାର –**

ହାର୍ଭାଡ଼ ବିଶ୍ୱବିଦ୍ୟାଳୟ ଆଂତର୍ଜାତିକ କଳା-ବିଜ୍ଞାନ ସେମିନାରକୁ ପୃଥିବୀର ବିଭିନ୍ନ ଦେଶରୁ ୧୯ ଜଣ ପ୍ରତିନିଧି ନିମଂତ୍ରିତ ହୋଇଥାଆଂତି। ଏହି ଦେଶଗୁଡ଼ିକ ମଧ୍ୟରେ ଇଂଲାଂଡ, ଯୁକ୍ତରାଷ୍ଟ୍ର ଆମେରିକା, ଫ୍ରାନ୍‌ସ, ଇଟାଲୀ, ପଶ୍ଚିମ ଜର୍ମାନୀ, ସ୍ପେନ୍, ଇରାନ୍, ଇରାକ୍, ଭାରତ, ଜାପାନ୍, ମିଶର ଓ ଇଂଡୋନେସିଆ ପ୍ରଭୃତି ଦେଶମାନଂକରୁ ସାହିତ୍ୟିକ ଏବଂ ରାଜନୀତି, ଅର୍ଥନୀତି ବିଭାଗ ପାଇଁ ପ୍ରତିନିଧିମାନେ ବଛାହୋଇ ଆସିଥାଆଂତି। ଭାରତରୁ କଳାବିଭାଗ ପାଇଁ ମୁଁ ଏକମାତ୍ର ପ୍ରତିନିଧି ଥିଲି। ରାଜନୀତି ବିଭାଗ ପାଇଁ ଭାରତସରକାରଂକ ସିଭିଲ୍ ଏଭିଏସନ୍ ମିନିଷ୍ଟ୍ରୀର ସଚିବ ଶ୍ରୀ ଭୋଜ୍‌ୱାନୀ ଏବଂ ଅର୍ଥନୀତି ବିଭାଗ ପାଇଁ ଶ୍ରୀ ଲକ୍ଷ୍ମୀଚାଂଦ୍ ଜୈନ୍ ନିମଂତ୍ରିତ ହୋଇ ଆସିଥିଲେ। ଏହି ସେମିନାର୍‌ର ନିର୍ଦ୍ଦେଶକ ଥିଲେ ଡ. ହେନେରୀ ଏ. କିସିଂଜ୍‌ର। ସେ ହାର୍ଭାଡ଼୍‌ର ଇତିହାସ ବିଭାଗର ଆସୋସିଏଟ୍ ବା ସହଯୋଗୀ ପ୍ରଫେସର୍ ଥିଲେ। ମହାନିର୍ଦ୍ଦେଶକ ଥିଲେ ପ୍ରଫେସର ଡ. ଏ.ଏଲ୍. ଏଲିୟଟ୍। ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ଆମକୁ ରହିବାପାଇଁ ରୁମ୍ ବା ଆପାର୍ଟମେଂଟ ଯୋଗାଇଦିଆଯାଇଥିଲା। ନିକଟରେ ଥିବା କ୍ୟାଂଟିନ୍‌ରେ ଆମର ବ୍ରେକ୍‌ଫାଷ୍ଟ, ଲଂଚ୍ ଓ ଡିନର୍‌ର ବ୍ୟବସ୍ଥା କରାଯାଇଥିଲା। ଏହାଛଡ଼ା ପ୍ରତି ସପ୍ତାହରେ ଆମକୁ ଖର୍ଚ କରିବାପାଇଁ ପ୍ରକୃଷ୍ଟ ଭତ୍ତା ଦିଆଯାଉଥିଲା।

ମୋ ରୁମ୍‌ମେଟ୍ ମିଃ ହିଥ୍‌ଷ୍ଟବ୍‌ସଂକର ଗୋଟିଏ ଆଖି ଟେରା ଥିଲା। ସେ ଖୁବ୍ ଡେଂଗା ଏବଂ ଜୀର୍ଣଶୀର୍ଣ ଚେହେରାର ଲୋକ ଥିଲେ। ବେଶଭୂଷାରେ ମଧ୍ୟ ଯତ୍ନ ନେଉନଥିଲେ। ଜଣେ ଆଧୁନିକ ଇଂରାଜୀ କବି ହିସାବରେ ତାଂକର ଯଥେଷ୍ଟ ସୁଖ୍ୟାତି ଥିଲା। ତାଂକ ସହିତ ମୋର ଖୁବ୍ କମ୍ ଦେଖାହେଉଥିଲା। ସେ ରୁମ୍‌ରେ ପ୍ରାୟ ରହୁନଥିଲେ। ମୁଁ ସକାଳେ ଉଠିଲାବେଳକୁ ସେ ନିତ୍ୟକର୍ମ ସାରି କୁଆଡ଼େ ଚାଲିଯାଉଥିଲେ, କେବଳ ସେମିନାର୍‌ରେ ଯାହା ଦେଖାହେଉଥିଲା। ରାତିରେ ମୁଁ ପ୍ରାୟ ଦଶଟା, ସାଢ଼େଦଶଟା ସମୟରେ ଶୋଇବାକୁ ଯିବାବେଳକୁ

ସେ ରୁମ୍‌କୁ ଫେରୁନଥିଲେ। ପରେ ଶୁଣିଲି, ଇରାନ୍‌ର ପ୍ରତିନିଧି ମିଃ ଇସାକ୍ ତାଂକ ଦେଶର ଜଣେ ନାମଜାଦା ଗାଳ୍ପିକ ଥିଲେ; ମିଃ ହିଥ୍ ଷ୍ଟବ୍‌ସ ତାଂକ ଗଳ୍ପଗୁଡ଼ିକୁ ଇଂରାଜୀରେ ଅନୁବାଦ କରୁଥିଲେ ବୋଲି ଖବର ପାଇଥିଲି। ଇସାକ୍ ଷ୍ଟବ୍‌ସଂକୁ ଖାଦ୍ୟପେୟରେ ଖୁବ୍ ଆପ୍ୟାୟିତ କରୁଥିଲେ।

**ମୋର ଉଦ୍‌ଘାଟନୀ ଭାଷଣ –**

ହାର୍ଭାଡ୍ ଆଂତର୍ଜାତିକ ସେମିନାର୍ ୧୯୫୫ ମସିହା ଜୁଲାଇ ୪ ତାରିଖରେ ଆରଂଭହେଲା। ସେଦିନ ଥାଏ ଆମେରିକାର ଜାତୀୟଦିବସ ବା ସ୍ୱାଧୀନତା ଦିବସ। ନିର୍ଦ୍ଦେଶକ ହେନେରୀ କିସିଂଜର୍ ମୋତେ ପ୍ରଥମେ ଭାଷଣ ଦେବାକୁ ଏବଂ ସେମିନାର୍ ଉଦ୍‌ଘାଟନ କରିବାକୁ ଅନୁରୋଧକଲେ। ମୁଁ ଟିକିଏ ଅପ୍ରସ୍ତୁତ ହୋଇପଡ଼ିଲି; କାରଣ ମୁଁ ଏ ବିଷୟ ଆଗରୁ ଜାଣିନଥିଲି। ତେଣୁ ମାନସିକ ପ୍ରସ୍ତୁତି ନଥିଲା। ସେ ଯାହାହେଉ, ମୁଁ ସେମିନାର୍ ଉଦ୍‌ଘାଟନ କରି ଏକ ନାତି-ଦୀର୍ଘ ଭାଷଣ ଦେଇଥିଲି। ଆଲୋଚନା-ଚକ୍ରରେ ସଭାପତିତ୍ୱ କରିଥିଲେ ଆମେରିକାର ବିଖ୍ୟାତ କବି ପ୍ରଫେସର୍ ଉଇଲ୍‌ବର୍। ମୋ ଭାଷଣର ସାରମର୍ମ ଥିଲା –

"ପୃଥିବୀ ଗୋଟିଏ ମାତ୍ର ବିଶ୍ୱ ଖଂଡ ଖଂଡ, ନାନା ଧର୍ମ, ବର୍ଣ୍ଣ ଓ ଭାଷା ଦେଶ ଦେଶ ମଧ୍ୟରେ ଏବଂ ମଣିଷ ମଣିଷ ମଧ୍ୟରେ ବହୁ ଦୃଶ୍ୟ ଓ ଅଦୃଶ୍ୟ ପ୍ରାଚୀରମାନ ସୃଷ୍ଟିକରିଛି। ସାହିତ୍ୟର ଲକ୍ଷ୍ୟ ଉତ୍ତରଣ। ସାହିତ୍ୟର ଲକ୍ଷ୍ୟ ଏସବୁ ମଣିଷଗଢ଼ା ପ୍ରାଚୀରମାନ ଅତିକ୍ରମ କରି ଏକ ସାଧାରଣ ମାନବିକ ଅଦୃଷ୍ଟବୋଧ ଜାଗ୍ରତ କରିବା (to create the sense of a common human desting among all)।" ସମଗ୍ର ମଣିଷଜାତି ଗୋଟିଏ ସଭ୍ୟତା। ମାନବିକତା ଉପରେ ପୃଥିବୀର କେଉଁ କୋଣରେ, ଯେଉଁଠି ଆଂଚ୍ ଆସୁ ନା କାହିଁକି, ତାହା ସମଗ୍ର ମଣିଷଜାତିକୁ ଆଘାତକରିବ। ମୁଁ ଭାରତ ସାହିତ୍ୟିକ ଦୃଶ୍ୟପଟ ସଂବଂଧରେ କହିଥିଲି ଯେ ଭାରତରେ ସାହିତ୍ୟ ଏକ ସୁଂଦର ଭ୍ରମଣଯଷ୍ଟି ହୋଇ ରହିଛି; ମାତ୍ର ଏହା ଉପରେ ଭାରାଦେଲେ ବା ଏହାକୁ ଆଶାବାଡ଼ି ଭାବରେ ବ୍ୟବହାରକଲେ, ଏହା ଭାଂଗିପଡ଼ିବ (It is a good walking stick but a bad crutch)। ଏହାର ଅର୍ଥ ଭାରତରେ ସାହିତ୍ୟରୁ ବିଶେଷ କିଛି ଅର୍ଥ ଲେଖକଂକୁ ମିଳେନାହିଁ। ତେଣୁ ଲେଖକମାନେ ଜୀବିକା ନିର୍ବାହ ପାଇଁ ଅନ୍ୟ ପଂଥା ଯଥା ଚାକିରି-ବାକିରିର ଆଶ୍ରୟ ନେଇଥାଆଂତି। ସାହିତ୍ୟ ସ୍ୱାବଲଂବୀ ନହେବାଯାଏଁ ଏହା ସ୍ୱାଧୀନ ଓ ନିର୍ଭୀକ ଭାବରେ ସୃଜନକ୍ଷମ ହୋଇପାରିବନାହିଁ। ମୁଁ ରବୀଂଦ୍ରନାଥ, କାଜି ନଜରୁଲ୍ ଇସ୍‌ଲାମ୍, ହିଂଦୀ କବି ସୁମିତ୍ରାନଂଦନ ପଂଥ ଏବଂ ତେଲୁଗୁ କବି ଶ୍ରୀ ଏବଂ ଅନ୍ୟାନ୍ୟ ଭାଷାର ପ୍ରମୁଖ କବିମାନଂକର ସାହିତ୍ୟକୃତି ସଂବଂଧରେ କିଛି ଆଲୋକପାତ କରିଥିଲି। ମୁଁ କହିଥିଲି ଯେ, ରବୀଂଦ୍ରନାଥଂକ କାବ୍ୟ-କବିତାରେ ଅତୀଂଦ୍ରିୟବାଦ ବା (transdentalism) ଓ

ରହସ୍ୟବାଦର ପ୍ରଭାବ ଦେଖାଯାଏ। ଏହା ତାଂକୁ ସମସାମୟିକ ବାସ୍ତବତାଠାରୁ ଟିକିଏ ଦୂରକୁ ନେଇଯାଇଛି। କାଜି ନଜରୁଲ୍ ଇସ୍‌ଲାମଂକ 'ଉଗ୍ର ଜାତୀୟତାବାଦ' ଭାରତୀୟ ଜାତୀୟ ମୁକ୍ତିସଂଗ୍ରାମ ପରିପ୍ରେକ୍ଷୀରେ ବେଶ୍ ଲୋକପ୍ରିୟ ହୋଇପାରିଥିଲା। ଆଧୁନିକ ଓଡ଼ିଆ ସାହିତ୍ୟ ସଂବଂଧରେ ମୁଁ ଆଲୋକପାତ କରିଥିଲି। ରାଧାନାଥ, ମଧୁସୂଦନ, ଫକୀରମୋହନ ଏବଂ ଗଂଗାଧର ମେହେରଂକ କାବ୍ୟ-କବିତା କିପରି ପୂର୍ବ ଶତାବ୍ଦୀମାନଂକର ରୀତିଯୁଗୀୟ ଅଲଂକରଣ ଛାଡ଼ି ଆଧୁନିକତା ଆଡ଼କୁ ଅଗ୍ରସର ହୋଇଥିଲାବେଳେ ସତ୍ୟବାଦୀ ଓ ସବୁଜଗୋଷ୍ଠୀଂକ ସାହିତ୍ୟ-କର୍ମ ଓଡ଼ିଆଭାଷା-ସାହିତ୍ୟକୁ ସମୃଦ୍ଧ କରିଥିଲା, ସବୁଜଗୋଷ୍ଠୀ ରୋମାଂଟିସିଜିମ୍ ଆଡ଼କୁ ଢଳିଥିଲେ।

ଏହାଛଡ଼ା ସେମିନାର୍‌ର ଅନ୍ୟାନ୍ୟ ଦିନମାନଂକରେ ଯେଉଁସବୁ ଆଲୋଚନା ହୋଇଥିଲା ମୁଁ ସେଥିରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲି, ଏହିସବୁ ଆଲୋଚନା ପରେ ଲେଖାଯିବ।

ସଂଧ୍ୟାବେଳେ ଡ. କିସିଂଜର ମୋତେ ତାଂକ ବାସସ୍ଥାନ ବା ଫ୍ଲାଟ୍‌କୁ ନିମଂତ୍ରଣ କରିଥିଲେ। ମିସେସ୍ କିସିଂଜର ଓ ତାଂକର ଦୁଇଟି ସାନ ସାନ ପିଲା (ବୋଧହୁଏ ପୁଅ) ମୋତେ ଦେଖି ଖୁବ୍ ଖୁସିହୋଇଥିଲେ। ମିସେସ୍ କିସିଂଜର ଖାଦ୍ୟ, ପାନୀୟ ଓ ଚା' ଇତ୍ୟାଦି ସାନଂଦରେ ପରିବେଷଣ କରିଥିଲେ। କିସିଂଜର ମୋତେ କହିଲେ, ''ଆଜି ତମ ଭାଷଣଟି ଖୁବ୍ ଭଲହୋଇଥିଲା।'' ମୁଁ ତାଂକୁ ଧନ୍ୟବାଦ ଜଣାଇଥିଲି। ମୁଁ କେଂବ୍ରିଜ୍‌ରେ ଥିଲାବେଳେ ସପ୍ତାହକେ ପ୍ରାୟ ଚାରି-ପାଂଚଟି ସଂଧ୍ୟା କିସଂଜରଂକ ଫ୍ଲାଟ୍‌ରେ କଟାଉଥିଲି। ସେ ପ୍ରକାଶ କରୁଥିବା ତ୍ରୈମାସିକ ପତ୍ରିକା ''କନ୍‌ଫ୍ଲୁଏନ୍‌ସ'' (Confluence) ସଂବଂଧରେ ଆଲୋଚନା କରୁଥିଲୁ। ଭାରତ ସଂବଂଧରେ ମଧ୍ୟ ବହୁ କଥା ଡ. କିସିଂଜର ପଚାରି ବୁଝୁଥିଲେ।

ଡ. କିସିଂଜର ଏହାର ଅଳ୍ପ କେତେ ବର୍ଷ ପରେ ହାର୍ଭାଡ୍ ଛାଡ଼ିଦେଇଥିଲେ। ନିକ୍‌ସନ୍ ଆମେରିକାର ସଭାପତି ଥିଲାବେଳେ ସେ ତାଂକ ପ୍ରଶାସନରେ ସହକାରୀ ସଚିବ ରୂପେ ଯୋଗଦେଇଥିଲେ। କ୍ରମେ ସେ ସ୍ୱରାଷ୍ଟ୍ର ସଚିବ ଓ ବୈଦେଶିକ ସଚିବ ହୋଇଥିଲେ। ସେ ୧୯୭୪ ମସିହାରେ ଉତ୍ତର ଭିଏତ୍‌ନାମ୍‌ର ପ୍ରଧାନମଂତ୍ରୀ ଥୋଂକ ସଂଗେ ଯୁଗ୍ମ-ଭାବରେ ନୋବେଲ୍ ଶାଂତି ପୁରସ୍କାର ପାଇଥିଲେ।

**ସେମିନାର୍ ଆଲୋଚନା –**

ସେମିନାର୍‌ର ଅନ୍ୟାନ୍ୟ ଦିନମାନଂକରେ ବିଭିନ୍ନ ଦେଶର ସାହିତ୍ୟ ଏବଂ ସାହିତ୍ୟିକ ଆଂଦୋଳନ ସଂପର୍କରେ ସଂପୃକ୍ତ ଦେଶର ନିମଂତ୍ରିତ ସାହିତ୍ୟିକମାନେ ବିସ୍ତୃତ ଆଲୋଚନା କରିଥିଲେ। ଏହି ସେମିନାର୍ ଜୁଲାଇ ୪ ତାରିଖରୁ ଅଗଷ୍ଟ ୨୪ ତାରିଖଯାଏଁ ପ୍ରବଳ ଉତ୍ସାହର ସହିତ ଚାଲିଥିଲା।

**ସମକାଳୀନ ଦୃଶ୍ୟପଟ : ସାଂପ୍ରତିକ କବିତାର ଧାରା –**

ଆଲୋଚନାଚକ୍ରର ସଭାପତି ପ୍ରଫେସର୍ ଡ. ଉଇଲ୍‌ବର୍, ଯେ କି ଜଣେ

ପ୍ରଖ୍ୟାତ କବି ଥିଲେ, ତାଂକ ଭାଷଣରେ ସାଂପ୍ରତିକ ଆମେରିକାନ୍ ଓ ଇଂରାଜୀ କବିତା ସଂବଂଧରେ କହିଥିଲେ। ସେ ଆମେରିକାନ୍ କବିତାର ଚରିତ୍ର ଏବଂ ବିକାଶଧାରା ସଂପର୍କରେ ଏବଂ ତୁଳନାତ୍ମକ ଭାବେ ସାଂପ୍ରତିକ ଇଂରାଜୀ କବିତାର ଗତି ଓ ପ୍ରକୃତି ଉପରେ ଆଲୋକପାତ କରିଥିଲେ। ତାଂକ ମତରେ ସମକାଳୀନ ଆମେରିକାନ୍ କାବ୍ୟିକ ପରଂପରାର ମୂଳ ଆଭିମୁଖ୍ୟ ମୁଖ୍ୟତଃ ଏଡ୍‌ଗାର୍ ଆଲାନ୍ ପୋଂକର ତତ୍ତ୍ୱ ଦ୍ୱାରାହିଁ ପ୍ରଭାବିତ। ପୋଂକ ମତରେ ହୁଇଟ୍‌ମାନ ପରବର୍ତ୍ତୀ ଆମେରିକାନ୍ କବିତା ସତ୍ୟ ଅପେକ୍ଷା ସୌନ୍ଦର୍ଯ୍ୟକୁ, ଅନୁଭୂତିର ଯୌକ୍ତିକ ବା ହେତୁବାଦୀ ପ୍ରକାଶ ଅପେକ୍ଷା ଅବଚେତନକୁହିଁ ଅଧିକ ସମାଦର କରେ।

"Preöccupation with beauty rather than with truth, interest in the subconscious rather than the logic and rational respect for feeling, rather than intellection: and for the imagination rather than representation I"

ସେ ଏ ଯୁଗର ବୈଜ୍ଞାନିକ କର୍ମ ଓ କାବ୍ୟିକ କର୍ମ ମଧ୍ୟରେ ବିପୁଳ ବ୍ୟବଧାନ ଲକ୍ଷ୍ୟକରିପାରିଥିଲେ। ଏଇ ବ୍ୟବଧାନଟି ହେଉଛି ସତ୍ୟର ସଂଗଠନ ଏବଂ ସତ୍ୟଠାରୁ ଦୂରକୁ ଅପସରିଯିବାର ବ୍ୟବଧାନ। ସେ କହିଲେ ଯେ, ପୋଂକ ମତରେ, ଭଲ କବିତା ସଂକ୍ଷିପ୍ତ ଏବଂ ବର୍ଣ୍ଣନାରହିତ ହେବା ଆବଶ୍ୟକ। ପୋଂକର ଏହି 'doctrine of exclusiveness and limitation' ଅବଶ୍ୟ ହୁଇଟମ୍ୟାନ୍ ଓ ଡିକ୍‌ସନ୍‌ଂକ ପ୍ରତି ପ୍ରଯୋଜ୍ୟ ହୋଇନପାରେ। ଏ ଦୁହିଁକି ଏହି ଶିବିରର ଅଂତର୍ଭୁକ୍ତ କରାନଗଲେ ମଧ ଅନ୍ୟାନ୍ୟ ବହୁ ଆମେରିକାନ୍ କବିଂକୁ ଏଇ ଶ୍ରେଣୀର ଅଂତର୍ଗତ କରାଯାଇପାରେ। ସେମାନେ ବିଶେଷଜ୍ଞମାନଙ୍କ ଜିମ୍ମା ଜ୍ଞାନ ଓ ପ୍ରଜ୍ଞାକୁ, ଶାସ୍ତ୍ରବିତ୍(ଥିଓଲଜିଷ୍ଟ)ମାନଂକ ଜିମ୍ମା ଧର୍ମକୁ, ସାଂବାଦିକମାନଂକ ଜିମ୍ମା ଦୈନଂଦିନ ଜୀବନକୁ ଏବଂ ପ୍ରାକୃତ ବିଜ୍ଞାନୀଂକ ଜିମ୍ମା ପ୍ରକୃତିକୁ ଛାଡ଼ିଦେବାର ପକ୍ଷପାତୀ। ସେମାନଂକ ମୂଳସ୍ୱର ହେଲା— "Isolation from the substantial than connection with it"; ଅର୍ଥାତ୍ କବିତାର ଆଧେୟ ବସ୍ତୁଜଗତ୍‌ଠାରୁ ବିଚ୍ଛିନ୍ନତା— ଏହା ସହିତ ସଂପର୍କ ସ୍ଥାପନ ନୁହେଁ। ଉଦାହରଣ ସ୍ୱରୂପ, ରବର୍ଟ ଫ୍ରଷ୍ଟ ମଣିଷର ନିଃସଂଗତାକୁହିଁ ତାଂକ କାବ୍ୟିକ ଉପଜୀବ୍ୟରୂପେ ଗ୍ରହଣ କରିଛଂତି। ପ୍ରକୃତି ଓ ମଣିଷ ମଧ୍ୟରେ ଅନୁଭୂତିଗତ ପାରସ୍ପରିକତାର ଅଭାବ, ଯାହାକୁ ସେ କାଂଥ ପ୍ରତୀକ ମାଧ୍ୟମରେ ଅଭିବ୍ୟକ୍ତ କରିଛଂତି, ତାଂକ କବିତାରେ ବେଶ୍ ପରିସ୍ଫୁଟ।

ଉଇଲ୍‌ବର୍ ଗତ ଦୁଇ ଦଶଂଧିର (୧୯୪୦-୫୫) କାବ୍ୟଧାରା ପର୍ଯ୍ୟାଲୋଚନା କରି ଦେଖାଇଥିଲେ ଯେ କବିତାକୁ ବ୍ୟାପକ ଓ ପ୍ରଶସ୍ତ କରିବାର ଆବଶ୍ୟକତା ଦେଖାଦେଇଛି। କ୍ଲିଂଥ ବ୍ରୁକସ୍ ଏହାକୁ 'Strategy of inclusion' ଆଖ୍ୟା

ଦେଇଛନ୍ତି । କୋଲେରିଜ୍‌ଙ୍କର ସେଇ ସତ୍ୟବାଣୀ— "It is the function of poetry to bring the whole soul of man into action, to balance and reconcile discordant elements" ସ୍ମରଣୀୟ ।

ଅଧ୍ୟାପକ କବି ଉଇଲ୍‌ବର ସୂଚାଇଥିଲେ ଯେ କୋଲେରିଜ୍ 'ବୈଷମ୍ୟ ଓ ଅସାମଂଜସ୍ୟ ମଧ୍ୟରେ ସମନ୍ୱୟ ସାଧନ କବିତାର ଧର୍ମ' ବୋଲି ଯାହା କହିଛନ୍ତି, ତାହା କୃତ୍ରିମ ପ୍ରଣାଳୀରେ ହାସଲକରାଯାଇନପାରେ । ସେ ଓ୍ୱାଲେସ୍ ଷ୍ଟିଭେନ୍‌ସଂକ କବିତା 'Flyer's fall'ର ଦୃଷ୍ଟାଂତ ଦେଇଥିଲେ । ଏଥିରେ ବିଷମ ବସ୍ତୁର କୃତ୍ରିମ ସଂଶ୍ଳେଷଣ କରାଯାଇଛି । ଆମ କାଳର ଏକ ସମନ୍ୱିତ ଚେତନା (Unified sensibility) ଆଡ଼କୁ ଦୃଷ୍ଟି ପ୍ରସାରିତ କରାଯାଇଛି; ଯାହା ପ୍ରକୃତରେ ବିଡ଼ଂବିତ । ଉଇଲ୍‌ବର ଦର୍ଶାଇଥିଲେ ଯେ କ୍ଲିଂଥ୍ ବ୍ରୁକସ୍‌ଂକର 'strategy of inclusion' ବା ଅଂତଃକରଣ ପଦ୍ଧତି ଅନେକ ଆଧୁନିକ ଆମେରିକୀୟ କବିଙ୍କୁ ସୁହାଇନାହିଁ ।

ଉଦାହରଣ ସ୍ୱରୂପ ଇ.ଇ.କୁମିଂ ଗସଂକର ଟାଇପ୍ରାଇଟରୀୟ କୌଶଳ (typographical trickery) ଗେରଟ୍ରୁଡ ଷ୍ଟେନଂକର ଭାଷାକୁ ଧ୍ୱନିରେ ପରିଣତ କରିବାର ପ୍ରଚେଷ୍ଟା ଏବଂ ତଥାକଥିତ 'ଅବଜେକ୍‌ଟିଭିଷ୍ଟ'ମାନଂକର କୌଣସି ବକ୍ତବ୍ୟ ବା ବିବୃତିକୁ ବାଦ୍ ଦେଇ ବସ୍ତୁର ଚିତ୍ରାୟନ ଉଦ୍ୟମ ଏହାର ଜ୍ୱଳଂତ ଉଦାହରଣ । ଏଲିଜାବେଥ୍ ବିଶପଂକର 'The fist' କବିତାଟି ଆବୃତି କରି ସେ ବସ୍ତୁ-ପ୍ରାଧାନ୍ୟର ନିଦର୍ଶନ ଦେଇଥିଲେ ।

ଅନ୍ୟାନ୍ୟ ଦିନମାନଂକରେ ସେମିନାରରେ ଯେଉଁ ସବୁ ଆଲୋଚନା ହୋଇଥିଲା, ତହିଁର କିଛି ସାରାଂଶ ଦିଆଗଲା । ବିଭିନ୍ନ ଦେଶରୁ ଆସିଥିବା ସାହିତ୍ୟିକମାନେ ସେମାନଂକର ବକ୍ତବ୍ୟ ପ୍ରବଂଧ ଆକାରରେ ପ୍ରକାଶକରିଥିଲେ ।

ପ୍ରଖ୍ୟାତ ଇଂରାଜୀ କବି ହିଥ୍ ଷ୍ଟବ୍‌ସ୍ ଆଲୋଚନାରେ ଭାଗ ନେଇ କହିଥିଲେ ଯେ ହୋମରୀୟ ପ୍ରଣାଳୀ ସହିତ ମିଲ୍‌ଟନୀୟ ପ୍ରତୀକୀ ଚିତ୍ରକଳ୍ପଯୁକ୍ତ କବିତା ମଧ୍ୟରେ ଅନେକ ପାର୍ଥକ୍ୟ ରହିଛି । ଆଧୁନିକ ଆମେରିକୀୟ କବିତା କ୍ଷେତ୍ରରେ ତାହାହିଁ ଘଟିଛି ।

ପ୍ରସିଦ୍ଧ ଫରାସୀ କବି ମିଃ. ଡି. ତୁମରୁ ଦର୍ଶାଇଥିଲେ ଯେ ହୋମରୀୟ Hit-and-Run ଶ୍ରେଣୀୟ କବିତାହିଁ ଆଧୁନିକ ଫରାସୀ କାବ୍ୟକ୍ଷେତ୍ରରେ ଅଧିକ ଦେଖାଯାଉଛି, ଏହି ଅର୍ଥରେ ଯେ ଜଗତ୍‌କୁ ଶବ୍ଦରେ ପରିଣତ କରିବାର ଗୋଟିଏ ପ୍ରବଳ ସ୍ରୋତ ଚାଲିଛି । ବିଶ୍ୱ-ଜଗତ୍‌ର ସମସ୍ତ ଅଂଶକୁ ମୁକ୍ତ-ଭାବରେ ତୁଳନାକରି ତିନିଜଣ ପୋଏଟଂକ କାବ୍ୟତତ୍ତ୍ୱ ନିକଟରେ ଋଣୀ । ବିଶିଷ୍ଟ ପୂର୍ବସୂରି, ଯଥା ବୁଦେଲିଅର୍, ମାଲାର୍ମେ ଏବଂ ଭାଲୋରୀଂକ ମଧ୍ୟରୁ ଶେଷ ଦୁଇଜଣ ହେତୁବାଦୀ ବୋଲି ସେ କହିଥିଲେ ।

## ତ୍ରୟସ୍ତ୍ରିଂଶ ଉଲ୍ଲାସ

## କବିତାର ଭାଷା

ବିଶିଷ୍ଟ ଇଂରାଜୀ କବି ହିଥ୍-ଷ୍ଟବ୍ସ୍ କବିତା ସଂପର୍କୀୟ ଆଲୋଚନା ଆରଂଭ କରି କହିଥିଲେ ଯେ ଶବ୍ଦ ଓ ଶବ୍ଦ ମଧ୍ୟବର୍ତ୍ତୀ ସ୍ପେଶ୍ ଦ୍ୱାରା କବିତା ସୀମିତ। କବିତା କେବଳ ଭାଷାର ଫରମାଲାଇଜେସନ୍ ମାତ୍ର। ଏପରିକି କବିତାର ଛଂଦ ମଧ୍ୟ ଲିଖିତଭାଷାର ଏକ ସ୍ୱାଭାବିକ ଶୈଳୀକରଣ (stylisation) ଛଡ଼ା ଅନ୍ୟ କିଛି ନୁହେ। କାରଣ ଏହା ସବୁବେଳେ ଏକ ଅହେତୁକ (non-logical) ଚାପ (stress) ସୃଷ୍ଟିକରି ସୂଚନାତ୍ମକ emphasis ବା ଗୁରୁତ୍ୱ ରଚନା କରିଥାଏ। ସତରେ, ଭାଷାର ଅପରିପୂର୍ଣତାରେହିଁ କବିତାର ଆନଂଦ। ଏଠାରେ ଅବଶ୍ୟ ଭାଷାକୁ ଏକ ଲଜିକାଲ୍ ଇନ୍‌ଷ୍ଟ୍ରୁମେଂଟ୍ ହିସାବରେ ବୁଝିବାକୁହେବ।

ହିଥ୍-ଷ୍ଟବ୍ସ ପୁଣି କହିଥିଲେ, ବିଜ୍ଞାନରେ— ଯାହାର କି ବିଶୁଦ୍ଧତମ ଭାଷା ହେଉଛି ଗଣିତ, ପ୍ରଧାନ ଲକ୍ଷ୍ୟ ହେଉଛି ଅର୍ଥର ବ୍ୟାହତି (exclusion of meaning) କବିତାରେ ସଚେତନ ପ୍ରଚେଷ୍ଟା ଚାଲିଥାଏ ଭାଷାର ଅଂତଃକରଣ ସାଧନ ବା ଏହାକୁ inclusive କରି ଏହାକୁ ଅସ୍ପଷ୍ଟତା (ambiguous) ଆଡ଼କୁ ନେଇଯିବା, ଛତା-ଶବ୍ଦମାନ (umbrella-words) ସୃଷ୍ଟି କରିବା— ଯାହା ବହୁ ଅର୍ଥକୁ ଧାରଣ କରି ପାରିବ। ଇଂରାଜୀ ଶବ୍ଦ ସବୁ ସ୍ୱଭାବତଃ ପ୍ରତୀକଧର୍ମୀ। ସେଥିପାଇଁ ଇଂରାଜୀ କବିତାର ଲଜିକାଲ୍ ବ୍ୟାଖ୍ୟା ଉପରେ ଜୋର୍ ଦେବା ସବୁବେଳେ ବିବାଦନୀୟ ବିଷୟ ହୋଇ ରହିଛି। ବରଂ କବିତାରେ ପ୍ରି-ଲଜିକାଲ୍ ପ୍ରଣାଳୀର ଗୁରୁତ୍ୱ କବିତାର ମୌଳିକ ଉପାଦାନ ବୋଲି ସ୍ୱୀକୃତି ଲାଭକରିଛି।

କାବ୍ୟିକ ଭାଷା ସଂବଂଧରେ ଷ୍ଟବସ୍ କହୁଥିଲେ ଯେ, କବିତାର ଭାଷା ଓ ବିଜ୍ଞାନର ଭାଷା ଗୋଟିଏ ବିଷୟରେ ପରସ୍ପର ନିକଟବର୍ତ୍ତୀ ବୋଲି ସମସ୍ତେ ଲକ୍ଷ୍ୟକରିଥିବେ। ବିଜ୍ଞାନର ଭାଷା ବୌଦ୍ଧିକ ଏବଂ କବିତାର ଭାଷା ଆବେଗିକ ବୋଲି ଆପ୍ତବାକ୍ୟ ଶୁଣାଯାଏ। ପୁଣି ବି କୁହାଯାଏ ଯେ, ବିଜ୍ଞାନ ସତ୍ୟ; କବିତା ସୌଦଂର୍ଯ— ଏ ପ୍ରକାର କଥା ଭିତ୍ତିହୀନ। କାରଣ ବୈଜ୍ଞାନିକ କଳ୍ପନା ଏବଂ କବିତାରେ ପ୍ରାୟ ଏକପ୍ରକାରରେ ସୃଜନୀ କ୍ରିୟା ଅଂତର୍ନିହିତ। ଉଭୟହିଁ ସହଜାତ-ପ୍ରବୃତ୍ତିଚାଳିତ ଅଂର୍ତଦୃଷ୍ଟି— ଯାହା କେତେକ ନିରୀକ୍ଷା ଉପରେ ନିର୍ଭରଶୀଳ। ଦୁହିଁଙ୍କର ଲକ୍ଷ୍ୟ "to create some kind of cosmos out of the chaos presented to the senses"। ଅବଶ୍ୟ ଏହା ସତ୍ୟ ଯେ

ବୈଜ୍ଞାନିକମାନେ ସହଜାତ ପ୍ରବୃତ୍ତିରୁ କେତେକ ବିଜ୍ଞାନସମ୍ମତ ନିୟମ ପ୍ରତିପାଦନ କରିବାକୁ ଚେଷ୍ଟାକରଂତି– ଯେଉଁଥିରୁ କି କିଛି ଉତ୍ପାଦନ ବା ଉଦ୍ଭାବନ ହୋଇପାରିବ। କିନ୍ତୁ କବି ସହଜାତ ପ୍ରବୃତ୍ତିରୁ କେତେକ ମୂଲ୍ୟବୋଧ୍ୟର ସ୍ତର ସୃଷ୍ଟିକରିଥାଏ, ଯାହା କାର୍ଯ ଏବଂ ବିଚାରର ଭିତ୍ତି ହୋଇଥାଏ।

**ଆଧୁନିକ ଇଂରାଜୀ କବିତା : କବିର ଦୁର୍ଦ୍ଦଶା –**

ଇଂରାଜୀ କବିମାନଂକର ଆର୍ଥିକ ସ୍ଥିତି ସ୍ୱଚ୍ଛଳ ନୁହେଁ ବୋଲି ଷ୍ଟେଭ୍‌ସ୍ କହିଥିଲେ। ସେମାନେ ସାଧାରଣତଃ B.B.C. କିଂବା ବାହାରେ ଲେକ୍‌ଚର୍ ଦେଇ କିଛି ରୋଜଗାର କରିବା ଉପରେ ବେଶୀ ନିର୍ଭର କରିଥାଂତି ନିଜ କବିତା ବହିର ଆୟ ଅପେକ୍ଷା। ତୃତୀୟ ଦଶକରେ ଯେଉଁ ବାମପଂଥୀ ଆଭିମୁଖ୍ୟ ଥିଲା, ତାହା ଆଉ ଏବେ ନାହିଁ। ୧୯୪୦-୫୦ରେ ଆର୍ଥନୀତିକ ଓ ରାଜନୀତିକ ଆଗ୍ରହର ସ୍ଥାନ ଏବେ ନିର୍ଜ୍ଜୀବ ମନ, quasi-mystical speculations ଏବଂ ଛନ୍ଦ ଓ ମେଳର ନିର୍ମାଣାତ୍ମକ ପ୍ରୟୋଗ (ଯଥା ଡିଲାନ ଥୋମାସ୍, ଜର୍ଜ ବାର୍‌କର, ଡ୍ୟାଭିଡ୍ ଗ୍ୟାସ୍‌କୋନ୍ ପ୍ରମୁଖ)। ଏହି ସମୟରେ ମଧ୍ୟ ରକ୍ଷଣଶୀଳ ଧର୍ମୀୟ କବିତାରେ ଆତ୍ମିକରେ ଅଂତର୍ଦ୍ଦୃଷ୍ଟିର ପ୍ରକାଶ ଦେଖାଯାଇଛି,ଯେଉଁଥିରୁ କି ଫ୍ରୟଡ୍, ଜଂଗ ପ୍ରଭୃତିଂକ ପ୍ରଭାବ ସ୍ପଷ୍ଟ ଲକ୍ଷଣୀୟ (ଯଥା– କାଥେଲିନ୍ ରେଇନେ, ଆନେ ରିଡ୍‌ଲର, ଭେରନମ ୱାଟ୍‌କିନସ୍, ନର୍ମାନ୍ ନିକୋଲସନ୍ ପ୍ରଭୃତି)। ଏହି ଦଶଂଧିର ସବୁଠାରୁ ବଡ଼ କୌତୂହଳପୂର୍ଣ୍ଣ ବିଷୟ ହେଉଛି, ହଠାତ୍ କବିତାପାଠକଂକ ସଂଖ୍ୟା ବୃଦ୍ଧି, ବିଶେଷତଃ ସାମରିକ ବାହିନୀର ଲୋକ ଓ ସୈନିକମାନଂକ ମଧ୍ୟରେ। ଏହା ତତ୍‌କାଳୀନ କବିମାନଂକୁ ଗଭୀର ଅନୁପ୍ରେରଣା ଯୋଗାଇବା ସଂଗେ ସଂଗେ କାବ୍ୟିକ ବାୟୁମଂଡଳକୁ ଉଦ୍‌ବୁଦ୍ଧ କରିଥିଲା। କିଂତୁ ପରବର୍ତ୍ତୀ ଦଶକରେ ଅର୍ଥାତ୍ ୧୯୫୦ ମସିହାରୁ ପୂର୍ବ ଦଶକର ଲଘୁରସର ଗୀତକବିତା, ବିଶେଷତଃ ଧର୍ମୀୟ ପୁନର୍ଜ୍ଜାଗରଣ ବିରୁଦ୍ଧରେ ପ୍ରତିକ୍ରିୟା ପ୍ରକାଶ ପାଇଥିବାର ଦେଖାଯାଏ। ନୂତନ କବିମାନଙ୍କର ଚରିତ୍ର ହେଲା, ଭାଷାରେ ଗାଂଭୀର୍ଯ, ପରାଭୌତିକ ଓ ଛାୟାବାଦୀ ବିଷୟବସ୍ତୁ ବର୍ଜ୍ଜନ, ଏବଂ କେତେକ କ୍ଷେତ୍ରରେ ଏକ ଅନୁର୍ବର ସ୍ଥିତାବସ୍ଥା (ଯଥା ଜନ୍‌ୱେ'ନ୍, ଡୋନାଲ୍‌ଡ ଲେଭି)। ଏହି ସମୟର କବିମାନେ ଡକ୍‌ଟର ଲେଭିଂକ ସମାଲୋଚନା ଓ କଷାଘାତ ପ୍ରତି ସଜାଗ ରହି, ଜଗିରଖି କବିତା ରଚନାକରୁଥିଲେ। ସେମାନେ ଥିଲେ ବିଶ୍ଳେଷଣାତ୍ମକ, ମୂଳତଃ ନୀତିଧର୍ମୀ, ଏବଂ ଅସ୍ପଷ୍ଟ ଆବେଗିକ ଉଚ୍ଛ୍ୱାସ ତଥା ଭାବପ୍ରବଣତାରୁ ମୁକ୍ତ। ସମସାମୟିକ ସାହିତ୍ୟକାରଂକ ମଧ୍ୟରେ ସେ ଚାରିଜଣଂକୁ ଇଂରାଜୀ ଚେତନାରେ ବିଶେଷ ସ୍ଥାନର ଅଧିକାରୀ ବୋଲି ମତ ବ୍ୟକ୍ତ କରିଥିଲେ– (୧) ଟି.ଏସ୍.ଏଲିୟଟ୍ (୨) ଉଇଲିୟାମ୍ ଏଂପସନ୍, ଯାହାଂକର ଆଗ୍ରହ ବିଶେଷରେ ଭାଷାତତ୍ତ୍ୱ ପ୍ରତି, (୩) ରବର୍ଟ ଗ୍ରେଭସ୍, ଯିଏ କି ବର୍ତ୍ତମାନ ଅତିକଥା (ମିଥ୍) ଉପକଥା ଆଦି

ନେଇ ଅଧିକ ବ୍ୟସ୍ତ ଓ ଆଗ୍ରହଶୀଳ, (୪) ଏଡ଼ୱଇନ୍ ମୁର୍, ଯେ କି ସଂପ୍ରତି ଜଣେ ବୌଦ୍ଧିକ କବି ହିସାବରେ ଏବଂ ଜଣେ ଦାର୍ଶନିକ ଏବଂ ପାରଂପରିକ ବିଷୟବସ୍ତୁର ଦକ୍ଷ କାବ୍ୟକାର ହିସାବରେ ସୁଧୀମଂଡଳରେ ବିଶେଷ ମର୍ଯାଦା ଲାଭ କରି ପାରିଛଂତି।

**ଧର୍ମୀୟ କବିତା –**

ପରାଭୌତିକ ଇଂରାଜୀ କବି ଡନଂକ ଉପରେ ଅଧୁନା ପ୍ରକାଶିତ ସୁପ୍ରସିଦ୍ଧ ମାର୍କିନ୍ ସମାଲୋଚକ ଆଲେନ୍ ଟାଟେଗଂକର ଏକ ପ୍ରବଂଧ ଆଲୋଚନା ଭିତରକୁ ଆସିଥିଲା। ଟାଟେ କହିଛଂତି, ଶ୍ରେଷ୍ଠ ଧର୍ମୀୟ କବିତା ଲେଖାହୋଇଛି ସେତିକି ବେଳେ, ଯେତେବେଳେ କି ରକ୍ଷଣଶୀଳ ଶ୍ରେଣୀ ଆସୁଛଂତି କିଂବା ଯାଉଛଂତି; ସେମାନେ ପ୍ରଭାବ ବା ପ୍ରତିପତ୍ତିର ଶିଖରରେ ବସିଥିବାବେଳେ ନୁହେଁ। ଏ ପ୍ରସଂଗରେ ଇଟାଲୀୟ କବିତା ସଂବଂଧରେ କହିବାକୁ ଯାଇ ଇଟାଲୀର ଜଣେ ଖ୍ୟାତନାମା ସାହିତ୍ୟିକା ଶ୍ରୀମତୀ ସ୍ୱାଜିୟାନୀ ଧର୍ମୀୟ କବିତା ବିଷୟରେ କେତେକ ସୂଚନା ଦେଇଥିଲେ। ସେ କହିଥିଲେ ଯେ, ଆଜିକାଲି ଇଟାଲୀରେ ସେଭଳି ଧର୍ମୀୟ କବିତା ଲେଖାଯାଉନାହିଁ ତାହା ଟାଟେଂକ କଥାର ସତ୍ୟତା ପ୍ରମାଣ କରେ। ଜର୍ମାନୀର ସାହିତ୍ୟିକ ମିଃ ଅନ୍‌ସେଲ୍‌ଡ କହିଥିଲେ ଯେ ସାଂପ୍ରତିକ ଜର୍ମାନୀରେ କବିତା ଉପରେ ଧର୍ମର କୌଣସି ପ୍ରଭାବ ନାହିଁ। କର୍ମକୁ ଧର୍ମର ମର୍ଯାଦା ଦେବା ଏକ ଅଧୁନାତମ ପାଶ୍ଚାତ୍ୟ ଧାରଣା ବୋଲି କେତେକ ସାହିତ୍ୟିକ ମତ ପ୍ରକାଶ କରିଥିଲେ ଇଜିପ୍‌ଟର ସାହିତ୍ୟିକ ପ୍ରଫେସର ଅମିନ୍, ଚାର୍ଲସ୍ ପେଗୁଇଂକ ଉଦାହରଣ ଦେଇଥିଲେ– ଯାହାଂକ ମତରେ କର୍ମହିଁ ମଣିଷଜାତିର ଶ୍ରେଷ୍ଠ ସାଧନା। ଭାରତର ପ୍ରତିନିଧି ସଚ୍ଚିଦାନଂଦ ରାଉତରାୟ (ମୁଁ) ଭଗବଦ୍‌ଗୀତାର କର୍ମଯୋଗର ତାତ୍ପର୍ଯ ବୁଝାଇ କହିଥିଲେ ଯେ, ଭାରତୀୟ ଚେତନା କର୍ମକୁ ଧର୍ମ ସହିତ ସମାନ ମର୍ଯାଦାର ସହିତ ଗ୍ରହଣ କରିନେଇଛି। ଭଗବାନ୍ ଶ୍ରୀକୃଷ୍ଣ ଯେ ଜଣେ ଶ୍ରେଷ୍ଠ କର୍ମଯୋଗୀ, ଏହା ସେ ପ୍ରତିପାଦନ କରିଥିଲେ।

**କୃତ୍ରିମ ସମନ୍ୱିତ ଚେତନା –**

ସଂପ୍ରତି ଆମେରିକାନ୍ କବିତାରେ ଯେଉଁ କୃତ୍ରିମ ସଂଶ୍ଳେଷଣ ଦ୍ୱାରା ଚେତନାର ସମନ୍ୱୟ (unification of sensibility) ଘଟାଇବାର ଦୃଷ୍ଟାଂତ ଆଖିରେ ପଡୁଛି, ତାହା ମୁଁ ଷ୍ଟିଭେନ୍‌ସଂକ 'Fall' କବିତାର ଦୃଷ୍ଟାଂତ ଦେଇ ଦର୍ଶାଇଥିଲି। ତଥାପି ଏହି ଅବସ୍ଥାକୁ ଚେତନାର ସମନ୍ୱୟର ନିକଟତର ଅବସ୍ଥା ବୋଲି ଆମକୁ ମାନିନେବାକୁ ହେବ। କାରଣ ବାସ୍ତବ ଜଗତ୍‌ରେ ପ୍ରଚଳିତ ସମାଜବ୍ୟବସ୍ଥା ଓ ସମାଜ-ସଂପର୍କରେ ପୃଷ୍ଠପଟର ସଂପୂର୍ଣ୍ଣ ସମନ୍ୱୟ ଆଶା କରିବା ଏକ ବିଡଂବନାହେବ।

ଆଧୁନିକ ଭାରତୀୟ ସାହିତ୍ୟର ଚିତ୍ର ଦେବାକୁ ଯାଇ ମୁଁ ରବୀଂଦ୍ରନାଥଙ୍କଠାରୁହିଁ ଆରମ୍ଭ କରିଥିଲି। ମୁଁ ଯାହା କହିଥିଲି, ତାର ସାରମର୍ମ ହେଲା– ରବୀଂଦ୍ରନାଥ

ବିଂଶ ଓ ତ୍ରିଂଶ ଦଶକର ଇଂରାଜୀ କବିତାକୁ ଗ୍ରହଣ କରି ପାରିନଥିଲେ। ସେ ଏ ସମସ୍ତ କବିତାକୁ ପରଂପରା-ପରିପଂଥୀ ବୋଲି ମନେକରୁଥିଲେ। ତାଙ୍କ ମତରେ ପରଂପରା ମଧ୍ୟରେହିଁ ଆନନ୍ଦ-ଲୋକ ଅନ୍ତର୍ନିହିତ। ରବୀଂଦ୍ରନାଥ ଯେ ନୂତନ ଇଂରାଜୀ କବିତା ବିରୋଧରେ ପ୍ରତିକୂଳ ମନୋଭାବ ପୋଷଣକରିଥିଲେ, ତାର କାରଣ ହେଲା, ସାହିତ୍ୟରେ ପୁରାତନ ଓ ନୂତନ ମଧ୍ୟରେ ଯେଉଁ ଦ୍ୱନ୍ଦ୍-ମିଳନର ପ୍ରକ୍ରିୟା ଆବହମାନ କାଳରୁ ଚାଲିଛି ଓ ଚାଲିଥିବ, ସେ ସଂବଂଧରେ ସେ ଖୁବ୍ ବେଶୀ ସଚେତନ ନଥିଲେ। ସେ ଭାବୁଥିଲେ, ସାହିତ୍ୟ ଏକ ନିର୍ଦ୍ୱଂଦ୍ୱିକ ପ୍ରକ୍ରିୟା, ଯାହା ପ୍ରକୃତରେ ନୁହେଁ। ଜୀବନ ପରି ସାହିତ୍ୟର ବିକାଶ ମଧ ଦ୍ୱଂଦ୍ୱାକୀର୍ଣ ଏବଂ ସେହି ପ୍ରଣାଳୀରେ ସାହିତ୍ୟରେ ପରଂପରା ଓ ଆଧୁନିକ ମଧ୍ୟରେ ଅନବରତ ବିରୋଧମିଳନ-ସମନ୍ୱୟର ସଂପର୍କ ତିଷ୍ଠିରହିଛି ଓ ରହିବ। ଏହାପରେ ନଜରୁଲ୍, ନୂତନ କବିଗୋଷ୍ଠୀ, ଏବଂ ବଂଗଳା, ଓଡ଼ିଆ, ହିନ୍ଦୀ, ତେଲେଗୁ ଓ ଅନ୍ୟାନ୍ୟ ଭାଷାର ପ୍ରମୁଖ କବି ଓ ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାରମାନଙ୍କ ସଂବଂଧରେ ଏବଂ ସେମାନଂକ କୃତିର ଏକ ବିବରଣ ଦେବାକୁ ମୁଁ ଚେଷ୍ଟାକରିଥିଲି। ଓଡ଼ିଆ ସାହିତ୍ୟକାର ଫକୀରମୋହନଙ୍କ ଉପନ୍ୟାସର ସଂକ୍ଷିପ୍ତ ପରିଚୟ ମଧ ଦେଇଥିଲି।

ଆଧୁନିକ ଭାରତୀୟ ସାହିତ୍ୟରେ ଯେ ଚେତନାର ବିଚ୍ଛେଦ କିଂବା ଚେତନାର ସମନ୍ୱୟ ଭଳି କିଛି ଘଟିନାହିଁ, ତା' ନୁହେଁ। ଆଧୁନିକ ଭାରତୀୟ ସାହିତ୍ୟରେ ନଗରୀକରଣ ଏବଂ ଶିଳ୍ପୀକରଣର ପ୍ରଭାବ ଚିଂତାକୋଣ ଓ ଦୃଷ୍ଟିଭଂଗୀରେ ପରିବର୍ତ୍ତନ ଆଣିଛି। ଚିଂତା ଓ କାର୍ଯ ମଧ୍ୟରେ ବ୍ୟବଧାନ କ୍ରମେ ବଢ଼ି ବଢ଼ି ଚାଲିଛି; ଫଳରେ କବି ଓ ଲେଖକର ବିଚ୍ଛିନ୍ନତାବୋଧ ଏବଂ ନିଃସଂଗତାର ପୀଡ଼ା କ୍ରମେ ବ୍ୟାପକ ପ୍ରକାଶ ଲାଭ କରୁଛି। ଶ୍ରେଣୀ-ସଂଗ୍ରାମ ଓ ମୂଲ୍ୟବୋଧର ଅସାରତା ମଧ ଭାରତୀୟ ସାହିତ୍ୟରେ ତା'ର ମୁଦ୍ରାଂକ ରଖିଯିବାକୁ ଛାଡ଼ିନାହିଁ। ଏହାହିଁ ଥିଲା ମୋର ପ୍ରଥମ ଦିନ ଏବଂ ପରବର୍ତ୍ତି ଦିନମାନଂକରେ ମୋଟାମୋଟି ବକ୍ତବ୍ୟ।

**ଗଳ୍ପ-ଉପନ୍ୟାସ-ନାଟକରେ ନୈର୍ବ୍ୟକ୍ତିକରଣ –**

ଏହି ଆଲୋଚନା-ଚକ୍ରରେ ପ୍ରଫେସର ଉଇଲ୍‌ବର ପ୍ରଥମେ ସୂଚନା ଦେଇଥିଲେ ଯେ, ଇଂରାଜୀ ନଭେଲ୍‌ରେ ଯେଉଁ ଶିଥିଳତା ଦେଖାଦେଇଛି, ତା'ର କାରଣ କଣ ଉତ୍ତର-ତିରିଶର ଶ୍ରେଣୀ-ସଂପର୍କ। ଏହି Flaccidityର ଲକ୍ଷଣ ତିରିଶ ଦଶକ ପରେହିଁ ବେଶି ଦୃଷ୍ଟିରେ ପଡ଼ୁଛି। ସେ ଏଇ ପ୍ରଶ୍ନ ପଚାରିବାର କାରଣ ସଂବଂଧରେ କହିଥିଲେ ଯେ, ଉପନ୍ୟାସର କେନ୍ଦ୍ରୀୟ ପରଂପରା ମନେ ହେଉଛି ଯେପରି ଅର୍ଥ, ସଂପତ୍ତି ହାସଲ, ଶ୍ରେଣୀ-ସରହଦ ଭାଂଗିବା ବା ତିଷ୍ଠିରହିବା ସଂଗେ ସଂପୃକ୍ତ।

ମିଃ ହିଥ୍-ଷ୍ଟବସ୍ କହିଥିଲେ– ଆଇଭି କଂପଟନ-ବର୍ଣେଟ୍ ଦୃଢ଼ଭାବରେ ଶ୍ରେଣୀ-ଲାଇନ୍‌କୁ ଅସ୍ୱୀକାର କରିଛଂତି ଏବଂ ତାଂକ ଉପନ୍ୟାସରେ ସେ ପୋଷାକ

ପରିଚ୍ଛଦ କିଂବା ଯାତାୟାତର ଯାନବାହନ (mode of travel) ପ୍ରଭୃତିର ବର୍ଣନା ମଧ୍ୟ ପରିହାର କରିଛଂତି। ତାଂକ ଉପନ୍ୟାସରେ ନୈର୍ବ୍ୟକ୍ତିକରଣ (depersonalization)ର ପ୍ରଚେଷ୍ଟା ଲକ୍ଷଣୀୟ। ସେ ଶ୍ରେଣୀଗତ ତାରତମ୍ୟ ସଂପୂର୍ଣ ରୂପେ ଉଠାଇଦେବାକୁ ଚେଷ୍ଟା କରିଛଂତି। ଜର୍ମାନୀର ପ୍ରତିନିଧି ମିଃ ଅନ୍‌ସେଲଡ୍ ଆପତ୍ତି ଉଠାଇଥିଲେ ଯେ ଏଭଳି ଏକ ସାଧାରଣୀକରଣ ସଂଭବ ନୁହେଁ। ସେ କହିଥିଲେ ଯେ ପ୍ରତ୍ୟେକ ଔପନ୍ୟାସିକ ନିଜର ଭିତ୍ତିଭୂମି ଅନ୍ୱେଷଣ କରେ; ଯାହା ତାକୁ ବର୍ଣ୍ଣନାତ୍ମକ ଅଭିବ୍ୟକ୍ତିର ଅନୁକୂଳ ମାର୍ଗଦର୍ଶନ ଦେବ। ତାଂକ ମତରେ ଉନବିଂଶ ଶତାବ୍ଦୀର ଉପନ୍ୟାସ ମଧ୍ୟରେ ଏକ ସାଧାରଣ ସାମ୍ୟ-ଭିତ୍ତି ଥିଲା; ତାହା ହେଉଛି ବ୍ୟକ୍ତିତ୍ୱର ସଂପୂର୍ଣତା, ତାହା ବର୍ତମାନ ନାହିଁ। ଆଜିର ଉପନ୍ୟାସ ଅବସର ସହିତ ସଂପୃକ୍ତ। ଇଂଲଂଡରେ 'Ulyses'ପରେ କୌଣସି ଉଲ୍ଲେଖଯୋଗ୍ୟ ଉପନ୍ୟାସ ଲେଖାଯାଇନାହିଁ ବୋଲି ଅନେକେ ସ୍ୱୀକାର କରିଥିଲେ। ଅନ୍‌ସେଲଡ୍ କହିଥିଲେ, ଭାର୍ଜିନିଆ ଉଲ୍‌ଫ୍ ଏବଂ କେତେକାଂଶରେ ହେନେରୀ ଗ୍ରିନ୍ କେତେକ ଉପନ୍ୟାସ ଆକୃତି (novel form) ସୃଷ୍ଟିକରିଛଂତି; ଯାହା ସତ୍ତାର ଏକ ସ୍ୱଳ୍ପାଂଶର ସାର୍ଥକ ବିଶ୍ଳେଷଣ କରିବାରେ ସଫଳହୋଇଛି। ମାତ୍ର ମିଃ ହିଥ୍-ଷ୍ଟବସ୍ କହିଥିଲେ ଯେ ସେମାନଙ୍କର ଉପନ୍ୟାସର ଫର୍ମ ଓ ଉପନ୍ୟାସ ଅପେକ୍ଷା କବିତା ଓ ଉପନ୍ୟାସର ଏକ ଅପମିଶ୍ରଣ। ୟୁଲିସିସ୍ ଆଂତରିକତାର ସହିତ ପଢ଼ିବା ପରେ ଆଉ କିଏ ପାରଂପରିକ ରୀତିରେ ଉପନ୍ୟାସ ରଚନା କରିପାରିବକି? ବହୁ ଦଶଂଧି ପର୍ଯଂତ ଜୟଶଂକ ଲେଖା ଉପନ୍ୟାସକୁ ହତ୍ୟା କରିଛି ବୋଲି ସେ କହିଥିଲେ। ଫ୍ରାନ୍‌ସରେ ଏହାର ବିକଳ୍ପ ଅବସ୍ଥା ସୃଷ୍ଟିହୋଇଥିଲା ବୋଲି ମିଃ ଡ୍ରୁମ୍ବର ଉଲ୍ଲେଖ କରିଥିଲେ। ପ୍ରାଉଷ୍ଟ ଓ ଜୁଲେସ ରୋମେଂକ ଭଳି ମହାନ୍ ପ୍ରତିଭା ଉନବିଂଶ ଶତକୀୟ ପରଂପରାରେ ଉପନ୍ୟାସ ରଚନା କରିବାକୁ ଯାଇ ବିଫଳହୋଇଥିଲେ। ଏହା ଅପେକ୍ଷା ବରଂ ଆମେରିକାନ୍ ଔପନ୍ୟାସିକମାନେ କିଛି ସ୍ୱତଂତ୍ର ଫର୍ମ ପାଇଛଂତି, ଯାହା ଫଳରେ କି ସେମାନେ ୧୯ଶ ଶତକୀୟ ଧାରାରୁ ନିଜକୁ ସ୍ୱତଂତ୍ର କରିପାରିଛଂତି। ଉପନ୍ୟାସର ସମୟ ଏକ focus ରୂପେ ବିତର୍କ ସୃଷ୍ଟି କରିପାରେ।

ଅନେକଂକ ମତରେ ଭବିଷ୍ୟତର ଉପନ୍ୟାସ ଦାର୍ଶନିକ ହୋଇପାରେ। କେହି କେହି ଏହା ସାମ୍ବାଦିକ ବା Journalistic ହେବାର ସଂଭାବନା କଥା ଉଠାଇଥିଲେ। ଦର୍ଶନ ନିଜେ ପ୍ରୟୋଗାତ୍ମକ ବା ଟେକିନିକାଲ ହେଉଛି; ତେଣୁ ଉପନ୍ୟାସ ବା ନାଟକ ପକ୍ଷରେ ପ୍ରଯୁକ୍ତିବିଦ୍ୟାର ଭାର ବହନ କରିବା ନିଶ୍ଚୟ କଠିନ ହେବ।

କ୍ଷୁଦ୍ରଗଳ୍ପ ସଂପର୍କୀୟ ଆଲୋଚନାରୁ ଏହାହିଁ ପ୍ରତୀୟମାନ ହେଲା ଯେ କ୍ଷୁଦ୍ରଗଳ୍ପର ଭବିଷ୍ୟତ୍ ସବୁ ଦେଶରେ ଅଧଂକାରାଚ୍ଛନ୍ନ। ଇଂଲଂଡର ପ୍ରତିନିଧି ମିଃ ବେଏନସ୍ ପ୍ରକାଶ କରିଥିଲେ ଯେ, ତାଂକ ଦେଶରେ କ୍ଷୁଦ୍ର ଗଳ୍ପର ଏକ ସଂକଳନ ପ୍ରକାଶ

କରିବା ବାସ୍ତବିକ ଦୁରୂହ। ମିଃ ଅନ୍‌ସେଲଡ୍ ସ୍ୱୀକାର କରିଥିଲେ ଯେ, ତାଂକ ଦେଶରେ (ଜର୍ମାନୀରେ) ମଧ୍ୟ ଠିକ୍ ସେଇ ଅବସ୍ଥା। କେତେକ ସାହିତ୍ୟିକ କହିଥିଲେ ଯେ, ଏକ ଭଲ କ୍ଷୁଦ୍ରଗଳ୍ପ ପଢ଼ି ମର୍ମ ଉପଲବ୍ଧି କରିବା ପାଇଁ ଯେଉଁ ମନୋଯୋଗ ଓ ମାନସିକ କୈନ୍ଦ୍ରିକତା ଦରକାର, ତାହା ସାଧାରଣ ପାଠକଂକଠାରେ ଅଭାବ। ସେମାନେ ବରଂ ହାଲକାଧରଣର ଭ୍ରମଣ କାହାଣୀ ଅଧିକ ପସନ୍ଦ କରଂତି।

ମୁଁ ୧୯୬୨ ମସିହାରେ ଆମେରିକାର ଷ୍ଟଡି ମିସନ୍ ଇଂଟରନ୍ୟାସନାଲଂକ ଆମଂତ୍ରଣକ୍ରମେ ଦ୍ୱିତୀୟ ବାର ଆମେରିକା ଯାଇଥିବା ବେଳେ ଦିନକ ପାଇଁ ହାର୍ଭାଡ୍ ଯାଇଥିଲି। ଡ. କିସିଂଜର୍ ସେତେବେଳକୁ ହାର୍ଭାଡ୍‌ରୁ ବିଦାୟନେଇ ଯୁକ୍ତରାଷ୍ଟ୍ର ଆମେରିକା ରାଷ୍ଟ୍ରପତିଂକର ପରରାଷ୍ଟ୍ର ବିଭାଗର ସହକାରୀ ସେକ୍ରେଟାରୀ ରୂପେ କାର୍ଯ୍ୟ କରୁଥାଂତି। ତାଂକ ସଂଗେ ସେଥର ମୋର ଆଉ ଦେଖାହେଲା ନାହିଁ। କେତେ ବର୍ଷ ତଳେ (୧୯୮୨) ଗ୍ରୀଷ୍ମଋତୁରେ ଲଂଡନରେ ତାଙ୍କ ସଂଗେ ବହୁ ବର୍ଷ ପରେ ସାକ୍ଷାତ୍ ହୋଇଥିଲା ଟେଲିଭିଜନ୍‌ରେ। ସେ ନିଜର ଆତ୍ମଜୀବନୀ ପ୍ରକାଶ କରିବା ପାଇଁ ଲଂଡନ ଆସିଥିଲେ।

ହାର୍ଭାଡ୍ ବିଶ୍ୱବିଦ୍ୟାଳୟ ଆଂତର୍ଜାତିକ କଳା-ବିଜ୍ଞାନ ସେମିନାର୍ ବହୁଦିଗରୁ ଐତିହାସିକ ଗୁରୁତ୍ୱପୂର୍ଣ। କଳା ଓ ସାହିତ୍ୟର ଏକ ଆଂତର୍ଜାତିକ ବିଚାରମଂଚରୂପେ ଏହାର ସ୍ଥାନ ସମଗ୍ର ପୃଥିବୀରେ ଅବିସଂବାଦୀ ଥିଲା। ଏଥିରେ କୌଣସି ସଂଦେହ ନାହିଁ। (ମୋ ପ୍ରଣୀତ ପ୍ରବଂଧ ପୁସ୍ତକ 'ଆଧୁନିକ ସାହିତ୍ୟର କେତେକ ଦିଗ', ୧୯୮୩ ଦ୍ରଷ୍ଟବ୍ୟ।)

**ମାସାଚୁସେଟ୍‌ସ ଗଭର୍ଣ୍ଣରଂକ ସହିତ କେତେଘଂଟା –**

ହାର୍ଭାଡ୍ ବିଶ୍ୱବିଦ୍ୟାଳୟ କଳାବିଗ୍ୟାନ ସେମିନାର୍ ଚାଲିଥିବା ଅବସରରେ ମାସଚୁସେଟ୍‌ସ ରାଜ୍ୟର ଗଭର୍ଣର ୧୯୫୫ ସାଲ୍ ଜୁନ୍ ମାସରେ ଦିନେ ଆମ ସେମିନାର ସଦସ୍ୟମାନଂକୁ ଚା'-ପାନ ପାଇଁ ନିମଂତ୍ରଣ କରିଥିଲେ। କେଂବ୍ରିଜ୍ ନଗରୀ ମାସାଚୁସେଟ୍‌ସ ରାଜ୍ୟର ଅଂତର୍ଭୁକ୍ତ। ଆମେମାନେ ଗଭର୍ଣର ମହୋଦୟଂକ ସହିତ ନାନା ବିଷୟରେ ଆଲୋଚନା କରିଥିଲୁ। ଆମ ଭିତରୁ କେତେ ଜଣ ସଭ୍ୟ ଗଭର୍ଣରଙ୍କ ହସ୍ତଲିପି (Autograph) ସଂଗ୍ରହ କରିଥିଲେ। ଗଭର୍ଣ୍ଣର ବା ରାଜ୍ୟପାଳ ମହାଶୟ ଜଣେ ଅମାୟିକ ବ୍ୟକ୍ତି ଥିଲେ। ସେ ଆମମାନଂକୁ ଆମ ସାହିତ୍ୟସୃଷ୍ଟି ସଂବଂଧରେ ନାନା ପ୍ରଶ୍ନ କରିଥିଲେ। ଆମେ କିଏ କଣ ଲେଖିଛୁ ଏବଂ ତହିଁର ଇଂରାଜୀ ଅନୁବାଦ ହୋଇଛି କି ନାହିଁ ପଚାରି ବୁଝିଥିଲେ। ମୋର ଦୁଇଖଂଡ ବହି ଯଥା 'The Boatman Boy & Forty Poems' ଏବଂ 'Sachi Raut-Ray – A Poet of the People' (ଏକ ମୂଲ୍ୟାୟନ) ବହି ଦୁଇଟିର ନାମ ଓ ପ୍ରକାଶକଂକ ଠିକଣା ସେ ଲେଖିରଖିଥିଲେ। ଏହି ବହି ଦୁଇଟିର ପ୍ରକାଶକ ଥିଲେ କଲିକତାର ବିଖ୍ୟାତ ପତ୍ରିକା 'The Modern Review'.

**ପ୍ରଫେସର ଡ. ଅମିୟ ଚକ୍ରବର୍ତ୍ତୀ –**

ହାର୍ଭାର୍ଡ୍‌ରେ ଥିଲାବେଳେ ମୁଁ ଅନେକ ଥର ବୋଷ୍ଟନ ନଗରୀ ଯାଇଛି। ଏହା କେମ୍ବ୍ରିଜ୍‌ଠାରୁ ଚାରି-ପାଂଚ ମାଇଲ୍ ଦୂର। ଇଂରାଜୀ ସାହିତ୍ୟର ପ୍ରଫେସର ଓ ବଂଗଳାର ସୁପରିଚିତ କବି ଡ. ଅମିୟ ଚକ୍ରବର୍ତ୍ତୀ ବୋଷ୍ଟନ ବିଶ୍ୱବିଦ୍ୟାଳୟର ଇଂରାଜୀ ଅଧ୍ୟାପକ ଥାଆଂତି। ସେ କେତେ ବର୍ଷ ଶାଂତିନିକେତନରେ କବିଗୁରୁ ରବୀଂଦ୍ରନାଥଂକ ସେକ୍ରେଟାରୀରୂପେ କାର୍ଯ୍ୟକରିଥିଲେ। ସେ ରବୀଂଦ୍ରନାଥଂକ ସଂଗେ କେତେ ଥର ବିଦେଶ ଯାଇଛଂତି। ରବୀଂଦ୍ରନାଥ ପ୍ୟାରିସ୍ ଓ ଲଂଡନ୍‌ରେ ତାଂକ ଅଂକିତ ଚିତ୍ରକଳା ପ୍ରଦର୍ଶନୀ କଲାବେଳେ ସେ ତାଂକ ସଂଗେ ଯାଇଥିଲେ। କଲିକତାରେ ତାଂକ ସହିତ ମୋର ଘନିଷ୍ଠ ପରିଚୟ ଥିଲା। ବହୁ ସଭା-ସମିତି ଓ ସାହିତ୍ୟ ଆସରରେ ତାଂକ ସହିତ ଆଳାପ-ଆଲୋଚନା ହେଉଥିଲା। ତାଂକର ଖଂଡ଼ିଏ କବିତା ବହି ବିଖ୍ୟାତ କବି ବୁଦ୍ଧଦେବ ବସୁ ତାଂକ ପ୍ରକାଶିତ 'ଏକ୍ ପୟସାୟେ ଏକ୍‌ଟି' ସିରିଜ୍‌ରେ ପ୍ରକାଶକରିଥିଲେ। ତାଂକ ବଂଗଳା କବିତାଗୁଡ଼ିକ ଭଲଲାଗୁଥିଲା। ତାଂକ ସହିତ ବୋଷ୍ଟନ୍‌ରେ ମୋର ଥରେ ଦି'ଥର ଦେଖାସାକ୍ଷାତ ଓ ଆଲୋଚନା ହୋଇଥିଲା।

**ବୋଷ୍ଟନ୍ ଟି.ଭି. ଓ ରେଡ଼ିଓରୁ କବିତାପାଠ –**

ମୁଁ ଓ ଫ୍ରାନ୍‌ସର ସୁଖ୍ୟାତ କବି ମିଃ. ଡୁମୁରୁ ବୋଷ୍ଟନ ରେଡ଼ିଓ ଓ ଟି.ଭି.ରେ କବିତାପାଠ କରିବା ପାଇଁ ଆମଂତ୍ରିତ ହୋଇଥିଲୁ। ମୁଁ ମୋର ବାଜିରାଉତ କାବ୍ୟର କବି ହରୀଂଦ୍ରନାଥ ଚଟୋପାଧ୍ୟାୟ କୃତ ଇଂରାଜୀ ଅନୁବାଦର କିୟଦଂଶ ଏବଂ ଅନ୍ୟ କେତୋଟି କବିତାର ଇଂରାଜୀ ଭାଷାଂତର ପାଠ କରିଥିଲି। ସେମାନଂକ ମଧ୍ୟରେ 'ଏରୋପ୍ଲେନ୍', 'ନକ୍ଷତ୍ରନେ', 'ଶାଜାହାନ୍' ଏବଂ 'ଆପୋକାଲିପ୍‌ସ', 'ଏକେହୋମ୍' ପ୍ରଭୃତି ଅନ୍ୟତମ।

ମିଃ ଡୁମୁରୁ ତାଂକର କେତୋଟି ଫରାସୀ କବିତାର ଇଂରାଜୀ ଅନୁବାଦ ପାଠକରିଥିଲେ। ଆମ କବିତାଗୁଡ଼ିକ ଶ୍ରୋତୃମହଲରେ ଆଦୃତ ହୋଇଥିଲା ବୋଲି ପରେ ଖବର ମିଳିଥିଲା।

**ହାର୍ଭାର୍ଡ୍‌ରେ ବର୍ଷା –**

ହାର୍ଭାର୍ଡ୍‌ରେ ବର୍ଷାଋତୁ ମୋତେ ଭାରି ଭଲଲାଗୁଥିଲା। ମୁଁ ଅନେକ ସମୟରେ ଆପାର୍ଟମେଂଟ୍ ଛାଡ଼ି ସାମ୍‌ନା ପଡ଼ିଆରେ ବର୍ଷାରେ ତିଂତି ତିଂତି ବୁଲିବାକୁ ଭଲପାଉଥିଲି। ବେଳେବେଳେ ଲୁଶି ନାମକ ଜଣେ Under Graduate ଝିଅ ମୋ ସହିତ ଆସି ଯୋଗଦେଉଥିଲା। ସେ ମୋ ବାହୁରେ ବାହୁ ଛଂଦି ଖୁବ୍ ଜୋର୍‌ରେ ମୋ ସହିତ ଚାଲୁଥିଲା। ଝିଅମାନଂକର ହଷ୍ଟେଲ୍ ଆମ ଆପର୍ଟମେଂଟ୍ ନିକଟରେ ଥିଲା। ଲୁଶି ଅନେକ ସମୟରେ ଆସି ବାରଂଡାରେ ଛିଡ଼ାହୋଇ ମୋର ବର୍ଷାରେ ଚାଲିବା ଦେଖିଥିଲା ଏବଂ ଖୁସିହେଉଥିଲା। ତା' ଆଖିରେ

ଆଗ୍ରହ ଓ କୌତୂହଳର ଛିଟା ସ୍ପଷ୍ଟ ବାରି ହେଉଥିଲା। ଟିକିଏ ଡାକିଦେଲେ ଯେପରି ସେ ବାରଂଡାରୁ ତଳକୁ ଡେଇଁପଡ଼ି ମୋ ସଂଗେ ଯୋଗଦେବାକୁ ଉତ୍ସୁକ ଜଣାଯାଉଥିଲା। ମୁଁ ଡାକିବାମାତ୍ରେ ସେ ତଳକୁ ଡେଇଁପଡ଼ି ଦୌଡ଼ିଆସୁଥିଲା।

ଥରେ ଦି'ଥର ବର୍ଷା ସହିତ ପ୍ରବଳ ଘଡ଼ଘଡ଼ି ପ୍ରାୟ ଅଧ-ଘଂଟାଏ ପର୍ଯ୍ୟଂତ ଲାଗିରହିଥିଲା। ଏତେ ସମୟ ଧରି ଏଭଳି ଘନ ଘନ ଉଚ୍ଚ ଶବ୍ଦର ଘଡ଼ଘଡ଼ି ଭାରତରେ ମୁଁ କେବେ ଅନୁଭବ କରିନଥିଲି। ମନେ ହେଉଥିଲା ଘଡ଼ଘଡ଼ି ଯେପରି ଭୀଷଣ ଶବ୍ଦ କରି ମୋ ରୁମ୍‌ରେ ପଡ଼ିବ।

ଉମା ମେହେଟା –

ହାର୍ଭାଡ୍‌ରେ ଥିଲାବେଳେ ଉମା ମେହେଟା ନାମକ ଜଣେ ଭାରତୀୟ ଝିଅ ସଂଗରେ ମୋର ବେଶ୍ ଆଳାପ ଓ ଘନିଷ୍ଠତା ହୋଇଥିଲା। ଉମା ହାର୍ଭାଡ୍ ସମର୍ ସ୍କୁଲ୍‌ରେ ଯୋଗଦେବା ପାଇଁ ଆସିଥିଲା। ଏହି ସମର୍ ସ୍କୁଲ୍ ପ୍ରତିବର୍ଷ ଦୁଇମାସ ଧରି ହେଉଥିଲା। ଏକୁଟିଆ ବୋଧ କଲେ ମୁଁ ଅନେକ ସମୟରେ ନିକଟସ୍ଥ ଛାତ୍ରୀ-ନିବାସକୁ ଯାଇ ଉମାକୁ ଡାକୁଥିଲି। ଆମେ ତାଂକ ହଷ୍ଟେଲ୍‌ର ପାହାଚ୍ ଉପରେ ବସି ଅନେକ ସମୟ କଥାବାର୍ତ୍ତାରେ କଟାଉଥିଲୁ। ଉମା ଓ ମୁଁ ଅନେକ ଦିନ କେଂବ୍ରିଜ୍‌ରେ ଥିବା ଚାଇନିଜ୍ ରେଷ୍ଟୋରାଁରେ ମଧ୍ୟାହ୍ନ-ଭୋଜନ କିଂବା ରାତ୍ରିଭୋଜନ କରିବାକୁ ଯାଉଥିଲୁ। ସେ ଚାଇନିଜ୍ ରେଷ୍ଟୋରାଁହିଁ ଏକମାତ୍ର ରେଷ୍ଟୋରାଁ ଥିଲା, ଯେଉଁଠାରେ ଭାତ ଓ କିଛି ଚାଇନିଜ୍ ତରକାରି (ଚପ୍‌ସୁଏ, ଚଉମିନ୍ ପ୍ରଭୃତି) ମିଳୁଥିଲା। ମଝିରେ ମଝିରେ ଭାତ ଖାଇବାକୁ ଖୁବ୍ ଇଚ୍ଛାହେଉଥିଲା। ତେଣୁ ମୁଁ, ଉମା ଏବଂ କେବେ କେବେ ତାର ରୁମ୍‌ମେଟ୍ ଆଲିସ୍ ସେଠାକୁ ଖାଇବାକୁ ଯାଉଥିଲୁ।

ଆମେରିକାନ୍ ନାଟକ –

କେଂବ୍ରିଜ୍‌ରେ ମୁଁ କେତୋଟି ଆମେରିକାନ୍ ନାଟକ ଦେଖିଥିଲି। ତା ମଧ୍ୟରେ ଉଇଲିୟମ୍ ଟେନେସିଂକ ରଚିତ ନାଟକ 'Cat on the hot tin Roof' (1955) ଅନ୍ୟତମ। ୟୁଜିନ୍ ଓ ନିଲଂକର ଗୋଟିଏ ଦୁଇଟି ନାଟକ ମଧ୍ୟ ଦେଖିଥିଲି। ନାଟକଗୁଡ଼ିକ ଆଧୁନିକ ଏବଂ ଉଦ୍‌ଭଟ ବା ଆବସର୍ଡ ଶ୍ରେଣୀର। ଥରେ ଦି'ଥର ଲୁଶି ମଧ୍ୟ ମୋ ସହିତ ଯାଇଥିଲା।

ସମକାଳୀନ ଆମେରିକୀୟ ନାଟକର ବର୍ତ୍ତମାନ୍ ପର୍ଯ୍ୟାୟକୁ ସୃଜନଶୀଳ ବର୍ତ୍ତମାନ ବା Creative Present କୁହାଯାଇପାରେ। ଏ ସଂବଂଧରେ ବହୁ ଗ୍ରଂଥ ପ୍ରକାଶ ପାଇଛି। ମୁଁ ଏ ଦିଗରେ ହାର୍ଭାଡ୍‌ରେ ଏବଂ ପରେ ନିୟୁୟର୍କରେ କିଛିଟା ଅଧ୍ୟୟନ କରିଥିଲି। ନାଟ୍ୟ-ସମାଲୋଚକମାଂନକ ମଧ୍ୟରେ ଅଛନ୍ତି କ୍ଲାର୍କ ୱେଲିୟମ୍ ସ୍ମିଥ୍ (ପୁସ୍ତକ : 'Chief Patterns of, World Drama', 1946), ବ୍ରୁକ୍‌ସ କ୍ଲିନ୍‌ଥ (ପୁସ୍ତକ: 'Understanding Drama' 1948), ଡେନି ସେଲ୍‌ଡନ୍

(ପୁସ୍ତକ: 'The Theatre' 1952), ବେଂଟ୍‌ଲେ ଏରିକ୍ ରସେଲ୍ (ପୁସ୍ତକ: 'In Search of Theatre', 1953), ଏନ୍‌ଜେଲ୍ ଇ.ଏ. (ପୁସ୍ତକ: 'The Haunted Heroes of Eugene O' Neill', 1953), ସେମିନାର ପରବର୍ତ୍ତୀ ଗ୍ରଂଥସୂଚୀ (୧୯୫୫ ପରେ) – ବେଲି ମାବେଲ୍ ଡ୍ରିସ୍‌କଲ୍ (ପୁସ୍ତକ: 'Maxwell Anderson, the Play Wright as Prophet', 1957), ଷ୍ଟିଭେନ୍‌ସ ଡାଭିଡ୍ ହାରିସନ୍ (ପୁସ୍ତକ: 'Ten Talents in the American Theatre', 1957) ଗାଇସ୍ ଏଲ୍‌ମ୍‌ର (ପୁସ୍ତକ: 'The Living Theatre', 1957), କାରଗିଲ୍ ଓସ୍‌କାର୍ (ପୁସ୍ତକ: 'O' Neill and His Plays'', 1961), ଡନର୍ ଆଲାନ୍ ସେମୋର୍ (ପୁସ୍ତକ: ''Fifty years of American Drama', 1951, ''Recent American Drama'', 1961), ସଦର୍‌ନ ରିଚ୍ଚାର୍ଡ (ପୁସ୍ତକ: 'The Seven Ages of the Theatre', 1961), ଓ୍ୱେର୍ ଏଡ୍‌ଉଇନ୍ (ପୁସ୍ତକ: 'The Length and Depth of Acting', 1962), ସାଇମନ୍ ଜନ୍ ଇଭାନ୍ (ପୁସ୍ତକ: 'Acid Test', 1963), ହ୍ୱାଇଟିଂଗ୍ ଫ୍ରାଙ୍କ୍ ଏମ୍. (ପୁସ୍ତକ: 'An Introduction to the Theatre', 1961), ଡୋନାହ୍ୟୁ ଫ୍ରାନ୍‌ସିସ୍ (ପୁସ୍ତକ: 'The Dramatic World of Tennessee Williams', 1964) ଇତ୍ୟାଦି ।

(The Creative Present – Contemporary American Theatre)

ଆର୍‌ଥର ମିଲ୍‌ରଂକ ''Death of a Sales Man'' (1949) ଏକ ଲୋକପ୍ରିୟ ଆଧୁନିକ ନାଟକ । ମୁଁ ସେମିନାର୍ ପରେ ନିୟୁୟର୍କରେ ଦୁଇମାସ ରହଣି ଭିତରେ ଏହା ଦେଖିବାର ସୁଯୋଗ ପାଇଥିଲି । ଏହାଛଡ଼ା ନିୟୁୟର୍କର ବ୍ରଡ୍‌ଓ୍ୱେ ରଂଗମଂଚ୍ଚରେ ଏକ ଜଳ-ନୃତ୍ୟ-ନାଟିକା (Water ballet) ଦେଖିବାର ଅବକାଶ ମିଳିଥିଲା । ସେହି ପ୍ରସଂଗରେ ମୁଁ ଆମେରିକାର କେତେକ ସମକାଳୀନ ନାଟକ ସଂବଂଧରେ ପରେ ସଂକ୍ଷିପ୍ତ ଆଲୋଚ୍ଚନା କରିବି ।

**ନିୟୁୟର୍କ ଯାତ୍ରା –**

ହାର୍ଭାଡ୍‌ରେ ରହଣି କାଳ ମଧ୍ୟରେ ଦୁଇଥର ମୁଁ ଏବଂ ମୋର ଆଉ ଦୁଇଜଣ ସଂଗୀ ଛୁଟିଦିନମାନଂକରେ ନିୟୁୟର୍କ ଯାଇଥିଲୁ । ଟ୍ରେନ୍‌ରେହିଁ ଯିବାକୁ ହୁଏ । ନିୟୁୟର୍କରେ ଆମେ Y.M.C.A.ରେ ରହିଥିଲୁ ।

ନିୟୁୟର୍କରେ ଥିଲାବେଳେ ଷ୍ଟାଚ୍ୟୁ ଅଫ୍ ଲିବର୍ଟି ଦେଖିବାକୁ ଯାଇଥିଲୁ । ଆମେରିକାର ସ୍ୱାଧୀନତାଲାଭର ଶତବାର୍ଷିକୀ ଉପଲକ୍ଷରେ ଏହାର ସ୍ମାରକରୂପେ ଫରାସୀଜାତି ଏହି ବିଗ୍ରହଟି ଆମେରିକାକୁ ୧୮୮୫ ଖ୍ରୀଷ୍ଟାବ୍ଦରେ ଉପହାର ଦେଇଥିଲା । ଏହା ପୃଥିବୀର ବୃହତ୍ତମ ବିଗ୍ରହ ବୋଲି କୁହାଯାଏ । ଏଥିରେ ମୁକ୍ତି-ଦେବୀ ଏକ ବଡ଼ ଟର୍ଚ୍ଚ ହାତରେ ଉପରକୁ ଟେକିଧରିଛଂତି । ଏହି ବିଗ୍ରହର ଉଚ୍ଚତା ୧୧୧ ଫୁଟ । ସେ ଧରିଥିବା ଟର୍ଚ୍ଚଟିର ଉଚ୍ଚତା ୪୦ ଫୁଟ । ରାତିରେ

ଏହା ବିଦ୍ୟୁତ୍ ଆଲୋକରେ ଜଳିଉଠେ। ଏହି ବିଗ୍ରହଟି ନିୟୁୟର୍କ ପୋତାଶ୍ରୟ ନିକଟରେ ଆଇସ୍‌ଲ୍ୟାଣ୍ଡ୍‌ସ୍ଥ 'Bed Loe's'ରେ ସ୍ଥାପିତହୋଇଛି। ଏହି ବିରାଟ ବିଗ୍ରହ ଭିତରେ ଉପରକୁ ଯିବା ପାଇଁ ଶିଡ଼ି ରହିଛି। ଏହାର ଶିଳ୍ପୀ ହେଉଛନ୍ତି F. Bartholdi। ଏହି ମୂର୍ତ୍ତିଟି ଆମେରିକା ବାସୀଂକର ଅତି ପ୍ରିୟ।

**ହାର୍ଭାଡ୍ ଲାଇବ୍ରେରୀରେ ବାଟବଣା –**

ମୁଁ ହାର୍ଭାଡ୍‌ରେ ଥିବାବେଳେ ସପ୍ତାହକେ ଦୁଇ-ତିନି ଦିନ ହାର୍ଭାଡ୍ ଲାଇବ୍ରେରୀକୁ ଯାଉଥିଲି। ପାଠାଗାରଟି ବିରାଟ ବଡ଼। ଏହା ଛଅ ସାତ ତାଲାବିଶିଷ୍ଟ ଏବଂ ଏହାର ଲଂବା ପ୍ରାୟ ୧,୧୦୦-୧,୨୦୦ ଫୁଟ ହେବ; ଚଉଡ଼ା ମଧ୍ୟ ସେହିପରି ପ୍ରଶସ୍ତ। ପ୍ରତି ମହଲାରେ ଧାଡ଼ି ଧାଡ଼ି ହୋଇ କାଠର ଖୋଲା ର୍‌ୟାକ୍‌ରେ ବହି ସବୁ ସଜ୍ଜିତ ହୋଇ ରଖାଯାଇଥାଏ। ଯାହାର ଯାହା ଇଚ୍ଛା, ସେ ର୍‌ୟାକ୍‌ରୁ ସେ ବହିଟି ଟାଣିଆଣି ସେଠାରେ ବସି ପଢ଼େ। ପାଠକମାନଂକ ବସିବା ପାଇଁ ମଝିରେ ମଝିରେ ଗଦିଦିଆ ଚଉଡ଼ା ବେଂଚ୍‌ମାନ ପଡ଼ିଥାଏ। ମୁଁ ଏହି ଲାଇବ୍ରେରୀରେ ମ୍ୟାକ୍‌ସମୁଲ୍ଲାରଂକ ଅନୂଦିତ ଋକ୍‌ବେଦ ଓ ଅନ୍ୟାନ୍ୟ ଦୁଷ୍ପ୍ରାପ୍ୟ ଗ୍ରଂଥମାନ ପଢ଼ିଥିଲି ଏବଂ କିଛି କିଛି ନୋଟ୍ ମଧ୍ୟ କରିଥିଲି। ବହୁ ଆମେରିକାନ୍ ନାଟକ ଓ କବିତା ଗ୍ରଂଥ ପଢ଼ିଥିଲି। ଏହି ଲାଇବ୍ରେରୀକୁ ଲାଗି ଏକ ସାଉଣ୍ଡ୍ ପ୍ରୁଫ୍ ଘରେ ବଡ଼ ବଡ଼ କବି ଓ ଲେଖକମାନଂକର ନିଜ କଂଠରେ ଆବୃତ୍ତିମାନ ଟେପ୍‌ରେକର୍ଡ଼ କରି ରଖାଯାଇଛି। ଯେଉଁ ଶ୍ରୋତା ଯେଉଁ କବିଂକର ଆବୃତି ଶୁଣିବାକୁ ଚାହେଁ, ସେ ସେହି ରେକର୍ଡ଼ ଲଗାଇଦେଇ ଶୁଣିବା ଯଂତ୍ର କାନରେ ଦେଇ ଆବୃତି ଶୁଣିପାରେ। ତା ପାଖରେ ବସିଥିବା ଅନ୍ୟ ଶ୍ରୋତାମାନେ ତାହା ଶୁଣିପାରିବେନି। ସେମାନେ ନିଜ ପସଂଦ ମୁତାବକ ରେକର୍ଡ଼ ଲଗାଇ ଶୁଣୁଥିବେ। ମୁଁ ସେହିଠାରେ ରବୀଂଦ୍ରନାଥଂକ ନିଜ କଂଠରେ ଆବୃତି ହୋଇଥିବା କେତୋଟି କବିତା ଶୁଣିଥିଲି। ଇୟେଟ୍‌ସ ଏବଂ ଟି.ଏସ୍. ଏଲିୟଟଂକର ଆବୃତି ମଧ୍ୟ ଶୁଣିଥିଲି। ଭାରତରେ ମୁଁ ରବୀଂଦ୍ରନାଥଂକ ଆବୃତି ଶୁଣିବାକୁ ସୁଯୋଗ ପାଇନଥିଲି; ଅନ୍ୟ ବିଦେଶୀ କବିମାନଂକର କଥା ଦୂରେ ଥାଉ।

ଦିନେ ମୁଁ ଲାଇବ୍ରେରୀର ଷଷ୍ଠ ତାଲାରେ ଗୋଟିଏ ବହି ପଢ଼ିବାରେ ଲିପ୍ତଥିଲି। କେତେବେଳେ ୫ଟା ବାଜିଗଲାଣି ମୋର ସେ କଥାକୁ ହୋସ୍ ନଥିଲା। ୫ଟା ବାଜିଗଲେ ଲାଇବ୍ରେରୀର କର୍ମଚାରୀମାନେ ଲାଇବ୍ରେରୀର ମୁଖ୍ୟ ଫାଟକ ବଂଦକରିଦେଇ ଆଲୁଅ ଲିଭାଇ ଚାଲିଯାଆଂନ୍ତି; କେବଳ କଂଟ୍ରୋଲ୍ ରୁମ୍‌ରେ ଦୁଇ ତିନି ଜଣ ଲୋକ ରାତି ଡ୍ୟୁଟିରେ ଥାଆଂତି। ଗୋଟିଏ ଦୁଇଟି ଆଲୁଅ ପ୍ରତି ମହଲାରେ ମିଂଜି ମିଂଜି ହୋଇ ଜଳୁଥାଏ। କିଛି ସମୟ ଯିବାପରେ ମୁଁ ଫେରିବା ପାଇଁ ସେହି ମହଲାର ଗୋଟିଏ ଲିଫ୍‌ଟର ସୁଇଚ୍ ଟିପି ତଳକୁ ଓହ୍ଲାଇଲି। ମାତ୍ର ଗ୍ରାଉଂଡ୍ ଫ୍ଲୋର୍‌ରେ ଦେଖେ, ବାହାରକୁ ଯିବା ଫାଟକ ବଂଦ୍।

ମୁଁ ଚାରିଆଡ଼େ ବୁଲି ପୁଣି ଗ୍ରାଉଂଡ୍ ଫ୍ଲୋର୍‌ରୁ ଲିଫ୍‌ଟରେ ସୁଇଚ୍ ମାରି ଉପରକୁ ଗଲି। ଲିଫ୍‌ଟ ଦରଜା ଖୋଲି ମହଲା ଭିତରେ ଯାଇ ପହଂଚିଲି। ଦେଖିଲି, ତା ପୂର୍ବ ମହଲାଠାରୁ ଭିନ୍ନ। ଏହିପରି ମୁଁ ଚାରି-ପାଂଚ ଥର ଉପର ମହଲାରୁ ତଳ ଗ୍ରାଉଂଡ୍ ଫ୍ଲୋର୍‌କୁ ଗଲି ଏବଂ ସେଠାରୁ ଲିଫ୍‌ଟ ଯୋଗେ ପୁଣି କେଉଁ ଏକ ଉପର ମହଲାକୁ ଆସିଲି; ମାତ୍ର ସଠିକ୍ ବାଟ ପାଉ ନଥିଲି। ଏହିପରି ତଳ ଉପର ହୋଇ ମୁଁ ପ୍ରାୟ କ୍ଳାଂତ ହୋଇପଡ଼ିଥିଲି। ଶେଷରେ ଏକ ମହଲାରେ ଗଦିଲଗା ବେଂଚ୍ ଉପରେ ବସିରହିଲି। ମୁଁ ଭାବିଲି, ଆଜି ରାତିଟା ଅଖିଆ ଅପିଆ ଏହିପରି କଟାଇବାକୁ ହେବ ମୃତ କବି ଓ ଲେଖକମାନଂକ ପ୍ରେତଂକ ଗ୍ରହଣରେ। ଚାରିଆଡ଼େ ବଡ଼ ଖାଁ ଖାଁ ଲାଗୁଥାଏ। ମନେହେଉଥାଏ ମୋତେ ଘେରି ଯେପରି ଶେଲି, କିଟସ୍, ସେକ୍‌ସପିଅର୍, ହୁଇଟ୍‌ମ୍ୟାନ୍ ପ୍ରଭୃତିଂକ ପ୍ରେତାତ୍ମାମାନେ ଛିଡ଼ା ହୋଇ ଥାଆଂତି। କିଛି ସମୟ ବସିରହିବା ପରେ ମୁଁ ପୁଣି ଉଠି ବୁଲିବାକୁ ଲାଗିଲି। ଝାପ୍‌ସା ଆଲୁଅରେ ଦେଖିଲି, ଗୋଟାଏ କାଂଥରେ ଏକ ଟେଲିଫୋନ୍ ରିସିଭର୍ ଝୁଲୁଛି। ତାର ଷ୍ଟାଂଡ୍ ନ ଥାଏ। ତାହା କେବଳ ଏ ବ୍ରାକେଟ୍‌ରେ କାଂଥରେ ଝୁଲୁଥାଏ। ମୁଁ ସେହି ରିସିଭର୍‌କୁ ଉଠାଇନେଲି ଏବଂ କାନରେ ଲଗାଇ ଟିକିଏ ଶୁଣିଲି। ହଠାତ୍ ତା ଭିତରୁ ହାଲୋ! ହାଲୋ! ଶବ୍ଦ ଶୁଣାଗଲା। ମୁଁ ମଧ୍ୟ ଉତ୍ତରରେ ହାଲୋ କହିଲି। ତଳୁ କଂଠସ୍ୱର ଶୁଣାଗଲା, ତୁମେ କେଉଁଠି ଅଛ? ('Where are you') ମୁଁ କହିଲି, 'ମୁଁ କେଉଁଠି ଅଛି ଜାଣେ ନାହିଁ; ଏଇଟା କେଉଁ ମହଲା ତା' ବି ଜାଣିନାହିଁ।' ('I am lost')। ତଳୁ କଂଠସ୍ୱର କହିଲା— 'ତମେ ଗୋଟାଏ କାମ କର। ପାଖ ର୍‌ୟାକ୍‌ରୁ ଗୋଟାଏ ବହି ଟାଣିଆଣି ତାର ନଂବରଟା ପଢ଼ି ଶୁଣାଅ।' ମୁଁ ସେହିପରି କଲି; ଗୋଟାଏ ବହି ଟାଣିଆଣି ତାର ନଂବରଟା ତାକୁ ଜଣାଇଲି। ତଳୁ ଶବ୍ଦ ଆସିଲା— 'ବେଶ୍, ଯେଉଁଠି ଅଛ ସେଇଠି ଛିଡ଼ାହୋଇ ରହ। ଆମେ ଆସୁଛୁ।'

କେତେ ମିନିଟ୍ ପରେ ଶିଡ଼ିରେ ଜୋତାଶବ୍ଦ ଶୁଣାଗଲା ଏବଂ ଟର୍ଚ୍ଚ ଲାଇଟ୍ ଧରି ଦୁଇତିନିଜଣ ଲୋକ ଆସି ମୋ ପାଖରେ ପହଂଚିଗଲେ। ମୋତେ ତଳକୁ ନେଇ ମେନ୍‌ଗେଟ୍ ଖୋଲି ବାହାରେ ଛାଡ଼ିଦେଲେ। ମୁଁ ନିଶ୍ଚିଂତ ହୋଇ ସ୍ୱସ୍ତିର ନିଃଶ୍ୱାସ ମାରିଲି। ଘଡ଼ିରେ ଦେଖିଲି ସାଢ଼େ ବାରଟା ବାଜିଲାଣି।

ହାଭାର୍ଡ଼ ଲାଇବ୍ରେରୀ ଅନୁଭୂତି ମୋ ଜୀବନରେ ଏକ ବିଶେଷ ଘଟଣା। କୌତୂହଳଜନକ ମଧ୍ୟ।

**ବଡ଼ ବଡ଼ ଫାକ୍‌ଟରୀ ପରିଦର୍ଶନ—**

ମୁଁ ହାର୍ଭାର୍ଡ଼ରେ ଥିଲାବେଳେ କେତୋଟି ବଡ଼ ବଡ଼ ଫାକ୍‌ଟରୀ ଦେଖିବାର କାର୍ଯ୍ୟକ୍ରମ ରଖାଯାଇଥିଲା। ଫୋର୍ଡ଼ ମୋଟର କାରଖାନା ତାହା ଭିତରୁ ଗୋଟିଏ। ଟ୍ରେନ୍‌ରେ ଆମେ କେତେ ଜଣ ଯାଇ ସେ ସବୁ କଳକାରଖାନା ବୁଲି ଦେଖିଥିଲୁ।

ଆମ ପାଇଁ ଅନୁମତିପତ୍ର ହାର୍ଭାର୍ଡ୍ ସେମିନାର୍ କର୍ତ୍ତୃପକ୍ଷ ମଗାଇଥିଲେ । ଫୋର୍ଡ୍ ମୋଟର୍ କାରଖାନାରେ ମୁଁ ଶ୍ରମିକ ମଂଗଳ ବ୍ୟବସ୍ଥା ତନ୍ନତନ୍ନ କରି ଦେଖିଥିଲି ଏବଂ ସେ ବିଷୟରେ କେତେକ ନୋଟ୍ସ କରିଥିଲି । ଏହା ଏକ ବିରାଟ କାରଖାନା । ବହୁ ହଜାର ଶ୍ରମିକ, ନାରୀପୁରୁଷ କାମ କରଂତି ।

**ହାର୍ଭାର୍ଡ୍ ଛାଡ଼ିବା ଦିନ –**

ମୁଁ ହାର୍ଭାର୍ଡ୍ରେ ପ୍ରାୟ ଦୁଇମାସ ରହିବା ପରେ ଆଂତର୍ଜାତିକ ଆତିଥ୍ୟ ପରିଷଦ (International Hospitality Association) ଆନୁକୂଲ୍ୟରେ ଆମେରିକାର ନିୟୁଜର୍ସିଠାରେ ରବର୍ଟ ବ୍ରୁଶ୍ ନାମକ ଜଣେ ଭଦ୍ରଲୋକଂକ ଘରେ ଦେଢ଼ ମାସ ଅତିଥି ଭାବରେ ରହିବା ପାଇଁ ଏହି ଅନୁଷ୍ଠାନର ସଭାପତି ମିଃ. ଡୋନାଲ୍ଡ୍ ବ୍ୟବସ୍ଥା କରିଦେଇଥିଲେ । ତଦନୁଯାୟୀ ମୁଁ ହାର୍ଭାର୍ଡ୍ରୁ ସମସ୍ତଙ୍କଠାରୁ ବିଦାୟନେଇ ମୋ ଜିନିଷପତ୍ର ବାଂଧି ଏୟାରପୋର୍ଟକୁ ଯିବା ପାଇଁ ପ୍ରସ୍ତୁତ ହେଉଥାଏ । ବିମାନଯୋଗେ ନିୟୁୟର୍କ ଯାଇ ସେଠାରୁ ଗୋଟିଏ ନଦୀ କାର୍ ବା ବସ୍ ଯୋଗେ ପାର୍ହେଲେ ନିୟୁଜର୍ସି ପଡ଼ିବ । ନଦୀଟି (ହଡ୍ସନ୍) ପାରହେବାକୁ ମାତ୍ର ୨୦/୨୫ ମିନିଟ୍ ସମୟ ବସ୍ରେ ବା କାର୍ରେ ଲାଗେ । ମୁଁ ନିୟୁଜର୍ସିରେ ପ୍ରାୟ ଦେଢ଼ମାସ ରହିବାର କାର୍ଯକ୍ରମ ସ୍ଥିରହୋଇଥାଏ । ମୋର ଉଦ୍ଦେଶ୍ୟ ଥିଲା ଆମେରିକାନ୍ ସାହିତ୍ୟ ଓ ସାଂସ୍କୃତିକ ଐତିହ୍ୟ ଅଧ୍ୟୟନ କରିବା ।

ମୁଁ ଏୟାରପୋର୍ଟକୁ ଯିବାପାଇଁ ତିଆରହେଉଥିଲି ଏବଂ ନଇଁପଡ଼ି ସୁଟ୍କେଶ୍ ସଜାଡୁଥିଲି; ଠିକ୍ ଏହି ସମୟରେ ମିଃ. ଉଇଲିଆମ୍ ଆସି ପହଂଚିଗଲେ । ଠିକ୍ ଯିବା ସମୟରେ ମୁଁ ଖୁବ୍ ବ୍ୟସ୍ତ ଥିବାବେଳେ ସେ ଆସିବାରୁ ମୁଁ ମନେ ମନେ ଟିକିଏ ବିରକ୍ତି ଅନୁଭବକଲି । ସେ ମୋତେ ପଚାରିଲେ– "ଆଚ୍ଛା, ତମେ ତ ଯାଉଛ; ଗୋଟାଏ କଥା ପଚାରିବି, କିଛି ମନେ କରିବ ନାହିଁ । ଆମେରିକାବାସୀଂକ ସଂବଂଧରେ ତମର ଧାରଣା କଣ ?" ମୁଁ ବଡ଼ ବିରକ୍ତବୋଧ-କରୁଥାଏ । ତଥାପି ଭଦ୍ରତାଖାତିର୍ରେ ଅତି ସଂକ୍ଷେପରେ କହିଲି– "ତମେ ସବୁ ବଡ଼ ବସ୍ତୁତାଂତ୍ରିକ; ବିଷୟବାସନାରେ ମଗ୍ନ ।"

ସେ କହିଲେ– "ଧର, ତମେ ଯାହା କହୁଛ ତାହା ଠିକ୍, ମାତ୍ର ଆମର କଣ କ୍ଷତି ହୋଇଯାଉଛି ? ("Suppose you are right, what do we lose"?) ମୁଁ କହିଲି, "ଏହାର ଅର୍ଥ, ତମେ ସବୁ ଭଗବାନଂକଠାରୁ ଦୂରେଇରହୁଛ ।" ସେ ପୂର୍ବଭଳି କହିଲେ– 'Suppose you are right, what do we lose'?

ମୁଁ ତାଂକୁ ଯାହା କହିଲି, ସେ କେବଳ ଉତ୍ତର ଦେଲେ– "ଧର ତମ କଥା ସତ; ମାତ୍ର ଆମର ସେଥିରେ କଣ କ୍ଷତି ହେଉଛି ?"

ଶେଷରେ ମୁଁ ବିରକ୍ତ ହୋଇ କହିଲି– "ମୁଁ କେମିତି ପ୍ରମାଣ କରିବି ଯେ, ମୁଁ ସ୍ୱର୍ଗକୁ ଯିବି; ଆଉ ତୁମେ ନରକକୁ ଯିବ ।" (How can I

prove that I shall go to heaven and you will go to hell?'') ସେ ହସିଦେଇ ବିଦାୟ ନେଇ ଚାଲିଗଲେ । ମୁଁ ସ୍ୱସ୍ତିର ନିଶ୍ୱାସ ମାରିଲି ଏବଂ ଜିନିଷପତ୍ର ସଜାଡ଼ିବାରେ ମନ ଦେଲି ।

ମିଃ ଉଇଲିଆମ୍ ଆମେ ସେମିନାର୍ ସଦସ୍ୟମାନେ ହାର୍ଭାର୍ଡ୍‌ରେ ପହଂଚିବା ବେଳଠୁ ଦିନର ଅଧିକାଂଶ ସମୟ ଆମ ସଂଗରେ କଟାଂତି । ଆମେ ଯେଉଁ ପାର୍ଟିକୁ ଗଲେ, ସେ ମଧ ଆମ ପିଛା ଧରଂତି । କେତୋଟି କକ୍‌ଟେଲ୍ ପାର୍ଟିକୁ ଆମେ ନ ଡ଼ାକିଲେ ମଧ ସେ ଆମ ସଂଗେ ଯାଇଛଂତି । ସେଥିପାଇଁ ଆମେ ସମସ୍ତେ ତାଂକ ଉପରେ ଭିତରେ ଭିତରେ ଚିଡ଼ୁ; ମାତ୍ର ଉପରେ କିଛି କହିପାରୁନା । ଆମେ ନିଜ ଭିତରେ କୁହାକୁହି ହେଉଁ, ଏ ବୋଧହୁଏ ସି.ଆଇ.ଏ. ଲୋକ–ମାର୍କିନ୍ ଗୁଇଂଦା ବିଭାଗ ଆମ ପିଛା ଲଗାଇଛି ।

**ହେନେରୀ ଏ. କିସିଂଜର୍ –**

ହାର୍ଭାର୍ଡ୍‌ରେ ଥିବା ସମୟରେ ଆମ ସେମିନାରର Executive Director ବା ନିର୍ବାହୀ ନିର୍ଦ୍ଦେଶକ ଡ. ହେନେରୀ କିସିଂଜରଂକ ସହିତ ମୋର ଘନିଷ୍ଠ ବଂଧୁତା ହୋଇଥିଲା । ସେ ବିଷୟରେ ପୂର୍ବରୁ ଟିକିଏ ସୂଚନା ଦେଇଛି । ମଝିରେ ମଝିରେ ମୁଁ ସଂଧ୍ୟାବେଳେ ତାଂକ ଫ୍ଲାଟ୍‌କୁ ଯାଉଥିଲି । ସେଠାରେ କିଛି ସମୟ ଗପସପରେ କଟାଉଥିଲୁ । ମିସେସ୍ କିସିଂଜ୍‌ର କିଛି ଖାଦ୍ୟ ଓ ପାନୀୟ ଦେଇ ଆପ୍ୟାୟିତ କରୁଥିଲେ । ତାଂକ ଛୋଟ ପିଲା ଦୁଇଟି ମଧ ମୋ ସଂଗେ ବେଶ୍ ଆନଂଦରେ କଥାବାର୍ତା କରୁଥିଲେ ।

ସେମିନାର୍ ଦିପହରେ ପ୍ରାୟ ଦେଢ଼ଘଂଟା ମଧ୍ୟାହ୍ନ-ଭୋଜନ ପାଇଁ ବଂଦରହୁଥିଲା । ଆମେ ସବୁ ବିଶ୍ୱବିଦ୍ୟାଳୟସ୍ଥିତ କାଫେଟୋରିଆରେ Lunch ପାଇଁ ଏକତ୍ରିତ ହେଉଥିଲୁ । କେହି କେହି ମଧ ବାହାରେ ଯାଇ ଖାଉଥିଲେ । Lunch ଘଂଟାରେ ଅନେକ ଦିନ ବେଶୀ କିଛି ସମୟ କିସଂଜ୍‌ରଂକ ସହିତ ଗପସପ ହୁଏ । ସେ କେତେ ଥର Lunch ପରେ କାଫେଟୋରିଆ ସାମ୍ନାରେ ଥିବା ଲନ୍‌କୁ ଡାକିନିଅଂତି । ସେଠାରେ ବସି ବିଭିନ୍ନ ବିଷୟ ଆଲୋଚ଼ନାକରୁ ।

ଦିନେ ଭାରତର ପରରାଷ୍ଟ୍ର ମନ୍ତ୍ରୀ କ୍ରିଷ୍ଣ ମେନନ୍‌ଙ୍କ ବିଷୟରେ ସେ କିଛି କଡ଼ା ମଂତବ୍ୟ ଦେଲେ । ମେନନ୍‌ଙ୍କ ବ୍ୟବହାରରେ ସେ ଓ ଆହୁରି ଅନେକ ଆମେରିକାନ୍ ଲୋକ କ୍ଷୁବ୍ଧ ହୋଇଥିଲେ । ମେନନ୍ ନିୟୁୟର୍କ ଏୟାର୍‌ପୋର୍ଟରେ ପହଂଚିଲେ ତାଂକୁ ସାଂବାଦିକମାନେ ଘେରିଯାଇ ଭାରତ ସଂବଂଧରେ ନାନା ପ୍ରଶ୍ନ ଗୁଡ଼େଇତୁଡ଼େଇ ପଚ଼ାରଂତି । ସେଥିରେ ସେ ଟିକିଏ ରାଗିଯାଆଂତି; ଥରେ ଦଳେ ସାଂବାଦିକଂକୁ ତାଂକ ବାଡ଼ି ଉଂଚେଇ ଖେଂକାରିଉଠିଥିଲେ । ସେ ଛବି କେତେକ ଆମେରିକାନ୍ ପତ୍ରିକା ପ୍ରକାଶକରିଥିଲେ । ମୋଟଉପରେ କ୍ରିଷ୍ଣମେନନ୍‌ଙ୍କ ଉପରେ କିସିଂଜର୍ ଓ ତାଂକ ପରି ଅନେକଂକର ଭଲ ଧାରଣା ନଥିଲା ।

ନେହେରୁଂକ ସଂବଂଧରେ ତାଂକର ଧାରଣା ମଂଦ ନଥିଲା । ତେବେ ଆମେରିକା ସହିତ ଭାରତର ଦୂରଛଡ଼ା ସଂପର୍କକୁ ଯାହା ନେହେରୁଂକର non-alignment policyର ଅବଶ୍ୟଂଭାବୀ ପରିଣାମ ଥିଲା , ସେ ତାହାର ଟିକିଏ ସମାଲୋଚନା କରୁଥିଲେ । ପାକିସ୍ତାନ ପ୍ରତି ତାଙ୍କ ହୃଦୟରେ ଟିକିଏ କୋମଳ ସ୍ଥାନ ଥିଲା ପରି ଜଣାଯାଉଥିଲା । ଏହା ୧୯୬୮-୭୦ ମସିହାରେ ସେ ଆମେରିକାର ପରରାଷ୍ଟ୍ର ସଚିବ ଥିଲାବେଳେ ବେଶ୍ ପରିସ୍ଫୁଟ ହୋଇଥିଲା । ସେ ଆମେରିକା ସହିତ ପାକିସ୍ତାନର ସଂପର୍କକୁ ଦୃଢ଼କରିଥିଲେ; ଚାଇନା ସହିତ ମଧ୍ୟ ଆମେରିକାର ତିକ୍ତ ସଂପର୍କକୁ ମଧୁର କରିଥିଲେ । ଚାଇନା ଓ ଆମେରିକା ତାଂକ ପ୍ରଚେଷ୍ଟାରେ ପରସ୍ପରର ନିକଟତର ହୋଇପାରିଥିଲେ; ଫଳରେ ପାକିସ୍ତାନ ଓ ଚାଇନା ମଧ୍ୟରେ ମଧ୍ୟ ସୁସଂପର୍କ ଓ ଘନିଷ୍ଠ ବୁଝାମଣା ଗଢ଼ିଉଠିଥିଲା । ଏସବୁ ଭାରତର ସ୍ୱାର୍ଥବିରୋଧୀଥିଲା ।

ମୁଁ ଆମେରିକାରୁ ଫେରି ଲଂଡନ୍‌ରେ ପ୍ରାୟ ଦୁଇମାସ ଥିଲି । ସେତେବେଳେ ପଣ୍ଡିତ ନେହେରୁଂକ ଭଉଣୀ ବିଜୟଲକ୍ଷ୍ମୀ ପଣ୍ଡିତ ଇଂଲଂଡ୍‌ରେ ଭାରତର ହାଇକମିଶନର୍ ଥିଲେ । ମୋର ତାଂକ ସହିତ କେବେକେବେ ଲଂଡନ୍‌ରେ ଥିବା ଭାରତୀୟ ଦୂତାବାସରେ (ହାଇକମିଶନ୍‌ର ଦପ୍ତର) ଦେଖାହେଉଥିଲା । ମୁଁ ତାଂକୁ ଭାରତ ପ୍ରତି ଆମେରିକାର ମନୋଭାବ ସଂପର୍କରେ କହିଲାବେଳେ କିସିଂଜରଙ୍କର କ୍ରିଷ୍ଣମେନନ୍‌ଙ୍କ ପ୍ରତି ଯେଉଁ ଅପ୍ରିୟ ମନୋଭାବ ଥିଲା, ତାହାର ସୂଚନା ଦେଇଥିଲି । ସେ ମୋତେ ଭାରତ ଫେରିବା ପରେ ଏ ବିଷୟ ନେହେରୁଂକୁ କହିବା ପାଇଁ ପରାମର୍ଶ ଦେଇଥିଲେ । ସେ ନିଜେ ନେହେରୁଂକୁ ନ କହି ମୋତେ କାହିଁକି ମଝିରେ ପୂରାଉଛଂତି, ମୁଁ କିଛି ବୁଝିପାରିଲିନି । ମୁଁ କିନ୍ତୁ ନେହେରୁଂକୁ ଏ ବିଷୟ ମୋଟେ କହିନାହିଁ; ଯଦିଚ୍ଚ ତାଂକ ସଂଗେ ଏହାପରେ ଦୁଇତିନି ଥର ସାକ୍ଷାତ୍‌କାର ହୋଇଥିଲା ।

୧୯୬୭-୬୮ ସାଲ୍ ବେଳକୁ କିସିଂଜର ଆମେରିକାର ପରରାଷ୍ଟ୍ର ସଚିବ ଓ ସ୍ୱରାଷ୍ଟ୍ର ସଚିବ ପ୍ରଭୃତି ତୁଂଗ ଆସନମାନ ଅଧିକାର କରି ବସିଥିଲେ । ସେତେବେଳେ ସେ କାର୍ଯ ଉପଲକ୍ଷରେ ଭାରତ ଆସିଥିଲେ । ତାଂକୁ ଭାରତର କେତେକ ସଂବାଦପତ୍ର "The most eligible Bachelor of Washington" ବୋଲି ମଂତବ୍ୟ ପ୍ରକାଶ କରିଥିଲେ । ଏହାର ଅର୍ଥ, କିସିଂଜର୍ ଅବିବାହିତ ଅଛଂତି ଏବଂ ୱାଶିଂଟନ୍‌ର ବହୁ ଅବିବାହିତା ରମଣୀ ତାଂକୁ ବିବାହ କରିବାକୁ ଲାଳାୟିତ । ମୁଁ ଏଭଳି ମଂତବ୍ୟ ପଢ଼ି ବିସ୍ମିତହେଲି । ମୁଁ ତ ତାଂକ କେଂବ୍ରିଜ୍ ଫ୍ଲାଟ୍‌କୁ ବହୁବାର ଯାଇଛି । ମିସେସ୍ କିସିଂଜର୍ ଓ ତାଂକ ପିଲା ମୋର ଭବ୍ୟ ଚର୍ଚ୍ଚା କରିଛଂତି । ତେଣୁ ସେ ଅବିବାହିତ ଅଛଂତି ବୋଲି କାହିଁକି ଲେଖାଯାଉଛି ?

ମୁଁ କଲିକତାର 'ଷ୍ଟେଟ୍‌ସମ୍ୟାନ୍' ପତ୍ରିକାକୁ ଖଣ୍ଡିଏ ଚିଠି ଲେଖି ଏସବୁ ବିଷୟ ଜଣାଇଥିଲି । ସେ ମୋ ଚିଠିଟିକୁ Letters to the Editor ସ୍ତମ୍ଭରେ

ଛାପିଦେଇଥିଲେ । ଡ. କିସିଂଜର୍ ସେ ଚିଠିଟି ପଢ଼ିଥିଲେ । ବୋଧହୁଏ ଦିଲ୍ଲୀରେ ଥିବା ଆମେରିକାନ୍ ଦୂତାବାସ ତାହା ତାଂକୁ ପଠାଇଥିବ । ମୁଁ ମଧ୍ୟ 'ଷ୍ଟେଟ୍ସମ୍ୟାନ୍'ରେ ପ୍ରକାଶିତ ମୋ ଚିଠିର କଟିଂର୍ ତାଂକୁ ଏକ ବ୍ୟକ୍ତିଗତ ଚିଠି ସହ ପଠାଇଥିଲି । ସେ ମୋତେ ଖଂଡେ ଚିଠି ଲେଖିଥିଲେ । ତାହା ତଳେ ଦିଆଗଲା ।

WHITE HOUSE, WASHINGTON D.C.

Dear Mr. Rout-Ray December, 1970

I am no longer married to Mrs. Kissinger, the two children you saw are not so small as you saw them.

The reason of why you are not getting 'confluence' is that it is no longer published. Yours Sincerly

Mr. Sachi Rout-Ray, Mission Road, Heneri A. Kissinger

Cuttack-753001, India.

ଏହାର କିଛି ଦିନ ପରେ ଡଃ କିସିଂଜର୍ ମିସ୍ ନାନ୍ସି ନାମ୍ନୀ ଜଣେ ମହିଳାଂକୁ ବିବାହକରିଥିବା କଥା ସଂବାଦପତ୍ରରୁ ପଢ଼ିଲି ଓ ସେମାନଂକ ଯୁଗ୍ମଫଟୋଚିତ୍ର ମଧ୍ୟ ଦେଖିଲି ।

ଏହା ପରେ ଡ. କିସିଂଜର୍ ଭିଏତ୍‌ନାମ୍‌ର ପ୍ରଧାନମଂତ୍ରୀ ଥୋଂକ ସହିତ ଯୁଗ୍ମ ଭାବରେ ଶାଂତି ପାଇଁ ନୋବେଲ୍ ପୁରସ୍କାର ପାଆଂତି । ଭିଏତ୍‌ନାମ୍ ଓ ଆମେରିକା ମଧ୍ୟରେ ଦୀର୍ଘଦିନଧରି ଚାଲିଥିବା ଯୁଦ୍ଧର ବିରତି ଘଟାଇବାରେ ଏବଂ ଦୁଇ ଦେଶ ମଧ୍ୟରେ ଶାଂତି ପ୍ରତିଷ୍ଠା କରାଇବାରେ କିସିଂଜର୍ ମୁଖ୍ୟ ଭୂମିକା ନେଇଥିଲେ । ସେ ପୃଥିବୀରେ ଜଣେ ତୁଂଗ ରାଷ୍ଟ୍ରନୀତିଜ୍ଞରୂପେ ପରିଗଣିତ ହୁଅଂତି । ମାତ୍ର ସେତେବେଳେ ୧୯୫୫ ମସିହାରେ ଆମେ ଭାବିପାରିନଥିଲୁ ଯେ, ହାର୍ଭାଡ୍‌ର ସେହି ଇତିହାସର ସହଯୋଗୀ ପ୍ରଫେସର ଦିନେ ଜଣେ ବିଶ୍ୱବିଖ୍ୟାତ କୂଟନୀତିଜ୍ଞ ହେବ ।

ଡ. କିସିଂଜର୍ ହାର୍ଭାଡ୍ ଛାଡ଼ି ଆମେରିକାର ତତ୍‌କାଳୀନ ପ୍ରେସିଡେଣ୍ଟ୍ ନିକ୍ସନଂକ ସହକାରୀ ସଚିବ ଥିବାବେଳେ ଥରେ କଲିକତା ଆସିଥିଲେ । ସେ ଗ୍ରାଂଡ୍ ହୋଟେଲ୍‌ରେ ରହୁଥିଲେ । ଏ ସଂବାଦ କୌଣସି ଖବରକାଗଜରୁ ପଢ଼ି ମୁଁ କେଶୋରାମ୍ କଟନ୍ ମିଲ୍‌ରୁ ଫୋନ୍‌କରିଥିଲି । ମାତ୍ର ସେ ତାଂକ ରୁମ୍‌ରେ ନଥିଲେ । ତେଣୁ ମୁଁ ଏକ ମେସେଜ୍ ଓ ମୋ ଟେଲିଫୋନ୍ ନଂବର ଦେଇଥିଲି । ସଂଧ୍ୟାବେଳେ ଡ. କିସିଂଜର୍ ମୋତେ ମୋ କ୍ୱାଟର୍ ଟେଲିଫୋନ୍ ନମ୍ବରରେ ଫୋନ୍‌କରିଥିଲେ । ଆମେ ବେଶ୍ କିଛି ସମୟ କଥାବାର୍ତ୍ତା ହୋଇଥିଲୁ । 'ଏ କାମ କିପରି ଲାଗୁଛି' ବୋଲି ତାଂକୁ ମୁଁ ପଚାରିବାରେ ସେ କେବଳ ଟେଲିଫୋନ୍‌ରେ ଟିକିଏ ହସିଥିଲେ । ସେ ସେହି ରାତି ଫ୍ଲାଇଟ୍‌ରେ କୌଣସି ଏକ ଦୂର ପ୍ରାଚ୍ୟ ଦେଶକୁ ଗଲେ ।

ଏହାପରେ ୧୯୮୪ ମସିହାରେ ତାଂକ ସଂଗେ ଲଂଡନ୍‌ରେ ଦେଖାହୋଇଥିଲା, ଟେଲିଭିଜନ୍‌ରେ। ସେ ଆତ୍ମଜୀବନୀ ପ୍ରକାଶ କରିବା ପାଇଁ ଲଂଡନ୍ ଆସିଥିଲେ। ଏହା ପୂର୍ବରୁ ସୂଚନା ଦେଇଛି।

**ହାର୍ଭାର୍ଡ୍‌ରେ ଓଡ଼ିଆ ଛାତ୍ର –**

ପ୍ରଥମ କେତେଦିନ ହାର୍ଭାର୍ଡ୍‌ରେ କୌଣସି ଓଡ଼ିଆ ଛାତ୍ର ଆଖିରେ ପଡ଼ି ନଥିଲେ; ଯଦିଚ୍ ବଂଗାଳୀ, ଦକ୍ଷିଣଭାରତୀୟ, ଉତ୍ତର ପ୍ରଦେଶ ଓ ମହାରାଷ୍ଟ୍ର ପ୍ରଭୃତି ରାଜ୍ୟର କେତେକ ଛାତ୍ରଛାତ୍ରୀ ମୋ ସହିତ ସାକ୍ଷାତ କରି ନିଜ ନିଜ ପରିଚୟ ଦେଇଥିଲେ। କେତେକ ଛାତ୍ର ମୋତେ ସେମାନଙ୍କ ହଷ୍ଟେଲ୍‌କୁ ଡାକି ନେଇଥିଲେ।

ଦିନେ ହଠାତ୍ ଜଣେ ଓଡ଼ିଆ ଛାତ୍ର ଆସି ମୋତେ ନମସ୍କାରକଲେ ଏବଂ ମୋର କୁଶଳ ପଚାରିଲେ। ସେ ତାଂକର ପରିଚୟ ଦେଇଥିଲେ। ସେ ହାର୍ଭାର୍ଡ୍‌ରେ କୌଣସି ଏକ ଇଂଜିନିୟରିଂ କଲେଜ୍‌ରେ ନୂଆ ଭର୍ତିହୋଇଥାଆନ୍ତି। ତାଂକ ନାମ ବଂଶୀଧର ପଂଡା, ଘର ବାରଂଗ। ସେ ମୋତେ ତାଂକ ହଷ୍ଟେଲ୍‌କୁ ଦୁଇ ତିନି ଥର ନିମଂତ୍ରଣ କରିଥିଲେ। ଭାରତୀୟ ଖାଦ୍ୟ ନିଜ ହାତରେ ପ୍ରସ୍ତୁତ କରି ଖୁଆଇଥିଲେ। ହାର୍ଭାର୍ଡ୍‌ରେ ତ ଭାତ ତରକାରି ଆଦି ମିଳିବା ଦୁର୍ଲ୍ଲଭ ଥିଲା। ସେ Curry Powder କିଣି ତରକାରି ବନାଇଥିଲେ। ତାଂକ ପ୍ରସ୍ତୁତ ଖାଦ୍ୟ ବେଶ୍ ଭଲଲାଗୁଥିଲା। ମୁଁ ହାର୍ଭାର୍ଡ୍‌ରେ ଥିବା ସମୟରେ ସେ ଅନେକ ଥର ମୋତେ ତାଂକ ହଷ୍ଟେଲ୍ ରୁମ୍‌କୁ ଡାକିନେଇ ଭାରତୀୟ ଖାଦ୍ୟ ପରଷିଛନ୍ତି। ମୁଁ ପେଟଭରି ଭାତ, ତରକାରି ଇତ୍ୟାଦି ଖାଇ ତୃପ୍ତି ଲାଭକରିଛି। ସେ ଛାତ୍ରଜଣକ ହେଉଛଂତି ପରବର୍ତ୍ତୀ କାଳର ବିଖ୍ୟାତ ଶିଳ୍ପପତି ଡ. ବଂଶୀଧର ପଂଡା, IMFA ଶିଳ୍ପ ପ୍ରତିଷ୍ଠାନର ପ୍ରତିଷ୍ଠାତା ଓ ଚେୟାରମ୍ୟାନ୍।

ସଂସ୍କୃତ ଅଧ୍ୟାପକ ଅ. ସାହୁଂକ ସଂଗେ ମଧ ଦେଖାହୋଇଥିଲା। ସେ ହାର୍ଭାର୍ଡ୍‌ରେ ସଂସ୍କୃତ ପଢ଼ିବା ପାଇଁ ବୃତ୍ତି ପାଇ ଯାଇଥିଲେ ଏବଂ ସେଠାରେ ବିଶ୍ୱବିଦ୍ୟାଳୟରେ ଭର୍ତିହୋଇଥିଲେ। ରହୁଥିଲେ ଏକ ହଷ୍ଟେଲ୍‌ରେ। ସଂସ୍କୃତ ପଢ଼ିବା ପାଇଁ ଭାରତୀୟ ଛାତ୍ର ହାର୍ଭାର୍ଡ୍ ଯାଇଛଂତି ଶୁଣି ମୁଁ ଟିକିଏ ଆଶ୍ଚର୍ଯ୍ୟ ହେଲି। ସେ କହିଲେ, ହାର୍ଭାର୍ଡ୍‌ରେ ସଂସ୍କୃତ ପାଠ୍ୟକ୍ରମ ଓ ଅଧ୍ୟାପନା ଅତି ଉଚ୍ଚସ୍ତରର।

ମୁଁ ହାର୍ଭାର୍ଡ୍‌ର ମୁଖ୍ୟ ସଂସ୍କୃତ ପ୍ରଫେସରଂକ ସଂଗେ ଦେଖାକରିଥିଲି। ସେ ଆମେରିକାନ୍। ତାଂକର ନାମ ଠିକ୍ ମନେପଡୁନି। ଭାରତୀୟ ଦର୍ଶନ ସଂବଂଧରେ ଆଲୋଚନା ହୋଇଥିଲା। ସେ କହିଲେ, ସତ୍ତ୍ୱ, ରଜ, ତମ ଏହି ତିନିଗୁଣ ଛଡ଼ା ଆଉ ଏକ ଗୁଣାତୀତ ଅବସ୍ଥା ଅଛି; ତାହା ହେଉଛି ନିର୍ଗୁଣ। ତାଂକର ବିଦ୍ୱତ୍ତାରେ ମୁଁ ମୁଗ୍ଧ ହୋଇଯାଇଥିଲି।

**ହାର୍ଭାର୍ଡ୍ ଛାତ୍ରଛାତ୍ରୀଂକ ବେଶଭୂଷା –**

ସେତେବେଳେ ଆମେରିକାରେ ଗ୍ରୀଷ୍ମଋତୁ ପଡ଼ିଥାଏ। କେତେକ ଛାତ୍ର ଖଂଡିଏ

ଛୋଟ ହାପ୍‌ପ୍ୟାଣ୍ଟ୍ ଓ ଗେଂଜି ପିଂଧି କ୍ଲାସ୍‌କୁ ଆସୁଥାଆଂତି। ଛୋଟ ଛୋଟ କରି ବାଳ କଟାଇବା ସେତେବେଳେ ଚଳଣି ଥିଲା। ଝିଅମାନେ ଖୁବ୍ ହାଲ୍‌କା ଓ ଢିଲା ଜାମା କିଛି ପିଂଧି କ୍ଲାସ୍‌କୁ ଆସୁଥିଲେ। ଗ୍ରୀଷ୍ମଋତୁରେ ପ୍ରଚଂଡ ଉତ୍ତାପ ଅନୁଭୂତ ହେଉଥିଲା। ତାପମାତ୍ରା ପ୍ରାୟ କଲିକତା ପରି ୧୦୧ ଓ ୧୦୨ ଡିଗ୍ରୀକୁ ଉଠୁଥିଲା। ହାର୍ଭାଡ୍ ବା ଆମେରିକାର ଅନ୍ୟ କେଉଁଠି ପ୍ରାୟ ଫ୍ୟାନ୍ ବା ବିଦ୍ୟୁତ୍ ପଂଖା ନଥିଲା। ସମସ୍ତେ ସେହି କେଇଟା ଦିନ କଷ୍ଟେମଷ୍ଟେ ଚଳିଯାଉଥିଲେ। ଶୀତଋତୁରେ ଆମେରିକାରେ ବେଶ୍ ବରଫ ପଡ଼େ, ପ୍ରବଳ ଥଂଡା ହୁଏ।

**ନିୟୁୟର୍କରେ ଦେଢ଼ମାସ –**

ମୁଁ ନିୟୁଜର୍ସିରେ ବ୍ରୁଶ୍ ପରିବାର ଅତିଥିରୂପେ ଦେଢ଼ମାସରୁ କିଛି ଅଧିକ କାଳ ଥିଲି। ବ୍ରୁଶ୍ ପରିବାର କହିଲେ ବ୍ରୁଶ୍‌ର ପ୍ରୌଢ଼ ପିତା-ମାତା ଏବଂ ବ୍ରୁଶ୍ ବୁଝାଂତି। ବ୍ରୁଶ୍‌ର ବଡ଼ଭାଇ ବିବାହିତ ହୋଇ ଅଲଗା ସ୍ଥାନରେ ରହୁଥାଆଂତି। ବ୍ରୁଶ୍‌ର ବାପାଂକର ନିୟୁୟର୍କରେ ଏକ ପ୍ରେସ୍ ଥାଏ। ମୁଁ ବ୍ରୁଶ୍‌ର ରୁମ୍‌ରେ ତା ଖଟକୁ ଲାଗି ଅନ୍ୟ ଏକ ଖଟରେ ଶୋଉଥିଲି। ସକାଳୁ ଉଠି ଗାଧୁଆପାଧୁଆ କରିସାରିଲେ ବ୍ରୁଶ୍‌ର ମାଆ କିଛି ବ୍ରେକ୍‌ଫାଷ୍ଟ୍ ଦେଇଦିଅଂତି। ପାଉଁରୁଟି, ଜାମ୍, ଅଣ୍ଡା ଏବଂ କିଛି ଫଳ ଏବଂ କଫି ବ୍ରେକ୍‌ଫାଷ୍ଟ୍‌ର ସାମଗ୍ରୀ ଥିଲା। ମୁଁ ବ୍ରେକ୍‌ଫାଷ୍ଟ୍ ଖାଇସାରି କିଛି ସମୟ ଖବରକାଗଜ ବା ବହିପତ୍ର ପଢ଼େ। ବ୍ରୁଶ୍ ଓ ତା ବାପା ପ୍ରାୟ ଘଂଟାକ ପୂର୍ବରୁ ବ୍ରେକ୍‌ଫାଷ୍ଟ୍ ଖାଇ ନିଜ ନିଜ କର୍ମସ୍ଥାନକୁ କାର୍ ବା ବସ୍‌ରେ ଚାଲିଯାଇଥାଆଂତି। ମୁଁ ସକାଳ ୯ଟା ୧୦ଟା ବେଳକୁ ବସ୍‌ରେ ନିୟୁୟର୍କ ଚାଲିଯାଏ। ନିୟୁୟର୍କରେ କିଛି ଲଂଚ୍ ନିଏ। ଲଂଚ୍ କହିଲେ ସାଂଡ୍‌ଉଇଚ୍, କବାବ୍, ହଟ୍‌ଡଗ୍ ପ୍ରଭୃତି ଗୋଟିଏ ପ୍ୟାକେଟ୍‌ରେ ନେଇ ଫିଫ୍‌ଥ୍ ଏଭେନିୟୁରେ ରକ୍‌ଫେଲାର ପ୍ଲାଜା ନିକଟରେ ଯାଇ ପହଂଚେ। ରକ୍‌ଫେଲାର୍ ପ୍ଲାଜା ପରିସର ଭିତରେ ଏକ ସୁଂଦର ସୁଇମିଂଗ୍ ପୁଲ୍ ଥାଏ। ତାର ଚାରିପାଖେ ଘାସ ଏବଂ ଧାନଭଳି କିଛି ଲଂବା ଘାସ ଲଗାଯାଇଥାଏ। ଖୁବ୍ ସୁଂଦର ପବନ ଆସେ। ମୁଁ ସେଠି ବସି ଲଂଚ୍ ଖାଇନିଏ। ନିକଟରେ ପିଇବା ପାଣି ପାଇପ୍ ଥାଏ। ଦିନେ ଦିନେ ମୁଁ ବ୍ରୁଶ୍‌ର ବାପାଂକ ପ୍ରେସ୍‌କୁ ଚାଲିଯାଏ। ସେଠି କିଛି ସମୟ କଟାଇ କୌଣସି ଲାଇବ୍ରେରୀ କିଂବା ଚିତ୍ରଶାଳାରେ ଦିନର ଅଧିକାଂଶ ସମୟ କଟାଏ। ମୁଁ ଆମେରିକାନ୍ ନାଟକ ବେଶି ପଢୁଥାଏ।

**ଆମେରିକାନ୍ ଡ୍ରାମା –**

ଆଧୁନିକ ଆମେରିକାନ୍ ଡ୍ରାମାର ପରଂପରା କହିଲେ ଆମକୁ ଇଉଜେନ୍ ଓ'ନିଲ୍ (ମୃତ୍ୟୁ ୧୯୫୩), ଟି.ଏସ୍. ଏଲିଅଟ୍ (ମୃତ୍ୟୁ ୧୯୬୫), ମାକ୍‌ସୱେଲ୍ ଆନ୍‌ଡରସନ୍ (ମୃତ୍ୟୁ ୧୯୫୯) ପ୍ରଭୃତିଂକ ନିକଟକୁ ଯିବାକୁ ହେବ। ଏହି ନାଟ୍ୟକାରମାନଂକର ଅମର କୃତି ସେମାନଂକ ମୃତ୍ୟୁର ବହୁ ବର୍ଷ ପରେ ମଧ୍ୟ

ସଜୀବ ରହିଛି। ଏଲିୟଟ୍‌ଙ୍କର "Family Re-union", "କକ୍‌ଟେଲ୍ ପାର୍ଟି" ଓ ଓ'ନିଲ୍‌ଙ୍କର "Electra" ପ୍ରଭୃତି ପୁସ୍ତକ ସମସାମୟିକ ନାଟ୍ୟକଳାର ଶ୍ରେଷ୍ଠ ନମୁନା ବହନକରଂତି। ମୁଁ ଏଲିୟଟ୍‌ସ ଓ ଓ'ନିଲ୍‌ଙ୍କର କେତୋଟି ନାଟକ ନିୟୁୟର୍କ ଓ ଲଂଡନ୍‌ରେ ଦେଖିବାର ସୁଯୋଗପାଇଥିଲି। ଏହାଛଡ଼ା ସାମ୍ ସେପାର୍ଡ୍, ରେବ୍ ଆଧୁନିକ ନାଟ୍ୟକାରଂକ ମଧ୍ୟରେ ବିଶେଷ ଉଲ୍ଲେଖଯୋଗ୍ୟ ଏବଂ ସ୍ମରଣୀୟ।

**'ଥଂବୁ ମୃତ୍ତି' ଓ 'ପୋଏଟ୍ରି' ପତ୍ରିକା –**

ନିୟୁୟର୍କରେ ଥଂବୁ ମୃତ୍ତିଂକ ସହିତ ଦୁଇଥର ଦେଖା ଓ ଆଲୋଚନା ହୋଇଥିଲା। ସେ 'ପୋଏଟ୍ରି' ପତ୍ରିକା ପ୍ରକାଶକରୁଥିଲେ। ସେ ସିଲୋନ୍‌ର ଅଧିବାସୀ ଥିଲେ। ସେ ମୋର କେତେକ ଇଂରାଜୀ କବିତା ପଢ଼ି ଖୁବ୍ ଖୁସିହୋଇଥିଲେ। 'ପୋଏଟ୍ରି'ରେ ପ୍ରକାଶ କରିବା ପାଇଁ ମୋର କେତୋଟି କବିତା ସେ ରଖିଥିଲେ। ପରେ ସେଗୁଡ଼ିକ ପ୍ରକାଶ ପାଇଲା କି ନାହିଁ, ମୁଁ କିଛି ଖବରପାଇନାହିଁ।

**ପର୍ଲ ବକଂକ ସହିତ ସାକ୍ଷାତ୍‌କାର ଓ ଆଲୋଚନା –**

ବିଶ୍ୱବିଖ୍ୟାତ ଔପନ୍ୟାସିକା ମିସେସ୍ ପର୍ଲ ବକଂକ ସହିତ ମୋର ନିୟୁୟର୍କରେ ଦୀର୍ଘସମୟ ଆଲୋଚନା ହୋଇଥିଲା। ସେ ସାହିତ୍ୟରେ ନୋବେଲ୍ ପୁରସ୍କାର ପାଇଥିଲେ। ସେ ନିୟୁୟର୍କ ବାହାରେ କେଉଁଠି ରହୁଥିଲେ; ମଝିରେ ମଝିରେ ନିୟୁୟର୍କ ଆସୁଥିଲେ। ତାଂକ ସେକ୍ରେଟାରୀ ମୋତେ ତାଂକର ସେ ସମୟରେ ନିୟୁୟର୍କ ଆସିବା ତାରିଖ ଜଣାଇଥିଲେ। ମିସେସ୍ ବକ୍‌ଙ୍କ ଚାଇନିଜ୍ ଜୀବନଯାତ୍ରା ଉପରେ ଆଧାରିତ ଉପନ୍ୟାସଗୁଡ଼ିକ ସମଗ୍ର ବିଶ୍ୱରେ ଆଦୃତ ହୋଇଥିଲା। ତାଂକ ପ୍ରଣୀତ ଉପନ୍ୟାସ 'ଗୁଡ୍ ଆର୍ଥ୍' ମଧ୍ୟ ଫିଲ୍ମ ହୋଇଛି। ମୁଁ ସେ ଫିଲ୍ମ ଦେଖି ବିଶେଷ ଅନୁପ୍ରାଣିତ ହୋଇଥିଲି। ବହିଟି ମଧ୍ୟ ମୋତେ ଖୁବ୍ ଭଲଲାଗିଥିଲା। ମିସେସ୍ ବକ୍ ଭାରତୀୟ ସାହିତ୍ୟ ସଂବଂଧରେ କେତେକ ଖବର ମଧ୍ୟ ରଖିଥିଲେ। ସେ ରବୀଂଦ୍ରନାଥଂକର ଏବଂ ମୂଲକରାଜ ଆନଂଦଂକର କେତୋଟି ଗଳ୍ପ ଉପନ୍ୟାସ ପଢ଼ି ଆନଂଦିତ ହୋଇଛଂତି ବୋଲି କହିଥିଲେ। ସେ ଥରେ ଦୁଇଥର କଲିକତା ମଧ୍ୟ ଆସିଥିଲେ। ପର୍ଲ ବକ୍ ଜଣେ ଅମାୟିକ ଏବଂ ବିଦୁଷୀ ମହିଳା। ତାଂକ ଗାର୍ହସ୍ଥ୍ୟଜୀବନରେ ସେ କେତେକ ସମସ୍ୟାର ସମ୍ମୁଖୀନ ହୋଇଥିବା କଥା ଜାଣିଥିଲି। ତାଂକର ଦ୍ୱିତୀୟ ସ୍ୱାମୀ ଜଣେ ପ୍ରକାଶକ ବୋଲି ଜାଣିଥିଲି।

**ନିୟୁୟର୍କ ନଗରୀ –**

୧୯୪୦ ଦଶକରେ ନିୟୁୟର୍କ ପୃଥିବୀର ଦ୍ୱିତୀୟ ବୃହତ୍ତମ ନଗରୀ ଥିଲା – ଜନସଂଖ୍ୟା ଦୃଷ୍ଟିରୁ। ଏହାର ଜନସଂଖ୍ୟା ୧୯୪୮ ମସିହାରେ ଥିଲା ପ୍ରାୟ ୭୮,୮୮,୦୦୦। ମହାନଗରୀର ବିସ୍ତୃତି ପ୍ରାୟ ୩୨୨.୮୩ ବର୍ଗ କି.ମି.। ଏହା ପୃଥିବୀର ବୃହତ୍ତମ ବନ୍ଦର ବୋଲି କୁହାଯାଏ। ଏହାର ମହିମାମୟ ସ୍କାଇଲାଇନ୍ ସତରେ ଅବିସ୍ମରଣୀୟ। ଏହାଛଡ଼ା ସେଠାରେ ପୃଥିବୀର ସର୍ବବୃହତ୍ ଅଟ୍ଟାଳିକା

Empire State Building ବହୁ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ । ଏହା ପୃଥିବୀର ଉଚ୍ଚତମ ସ୍କାଇ-ସ୍କ୍ରାପର୍ ବା ଅଟ୍ଟାଳିକା । ଏଥିରେ ଭୂମି ଉପରେ ୧୦୨ଟି ମହଲା ଅଛି, ଭୂମି ତଳେ ୨ଟି ମହଲା ଅଛି। ଏହା ଭୂମିପତ୍ତନଠାରୁ ୧,୨୪୮ ଫୁଟ ଉଚ୍ଚ। ଏଥିରେ ୮୦,୦୦୦ ଲୋକ ବାସକରିପାରିବେ। ମୁଁ ଥରେ ଏହାର ସର୍ବୋଚ୍ଚ ଶିଖରକୁ ଲିଫ୍ଟ ଯୋଗେ ଯାଇଥିଲି। ସେଠାରେ ପବନର ବେଗ ଅତି ପ୍ରଚଣ୍ଡ । ଏହି ବିଶାଳ ହର୍ମ୍ୟଟି ୧୯୩୧ ମସିହାରେ ନିର୍ମିତ ହୋଇଥିଲା ।

ଏହାଛଡ଼ା ନିୟୁୟର୍କରେ ଥିବା ସେଂଟ୍ରାଲ୍ ପାର୍କ ବୃହତ୍ତମ ଉଦ୍ୟାନମାନଙ୍କ ମଧ୍ୟରେ ଅନ୍ୟତମ । ନିୟୁୟର୍କର ଆର୍ଟ ଗ୍ୟାଲେରୀ ମୁଁ ବହୁବାର ଦେଖିଛି। ସେଥିରେ ପୃଥିବୀର ଶ୍ରେଷ୍ଠ ଶିଳ୍ପୀମାନଂକର, ଯଥା : ପିକାସୋ, କନ୍‌ଷ୍ଟେବୁଲ୍, ଫରାସୀ ଚିତ୍ରଶିଳ୍ପୀ ମାଟିସି ପ୍ରଭୃତିଂକର ବହୁ ମୌଳିକ ଚିତ୍ର ରହିଛି। ଏହା Washington National Art Gallery ପରି ବହୁ ଅମୂଲ୍ୟ ଚିତ୍ର-ସଂପଦ ସଂରକ୍ଷଣ କରିଛି ।

**ସମୁଦ୍ର-ନିବାସ –**

ମୁଁ ବ୍ରୁଶ୍ ପରିବାରର ଅତିଥିରୂପେ ଥିଲାବେଳେ ଅନେକ ସପ୍ତାହଂତ (Weekend)ରେ ସମୁଦ୍ର-ନିବାସମାନଂକରେ ଦିନେ ଦୁଇଦିନ କଟାଇଛି । ସେଠାରେ ସମୁଦ୍ରସ୍ନାନ କରିବା ଛଡ଼ା ସମୁଦ୍ର ଖାଦ୍ୟ ଖାଇ ପ୍ରଚୁର ଆନଂଦ ଲାଭ କରିଛି। ଆମେ, ଅର୍ଥାତ୍ ମୁଁ, ବ୍ରୁଶ୍ ଏବଂ ବ୍ରୁଶ୍‌ର ପିତାମାତା ଏବଂ କେବେ କେବେ ଜଣେ ଦୁଇଜଣ ଅତିଥି ସମୁଦ୍ର-ନିବାସରେ ଦୁଇ ତିନିଟି ରୁମ୍ ନେଇ ଗୋଟିଏ ପୂରାରାତି ଏବଂ ତା ପରଦିନ ସଂଧ୍ୟା ପର୍ଯ୍ୟଂତ କଟାଇଛୁ। ସମୁଦ୍ରବାଲିରେ ବସି ବା ବୁଲାବୁଲିକରି ଅଧିକାଂଶ ସମୟ କଟାଇଛୁ। ଥରେ ଆମ ସାଂଗରେ ଏକ ବଡ଼ ରେଲ୍‌ୱେ କଂପାନୀର ଚେୟାରମ୍ୟାନ୍ ଏବଂ ତାଂକ ବାଗ୍‌ଦତ୍ତା ବାଧଂବୀ ଅତିଥିଭାବେ ଯାଇଥିଲେ। ଆମେରିକାରେ ରେଳ ଚଳାଚଳ ପ୍ରାଇଭେଟ୍ କଂପାନୀମାନଂକ ସ୍ୱତ୍ୱାଧିକାରରେ ଥାଏ; ଆମ ଦେଶ ପରି ସରକାରୀ କର୍ତ୍ତୃତ୍ୱାଧୀନ ନୁହେଁ। ଯେପରି ଆମ ଦେଶରେ ସ୍ୱାଧୀନତା ପୂର୍ବରୁ ରେଳବାଇଗୁଡ଼ିକ ପ୍ରାଇଭେଟ୍ କଂପାନୀମାନଂକ କର୍ତ୍ତୃତ୍ୱାଧୀନ ଥିଲା, ଯଥା– ବି.ଏନ୍.ଆର୍। ଥରେ ସମୁଦ୍ର-ରହଣିବେଳେ ମୋତେ ବ୍ରୁଶ୍‌ର ବାପା ଏକ ବଡ଼ ଲବ୍‌ଷ୍ଟର୍ ବା ଚିଂଗୁଡ଼ି ଖାଇବାକୁ ଦେଇଥିଲେ। ଏହାର ଓଜନ ପ୍ରାୟ ଅଧକେଜିରୁ ବେଶି ହେବ। ସେଥିରେ ଏକପ୍ରକାରର ତେଲ ଗୋଳାଇ ଖାଇଲେ ଭାରି ଭଲ ଲାଗେ । ମୁଁ ମୋ ଜୀବନରେ ଏତେ ବଡ଼ ଲବ୍‌ଷ୍ଟର୍ ଆଉ କେବେ ଖାଇନାହିଁ। ଗୋଟିଏ ଲବ୍‌ଷ୍ଟର୍ ଖାଇଲେ ପେଟ ପୂରିଯାଏ । ଏହିପରି ମୋର ନିୟୁୟର୍କ, ନିୟୁଜର୍ସି ପ୍ରବାସ ବଡ଼ ଆନଂଦଦାୟକ ଥିଲା ।

ନିୟୁୟର୍କ ମହାନଗରୀ ପର୍ଯ୍ୟାୟ ୧୮୯୮ ଖ୍ରୀଷ୍ଟାବ୍ଦ ଜାନୁୟାରୀ ପହିଲାରେ ପୂର୍ଣ୍ଣାଂଗ ହୋଇଥିଲା। ଏହା ଆମେରିକାର ସର୍ବବୃହତ୍ ନଗରୀ। ଏଥିରେ ବହୁ

ଜାତି ଓ ଧର୍ମର ଲୋକ ସ୍ଥାୟୀ ଅଧିବାସୀରୂପେ ବାସକରୁଛନ୍ତି। ନିୟୁୟର୍କରେ ଇଟାଲିୟାନ୍ ଅଧିବାସୀମାନଂକ ସଂଖ୍ୟା ଇଟାଲୀ ବାହାରେ ଅନ୍ୟ କୌଣସି ନଗରୀର ଇଟାଲିୟାନ୍‌ମାନଙ୍କଠାରୁ ଅଧିକ। ଏହା ପୃଥିବୀର ତୃତୀୟ ବୃହତ୍ତମ ଆଇରିଶ୍ ନଗରୀ। ଏହାର ଶ୍ୱେତକାୟ ଅଧିବାସୀମାନଂକ ସଂଖ୍ୟା ୧୯୫୦ ମସିହାରେ ଥିଲା ୪୮,୩୧,୫୮୦। ଏଥିମଧ୍ୟରେ ଇଟାଲିୟାନ୍, ଜର୍ମାନ୍, ଋଷିୟାନ୍, ଆଇରିଶ୍ ଓ ପୋଲିଶ୍ ପ୍ରଭୃତି ଜାତିର ଲୋକ ଅନ୍ତର୍ଭୁକ୍ତ। ବହୁ ଲକ୍ଷ ନିଗ୍ରୋ ମଧ୍ୟ ସ୍ଥାୟୀ ବାସିନ୍ଦାରୂପେ ନିୟୁୟର୍କରେ ରହିଛନ୍ତି।

ନିୟୁୟର୍କ ବ୍ୟବସାୟ-ବାଣିଜ୍ୟ ଓ କଳକାରଖାନାମାନଂକରୁ ଉତ୍ପାଦନଦୃଷ୍ଟିରୁ ପୃଥିବୀରେ ବୃହତ୍ତମ ନଗରୀ। ମହିଳାମାନଂକ ପୋଷାକ-ପରିଚ୍ଛଦ ପ୍ରସ୍ତୁତ କରିବାରେ ଏହା ସମଗ୍ର ପୃଥିବୀରେ ଅଦ୍ୱିତୀୟ। ସବୁ ବଡ଼ ବଡ଼ ବ୍ୟାଂକମାନଂକର କେନ୍ଦ୍ର ଅଫିସ୍ ୱାଲ୍‌ଷ୍ଟିଟ୍‌ରେ ଅବସ୍ଥିତ। ନିୟୁୟର୍କ ବନ୍ଦରଟି ଏତେ ବଡ଼ ଯେ, ଆମେରିକାର ସମସ୍ତ ନୌବହର ଏଥିରେ ସ୍ୱଚ୍ଛନ୍ଦରେ ଚଳାଚଳ କରିପାରିବ। ନିୟୁୟର୍କର ସବ୍‌ୱେ ବା ଭୂଗଁତଳ ଟ୍ରେନ୍ ପ୍ରଣାଳୀ ବେଶ୍ ବ୍ୟାପକ ଓ ସୁବିନ୍ୟସ୍ତ; ଯେଉଁଠିକି ଯାଅ ଗୋଟିଏ ଭଡ଼ା ଲାଗେ। ସବ୍‌ୱେ ଚାଲୁ ହେବା ପରେ ଟ୍ରାମ୍ ଇତ୍ୟାଦି ଉଠାଇଦିଆଯାଇଛି।

**ଶିକ୍ଷା ଓ ସଂସ୍କୃତି –**

ଶିକ୍ଷା ଓ ସଂସ୍କୃତିରେ ନିୟୁୟର୍କ ଅଗ୍ରଗାମୀ। ଛଅବର୍ଷଠାରୁ ଏକୋଇଶି ବର୍ଷ ପର୍ଯ୍ୟନ୍ତ ବିଦ୍ୟାଧ୍ୟୟନ ନିଃଶୁଳ୍କ। ଏଥିପାଇଁ କୌଣସି ଅର୍ଥ ଦେବାକୁ ପଡ଼େ ନାହିଁ। ନିୟୁୟର୍କରେ ବହୁ ବିଶ୍ୱବିଦ୍ୟାଳୟ ଓ କଲେଜ ପ୍ରଭୃତି ରହିଛି। କଲଂବିଆ ବିଶ୍ୱବିଦ୍ୟାଳୟ ସେଥିମଧ୍ୟରେ ପ୍ରଧାନ। ହଂଟର କଲେଜ ପୃଥିବୀର ସର୍ବବୃହତ୍ ମହିଳା କଲେଜରୂପେ ପ୍ରଖ୍ୟାତ। ନିୟୁୟର୍କର ମିଉଜିକ୍ ସେଂଟର ବିଶ୍ୱର ବୃହତ୍ତମ ପ୍ରେକ୍ଷାଳୟ। ଏଥିରେ ୬,୦୦୦ ଦର୍ଶକ ବସିପାରିବେ। ୟୁ.ଏନ୍. ଜେନେରାଲ୍ ଆସେମ୍ବ୍ଲି ନିୟୁୟର୍କରେ ଇଷ୍ଟ ନଦୀକୂଳରେ ଅବସ୍ଥିତ। ମୁଁ ସେଠାକୁ ତିନି-ଚାରି ଥର ଯାଇଥିଲି।

ନିୟୁୟର୍କ ନଗରୀ ପାଂଚଟି ବରୋକୁ ନେଇ ଗଠିତ। ସେଗୁଡ଼ିକ ହେଲେ ମ୍ୟାନ୍‌ହାଟାନ୍, ବ୍ରୋଂକସ୍, ବ୍ରୁକ୍‌ଲିନ୍, କ୍ୟୁଇନସ୍ ଏବଂ ରିଚମଂଡ୍। ସେଥିମଧ୍ୟରୁ କେବଳ ବ୍ରୋଂକସ୍‌ଟି ମୂଳଭୂମିରେ ଅବସ୍ଥିତ। ବ୍ରୁକ୍‌ଲିନ୍ ଓ କ୍ୟୁଇନ୍ ଇଷ୍ଟ୍ ନଦୀ ଦ୍ୱାରା ମ୍ୟାନ୍‌ହାଟାନ୍‌ଠାରୁ ବିଚ୍ଛିନ୍ନ ହୋଇଛନ୍ତି।

ନିୟୁୟର୍କର ଡିପାର୍ଟମେଣ୍ଟାଲ୍ ଷ୍ଟୋର୍ H.H. Macy & Co. ପୃଥିବୀର ବୃହତ୍ତମ ଷ୍ଟୋର୍ ବୋଲି କଥିତ। ବିଶ୍ୱର ବୃହତ୍ତମ ଗୃହନିର୍ମାଣ ସଂସ୍ଥା ବ୍ରୋଂକସ୍ ବରୋରେ ଅବସ୍ଥିତ ପର୍କା ଚେଷ୍ଟର ବାସଗୃହ ପ୍ରକଳ୍ପ ପ୍ରଭୃତି ବିଶେଷ ଉଲ୍ଲେଖନୀୟ। ଉଚ୍ଚତମ ହର୍ମ୍ୟମାଳା ଯୋଗୁ ନିୟୁୟର୍କ ସମଗ୍ର ବିଶ୍ୱରେ ପ୍ରସିଦ୍ଧି ଲାଭ କରିଛି। ସେଥିମଧ୍ୟରେ ୧୦୪ ତାଲାବିଶିଷ୍ଟ ଏମ୍ପାୟାର୍ ଷ୍ଟେଟ୍ ବିଲ୍‌ଡିଂ ଫିଫଥ୍ ଆଭେନ୍ୟୁ

୩୪ ନଂ ଷ୍ଟ୍ରିଟ୍‌ରେ ଅବସ୍ଥିତ। ଏହାଛଡ଼ା ୱାଲ୍‌ଷ୍ଟ୍ରିଟ୍‌ରେ ବହୁ ଆକାଶଚୁମ୍ବୀ ଅଟ୍ଟାଳିକାମାନ ରହିଛି, ଯଥା ୯୨୭ ଫୁଟ୍ ଉଚ୍ଚ ବ୍ୟାଂକ୍ ଅଫ୍ ମ୍ୟାନ୍‌ହାଟାନ୍ ବିଲ୍‌ଡିଂ। ଏହାଛଡ଼ା ସିଭିକ୍ ସେଂଟ୍‌ର, ସିଟି ହଲ୍ ତୃତୀୟ ଉଚ୍ଚତମ ଅଟ୍ଟାଳିକା ରୂପେ ବିଶେଷ ଉଲ୍ଲେଖଯୋଗ୍ୟ।

**ଆବର୍ଜ୍ଜନା –**

ନିୟୁୟର୍କ ମହାନଗରୀର ବିପୁଳ ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟ ପାଖାପାଖି ବହୁ ଆବର୍ଜ୍ଜନା ମଧ୍ୟ ଭରିରହିଛି। ସହର ମଧ୍ୟରେ ଗଳିକନ୍ଦିରେ ଠାଏ ଠାଏ ଆବର୍ଜ୍ଜନାର ସ୍ତୂପ କଠିନ ବିରୋଧାଭାସ ସୃଷ୍ଟିକରେ; ମାତ୍ର ସେସବୁ ଦୂରୀଭୂତ କରିବା ଦିଗରେ ଆମେରିକାର ଫେଡ଼େରାଲ୍ ସରକାର ଏବଂ ସ୍ଥାନୀୟ ମ୍ୟୁନିସିପାଲ୍ କର୍‌ପୋରେସନ୍ ବହୁ ଅର୍ଥ ବ୍ୟୟ କରିଥାଂତି। ଉଚ୍ଚ ମାନର ବାସଗୃହ ନିର୍ମାଣର ପ୍ରକଳ୍ପ ଦ୍ରୁତଗତିରେ ଆଗେଇଚାଲିଛି। ସହରତଳିର ନିମ୍ନମଧ୍ୟମିତ୍ତ ଶ୍ରେଣୀ ପାଇଁ ଭଲ ବାସଗୃହ ନିର୍ମାଣ ଉପରେ ଜୋର୍ ଦିଆଯାଇଛି।

**ବେକାରୀ ଓ ଧର୍ମଘଟ –**

ଆମେରିକାରେ ଏବଂ ନିୟୁୟର୍କରେ ବେକାରୀ ଓ ଧର୍ମଘଟ ଏବଂ ଛଟେଇ ସମସ୍ୟା ବଡ଼ ଆକାର ଧାରଣକରିଛି। ବହୁ ସ୍ଥାନରେ ଶ୍ରମିକ ଓ ଶିଳ୍ପ ଅନୁଷ୍ଠାନର କର୍ମଚାରୀମାନେ ଧର୍ମଘଟ କରିଥିବାର ଲକ୍ଷ୍ୟକଲି। ସେମାନେ ସେମାନଂକର ଦାବି-ସଂବଳିତ ପ୍ଳାକାର୍ଡ଼ମାନ ଧରି ଛିଡ଼ାହୋଇଥାଂତି। ଫୁଟ୍‌ପାଥ୍‌ରେ ଗଲାବେଳେ ଏଭଳି ବହୁ ଧର୍ମଘଟକାରୀ ଜମାୟତ ଆଖିରେ ପଡ଼େ।

**ଆମେରିକାରେ ଭାଷଣ –**

ମୁଁ ହାର୍ଭାଡ୍‌ରେ ଥିଲାବେଳେ ହାର୍ଭାଡ୍ ବିଶ୍ୱବିଦ୍ୟାଳୟ ଆଂତର୍ଜାତିକ କଳା-ବିଜ୍ଞାନ ସେମିନାର୍ ପକ୍ଷରୁ ଡ. ହେନେରୀ କିସିଂଜର୍ ଗୋଟିଏ ସାଧାରଣ ସଭା ଆୟୋଜନ କରିଥିଲେ। ତାହା କେମ୍‌ବ୍ରିଜ୍‌ର ସିଭିକ୍ ସେଂଟରରେ ହୋଇଥିଲା। ଏଥିରେ କେମ୍‌ବ୍ରିଜ୍ ନଗରୀର ବହୁ ବିଶିଷ୍ଟ ବୁଦ୍ଧିଜୀବୀ, ଅଧ୍ୟାପକ, ଅଧ୍ୟାପିକା ଏବଂ ଛାତ୍ରଛାତ୍ରୀ ଯୋଗଦେଇଥିଲେ। ମୁଁ ଓ ରାଜନୀତି ବିଭାଗର ଭୋଜୱାନୀ ଭାରତ ପ୍ରତିନିଧିରୂପେ ଏଥିରେ ଭାଷଣଦେଇଥିଲୁ। ଅନ୍ୟାନ୍ୟ କେତେକ ଦେଶର କେତେକ ସେମିନାର୍ ସଦସ୍ୟ ମଧ୍ୟ ଭାଷଣଦେଇଥିଲେ। ମୁଁ ଭାରତର ପ୍ରାଚୀନ ଐତିହ୍ୟ ଓ ପରଂପରା ସମସାମୟିକ ଚେତନା ଉପରେ କିପରି ପ୍ରଭାବ ପକାଇଛି, ତାହାର କିଛି ସୂଚନା ଦେଇଥିଲି। ଆଧୁନିକ ଜୀବନ ସହିତ ପରଂପରାର ପ୍ରାସଂଗିକତା ସଂବଂଧରେ କିଛି କହିଥିଲି।

ନିୟୁୟର୍କରେ କେତେକ କବି ଓ ସାହିତ୍ୟିକବଂଧୁ ଏକ ସଭାରେ ଭାଷଣ ଦେବା ପାଇଁ ମୋତେ ଡାକିଥିଲେ। ମୁଁ ଆଧୁନିକ ଭାରତୀୟ ସାହିତ୍ୟ ଏବଂ ସଂସ୍କୃତି ଉପରେ ଭାଷଣ ଦେଇଥିଲି। ମୋର କେତେକ କବିତାର ଅଂଶବିଶେଷ

ପଢ଼ି ମୋର ବକ୍ତବ୍ୟ ପ୍ରତିପାଦନ କରିଥିଲି। ମୁଁ କହିଥିଲି ଯେ, ଆମେ ସମସ୍ତେ ଗୋଟିଏ ସଭ୍ୟତା। ଆଜିର ମଣିଷ ମନରେ ଏକଇ ଅଦୃଷ୍ଟର ଚେତନା ଆଣିଦେବା ଆଧୁନିକ ସାହିତ୍ୟର ପ୍ରଧାନ କାମ। ସାହିତ୍ୟ ଦେଶ, ଜାତି ଓ ଧର୍ମର ବିଭେଦ ଓ ବିଭାଜନ ଦୂରକରି ମଣିଷ ମନରେ ଏକ ମାନବିକ ଐକ୍ୟବୋଧ ସଂଚାର କରିବା ଦରକାର।

ବିଜ୍ଞାନର ପ୍ରସାଦରୁ ପୃଥିବୀ ଦିନକୁ ଦିନ ନିକଟତର ହେଉଛି। ଆଂଚଳିକତା ବଦଳରେ ଏକ ଆଂତର୍ଜାତିକ ପୂରୋଦୃଷ୍ଟି ଚେତନାକୁ ପ୍ରଭାବିତକରିଛି। ମଣିଷର ଚିଂତା ଓ ଚେତନାରେ ଏକ ନୂତନ ସମୀକରଣ ଆରଂଭ ହୋଇଛି; ଫଳରେ ସାହିତ୍ୟ, ତାହା ଯେକୌଣସି ଭାଷାରେ ବା ଦେଶରେ ଲିଖିତ ହେଉନା କାହିଁକି, ମଣିଷକୁ ବିଶ୍ୱତୋମୁଖୀ କରିବାରେ ସାହାଯ୍ୟ କରୁଛି।

ମୁଁ ଅନୁବାଦ ଉପରେ ବିଶେଷ ଜୋର୍ ଦେଇଥିଲି। ବିଶ୍ୱର କାଳଜୟୀ ସାହିତ୍ୟକୃତିମାନ ଆଂତର୍ଜାତିକ ଭାଷାରେ ଅନୂଦିତ ହେଲେ, ଆଂତର୍ଜାତିକ ସଂହତି ବୃଦ୍ଧି ପାଇବା ସଂଗେ ସଂଗେ ବିନିମୟର ପ୍ରତିବଂଧକ ଦୂରୀଭୂତହେବ। ମୋ ଭାଷଣର ସାରାଂଶ କେତେକ ସଂବାଦପତ୍ରରେ ପ୍ରକାଶପାଇଥିଲା। ଆମେରିକାରେ ରହଣି ମଧ୍ୟରେ ମୁଁ ଫୋର୍ଡ ଫାଉଣ୍ଡେଂସନ ଓ ରକ୍‌ଫେଲାର ଫାଉଣ୍ଡେଂସନର କର୍ମକର୍ତାମାନଂକ ସହିତ ପରିଚିତ ହୋଇଥିଲି।

ମୋଟଉପରେ ମୋର ଆମେରିକାଯାତ୍ରା ବିଶେଷ ଫଳପ୍ରଦ ହୋଇଥିଲା। ଆମେରିକାରେ ପ୍ରାୟ ଚାରିମାସ ରହିବା ଭିତରେ ସେଠାରେ ବହୁ ଆଧୁନିକ କବି, ସାହିତ୍ୟିକ ଓ ପ୍ରକାଶକମାନଂକ ସହିତ ପରିଚିତ ହେବାର ସୁଯୋଗ ପାଇଥିଲି।

ଆମେରିକା ଉପରେ ଲିଖିତ ମୋର ଗୋଟିଏ କବିତା ଏୟାରପୋର୍ଟ, ନିୟୁୟର୍କ କବିତା ୧୯୬୨ ପୁସ୍ତକରେ ସ୍ଥାନିତ ହୋଇଛି। ମୁଁ ୧୯୬୨ ମସିହାରେ ଜୁନ୍ ମାସ ପାଇଁ ଷଡ଼ିମିଶନ୍ ଇଂଟର ନ୍ୟାସନାଲ ଅଫ୍ ଆମେରିକା ଆମଂତ୍ରଣକ୍ରମେ ଏକ ବକ୍ତୃତା-ଗସ୍ତରେ ଆମେରିକା ଯାଇଥିଲି। ଏ କବିତାଟି ସେତିକି ବେଳେ ରଚିତ ହୋଇଥିଲା।

# ଚତୁସ୍ତ୍ରିଂଶ ଉଲ୍ଲାସ

## ଲଂଡନରେ ଦେଢ଼ମାସ

**ଲଂଡନ ଅନୁଭୂତି -**

ମୁଁ ଆମେରିକା ଛାଡ଼ି ଲଂଡନ ଗଲି । ସେଠାରେ ମୋର ଏକ ଦେଢ଼ମାସିଆ କାର୍ଯକ୍ରମ ସ୍ଥିରହୋଇଥିଲା । ଲଂଡନରୁ ଦୁଇ ସପ୍ତାହ ପାଇଁ ରୋମ ଏବଂ ଦୁଇ ସପ୍ତାହ ପାଇଁ ପ୍ୟାରିସ୍ ଯିବାର କାର୍ଯକ୍ରମ ପ୍ରସ୍ତୁତ ହୋଇଥିଲା । ତା'ପରେ ତିନି ସପ୍ତାହ ବା ଏକ ମାସ ପାଇଁ ଜେନିଭାରେ I.L.O. ବା ଆଂତର୍ଜାତିକ ଶ୍ରମ ସଂଗଠନରେ ଇଂଡଷ୍ଟ୍ରିଆଲ୍ ରିଲେସନ୍ ଓ ପରସ୍‌ନାଲ୍ ମ୍ୟାନେଜମେଂଟ କାର୍ଯକଳାପ ଅଧ୍ୟୟନ କରିବା ପାଇଁ ବ୍ୟବସ୍ଥା କରାଯାଇଥିଲା । ଲଂଡନରେ ମୁଁ ରସେଲ୍ ସ୍କୋୟାରରେ ଏକ ଗେଷ୍ଟହାଉସ୍‌ରେ ରହିଥିଲି । ରସେଲ ସ୍କୋୟାର୍ ଲଂଡନର ପ୍ରମୁଖ ଶିକ୍ଷାକେନ୍ଦ୍ର । ଏହିଠାରେ ଲଂଡନ ବିଶ୍ୱବିଦ୍ୟାଳୟ, ବ୍ରିଟିଶ ମିଉଜିୟମ୍, ବ୍ରିଟିଶ ଲାଇବ୍ରେରୀ ପ୍ରଭୃତି ଅବସ୍ଥିତ ।

ଲଂଡନରେ ବହୁତ ଭାରତୀୟ ରେସ୍ତୋରାଁ ଥାଏ; ତେଣୁ ଖାଇବା-ପିଇବାରେ କିଛି ଅସୁବିଧା ନଥିଲା । ଇଚ୍ଛାହେଲେ ମୁଁ କୌଣସି ଭାରତୀୟ ବା ବାଂଲାଦେଶୀ ରେସ୍ତୋରାଁକୁ ଯାଇ ଭାରତୀୟ ଖାଦ୍ୟ ଖାଇପାରୁଥିଲି ।

ମୁଁ ବୀରସ୍ୱାମୀ ରେସ୍ତୋରାଁର ନାମ ଶୁଣିଥାଏ । ଏଠାରେ ଭଲ ଦକ୍ଷିଣଭାରତୀୟ ଖାଦ୍ୟ ମିଳେ । ଦିନେ ମୁଁ ବୀରସ୍ୱାମୀ ହୋଟେଲ ଥିବା ଷ୍ଟ୍ରିଟ୍‌ରେ ଯାଇ ପହଁଚିଲି । ମୁଁ ସେ ହୋଟେଲର ଘର ନଂବର ଜାଣିନଥିଲି । ତେଣୁ ଟ୍ରାଫିକ୍ ପୋଲିସକୁ ବୀରସ୍ୱାମୀ ହୋଟେଲ କେଉଁଠି ବୋଲି ପଚାରିଲି । ସେ କହିଲା "Go three blacks ahead. Then turn left, then follow the smell." (ଅର୍ଥାତ୍ ସେ କହିଲା, ଆଗକୁ ତିନିଟା ଘର ଯାଇ ବାଁକୁ ଘୂରିବ । ତା'ପରେ ବାସ୍ନା ତମକୁ ବାଟ କଢ଼ାଇନେବ ।)

**ବ୍ରିଟିଶ୍ ମିଉଜିୟମ୍ -**

ବ୍ରିଟିଶ୍ ମିଉଜିୟମ୍‌ରେ ମୁଁ ସକାଳବେଳାଟା କଟାଏ । ସେଠାରେ ଥିବା ବହୁ ଭାସ୍କର୍ଯ, ମିଶରୀୟ ମିମ୍ମି ଏବଂ ଭାରତୀୟ ଶିଳ୍ପ ନିଦର୍ଶନ ଇତ୍ୟାଦି ବିଷୟରେ କିଛି କିଛି ଅଧ୍ୟୟନକରେ । କୋଣାର୍କର ଯେଉଁ ଅନୁପମ ନବଗ୍ରହ ମୂର୍ତି ଇଂରେଜମାନେ ନେଇଯାଇଥିଲେ ତାହା ସେଠାରେ ରଖାଯାଇଥିଲା । ମୁଁ ଭାରତୀୟ କଳାର ଏହି ଶ୍ରେଷ୍ଠ ନିଦର୍ଶନଗୁଡ଼ିକୁ କିଛି ସମୟ ତନ୍ମୟ ହୋଇ ଦେଖେ । ଓଡ଼ିଶୀ ପଟ୍ଟଚିତ୍ର,

ପୋଥିଚିତ୍ର ସମ୍ପର୍କରେ କିଛି ବହି ପଢ଼ାପଢ଼ିକରେ ।

ଏହାଛଡ଼ା ମୁଁ ୱାଟରଲୁ ଷ୍ଟ୍ରିଟ୍‌ରେ ଥିବା ଇଣ୍ଡିଆ ଲାଇବ୍ରେରୀକୁ କେତେ ଥର ଯାଇ କେତେକ ବହିପତ୍ର ପଢ଼ାପଢ଼ିକରେ । ଏଠାରେ ମୋ ପ୍ରଣୀତ କେତେକ ବହି ମଧ୍ୟ ସଂରକ୍ଷିତ ଅଛି ।

**ମାଂଚେଷ୍ଟରରେ ଦିନେ –**

ଲଂଡନରେ ମୁଁ ଇଣ୍ଡିଆ ହାଉସ୍‌କୁ ବେଳେବେଳେ ଯାଏ । ସେଠାରେ ଭାରତୀୟ ହାଇକମିସନ୍‌ର ଥିବା ବିଜୟଲକ୍ଷ୍ମୀ ପଣ୍ଡିତଙ୍କ ସହିତ କେତେ ଥର ଦେଖାସାକ୍ଷାତ ଓ ଆଲୋଚନା ଆଦି କରିଛି। ସେ ମୋତେ ଦିନେ କହିଲେ, ‘‘ଆସନ୍ତା ରବିବାର ମାଂଚେଷ୍ଟରରେ ପ୍ରବାସୀ ଭାରତୀୟମାନଂକର ଏକ ସଭା ହେଉଛି। ସେମାନେ ମୋତେ ଡାକିଛଂତି। ମୁଁ ଶନିବାର ସଂଧ୍ୟା ଟ୍ରେନ୍‌ରେ ଯାଉଛି। ତୁମେ ଯିବାକୁ ଚାହଁ କି?’’ ମୁଁ ହଁଭରିଲି। ଶନିବାର ଦିନ ସଂଧ୍ୟା ଟ୍ରେନ୍‌ରେ ମୁଁ ଏକ ବର୍ଥ ପାଇଗଲି; ତେଣୁ ମାଂଚେଷ୍ଟର ଗଲି। ମାଂଚେଷ୍ଟରରେ ବହୁ ବଡ଼ ବଡ଼ କଳକାରଖାନା ରହିଛି। ଏହା ଏକ ଇଂଡଷ୍ଟ୍ରିୟାଲ୍ ସିଟି। ସକାଳେ ମୁଁ ମାଂଚେଷ୍ଟର ଷ୍ଟେସନରେ ଓହ୍ଲାଇଲି। ଆମ କେଶୋରାମ୍ କଟନ୍ ମିଲ୍‌ର ଜଣେ ମ୍ୟାନେଜର ଆର୍.ଏନ୍.ଶର୍ମାଂକ ବଡ଼ପୁଅ ହରି ମାଚେଂଷ୍ଟରରେ ଏକ ବଡ଼ କଟନ ମିଲ୍‌ରେ ଟ୍ରେନିଂ ନେଉଥାଏ। ମୁଁ ତାକୁ ଲଂଡନରୁ ଟେଲିଫୋନ କରିଥିଲି। ସେ ଷ୍ଟେସନକୁ ଆସି ମୋତେ ସହର ଭିତରକୁ ନେଇଗଲା। ଆମେ ଷ୍ଟେସନରେ ମୁହଁହାତ ଧୋଇ ନିତ୍ୟକର୍ମ ସାରିନେଇଥିଲୁ। ପ୍ରାତଃଭୋଜନ ମଧ୍ୟ କରି ନେଇଥିଲୁ। ତେଣୁ କୌଣସି ହୋଟେଲ୍‌ରେ ରହିବା ଦରକାର ହେଲାନାହିଁ। ସଭା ୫ଟାରେ ହେବ। ଆମେ ସହରରେ ଏଣେତେଣେ ବୁଲି କିଛି ଦର୍ଶନୀୟ ସ୍ଥାନ, ଦୋକାନ, ବଜାର ଦେଖିବାକୁ ଲାଗିଲୁ।

**ତୃଷ୍ଣା ଓ ଜଳ –**

ଦିନ ପ୍ରାୟ ୧୧ଟା ବେଳେ ମୋତେ ଭାରି ଶୋଷଲାଗିଲା। ଖରା ମଧ୍ୟ ତେଜ ଥାଏ। ତେଣୁ ମୁଁ ପାଣି ପିଇବାକୁ ଚାହେଁ ବୋଲି ହରିକୁ କହିଲି। ହରି ଓ ମୁଁ ପାଖରେ ଥିବା ଏକ ରେଷ୍ଟୋରାଁକୁ ଗଲୁ। ଗୋଟିଏ ଝିଅ ବସିଥାଏ; ଦେଖିବାକୁ ବେଶ୍ ସ୍ମାର୍ଟ। ଆମକୁ ଦେଖି ସେ କିଛି ସାହାଯ୍ୟ କରିପାରେ କି ବୋଲି ପଚାରିଲା। ମୁଁ ଗିଲାସେ ପାଣି ମାଗିଲି। ସେ ଆନନ୍ଦରେ ଉଠିଯାଇ ଗିଲାସେ ପିଇବା ପାଣି ଆଣିଦେଲା। ମୁଁ ଢକଢକ କରି ତାହା ପିଇ ଦେଇ ଆଉ ଗିଲାସେ ମାଗିଲି। ସେ ଟିକେ ହସି ଆଉ ଗିଲାସେ ପାଣି ଆଣି ଦେଲା। ମୁଁ ତାହା ଏକ ମିନିଟ୍‌ରେ ଶେଷକରିଦେଲି। ତା’ପରେ ଆଉ ଗିଲାସେ ପାଣି ମାଗିଲି। ସେ ଠୋ ଠୋ କରି ହସିଉଠିଲା। ତାର କାରଣ, ବୋଧହୁଏ, ସେ ଦେଶମାନଂକରେ କେହି ବେଶି ପାଣି ପିଅଂତି ନାହିଁ। ତା’ପରେ ସେ

ଆଉ ଗିଲାସେ ପାଣି ଆଣି ଦେଲା ଏବଂ ହସି କରି ପଚାରିଲା, "Shall I give you a hose pipe?" ସେ, ମୁଁ ଓ ହରି ବହୁତ ବେଳ ଯାଏ ହସିବାରେ ଲାଗିଲୁ ।

**ପ୍ରବାସୀ ଭାରତୀୟ ସଭା –**

ସଂଧ୍ୟା ୫ଟାରେ ମାଂଚେଷ୍ଟରରେ ପ୍ରବାସୀ ଭାରତୀୟମାନଂକର ସଭା ଆରମ୍ଭହେଲା । ମୁଁ ଆଉ ହରି ଯାଇ ସେଠାରେ ପହଂଚିଲୁ । ମୋତେ ଦେଖି ବିଜୟଲକ୍ଷ୍ମୀ ପଣ୍ଡିତ ଖୁବ୍ ଖୁସିହେଲେ । ସେ ମୋତେ ସଭାର ଉଦ୍ୟୋକ୍ତାମାନଂଙ୍କ ସହିତ ପରିଚିତ କରାଇଦେଲେ । ସଭା ଆରମ୍ଭରେ ଦୁଇ-ତିନି ଜଣ ଭାରତୀୟ ନାରୀ 'ବଂଦେ ମାତରମ୍' ଗାନକଲେ ।

ପ୍ରବାସୀ ଭାରତୀୟ ଆସୋସିଏସନ୍‌ର ସେକ୍ରେଟାରୀ ତାଂକ ପ୍ରାରଂଭିକ ଭାଷଣରେ କହିଲେ ଯେ, ଶ୍ୱେତାଂଗମାନେ ଭାରତୀୟମାନଂକ ପ୍ରତି ଦ୍ୱିତୀୟ ଶ୍ରେଣୀର ନାଗରିକ ପରି ବ୍ୟବହାର କରିଥାଂତି । ସେମାନଂକୁ ପୂର୍ଣ ସାମାଜିକ ମର୍ଯାଦା ମିଳେନାହିଁ । ସେ ପୁଣି କହିଲେ, "ଇଂଲଣ୍ଡୀୟ ଭାରତୀୟମାନଂକ ମଧ୍ୟରେ ବହୁ ଗବେଷକ, ଡାକ୍ତର ଏବଂ ଇଂଜିନିୟର ଅଛଂତି । ବ୍ରିଟେନ୍‌ରେ ସେମାନଂକୁ ନ୍ୟାଯ୍ୟ ଅଧିକାର ଓ ସ୍ୱୀକୃତି ଦିଆଯାଉନଥିବା ଘୋର ଲଜ୍ଜାର କଥା । ବ୍ରିଟିଶ୍‌ମାନେ ଭାରତକୁ ଶହ ଶହ ବର୍ଷଧରି ଶାସନ ଓ ଶୋଷଣ କରିଛଂତି । ଭାରତ ସ୍ୱାଧୀନ ହେବା ପରେ ମଧ୍ୟ ସେମାନଂକର ସେହି ମନୋଭାବ ବଦଳିନାହିଁ ।"

**ବିଜୟଲକ୍ଷ୍ମୀ ପଣ୍ଡିତଂକ ଭାଷଣ –**

ବିଜୟଲକ୍ଷ୍ମୀ ପଣ୍ଡିତ ମୁଖ୍ୟ ଅତିଥି ରୂପେ କହିଥିଲେ ଯେ, ବିଦେଶରେ ଭାରତୀୟମାନେ ନିଜର ବିପୁଳ ସାଂସ୍କୃତିକ ଉତ୍ତରାଧିକାରର ଶ୍ରେଷ୍ଠ ନମୁନାମାନ ପ୍ରଦର୍ଶନ କରିବା ଉଚିତ । ସେମାନଂକ ଆଚାର-ବ୍ୟବହାରରେ ମାର୍ଜିତ ରୁଚି ଏବଂ ଶୋଭନୀୟ ଆଚରଣ ପ୍ରତିଫଳିତ ହେବା ଆବଶ୍ୟକ । ତାହାହେଲେ ଆମ ଦେଶର ଗୌରବ ବିଦେଶରେ ବୃଦ୍ଧିପାଇବ ।

**ମୋର ଭାଷଣ –**

ଜଣେ ସମ୍ମାନିତ ଅତିଥିରୂପେ ମୁଁ ମୋର ଭାଷଣରେ କହିଥିଲି ଯେ ଭାରତୀୟ ସଂସ୍କୃତିର ଆକର୍ଷଣୀୟ ନମୁନାମାନ ବିଲାତରେ ପ୍ରଦର୍ଶିତ ହେବା ଦରକାର । ଏ ଦିଗରେ ଭାରତ ସରକାର ଏବଂ ବିଲାତରେ ଥିବା ଭାରତୀୟ ହାଇକମିଶନ, ବିଶେଷ ଧ୍ୟାନ ଦେବା ଉଚିତ । ଇଂଲଣ୍ଡର ପ୍ରବାସୀ ଭାରତୀୟମାନେ ନିଜର କାର୍ଯକଳାପ ଏବଂ ବ୍ୟବହାରରେ ଉଚ୍ଚ ମାନ ବଜାୟ ରଖିବା ଦରକାର । ତାହାହେଲେ ଏ ଦେଶବାସୀଂକ ଦୃଷ୍ଟିରେ ଆମର ଉଚ୍ଚ ଭାବମୂର୍ତି ପ୍ରତିଫଳିତ ହେବ । ମୁଁ କଲିକତାରେ ପ୍ରବାସୀ ଓଡ଼ିଆ ଆନ୍ଦୋଳନର କର୍ମକର୍ତା ଭାବରେ ଆମ ସଂଗଠନର କେତେକ ଅଭିଜ୍ଞତା ବୟାନକରିଥିଲି । ବିଲାତରେ ଥିବା ଉତ୍କଳୀୟମାନେ କଲିକତାରେ ଆମ ସଂଗଠନକୁ ସବୁ ପ୍ରକାର ସାହାଯ୍ୟ ସହଯୋଗ କରିବାକୁ ଏବଂ ଆମର

ବାର୍ଷିକ ଅଧିବେଶନରେ ପ୍ରତିନିଧିରୂପେ ଯୋଗଦେବାକୁ ଅନୁରୋଧ କରିଥିଲି। ମୁଁ ମୋର ଆମେରିକା ଅନୁଭୂତି ସଂବଂଧରେ କିଛି ସୂଚନା ଦେଇଥିଲି। ସଭା ପରେ କିଛି ଭାରତୀୟ ସଂଗୀତ ଓ ନୃତ୍ୟ କଳା ପ୍ରଦର୍ଶିତ ହୋଇଥିଲା। ଅତିଥିମାନଂକ ପାଇଁ ଜଳଯୋଗ ଏବଂ ଖାଦ୍ୟପେୟର ସୁନ୍ଦର ବ୍ୟବସ୍ଥା କରାଯାଇଥିଲା। ସଭା ପରେ ମୁଁ ଶ୍ରୀମତୀ ପଣ୍ଡିତଂକଠାରୁ ବିଦାୟ ନେଇ ହରି ସହିତ ଷ୍ଟେସନକୁ ଯାଇଥିଲି। ସେଠାରୁ ସେହି ରାତି ଟ୍ରେନ୍‌ରେ ଲଂଡନ ଫେରିଯାଇଥିଲି।

**ମହାନଗରୀ ଲଂଡନ –**

ଟେମ୍‌ସ୍ ନଦୀକୂଳରେ ଅବସ୍ଥିତ ଲଂଡନ୍ ମହାନଗରୀ ଗ୍ରେଟ୍-ବ୍ରିଟେନ୍‌ର ରାଜଧାନୀ। ଏହା ପୃଥିବୀର ବୃହତ୍ତମ ନଗରୀ। ଏହାର ଜନସଂଖ୍ୟା ୧୯୫୦ ସାଲ ବେଳକୁ ୫୨,୩୩,୬୪୦ ଥିଲା। ଲଂଡନ୍‌ର ଦର୍ଶନୀୟ ସ୍ଥାନମାନଂକ ମଧ୍ୟରେ ପାର୍ଲାମେଂଟ୍ ହାଉସ୍, ୱେଷ୍ଟ୍‌ମିନିଷ୍ଟର୍ ଆବେ, ସେଂଟ୍ ପଲ୍ କ୍ୟାଥିଡ୍ରାଲ୍, ଏବଂ ଲଂଡନ୍ ଟାୱାର୍ ବିଶେଷ ଉଲ୍ଲେଖନୀୟ। ଲଂଡନ୍ ବ୍ରିଜ୍, ଯାହା ଉପରେ ଟି.ଏସ୍. ଏଲିଏଟ୍ ଏକ କବିତା ଲେଖିଥିଲେ। ("London Bridge is falling down"), ୧୮୨୧ ଖ୍ରୀଷ୍ଟାବ୍ଦରେ John Rennie ଙ୍କ ଦ୍ୱାରା ନିର୍ମାୟିତ ହୋଇଥିଲା। ଲଂଡନ୍ ଟାୱାର୍ ଏକ ପ୍ରାଚୀନ ଦୁର୍ଗ ବନାମ ରାଜପ୍ରାସାଦ ତଥା ବଂଦୀଶାଳା। ଏଠାରେ ରାଜପରିବାରର ଅଳଂକାରମାନ ଏକ କୋଠରିରେ ରହିଛି। କୋହିନୂର ହୀରା ତହିଁର ଅଂତର୍ଗତ। ତାହା ଦର୍ଶକମାନଂକ ପାଇଁ ଉନ୍ମୁକ୍ତ। ଏହାର ପରିସର ମଧ୍ୟରେ ଏକ ବଧଭୂମି ରହିଛି, ଯେଉଁଠାରେ ଇଂଲଂଡ୍‌ର ରାଜା ଅଷ୍ଟମ ହେନେରୀଂକ ପ୍ରଥମ ରାଣୀ କ୍ୟାଥେରିନ୍‌ଙ୍କୁ ରାଜାଂକ ଆଦେଶରେ ଗିଲୋଟିନ୍‌ରେ ଶିରଚ୍ଛେଦ କରାଯାଇଥିଲା। ଏହାର ଚାରିପଟେ ଏକ ପରିଖା ବା ଗଡ଼ଖାଇ ରହିଛି। ଏଇ ଦୁର୍ଗପୁଞ୍ଜର ପ୍ରଥମ ଓ ପ୍ରାଚୀନତମ ଦୁର୍ଗ ହ୍ୱାଇଟ୍ ଟାୱାର୍ ଗନ୍ ଡଲଡାଂକ ଦ୍ୱାରା ଉଇଲିୟମ୍ ଦି କଂକରଂକ ସମୟରେ ୧୦୭୮-୮୦ରେ ନିର୍ମିତ ହୋଇଥିଲା।

**ସେକ୍‌ସପିୟରଂକ ଜନ୍ମସ୍ଥାନ ପରିଦର୍ଶନ –**

ମୁଁ ସେକ୍‌ସପିୟରଙ୍କ ଜନ୍ମସ୍ଥାନ ଷ୍ଟ୍ରାଟ୍‌ଫୋର୍ଡ଼-ଅପ୍‌ଅନ୍-ଏଭନ୍ ଦୁଇ ଥର ଯାଇଥିଲି। ସେଠାରେ ସେକ୍‌ସ୍‌ପିୟର ଯେଉଁ ଛୋଟ ଚାଳଘରେ ରହୁଥିଲେ, ତାହା ସେହିପରି ରଖାଯାଇଛି। ସେକ୍‌ସପିୟରଂକ ପତ୍ନୀ ଆନେଂକ ପିତୃଗୃହ ମଧ ତା'ଠାରୁ ଅଳ୍ପ ଦୂରରେ ଅଛି। ସେକ୍‌ସପିୟରଂକ ଏକ ଆବକ୍ଷ ମୂର୍ତ୍ତି ସ୍ଥାପନକରାଯାଇଛି। ସେକ୍‌ସପିୟର ଓ ଆନେଂକର ସମାଧି ମଧ ରହିଛି। ସେକ୍‌ସପିୟରଂକ ବାସଗୃହ ଅତି ସାଦାସିଧା ଚାଳଘର। Stratford-upon-Avonରେ ସେକ୍‌ସପିୟର ଯେଉଁ ସ୍କୁଲ୍‌ରେ ପଢୁଥିଲେ, ତାହା ଏକ ଉନ୍ନତ ଧରଣର ଘରେ ଚାଲିଛି। ସେକ୍ସପିୟରଂକ ନାଟକଗୁଡ଼ିକ ଅଭିନୟ କରିବା ପାଇଁ ସ୍ୱତନ୍ତ୍ର ରଂଗମଂଚମାନ ଗଢ଼ିଉଠିଛି। ସେଠାରେ ଏକ ସୁନ୍ଦର ଚ୍ୟାପେଲ୍ ମଧ ରହିଛି।

ଆଉନ ନଦୀକୂଳରେ ଏହି ସ୍ଥାନଟି ଏକ ନୈସର୍ଗିକ ଗରିମାରେ ମଣ୍ଡିତ ହୋଇରହିଛି।

**କେମ୍ବ୍ରିଜ୍ ଓ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟଦ୍ୱୟ –**

ମୁଁ କେମ୍ବ୍ରିଜ୍ ଏବଂ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ଦୁଇଟି ଭିନ୍ନ ଭିନ୍ନ ଦିନ ପରିଦର୍ଶନ କରିଥିଲି। ଏ ଦୁଇ ବିଶ୍ୱବିଦ୍ୟାଳୟ ଇଂଲଣ୍ଡର ପ୍ରାଚୀନତମ ଏବଂ ମର୍ଯାଦାବଂତ ବିଦ୍ୟାପୀଠ। କେମ୍ବ୍ରିଜ୍‌ରେ ଏକ ନଦୀକୂଳରେ ଥିବା ରେଷ୍ଟୋରାଁରେ ମଧ୍ୟାହ୍ନ-ଭୋଜନ କରିଥିଲି। ସେଠାକୁ କେତେକ ଅଧ୍ୟାପକ ଓ ଲେଖକ ବନ୍ଧୁ ମୋତେ ଡାକିଥିଲେ।

କେମ୍ବ୍ରିଜ୍‌ରେ ଥିଲାବେଳେ ମୁଁ କେବେ ସ୍ୱପ୍ନରେ ସୁଦ୍ଧା ଭାବିନଥିଲି ଯେ, ମୋ ସାନପୁଅ ବୁଚ୍ଚି ବା ଉଦୟନ (ବୟସ ଅଢ଼େଇବର୍ଷ) ଦିନେ ଲଂଡନ ଓ ଜିନିଭାରୁ ବିଜ୍‌ନେସ୍ ମ୍ୟାନେଜ୍‌ମେଂଟ୍‌ରେ M.A. କରି ଏବଂ ଅନ୍ୟ କେତେକ ଡିପ୍‌ଲୋମା କୋର୍ସରେ ମଧ୍ୟ ଉଚ୍ଚ ଶ୍ରେଣୀରେ ପାସ୍‌କରି ଲଂଡନ୍ ବିଶ୍ୱବିଦ୍ୟାଳୟର ବିଜ୍‌ନେସ୍ ମ୍ୟାନେଜ୍‌ମେଂଟ୍ ବିଭାଗରେ ଲେକ୍‌ଚରର୍ ରୂପେ କାର୍ଯ କରିବ। ତାପରେ ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟକୁ ବଦଳି ହୋଇଯାଏ। ବର୍ତ୍ତମାନ ସେ ସେଠାରେ ମ୍ୟାନେଜ୍‌ମେଂଟ୍ ବିଭାଗରେ ସିନିୟର୍ ଅଧ୍ୟାପକ ଏବଂ ପରେ ପଦୋନ୍ନତି ପାଇଁ ପ୍ରିନ୍‌ସପାଲ୍ ଅଧ୍ୟାପକଭାବେ କାର୍ଯ କରୁଅଛି। ତା ସ୍ତ୍ରୀ ଡୋମିନିକ୍ ଜଣେ ବେଲ୍‌ଜିୟାନ୍ ଝିଅ। ସେ ମେଡ଼ିକାଲ୍ ନର୍ସ ରୂପେ କାର୍ଯ୍ୟକରୁଛି। ସେମାନଂକର ଦୁଇଟି ପିଲା ମାଳିନୀ ଓ ନିକେଶ; ସେମାନେ ସେଠାରେ ସ୍କୁଲ୍‌ରେ ପଢୁଛନ୍ତି। ଡୋମିନିକ୍‌ର ପିତା ବେଲ୍‌ଜିୟମ୍ ନିବାସୀ। ସେ ଏକ ଆଫ୍ରିକାନ୍ ଦେଶରେ ରାଷ୍ଟ୍ରଦୂତ ଥିଲେ। ଏ ବିଷୟ ପୂର୍ବରୁ ସୂଚନାଦେଇଛି। ବୁଚ୍ଚି ଓ ପିଲାମାନେ ପ୍ରତି ଦୁଇ ତିନି ବର୍ଷରେ କଟକ ଆସଂତି; ଭାରତରେ ମାସେ ଦେଢ଼ମାସ ରହି ଲଂଲଣ୍ଡ ଫେରିଯାଂତି। ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ମୁଁ ଗୋଟିଏ ଦିନ କଟାଇଥିଲି। କେମ୍ବ୍ରିଜ୍ ଓ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ଘରଗୁଡ଼ିକ ଖୁବ୍ ପ୍ରାଚୀନ ଓ ଗଥିକ୍ ଷ୍ଟାଇଲ୍‌ର। କେତେକ ଟ୍ୟୁଡର ସମୟର ଘରଦ୍ୱାର ମଧ୍ୟ ରହିଛି।

**ବିଶ୍ୱବିଦ୍ୟାଳୟ ଇତିକଥା –**

କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ସଠିକ୍ ଜନ୍ମ-ସମୟ ଜଣାନାହିଁ। ତେବେ ୧୨୮୪ ଖ୍ରୀଷ୍ଟାବ୍ଦରେ Bishop of Ely Hugh de Balsham କେମ୍ବ୍ରିଜ୍ କଲେଜ ବା (ପିଟର୍ ହାଉସ୍)ର ଭିତ୍ତି ସ୍ଥାପନ କରିଥିବାର ପ୍ରମାଣ ମିଳେ। ୧୩୧୭ ଖ୍ରୀଷ୍ଟାବ୍ଦରେ Pope Jhon XXII ଏହାକୁ ୟୁନିଭର୍ସିଟି ପାହ୍ୟାକୁ ଉନ୍ନୀତ କରିବା ପାଇଁ ଅନୁମତି ଦେଇଥିଲେ। ୧୪୦୦ ଖ୍ରୀଷ୍ଟାବ୍ଦରେ ନୂଆ ନୂଆ କଲେଜମାନ ଗଢ଼ିଉଠିଥିଲା। ଉନବିଂଶ ଶତକରେ ନୂଆ କଲେଜମାନ ସଂଯୋଜିତ ହୋଇଥିଲା।

ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ପ୍ୟାରିସ୍‌ରୁ ବିତାଡ଼ିତ ଜଣେ ବିଦେଶୀ ସ୍କଲାରଂକ ଦ୍ୱାରା ୧୧୬୭ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିଲା। ୧୨୧୪ ଖ୍ରୀଷ୍ଟାବ୍ଦରେ

University Chater ପ୍ରବର୍ତ୍ତିତ ହୁଏ । ଏହାପରେ ଏହି ବିଶ୍ୱବିଦ୍ୟାଳୟକୁ ସହରବାସୀମାନେ କିଛି ଅବଦାନ ଦେବାର ବ୍ୟବସ୍ଥା କରଂତି । ରାଜା ଅଷ୍ଟମ ହେନେରୀ ୧୫୪୬ ଖ୍ରୀଷ୍ଟାବ୍ଦରେ ଏହାକୁ (କାର୍‌ଡିନାଲ୍ କଲେଜ) ଲାଇସେନ୍‌ସ ଏବଂ କିଛି ସମ୍ପତ୍ତି ମଧ୍ୟ ଦିଅଂତି । ୧୫୭୧ ଖ୍ରୀଷ୍ଟାବ୍ଦରେ ୟୁନିଭର୍‌ସିଟି ବିଧିବଦ୍ଧଭାବେ ପାର୍ଲାମେଂଟ୍‌ର ଏକ ଆଇନ ଅନୁସାରେ Incorporated ହୁଏ । ଏହାର ସଂବିଧାନ ୧୮୫୪ ଏବଂ ୧୮୭୭ରେ ସଂଶୋଧିତ ହୋଇଥିଲା । ୧୯୧୪ ଖ୍ରୀଷ୍ଟାବ୍ଦରେ ଏହି ବିଶ୍ୱବିଦ୍ୟାଳୟରେ ୪,୦୨୫ ଜଣ undergraduates ଏବଂ ୧୯୩୮-୩୯ରେ ୬,୬୫୯ ଜଣ undergraduate ଥିଲେ । ୧୯୪୮ରେ ଏହା ୮,୦୦୦କୁ ବୃଦ୍ଧିପାଇଥିଲା ।

କେମ୍‌ବ୍ରିଜ୍ ଓ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ଦୁଇଟି ଇଂଲଣ୍ଡର ପ୍ରାଚୀନତମ ଏବଂ ମର୍ଯାଦାବଂତ ବିଶ୍ୱବିଦ୍ୟାଳୟ ।

# ପଂଚତ୍ରିଂଶତ୍ ଉଲ୍ଲାସ

## ରୋମ୍, ପ୍ୟାରିସ୍ ଓ ଜିନିଭାରେ ଦୁଇମାସ

**ରୋମ୍‌ରେ ଦୁଇ ସପ୍ତାହ –**

ରୋମରୁ ପ୍ରକାଶ ପାଉଥିବା ପତ୍ରିକା 'ଇଟାଲିଆ'ର ଆମଂତ୍ରଣକ୍ରମେ ମୁଁ ରୋମ ଯାଇଥିଲି। ଇଟାଲିଆର ପରିଚାଳକବୃନ୍ଦ କେତୋଟି ସାହିତ୍ୟ ସଭାର ଆୟୋଜନ କରିଥିଲେ। ମୁଁ ସେଥିରେ ମୋର କେତେକ କବିତାର ଇଂରାଜୀ ଅନୁବାଦ ପାଠକରିଥିଲି; ସାହିତ୍ୟ ସଂବଂଧରେ ମଧ କିଛି କହିଥିଲି। ଦଶ-ବାର ଜଣ ଇଟାଲୀୟ କବି କବୟିତ୍ରୀ ମଧ୍ୟ ସେମାନଂକର ସ୍ୱରଚିତ କବିତା ପାଠକରିଥିଲେ। ବହୁ ବିଦଗ୍‌ଧ ପାଠକ ଓ କାବ୍ୟପ୍ରେମୀ ଏହି ସଭାମାନଂକରେ ଯୋଗଦେଇଥିଲେ। ଶ୍ରୀମତୀ ସ୍ୱାଡ଼ିୟାନୀ (ଯେ କି ହାର୍ଭାର୍ଡ଼ ସେମିନାରରେ ମୋ'ସହ ସଦସ୍ୟ ଥିଲେ) ମଧ୍ୟ ସଭାରେ ଯୋଗଦେଇଥିଲେ। ଇଟାଲୀୟାନ୍‌ମାନେ ବଡ଼ ମେଳାପୀ ଓ ବଂଧୁବତ୍ସଳ।

**ରୋମ୍ ନଗରୀ –**

ରୋମ୍‌ନଗରୀଟି ଅତି ପ୍ରାଚୀନ। ଏହା ରୋମାନ୍‌ମାନଂକ ଦ୍ୱାରା 'ଟାଇବର' ନଦୀକୂଳରେ ସ୍ଥାପିତ ହୋଇଥିଲା। ଏହାର ନିର୍ମାଣ-କାଳ ଖ୍ରୀଷ୍ଟପୂର୍ବ ୭୫୩ ବୋଲି ଜଣାଯାଇଛି। ଏହା ସାତଟି ପାହାଡ଼ ଉପରେ ଅବସ୍ଥିତ। ପାହାଡ଼ଗୁଡ଼ିକର ନାମ ହେଲା ପାଲେଟାଇନ୍ କ୍ୟାପିଟଲ, ଆଭେନ୍‌ଟାଇନ୍, କାଏଲଆନ୍, ଏସ୍କିଲାଇନ୍, ଭିମିନାଲ୍ ଓ କ୍ୟୁରିନାଲ୍। ଏହାର କ୍ଷେତ୍ରଫଳ ୪,୬୬୪ ବର୍ଗମିଟର ଥିଲା। ଏହାର ଲୋକସଂଖ୍ୟା ୧୯୪୭ ମସିହା ବେଳକୁ ୧୫,୫୧,୫୨୦ ଜଣ ଥିଲା। ବର୍ତ୍ତମାନ ଏହା ଅଢ଼େଇ ଗୁଣରୁ ଅଧିକାହେଲାଣି। ଏହା ମୁଖ୍ୟତଃ କୃଷିପ୍ରଧାନ ଅଂଚଳ।

ରୋମ୍ ଥିଲା ରୋମାନ୍ ସଭ୍ୟତାର ପୀଠସ୍ଥଳୀ। ଏହାପରେ ଖ୍ରୀଷ୍ଟିଆନ୍‌ମାନଂକ ଦ୍ୱାରା ଅଧ୍ୟୁଷିତ ହୁଏ। ଏହା ରୋମାନ୍ ସମ୍ରାଟ୍ ଜୁଲିୟସ୍ ସିଜର ଏବଂ ନିରୋଂକଠାରୁ ଆରଂଭକରି ଫାସିବାଦୀ ମୁସୋଲିନୀ ପର୍ଯ୍ୟଂତ ଇତିହାସର ବହୁ ଘଟଣାପ୍ରବାହ ଅଂଗେ ଲିଭାଇଛି।

ବହୁ ପ୍ରାଚୀନ ମଂଦିର ଓ ଆଂଫିଥିଏଟର ରୋମ୍‌ରେ ରହିଛି। ଭାଟିକାନ୍ ପୋପଂକର ବିରାଟ ଆସ୍ଥାନ ମଧ୍ୟ ରୋମରେ ଅବସ୍ଥିତ।

ପ୍ରାଚୀନ ମଂଦିରମାନଂକ ମଧ୍ୟରେ ଜୁପିଟର, ଭେନସ୍, ମିନର୍ଭା, ରୋମା, ଆଂଟୋନିୟସ୍, ପୋଷ୍ଟିନା ଓ ଭେଷ୍ଟା ପ୍ରଭୃତି ଅଂତର୍ଗତ। ନିରୋଂକର ସୂର୍ଯ୍ୟଦେବତା ହିସାବରେ ୧୧୮ ଫୁଟ୍ ଉଚ୍ଚତାବିଶିଷ୍ଟ ଏକ ପଥର ପ୍ରତିମୂର୍ତ୍ତି ରହିଛି। କୋଲୋସିୟମ୍ ଏବଂ ଅନ୍ୟ ଏକ ଆଂଫିଥିଏଟର ଦର୍ଶନୀୟ ସ୍ଥାନମାନଂକ ମଧ୍ୟରେ ଅନ୍ୟତମ।

**କୋଲୋସିୟମ –** କୋଲୋସିୟମ ରାଜା ନିରୋଂକର ସ୍ୱର୍ଣପ୍ରାସାଦ ସଂଲଗ୍ନ ବଗିଚା ନିକଟରେ ଦଂଡାୟମାନ । ଏହାର ଉପରମହଲାରେ ଏକ ଆରେନା ରହିଛି । ତା' କଡ଼ରେ ବାଘ, ସିଂହ ପ୍ରଭୃତି ହିଂସ୍ରଜଂତୁମାନଂକୁ ବିଭିନ୍ନ କୋଠରି ମଧ୍ୟରେ ରଖାଯାଉଥିଲା । ଅପରାଧୀ ବା ଦଂଡ଼ିତ ବ୍ୟକ୍ତିମାନଂକୁ ଆରେନା ଉପରକୁ ଆଣି ବାଘ, ସିଂହ ପ୍ରଭୃତିଂକ ମୁହଁରେ ଛାଡ଼ିଦିଆଯାଉଥିଲା । କିଛି ସମୟ ସେମାନଂକ ମଧ୍ୟରେ ଲଢ଼େଇ ହେଉଥିଲା; ତା'ପରେ ଜଂତୁମାନେ ଦଂଡ଼ିତ ବ୍ୟକ୍ତିମାନଂକୁ ମାରି ଖାଇ ଯାଉଥିଲେ । ପ୍ରଥମ ଖ୍ରୀଷ୍ଟିଆନ୍ (Early Christians) ମାନଂକୁ ମଧ୍ୟ ଧରି ଆଣି ବାଘ, ସିଂହ ମୁହଁରେ ଛାଡ଼ିଦିଆଯାଉଥିଲା । ଏହି ଦୃଶ୍ୟ ଦେଖିବା ପାଇଁ ନଗରୀର ସଂଭ୍ରାଂତମଂଡଳୀ ଗ୍ୟାଲେରୀରେ ସମବେତ ହେଉଥିଲେ ।

ରୋମ ଇଟାଲୀର ରାଜଧାନୀ । ବିଂଶଶତାବ୍ଦୀର ମଧ୍ୟଭାଗରେ ଯେତେବେଳେ ହିଟ୍‌ଲରଂକ ଅଧିନାୟକତ୍ୱରେ ଫାସୀବାଦର ପ୍ରାଦୁର୍ଭାବ ହୁଏ, ସେତେବେଳେ ଇଟାଲୀର ଅଧିନାୟକ ମୁସୋଲିନୀ ତାଂକର ପ୍ରଧାନ ସମର୍ଥକ ଭୂମିକା ଗ୍ରହଣ କରଂତି ।

ମୁଁ ପୋପଂକର ବାସସ୍ଥାନ ଭାଟିକାନ୍ ନଗରୀକୁ ଯାଇଥିଲି ଓ ସେଠାରେ ବହୁସ୍ଥାନ ବୁଲି ଦେଖିଥିଲି । ସମଗ୍ର ରୋମଟି ଏକ ଯାଦୁଘର । ବହୁ ପ୍ରାଚୀନ ଭାସ୍କର୍ଯ ଓ କଳାକୀର୍ତି ଏହି ନଗରୀର ମହତ୍ତ୍ୱ ବୃଦ୍ଧିକରୁଛି ।

ରୋମ ଚିତ୍ରଶାଳାରେ ଓ ଅନ୍ୟତ୍ର ଇଟାଲୀର ବିଶ୍ୱବିଖ୍ୟାତ ସ୍ଥପତି ମାଇକେଲ୍ ଏଂଜେଲଂକର କେତୋଟି ଅସାଧାରଣ କୃତି ଦେଖିଥିଲି । ମାଇକେଲ୍ ଏଂଜେଲ ଥିଲେ ଜଣେ ପ୍ରତିଭାଶାଳୀ ଶିଳ୍ପୀ । ଇଟାଲୀର 'କାପ୍ରେସ୍'ଠାରେ ୧୪୭୫ ଖ୍ରୀଷ୍ଟାବ୍ଦ ମାର୍ଚ ଛଅ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ ଓ ୧୫୬୪ ଖ୍ରୀଷ୍ଟାବ୍ଦ ଫେବୃୟାରୀ ୧୮ ତାରିଖରେ ମୃତ୍ୟୁବରଣ କରିଥିଲେ । ତାଂକ ବିଷୟରେ କବି ଟି.ଏସ୍,ଏଲିଏଟ୍ ଏକ କବିତାରେ ଲେଖିଛନ୍ତି – "Women come and go, / Talking of Michelangelo" ତାଂକର କୃତି ମଧ୍ୟରେ 'ହୋଲିଫ୍ୟାମିଲି' (୧୫୦୧- ୧୫୦୫), ଜୁଲିୟାନ୍ ଟଂବ୍ (୧୫୪୫), ମାଡ଼ୋନା (୧୪୯୯) ସ୍ମରଣୀୟ ହୋଇ ରହିବ ।

ଏହା ଛଡ଼ା ଇଟାଲୀର ବିଶ୍ୱବିଖ୍ୟାତ ଔପନ୍ୟାସିକ ଭିକ୍ଟର ହ୍ୟୁଗୋ, ମହାକବି ଦାଂତେ ଏବଂ ଆଧୁନିକ ଯୁଗର ବିଖ୍ୟାତ କଥାକାର ଏବଂ ନାଟ୍ୟକାର ଲୁଇଗ୍ ପିରାଂଡେଲୋ ପ୍ରଭୃତିଂକ କଥା କିଏ ନ ଜାଣେ ? ଏମାନେ କେବଳ ଇଟାଲୀର ନୁହେଁ; ବିଶ୍ୱ-ସାହିତ୍ୟକୁ ଋଦ୍ଧିମଂତ କରିଯାଇଛଂତି ।

**ପ୍ୟାରିସ୍‌ରେ ଦୁଇ ସପ୍ତାହ –**

ରୋମରୁ ମୁଁ ପ୍ୟାରିସ୍ ଯାତ୍ରାକରିଥିଲି । ପ୍ୟାରିସ୍ ଫ୍ରାନ୍ସର ରାଜଧାନୀ । ଏହା ସିଏନ୍ ନଦୀ କୂଳରେ ଅବସ୍ଥିତ ଏକ ସୁନ୍ଦର ନଗରୀ । ପ୍ୟାରିସ୍‌ର ବିଶ୍ୱବିଖ୍ୟାତ ଓ ପ୍ରାଚୀନ Sorbonne ବିଶ୍ୱବିଦ୍ୟାଳୟ ସହିତ ସଂପୃକ୍ତ ଏକ ସାହିତ୍ୟସଂସ୍ଥାଦ୍ୱାରା ଆମନ୍ତ୍ରିଂତ ହୋଇ ସେଠାରେ କେତୋଟି କବିତା ପଢ଼ିବା

ପାଇଁ ଓ ଆଲୋଚନାଚକ୍ରରେ ଭାଗ ନେବା ପାଇଁ ମୁଁ ପ୍ୟାରିସ୍ ଯାଇଥିଲି। ବିଶ୍ୱବିଦ୍ୟାଳୟର ମୁଖ୍ୟ ପ୍ରବେଶଦ୍ୱାର ସାମନାରେ ଥିବା ଏକ ହୋଟେଲରେ ରହିଥିଲି। ମୋର ପାଖ ରୁମ୍‌ରେ ଦୁଇଜଣ ଜର୍ମାନ୍ ଝିଅ ଇଭା ଓ ଗ୍ରେଟା ରହୁଥିଲେ। ସେମାନେ ଦଶ-ବାର ଦିନ ପାଇଁ ପ୍ୟାରିସ୍ ବୁଲି ଦେଖିବାକୁ ଆସିଥିଲେ। ମୁଁ ଉପରୋକ୍ତ ସାହିତ୍ୟ ସଭାରେ ଚାରୋଟି କବିତା ଓଡ଼ିଆରେ ଏବଂ ତାହାର ଇଂରାଜୀ ଅନୁବାଦ ପାଠକରିଥିଲି; ଏହାଛଡ଼ା ଆଲୋଚନା-ଚକ୍ରରେ ଅଂଶଗ୍ରହଣ କରିଥିଲି। ଏହା ତିନି ଦିନଧରି ଚାଲିଥିଲା।

ମୋ ପାଖ ରୁମ୍‌ରେ ରହୁଥିବା ଦୁଇ ଜର୍ମାନ୍ ଝିଅଂକ ସହିତ ମୋର ପ୍ରାୟ ଦିନବେଳେ ଦେଖାହେଉନଥିଲା। ସେମାନେ ଓ ମୁଁ ସକାଳୁ ନିଜ ନିଜ କାମରେ ବାହାରିଯାଉଥିଲୁ; ସଂଜବେଳକୁ ଫେରୁଥିଲୁ। ତେଣୁ ହୋଟେଲ୍ ବାହାରେ ଥିବା ରେଷ୍ଟୋରାଁରେ ସଂଜବେଳେ ଖାଇବା ଟେବୁଲରେ ଦେଖାହେଉଥିଲା। ଆମେ ଏକାଠି ବସି ଗୋଟିଏ ଟେବୁଲ୍‌ରେ ରାତ୍ରି-ଭୋଜନ କରୁଥିଲୁ ତା'ପରେ କିଛି ସମୟ ହାତ ଧରାଧରି ହୋଇ କିଂବା ବାହୁ ଛନ୍ଦାଛନ୍ଦି ହୋଇ ବାହାରେ ବୁଲୁଥିଲୁ। ରାତିରେ ନିଜ ନିଜ କୋଠରିକି ଫେରିଆସୁଥିଲୁ।

ପ୍ୟାରିସ୍‌ରେ ପହଂଚିବା ପରଦିନ ଏକ ଫରାସୀ ପରିବାର ମୋତେ ତାଂକ ଘରକୁ ମଧ୍ୟାହ୍ନ-ଭୋଜନ କରିବାକୁ ନିମଂତ୍ରଣ କରିଥିଲେ। ସେ ମୋ ବିଷୟ ଓ ମୋ ପ୍ୟାରିସ୍ ରହଣି କଥା, ଆଂତର୍ଜାତିକ ଆତିଥ୍ୟ ପ୍ରତିଷ୍ଠାନଠାରୁ ଜାଣିଥିଲେ। ସେମାନେ ପାଉଁରୁଟି ସହିତ ର୍ୟାବିଟ୍ (ଠେକୁଆ) ମାଂସ ତରକାରି ପରଷି ଥିଲେ। ମୋର ମନେପଡ଼ିଗଲା, ପିଲାଦିନେ ଆମ ଗାଁ ଜଂଗଲରୁ ବିନଦାଦା (ବିନୋଦ) ବଂଧୁକରେ ଠେକୁଆ ମାରି ଆଣୁଥିଲେ; ସେ ତରକାରି ଆମେ ସମସ୍ତେ ଆନଂଦର ସହିତ ଖାଉଥିଲୁ। ମୁଁ ସେହି ଫରାସୀ ଦଂପତିଂକ ଘରେ ସେ ଦିନକ ରହିଥିଲି। ସେମାନେ ବଡ଼ ଆଳାପୀ ଏବଂ ସ୍ନେହୀ ଥିଲେ। ମୁଁ ପ୍ୟାରିସ୍‌ରେ ଥିଲାବେଳେ ସେଠାରେ ଥିବା UNESCO ହେଡ୍ ଅଫିସ୍‌କୁ ଦୁଇ ତିନି ଥର ଯାଇଥିଲି ଏବଂ ସଂସ୍କୃତି ବିଭାଗର କେତେକ କର୍ମକର୍ତାଂକ ସହିତ ମୋର ସାହିତ୍ୟ କୃତି ସଂପର୍କରେ ଏବଂ ତହିଁର ଇଂରାଜୀ ଅନୁବାଦ କିପରି କରାଯାଇପାରିବ, ସେ ବିଷୟରେ ଆଲୋଚନା କରିଥିଲି।

**ଲୁଭ୍ (Louvre) –**

ଲୁଭ୍ ମ୍ୟୁଜିୟମ ଏବଂ ସେଥିରେ ଥିବା ଚିତ୍ରଶାଳା ବା ଆର୍ଟ ଗ୍ୟାଲେରୀରେ ମୁଁ ଅନେକ ଅବସର ସମୟ କଟାଇଥିଲି। ଲୁଭ୍ ଏକ ପୁରୁଣା ରାଜପ୍ରାସାଦ। ସିଏନ୍ (Seine) ନଦୀର ଦକ୍ଷିଣ କୂଳରେ ସାତ ଏକର ଜମି ଉପରେ ଏହା ନିର୍ମିତ ହୋଇଥିଲା। ପରେ ଏଥିରେ ବହୁ ପରିବର୍ତନ ଓ ଆଧୁନିକୀକରଣ କରାଯାଇଅଛି। ପ୍ରଥମେ ବାରଶହ ଶତାବ୍ଦୀରେ କେତେକ ରାଜକୀୟ ରେକର୍ଡ଼ପତ୍ରରେ

ଆମେ ଲୁଭ୍ର ନାମରୁ ସଂଧାନ ପାଉ। ଏଥିରେ ବହୁ ବିଶ୍ୱବିଖ୍ୟାତ ସ୍ଥାପତ୍ୟ ଓ ଚିତ୍ରମାନ ସଂରକ୍ଷିତ ହୋଇ ରହିଛି। ତା ମଧ୍ୟରେ ଲିଓନାର୍ଦୋ ଭିନ୍‌ସିଂକ 'ଭାର୍ଜିନ୍ ଅଫ୍ ଦି ରକ୍' ଏବଂ ବିଶ୍ୱବିଖ୍ୟାତ 'ମୋନାଲିସା'। ମିଲୋଂକ କୃତ ଭାସ୍କର୍ଯ 'ଭେନସ' ଓ Somathraseଙ୍କର ଅବିସ୍ମରଣୀୟ ସ୍ଥାପତ୍ୟ 'Winged Victory' ଏବଂ ଆହୁରି ଅନେକ ଇଟାଲୀୟ କଳାକୃତି ବିଶେଷ ଉଲ୍ଲେଖନୀୟ।

ଲୁଭ୍ ଆର୍ଟ ଗ୍ୟାଲେରୀରେ ର୍‌ୟାଫେଲ ପିକାସୋ, ଡ୍ୟାଲୀ ପ୍ରମୁଖ ଆଧୁନିକ ଓ ପ୍ରାକ୍-ଆଧୁନିକ ଚିତ୍ରଶିଳ୍ପୀମାନଙ୍କର ଅମୂଲ୍ୟ ଚିତ୍ରମାନ ପରିଦର୍ଶନ କରିଥିଲି। ଚତୁର୍ଦଶ ଲୁଇଂକ ରାଜପ୍ରାସାଦ ମଧ ବୁଲି ଦେଖିଥିଲି। ତାଂକ ରାଣୀ ମେରୀ ଆଂଟୋନିଓ ରହୁଥିବା କକ୍ଷ ଏବଂ ମାସିକ ଋତୁକାଳ ସମୟରେ ସେ ଯେଉଁ କୋଠରିରେ ତିନି-ଚାରି ଦିନ ରହୁଥିଲେ, ତାହା ମଧ ଦେଖିଥିଲି। ମେରୀ ଆଂଟୋନିଓଂକୁ ଫରାସୀ-ବିପ୍ଲବବେଳେ ଉତ୍‌କ୍ଷିପ୍ତ ଜନତା ଗିଲୋଟିନ୍ ଦ୍ୱାରା ଶିରଚ୍ଛେଦ କରିଥିଲେ। ଏଥିପୂର୍ବରୁ ସମ୍ରାଟ୍ ଚତୁର୍ଦଶ ଲୁଇଂକୁ ମଧ୍ୟ ହତ୍ୟାକରିଥିଲେ। କଥିତ ଅଛି, ଫରାସୀ-ବିପ୍ଲବ ବେଳେ ରାଣୀ ମେରୀ ଆଂଟୋନିଓ ତାଂକ ପାଖ ଲୋକଂକୁ କୁଆଡ଼େ ପଚାରିଥିଲେ – ଲୋକେ କାହିଁକି ବିପ୍ଲବ କରୁଛଂତି ? ସେମାନେ ଉତ୍ତର ଦେଉଥିଲେ, ଲୋକମାଂନଙ୍କୁ ଖାଇବାକୁ ରୁଟି ମିଳୁନାହିଁ। ରାଣୀ ଆଂଟୋନିଓ ଆଶ୍ଚର୍ଯ କଂଠରେ କହିଥିଲେ, ଯଦି ରୁଟି ମିଳୁନାହିଁ ତେବେ ସେମାନେ ଲୋଫ୍ (Loaf) ଖାଉନାହାଂତି କାହିଁକି ?

**ଫରାସୀ ବିପ୍ଲବ –**

ଫରାସୀ-ବିପ୍ଲବ ମାନବଜାତିର ଇତିହାସରେ ଏକ ଯୁଗାଂତର ଆଣିଦେଇଥିଲା। ଏହା ହଜାର ହଜାର ବର୍ଷରୁ ପ୍ରତିଷ୍ଠିତ ରାଜତଂତ୍ର ଓ ସାମଂତବାଦ ବିରୁଦ୍ଧରେ ବିପ୍ଲବ ଘୋଷଣା କରିଥିଲା ଏବଂ ତତ୍‌କାଳୀନ ସମ୍ରାଟ୍ ଚତୁର୍ଦଶ ଲୁଇ ଓ ସାମ୍ରାଜ୍ଞୀ ମେରୀ ଆଂଟୋନିଓଂକୁ ମୃତ୍ୟୁଦଂଡରେ ଦଂଡିତ କରିଥିଲା। ଏହା ୧୭୮୯ରେ ଆରଂଭ ହୋଇ ରାଜତଂତ୍ର ସ୍ଥଳରେ ଡିରେକ୍ଟୋରି ସ୍ଥାପନ କରିବା ପରେ ୧୭୯୫ରେ ସମାପ୍ତହୋଇଥିଲା। ଏହା ସମଗ୍ର ବିଶ୍ୱର ଦଳିତ ଓ ଶୋଷିତ ମଣିଷକୁ ବିପ୍ଲବର ପ୍ରେରଣା ଦେଇଥିଲା। ଏହାର ଲକ୍ଷ୍ୟ ଥିଲା 'Liberty, Equality, Faternity' – 'ମୁକ୍ତି, ସମାନତା ଓ ଭ୍ରାତୃତ୍ୱ'। ବିଖ୍ୟାତ ଫରାସୀ ଲେଖକ ରୁଷୋ ଓ ଭଲତୋୟାରଂକ ଲିଖିତ ପୁସ୍ତକମାନ ଜନଜୀବନରେ ନୂତନ ଦିଗ୍‌ଦର୍ଶନ ଓ ପ୍ରେରଣା ଆଣିଦେଇଥିଲା। ଫ୍ରାନ୍‌ସର ସମ୍ରାଟ୍ ଆପୋଷହୀନ ଏକଛତ୍ରବାଦୀଶାସନ ଚଳାଇଥିଲେ। ଲୋକଂକର ଧନଜୀବନ ନିରାପଦନଥିଲା। ଶାସନରେ ଲୋକଂକର କୌଣସି ଭୂମିକା ନଥିଲା।

ସମାଜ ମୁଖ୍ୟତଃ ତିନିଟି ଶ୍ରେଣୀରେ ବିଭକ୍ତଥିଲା। ଅଭିଜାତଶ୍ରେଣୀ, ଧର୍ମଯାଜକଶ୍ରେଣୀ (Cleargy) ଏବଂ ଜନସାଧାରଣ। ଉପର ଦୁଇଟି ଶ୍ରେଣୀର ଲୋକଂକୁ କର ଓ ରାଜସ୍ୱ ଦେବାକୁ ପଡୁ ନଥିଲା। ସମସ୍ତ ଶାସନ ଖର୍ଚ, ଯୁଦ୍ଧବ୍ୟୟ ଜନସାଧାରଣଂକୁ ବହନ କରିବାକୁ ପଡୁଥିଲା। ଏହି ଜନସାଧାରଣଂକ

ମଧ୍ୟରେ କୃଷକମାନେ ମୁଖ୍ୟ ଥିଲେ। ସେମାନଂକୁ tax ବା ଖଜଣା ଦେଇ ରାଜକୋଷ ଭର୍ତି କରିବାକୁ ପଡୁଥିଲା। ତା ଛଡ଼ା ବେଠି ଓ ଗୋଡି ପ୍ରଥା ବଳବତ୍ତର ଥିଲା। ଲୋକମାନଂକୁ ବିନା ପାରିଶ୍ରମିକରେ ଖଟିବାକୁ ପଡୁଥିଲା। ଏହି ଅମାନୁଷିକ ବ୍ୟବସ୍ଥା ଯୋଗୁଁ ସମ୍ରାଟ୍ ଲୁଇଂକ ଶାସନ ବିରୁଦ୍ଧରେ ଜନସାଧାରଣଂକର ଅସଂତୋଷ ଓ କ୍ରୋଧ ଚରମ ସୀମାରେ ପହଂଚିଥିଲା। କିଛି ସମୟ ପାଇଁ ଏକ କନଷ୍ଟିଚୁଏଂଟ୍ ଆସେଂବ୍ଲି ସ୍ଥାପିତ ହୋଇଥିଲା; ମାତ୍ର ତାହା ବିଶେଷ ଫଳପ୍ରଦ ହୋଇନଥିଲା।

ବିଖ୍ୟାତ ଲେଖକ ଓ ଦାର୍ଶନିକ ଜିନ୍ ଜ୍ୟାକୁସ୍ ରୁଷୋଂକଦ୍ୱାରା ପ୍ରବର୍ତିତ 'ସୋସିଆଲ୍ କଂଟ୍ରାକ୍ଟ୍' (Social Contract) ମତବାଦ ଦେଶର ବୁଦ୍ଧିଜୀବୀ ଓ ମଧ୍ୟବିତ୍ତ ଶ୍ରେଣୀକୁ ପ୍ରଭାବିତକରିଥିଲା। ତାଂକର ମତବାଦ ହେଲା, ସାମାଜିକ ସଂଗଠନ ଏକ ମୌଳିକ ଚୁକ୍ତି, ଯାହାକୁ ଧନୀ ଓ କ୍ଷମତାଶାଳୀ ଲୋକେ ସମାଜର ଦରିଦ୍ର ଓ ଦୁର୍ବଳ ଶ୍ରେଣୀ ଉପରେ ଜବରଦସ୍ତି ଲଦିଦେଇଛଂତି, ଫଳରେ ଜନସାଧାରଣ ଏହି ଅଭିଜାତ ଧନିକ ଶ୍ରେଣୀଦ୍ୱାରା ଅବାଧରେ ଶୋଷିତ ଓ ନିର୍ଯାତିତ ହେଉଛଂତି। ଜନସାଧାରଣଂକର ସ୍ୱାଧୀନ ଇଚ୍ଛାହିଁ ଚରମ କର୍ତୃତ୍ୱ ହାସଲ କରିବା ଉଚିତ ଏବଂ ମଣିଷର ପ୍ରାକୃତିକ ଅଧିକାର ସାବ୍ୟସ୍ତ ହେବା ଏକାଂତ ଆବଶ୍ୟକ।

"Jean Jacques Rousseau had propounded palatably revolutionary doctrine, notably in his 'Social Contract', teaching that the organisation of society rested upon original contract imposed by the strong for their own interest upon the weak, claiming that the ultimate authority is the will of the people, and insisting upon 'Natural Right', the Rights of Man".

ଭଲଟେୟାରଂକର କେତେକ ଶାଣିତ ଲେଖା ଜନସାଧାରଣଂକୁ କାଏମି ସ୍ୱାର୍ଥମାନଂକ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଆହ୍ୱାନ କରିଥିଲା। ଶେଷରେ ବିପ୍ଳବ ଚରମ ଆକାର ଧାରଣକଲା। ଏହା ଭଂଗାରୁଜା ଓ ହିଂସାତ୍ମକ କାର୍ଯକଳାପରେ ଲିପ୍ତ ହୋଇ ପଡ଼ିଲା। ବିପ୍ଳବର ଅନ୍ୟତମ ନେତା 'ମିରାବ୍ୟୁ' ମଧ ଏପ୍ରିଲ୍ ୨, ୧୭୯୧ରେ ନିହତ ହୁଅଂତି।

**ବାସ୍ତିଲ ଦୁର୍ଗ ଓ ବଂଦିଶାଳାର ପତନ –**

ଏହି ଜେଲ୍‌ରେ ବହୁ ବିପ୍ଳବୀ ଓ ରାଜନୈତିକ ନେତା ବଂଦୀ ହୋଇ ରହିଥିଲେ। ସେମାନଂକ ଉପରେ ଅକଥନୀୟ ଅତ୍ୟାଚାର କରାଯାଉଥିଲା। ଶେଷରେ ୧୭୮୯ ମସିହା ଜୁଲାଇ ୧୪ ତାରିଖରେ ଉତ୍‌କ୍ଷିପ୍ତ ଜନତା ଏହି ଜେଲ୍ ଉପରେ ଚଢ଼ାଉ କରି ଏହାକୁ ଭାଂଗିଦେଲେ; ବଂଦୀମାନଂକୁ ମୁକ୍ତକରିଦେଲେ।

**ଦୁର୍ଘଟଣାରୁ ଅଳ୍ପକେ ରକ୍ଷାପାଇଗଲି –**

ମୁଁ ଏହି ବାସ୍ତିଲ୍ (Bastille) ଦୁର୍ଗକୁ ଯାଇଥିଲି। ପ୍ୟାରିସ୍‌ରେ କାର୍ ସବୁ

ଅତି ଦ୍ରୁତଗତିରେ ଚାଲେ। ତାହା ରାସ୍ତାର ଡାହାଣ ପଟେ ଚାଲେ। ମୁଁ ବାସ୍ତିଲ୍ (Bastille) ଜେଲ୍‌ର ବିପରୀତ ଦିଗ ଫୁଟ୍‌ପାଥରୁ ବାସ୍ତିଲ୍ ଜେଲ୍ ଆଡ଼କୁ ଆସୁଥିଲି। ରାସ୍ତା ପାରିହେଲାବେଳେ ଗୋଟାଏ କାର ମୋର ଡାହାଣ ହାତ କୋଟ୍‌ରେ ଘଷିହୋଇ ଖୁବ୍ ଜୋର୍‌ରେ ଚାଲିଗଲା। ଆଉ ଏକ ଇଂଚ ବଢ଼ିଥିଲେ ମୁଁ ଦାରୁଣ ଦୁର୍ଘଟଣାର ଶିକାରହୋଇଥାʼନ୍ତି। ବାସ୍ତିଲ୍ ଦୁର୍ଗ ନିକଟରେ ପହଂଚି ମୁଁ ଟିକେ ଅନ୍ୟମନସ୍କ ହୋଇପଡ଼ିଥିଲି। ଫରାସୀ ବିପ୍ଳବର କରୁଣ ଭୟାବହ ଚିତ୍ର ମୋ ଆଖି ଆଗରେ ନାଚିଯାଉଥିଲା। ଫରାସୀ-ବିପ୍ଳବହିଁ ପୃଥିବୀରେ ରାଜତଂତ୍ର-ବିରୋଧୀ ସଶସ୍ତ୍ର ଜନସଂଗ୍ରାମ। ଏହାପରେ ଆମେରିକାନ୍ ବିପ୍ଳବ ଏବଂ କିଛି ପରିମାଣରେ ଭାରତୀୟ ମୁକ୍ତିସଂଗ୍ରାମକୁ ଏହା ବରାବର ପ୍ରେରଣା ଦେଇଆସିଛି। ମାତ୍ର ଏହାର ଶେଷ ପରିଣାମ ଇତିହାସର ପରିହାସରେ ବିଫଳ ହୋଇଯାଇଥିଲା। ଯେଉଁ ରାଜତଂତ୍ର ଓ ସାମଂତବାଦ ବିରୁଦ୍ଧରେ ଏହା ସଂଗ୍ରାମ କରିଥିଲା, ପୁଣି ସେହି ରାଜତଂତ୍ର ପଶ୍ଚାଦ୍ ଦ୍ୱାର ଦେଇ ଫ୍ରାନ୍ସରେ ପ୍ରବେଶକଲା। ନେପୋଲିୟନ ହେଲେ ଫ୍ରାନ୍ସର ସମ୍ରାଟ୍। ଇତିହାସ ଯେ ଅନେକ ସମୟରେ ନିଜର ପୁନରାବୃତ୍ତି କରେ, ଏହା ତାହାର ଗୋଟିଏ ଦୃଷ୍ଟାଂତ।

ପ୍ୟାରିସ୍‌ର ଦର୍ଶନୀୟ ସ୍ଥାନ –

ପ୍ୟାରିସ୍‌ର ଦର୍ଶନୀୟ ସ୍ଥାନମାନଂକ ମଧ୍ୟରେ 'କ୍ୟାଥିଡ୍ରାଲ୍ ଅଫ୍ ନୋଟଡ୍ରମ୍' ଉଲ୍ଲେଖନୀୟ। ଏଥିରେ ବହୁ ସୁଂଦର ଭାସ୍କର୍ଯ ଏବଂ ଚମତ୍କାର 'କାଚ ଚିତ୍ର' (Stained Glass) ରହିଛି। ଲୁଭ୍ ଛଡ଼ା ଅନ୍ୟାନ୍ୟ କେତୋଟି ବୈଚିତ୍ର୍ୟମୟ ମ୍ୟୁଜିୟମ, ଯଥା – Carnavalet, Guianet Museum, Muse de I Art Franis ପ୍ରଭୃତି ଅଛି। ଏଥିମଧ୍ୟରେ Chatlet Theatre, Theatre Sarah-Bernhand ପ୍ରଭୃତି ରମଣୀୟ। ହୋଟେଲ୍ ମଧ୍ୟରେ Hotel-de-Ville ଓ Hotel-Diea ଆଦି ପ୍ରଧାନ।

ଏଫିଲ ଟାୱାର (Eiffel Tower) ଏକ ଆକର୍ଷଣୀୟ ମିନାର୍। ଏହା ୧୮୮୯ ଖ୍ରୀଷ୍ଟାବ୍ଦରେ ଗୌସଭ ଏଫିଲଂକ (Goutave Eiffel) ଦ୍ୱାରା ନିର୍ମିତ ହୋଇଥିଲା। ଏହି ୯୮୪ ଫୁଟ୍ ଉଚ୍ଚ ସମଗ୍ର ଟାୱାରଟି ମୂଳରୁ ଶେଷ ପର୍ଯଂତ ଲୁହାରେ ତିଆରି। ଏଥିରେ ୭,୭୦୦ ଟନ୍ ଲୁହା ବ୍ୟବହାର କରାଯାଇଛି। ଏହାର ଆକୃତି ଏକ ବକ୍ର ପିରାମିଡ୍ ଭଳି। ଏହି ଟାୱାରଟି ବର୍ତ୍ତମାନ ଏକ ଗୁରୁତ୍ୱପୂର୍ଣ୍ଣ Wireless Telegraphy ଏବଂ ପାଣିପାଗ ନିର୍ଣ୍ଣୟ କେନ୍ଦ୍ରରୂପେ କାର୍ଯ କରୁଛି।

ଏଫିଲ୍ ଟାୱାରକୁ ଦେଖି ରୁଷର ଆଧୁନିକ କବି ମାୟାକୋଭସ୍କି ମୁଗ୍‌ଧ ହୋଇଯାଇଥିଲେ। ସେ ଗୋଟିଏ କବିତାରେ ଏଫିଲ୍ ଟାୱାରକୁ ମସ୍କୋକୁ ଯିବା ପାଇଁ ସାଦର ଆହ୍ୱାନ ଜଣାଇଛଂତି। ସେ ଲେଖିଛଂତି –

"ତୁ ଏ ଦେଶରେ କାହିଁକି ରହିଚୁ,
ତୁ ଆମ ଦେଶ ଓ ମସ୍କୋକୁ ଯାଆ ଚାଲି,

ଯେଉଁଠି ସାମ୍ୟର ଜୟଗାନ ଚାଲିଛି।'' – ଇତ୍ୟାଦି

ଏଫିଲ୍ ଟାୱାର ନିକଟରେ ପ୍ୟାରିସ୍‌ର କେଂଦ୍ରୀୟ ବସଷ୍ଟାଂଡ ବହୁ ଏକର ସ୍ଥାନ ଅଧିକାର କରି ରହିଛି। ଏଠାରେ ହଜାର ହଜାର ବସ୍ ଚଳପ୍ରଚଳ କରଂତି।

**ପୂର୍ବସୂରି ସଂଧାନେ : ପ୍ରତୀକବାଦୀ କବିଗୋଷ୍ଠୀ –**

ପ୍ୟାରିସ୍ ରହଣିବେଳେ ମୁଁ ଆଧୁନିକ କାବ୍ୟ-ଆଂଦୋଳନର ପୂର୍ବସୂରି ଚାର୍ଲସ୍ ବୁଦେଲିୟର୍ (୧୮୨୧-୬୭), ଷ୍ଟିପେନ୍ ମାର୍ଲାମେ (୧୮୪୨-୯୮), ଜିନ୍ ନିକୋଲାସ୍ ରୟାଁବୋ (୧୮୫୪-୯୧), ପଲ୍ ଭ୍ୟାଲେରୀ (୧୮୭୧-୧୯୪୫) ପ୍ରମୁଖଂକ ସଂବଂଧରେ କେତେକ ତଥ୍ୟ ଆହରଣ କରିଥିଲି। ଏମାନେ ଫରାସୀ ପ୍ରତୀକବାଦୀ କାବ୍ୟ-ଆଂଦୋଳନର ଅଗ୍ରସୂରି ଥିଲେ। ସେମାନେ vers-libre ବା ମୁକ୍ତ ଛଂଦରେ ଯଥେଷ୍ଟ ପରିବର୍ତ୍ତନ ଆଣିଥିଲେ। ଏମାନେ ସାଧାରଣତଃ 'ଫରାସୀ ପ୍ରତୀକବାଦୀ' ବା French Symbolist ବୋଲି ଅଭିହିତ ହୋଇଥାଂତି। ସେମାନେ ଉନବିଂଶଶତକୀୟ ବର୍ଣନାତ୍ମକ କାବ୍ୟଧାରା ଛାଡ଼ି ପ୍ରତୀକଧର୍ମୀ କାବ୍ୟଶୈଳୀ ପ୍ରବର୍ତ୍ତନ କରିଥିଲେ। ସେମାନଂକ କବିତା 'ଇମେଜିଷ୍ଟ' ବା ଚିତ୍ରକଳ୍ପବାଦୀ କାବ୍ୟଧାରା ପାଇଁ ପଥ ପ୍ରସ୍ତୁତ କରିଥିଲା। ଏମାନଂକ ବହୁ ପୁସ୍ତକ ମୁଁ ଧ୍ୟାନ ଦେଇ ପଢ଼ିଛି ଏବଂ ଅପାର ଆନଂଦ ପାଇଛି। ପ୍ରତୀକବାଦୀ କବିମାନଂକ ସଂବଂଧରେ ଯେଉଁ ତଥ୍ୟ ମିଳିଛି, ସେଥିରୁ ଜଣାଯାଏ ଯେ, ରୟାଁବୋଂକ ସହିତ ଭ୍ୟାଲେରୀଂକର ସୁସଂପର୍କ କ୍ରମେ ନଷ୍ଟ ହୋଇଯାଇଥିଲା। ଏକ ବିଶ୍ୱକୋଷରୁ ଜଣାଯାଏ, "His (Rimbaud) possessiveness, which detroyed Verlain's marrige, came to an end in 1873 with Verlain's attempt to murder Rimbaud." ରୟାଁବୋଂକର ଅଧିକାଂଶ କବିତାପୁସ୍ତକ ତାଂକୁ ୨୦ ବର୍ଷ ବୟସ ହେବା ପୂର୍ବରୁ ରଚିତହୋଇଥିଲା। ତାଂକ ପ୍ରଣୀତ 'Le Bateau Ivre', ଯାହାକୁ ସେ ୧୬ ବର୍ଷ ବୟସରେ ରଚନାକରିଥିଲେ ଏବଂ ସ୍ୱରବର୍ଣ ଉପରେ ରଚିତ ସନେଟ୍‌ଟି ଉତ୍କୃଷ୍ଟ କାବ୍ୟସୃଷ୍ଟି ବୋଲି ସ୍ୱୀକୃତି ଲାଭ କରିଛି। ସେ ଏକ ସର୍କସ ପାର୍ଟି ସହିତ ଆବିସିନିଆର ହାରାରେ ଭ୍ରମଣ କରିଥିଲେ।

ମାର୍ଲାମେଂକ କାବ୍ୟକୃତି ମଧ୍ୟରେ 'L' Apres– midid'um-Faune' (୧୮୭୬) ତାଂକର ଅଦ୍ଭୁତ କବି-ପ୍ରତିଭାର ସାକ୍ଷର ବହନକରେ। ତାଂକୁ ପ୍ରତୀକଧର୍ମୀ କବିତାର ପୁରୋଧାରୂପେ ମାନ୍ୟତା ଦିଆଯାଏ।

ବୁଦେଲିୟରଂକ କବିତାରେ ଚମତ୍କାର ଶୈଳ୍ପିକ ବୈଶିଷ୍ଟ୍ୟ ଦେଖାଯାଏ। ତାଂକ କବିତାର ଆଂଗିକ ଓ ଆତ୍ମିକ ନୂତନ ରସଚେତନା ସୃଷ୍ଟିକରିଥିଲା। ସେ 'ଏଡ୍‌ଗାର୍ ଆଲେନ୍ ପୋଂକଦ୍ୱାରା ପ୍ରଭାବିତ ହୋଇଥିଲେ। ସେ ପୋଂକର କେତେକ କବିତା ଓ ଗଳ୍ପ ଫରାସୀ ଭାଷାରେ ଅନୁବାଦ କରିଥିଲେ।

ଭ୍ୟାଲେରୀ ପ୍ରତୀକଗୋଷ୍ଠୀର ଶେଷ ଶକ୍ତିଶାଳୀ କବି। ସେ ବୁଦେଲିୟରଂକ

ଦ୍ୱାରା ପ୍ରଭାବିତ ହୋଇଥିଲେ ମଧ୍ୟ ତାଂକ କବିତାରେ ଅନନ୍ୟ ମୌଳିକତା ଫୁଟିଉଠିଛି । ତାଂକ ପ୍ରଣୀତ କବିତା ସଂକଳନ ମଧ୍ୟରେ 'Saturniens (୧୮୬୫), 'Fetes Galantes' (୧୮୬୯), 'La Bonee Chaspm' (୧୮୭୦) ବିଶେଷ ଉଲ୍ଲେଖନୀୟ ।

ସ୍ଥିତିବାଦୀ ଲେଖକ, ଦାର୍ଶନିକ ସାର୍ତେଂକୁ ଦେଖାକରିବା ପାଇଁ ମୁଁ ଚେଷ୍ଟା-କରିଥିଲି; ମାତ୍ର ସେ ପ୍ୟାରିସ୍‌ରେ ନଥିବାରୁ ଦେଖାହୋଇପାରିଲା ନାହିଁ । ୧୯୮୨ ମସିହାରେ ମୁଁ ବ୍ରିଟିଶ କାଉନ୍‌ସିଲଂକ ଆନୁକୂଲ୍ୟରେ ଏକ ସାଂସ୍କୃତିକ କାର୍ଯକ୍ରମରେ ଲଂଡନ ଯାଇଥିଲି । ସେଠାରୁ ଫେରିବା ବାଟରେ ପ୍ୟାରିସ୍‌ରେ ଆଠଦିନ ଥିଲି । ସେହି ସମୟରେ ସାର୍ତେଂକ ସହିତ ସାକ୍ଷାତ ଓ କିଛି ସମୟ ଆଲୋଚନା କରିଥିଲି । ସେ ସେତେବେଳକୁ ଅଂଧ ହୋଇଯାଇଥିଲେ । ସେ ସାହିତ୍ୟରେ ନୋବେଲ୍ ପୁରସ୍କାର ପାଇ ତାହା ପ୍ରତ୍ୟାଖ୍ୟାନ କରିଥିଲେ ।

**ଜିନିଭାରେ ଏକମାସ –**

ମୁଁ ଜିନିଭାରେ I.L.O. ବା ଆଂତର୍ଜାତିକ ଶ୍ରମ ସଂଗଠନରେ ଶ୍ରମିକମଂଗଳ ଏବଂ ଶ୍ରମିକ-ସଂପର୍କ କାର୍ଯ୍ୟକ୍ରମ ଅଧ୍ୟୟନ କରିବା ପାଇଁ ପ୍ରାୟ ଏକ ମାସ ଥିଲି । ଜିନିଭା ସୁଇଜରଲ୍ୟାଂଡ୍‌ର ରାଜଧାନୀ । ଏହା ପ୍ରଥମ ବିଶ୍ୱଯୁଦ୍ଧ ପରେ ସେତେବେଳର 'ଲିଗ୍ ଅଫ୍ ନେସନ୍'ର ହେଡ୍‌କ୍ୱାଟର୍ ଥିଲା । ପରେ ଏହି ଅଟ୍ଟାଳିକାଗୁଡ଼ିକୁ 'ୟୁ.ଏନ୍.ଓ.'କୁ ସମର୍ପଣ କରାଯାଇଛି । ଜିନିଭାର ଅଧିକାଂଶ ଲୋକ ଫରାସୀ । ଏହାର ମୋଟ ଲୋକସଂଖ୍ୟା ୧୯୫୦ ବେଳକୁ ୧,୭୪,୮୫୫ ଜଣ ଥିଲା; ବର୍ତମାନ ତାହା ଅନେକ ବଢ଼ିଗଲାଣି ।

ଜିନିଭାର 'ଜିନିଭା ଲେକ୍' ଅତି ପ୍ରସିଦ୍ଧ । ଏହି ହ୍ରଦ ଦେଇ 'ରୋହନ୍' ନଦୀ ପ୍ରବାହିତ ହୋଇଛି । ଏହି ଲେକ୍ ବା ହ୍ରଦଟି କେଂଦ୍ର ୟୁରୋପରେ ସବୁଠାରୁ ବଡ଼ ହ୍ରଦ । ଏହାର ପାଣିର ରଂଗ ଗାଢ଼ ନୀଳ । ମୁଁ ହ୍ରଦକୂଳରେ ଘଂଟା ଘଂଟା ବସି ସମୟ କଟାଇଦେଇଛି । ଶୁଣାଯାଏ, ପ୍ରସିଦ୍ଧ ଇଂରାଜୀ କବି ଶେଲୀ (୧୭୯୨-୧୮୨୨) ଜିନିଭା ଲେକ୍‌କୁ ବହୁତ ଭଲପାଉଥିଲେ । ମୁଁ ପିଲାଦିନୁ ଶେଲୀଙ୍କର ବହୁ କବିତା ପଢ଼ି ଅଭିଭୂତ ହୋଇଯାଇଛି । ତାଙ୍କର 'Ode to the West Wind' କବିତାଟିର ବହୁ ପଂକ୍ତି ମୋର ବହୁଦିନ ପର୍ଯଂତ ସ୍ମରଣଥିଲା ।

**ଆଇ.ଏଲ୍.ଓ. –**

ମୁଁ I.L.O.ରେ ପ୍ରାୟ ଏକ ମାସ ଥିଲି । ମିଃ. ଜି. ଅଧିକାରୀ ନାମକ ଜଣେ ବଂଗାଳୀ ଆଇ.ଏଲ୍.ଓ. ଅଫିସରଂକ ତତ୍ତ୍ୱାବଧାନରେ ମୁଁ ଅଧ୍ୟୟନ କରୁଥିଲି । ଜିନିଭା ଠାରେ ପ୍ରତିବର୍ଷ ଆଇ.ଏଲ୍.ଓ. ଆଂତର୍ଜାତିକ ଶ୍ରମ-ସମ୍ମିଳନୀ ବସେ । ଏଥିରେ ବହୁ ଦେଶର ଶ୍ରମ-ମଂତ୍ରୀମାନେ ଏବଂ ଶ୍ରମିକ ପ୍ରତିନିଧିମାନେ ଯୋଗଦେଇଥାଂତି । ଆମଭାରତର ଶ୍ରମମଂତ୍ରୀମାନେ ମଧ୍ୟ ଏଇ ସମ୍ମିଳନୀରେ ପ୍ରତିବର୍ଷ ଯୋଗଦେଇଥାନ୍ତି ।

ମୁଁ ମିଃ. ଅଧିକାରୀଂକ ସାହାଯ୍ୟରେ ଏହି ସମ୍ମିଳନୀର ବିଭିନ୍ନ ବର୍ଷର କାର୍ଯ-ବିବରଣୀ ପଢ଼ିବାର ସୁଯୋଗପାଇଲି। ସେଥିରୁ ବିଭିନ୍ନ ଦେଶର ଶ୍ରମିକ ସଂପର୍କ ଏବଂ ଶ୍ରମିକମଂଗଳ କ୍ଷେତ୍ରରେ କି କି କାର୍ଯ କରାଯିବ ଓ କେତେଦୂର ପୂର୍ବ ବର୍ଷମାନଂକର କାର୍ଯକ୍ରମ ସଫଳହୋଇଛି, ତାହା ଜାଣିବାକୁ ପାଇଥିଲି। ଶିଶୁ-ଶ୍ରମିକ ନିଯୁକ୍ତି ବିରୋଧରେ ବହୁ ପ୍ରସ୍ତାବମାନ କରାଯାଇଥିଲା।

ଏହି ଅବସରରେ ଜିନିଭାରେ କେତେକ ସାହିତ୍ୟିକବଂଧୁ ଏବଂ ବାଧଂବୀଙ୍କ ସହିତ ମୋର ପରିଚୟ ଘଟିଥିଲା। ସେମାନେ ଦୁଇ-ତିନି ଦିନ ରାତ୍ରିଭୋଜନକୁ ମୋତେ ନିମଂତ୍ରଣ କରିଥିଲେ। ସେଠାରେ ମୁଁ ମୋର କେତେକ କବିତାର ଇଂରାଜୀ ଅନୁବାଦ ଓ ମୂଳ ଓଡ଼ିଆ ଲେଖା ପାଠକରିଥିଲି। ଜିନିଭାର କବିମାନେ ପ୍ରାୟ ଫ୍ରେଂଚ୍ ଭାଷାରେ କବିତାମାନ ଲେଖୁଥିଲେ।

**ମୋ' ଓଭୋର୍‌କୋଟ୍ –**

ମୁଁ ଫ୍ରାଂକ୍‌ଫୋଟ୍ ଯିବା ଉଦ୍ଦେଶ୍ୟରେ ଜିନିଭା ଛାଡ଼ିବା ଦିନ ମି. ଅଧିକାରୀ ମୋତେ ତାଂକ ଘରକୁ ମଧ୍ୟାହ୍ନ-ଭୋଜନ କରିବା ପାଇଁ ନିମଂତ୍ରଣ କରିଥିଲେ। ମୋର ଫ୍ଲାଇଟ୍ ଅପରାହ୍ଣ ୫ଟା ବେଳେ ଥିଲା। ତେଣୁ ତାଂକ ନିମଂତ୍ରଣ ରକ୍ଷା କରିବାରେ କିଛି ଅସୁବିଧା ନଥିଲା।

ମୁଁ ଆଇ.ଏଲ୍.ଓ. ଦେଇଥିବା ଏକ ଗାଡ଼ିରେ ମୋର ଜିନିଷପତ୍ର, ସୁଟ୍‌କେଶ୍ ଆଦି ରଖି ମିଃ. ଅଧିକାରଂକ ଘରେ ପହଂଚିଲି। ସେଠାରେ ମଧ୍ୟାହ୍ନ-ଭୋଜନ ସାରି ସିଧା ବିମାନଘାଟିକି ଯାଇଥିଲି। ମିଃ. ଅଧିକାରୀ, ତାଙ୍କ ସ୍ତ୍ରୀ ଏବଂ ପିଲାମାନେ ମୋର ଭଲ ସତ୍କାର କରିଥିଲେ। ମୁଁ ବିମାନଘାଟିରେ ପହଞ୍ଚି ଜିନିଷପତ୍ର ଓଜନ କରାଇସାରି ଫ୍ଲାଇଟ୍‌ର ଘୋଷଣା ଅପେକ୍ଷାରେ ବସିଥାଏ। ହଠାତ୍ ମୋ କାଂଧଟା ଖାଲି ଖାଲି ମନେହେଲା; ମୁଁ ଦେଖିଲି ମୋର ଓଭୋର୍‌କୋଟ୍‌ଟି ନାହିଁ। ବୋଧହୁଏ ମିଃ. ଅଧିକାରୀଙ୍କ ଘରେ ଛାଡ଼ିଆସିଛି। ମୋ ମନଟା ଭାରି ଖରାପହୋଇଗଲା। ଏହି ଓଭୋର୍‌କୋଟ୍‌ଟି ମୋ ସଂଗେ ଅଷ୍ଟ୍ରେଲିଆ, ନ୍ୟୁଜିଲ୍ୟାଂଡ୍, ଥାଇଲ୍ୟାଂଡ୍, ଆମେରିକା, ଇଂଲଣ୍ଡ୍, ପ୍ୟାରିସ୍ ଓ ଇଟାଲୀ ପ୍ରଭୃତି ଦେଶରେ ମୋର ଅଂଗ ରକ୍ଷା କରିଥିଲା। ସେଇଟିକୁ ହରାଇ ମୁଁ ବଡ଼ ଦୁଃଖ ଅନୁଭବକଲି।

**ଫ୍ରାଂକ୍‌ଫୋଟରେ ଦୁଇଦିନ –**

ପଶ୍ଚିମ ଜର୍ମାନୀର ଏକ ବଡ଼ ନଗରୀ ଫ୍ରାଙ୍କ୍‌ଫୋଟ୍‌ଠାରେ ଏକ କବିତା ପାଠୋତ୍ସବରେ ମୋ କବିତା ପଢ଼ିବା ପାଇଁ ମୁଁ ନିମଂତ୍ରିତ ହୋଇଥିଲି। ମୁଁ ସେଠାକୁ ଯାଇ ମୋର କେତୋଟି କବିତାର ଇଂରାଜୀ ଅନୁବାଦ ପାଠ କରିଥିଲି। ଫ୍ରାଂକ୍‌ଫୋଟ୍ ସହରଟି ବେଶ୍ ବଡ଼ ଏବଂ ସୁରୁଚିପୂର୍ଣ୍ଣ। ଏଠାରେ ବହୁ ଶିଳ୍ପଉଦ୍ୟୋଗ ଗଢ଼ିଉଠିଛି।

**କାଇରୋ (Cairo) ରେ ଦୁଇଦିନ –**

ମୋତେ ଭାରତ ଫେରିବା ପଥରେ ଦୁଇଦିନ କାଇରୋଠାରେ ରହିବାକୁ

ପଡ଼ିଥିଲା । ଏୟାର କଂପାନୀ ମୋର ରହିବାର ବ୍ୟବସ୍ଥା କରିଦେଇଥିଲା । କାଇରୋରେ ଦୁଇଦିନ ରହି ଭାରତଗାମୀ ବିମାନରେ ବଂବେ ଯିବାର ଏବଂ ସେଠାରୁ ମାଡ୍ରାସ୍ ଯିବାର ବିମାନ ଟିକେଟ୍ ଥିଲା ।

କାଇରୋ ଇଜିପ୍ଟର (ମିଶର)ର ରାଜଧାନୀ ଥିଲା । ଏହା 'ନାଇଲ୍' (ନୀଳ) ନଦୀ କୂଳରେ ଅବସ୍ଥିତ । ମୋର ବହୁ କବିତାରେ ନାଇଲ୍ ବା ନୀଳନଦୀ କଥା ଉଲ୍ଲେଖ ହୋଇଛି । ମୋର 'ଭାନୁମତିର ଦେଶ' କାବ୍ୟରେ ନାଇଲ ନଦୀର ତଟଭୂମିର ବର୍ଣନା ଅଛି । ମୁଁ ନାଇଲ୍ ନଦୀ କୂଳରେ କିଛି ସମୟ କଟାଇଥିଲି । କାଇରୋ ନିକଟରେ ଥିବା ମରୁଭୂମି ଭିତରେ କେତେଗୁଡ଼ିଏ ପିରାମିଡ୍ ଅଛି । ମୁଁ ସେସବୁ ଦେଖିବାକୁ ଚାହିଁଲି, ସକାଳେ ମୁଁ ଓଟ ଉପରେ ବସି ବାଲୁପ୍ରାଂତର ପାରିହୋଇ ପିରାମିଡ୍ ନିକଟରେ ପହଂଚିଥିଲି । ଏହି ପିରାମିଡ୍‌ଗୁଡ଼ିକ ତଳେ ମିଶରର ସମ୍ରାଟ୍ (ଫାରୋ)ମାନଂକ କବର ଥିଲା । ଏଥିମଧ୍ୟରୁ ଖୁଫୁଂକର ପିରାମିଡ୍‌ଟି ପୃଥିବୀର ସପ୍ତମ ଆଶ୍ଚର୍ଯ୍ୟ ମଧ୍ୟରୁ ଅନ୍ୟତମ ବୋଲି ଗଣାଯାଏ । ଏହାର ଉଚ୍ଚତା ୪୮୧ ଫୁଟ ଏବଂ ଭିତ୍ତିଭୂମିର ଦୈର୍ଘ୍ୟ ୭୭୫ ଫୁଟ ଓ ଏହାର ଆୟତନ ୮୮,୫୦୦,୦୦୦ କ୍ୟୁବିକ୍ ଫୁଟ । ଏହାର ଓଜନ ୬,୮୪୦,୦୦୦ ଟନ୍ । ୧,୦୦,୦୦୦ ଲୋକ ବର୍ଷକରେ ତିନିମାସ ସମୁଦ୍ର ଜୁଆର ଉଠିଲାବେଳେ କାମକରି କୋଡ଼ିଏ ବର୍ଷରେ ଏହାକୁ ନିର୍ମାଣ କରିଛଂତି ବୋଲି ବିଶେଷଜ୍ଞମାନେ କହଂତି । (New Universal Encyclopaedia)

କାଇରୋରେ ମୁଁ ଯେଉଁ ହୋଟେଲ୍‌ରେ ଥିଲି ତାହା ପାଖ ହୋଟେଲ୍‌ରେ ରାତି ତମାମ୍ ନାରୀକଂଠର ଗୀତ, ନାଚ ଏବଂ ତାହା ସାଂଗକୁ ବାଦ୍ୟଧ୍ୱନୀ ଶୁଣାଯାଉଥିଲା । ଦୁଇ ହୋଟେଲ୍‌ର ବିଭିନ୍ନ ମହଲାର ଖିଡ଼ିକିଗୁଡ଼ିକ ସମାଂତରାଳଭାବରେ ଥାଏ ।

**ଭାରତ ପ୍ରତ୍ୟାବର୍ତ୍ତନ –**

ମୁଁ ଦୀର୍ଘ ଛଅ, ସାତମାସ ପରେ ଭାରତ ଫେରିଲି । ମୁଁ ବଂବେ ଏୟାରପୋର୍ଟରେ ଓହ୍ଲାଇ ସିଧାସଳଖ ମାଡ୍ରାସ୍ ଯିବା ପ୍ଲେନ୍ ଧରିଲି ଏବଂ ପ୍ରାୟ ଦୁଇ ଘଣ୍ଟା ପରେ ମାଡ୍ରାସ୍‌ରେ ପହଂଚିଗଲି । ମୋ ସ୍ତ୍ରୀ ଓ ପିଲାପିଲି ସମସ୍ତେ ଗୋଲାପଲ୍ଲୀରେ ଥାଂତି ।

**ମାଡ୍ରାସ୍‌ରେ ସଂବର୍ଧନା –**

ମାଡ୍ରାସ୍‌ରେ ଭୂଦେବୀର ମାମୁଁ ପେଦାପାରନୀ ଜମିଦାର ବା ରାଜା ମାଡ୍ରାସ୍ ଏୟାରପୋର୍ଟରୁ ମୋତେ ନେବା ପାଇଁ ଗାଡ଼ି ଓ ଜଣେ ଲୋକ ପଠାଇଥିଲେ । ମୁଁ ତାଂକ ଘରେ ଦୁଇଦିନ ରହିଲି । ମୁଁ ମାଡ୍ରାସ୍‌ରେ ପହଂଚିବା ପରଦିନ ମାଡ୍ରାସ୍‌ର ଲେଖକ ବଂଧୁମାନେ 'ଦାସ ପ୍ରକାଶ' ହୋଟେଲରେ ଏକ ସମ୍ବର୍ଦ୍ଧନା ସଭାରେ ମୋତେ ସମ୍ମାନିତ କରିଥିଲେ । ସ୍ୱନାମଧନ୍ୟ ତେଲୁଗୁ କବି ଶ୍ରୀଶ୍ରୀ ଏବଂ ତାଙ୍କ ସାନଭାଇ ସୁଲେଖକ ନାରାୟଣ ବାବୁ ପ୍ରଭୃତି ଏ ସଭାର ଆୟୋଜନ କରିଥିଲେ । ଯୁଗୋସ୍ଲୋଭିଆର ମାଡ୍ରାସ୍‌ରେ ଥିବା ବାଣିଜ୍ୟ କାର୍ଯ୍ୟାଳୟର ଅଧିକାରୀ,

ଦୁଇ-ତିନିଜଣ ଶ୍ୱେତାଂଗ ଅଫିସର ଉକ୍ତ ସଭାରେ ଯୋଗଦେଇଥିଲେ। ଏ ସଭାର ଫଟୋଚିତ୍ର ୧୯୫୫ ମସିହାରେ କଲିକତାର 'ମଡର୍ଣ ରିଭ୍ୟୁ' ପତ୍ରିକାଦ୍ୱାରା ପ୍ରକାଶିତ "Sachi Rout-Ray – A poet of the people" ନାମକ ପୁସ୍ତକରେ ପ୍ରକାଶପାଇଛି। ସଭାରେ ଲେଖକ ବଂଧୁମାନେ ମୋ ଲିଖିତ କବିତା ଓ ଗଳ୍ପମାନଂକର ଆଲୋଚନା କରିଥିଲେ।

ମୁଁ ମୋ ଲେଖକ ଜୀବନର ଅନୁଭୂତି ଏବଂ ଆମେରିକା ଓ ୟୁରୋପର ସାହିତ୍ୟିକ ଦୃଶ୍ୟପଟ ସଂବଂଧରେ ସୂଚନା ଦେଇ ଭାଷଣ ଦେଇଥିଲେ। ସଭାପରେ ରାତ୍ରୀଭୋଜନର ବ୍ୟବସ୍ଥା କରାଯାଇଥିଲା।

**ବିନୋବାଂକ ସହ ପଦଯାତ୍ରା –**

ତା' ପରଦିନ ମୁଁ ମାଡ୍ରାସ୍‌ରୁ ଟ୍ରେନ୍‌ଯୋଗେ ଗୋଲାପଲ୍ଲୀ ଯାଇଥିଲି। ଗୋଲାପଲ୍ଲୀରେ ତିନି-ଚାରି ଦିନ ରହିବା ଭିତରେ ଆଚାର୍ଯ ବିନୋବା ଭାବେ ତାଙ୍କ ଭୂଦାନ ଗସ୍ତ କ୍ରମରେ ଗୋଲାପଲ୍ଲୀ ଆସିଥିଲେ। ସେ ରାତିରେ ଗୋଲାପଲ୍ଲୀ ହାଇସ୍କୁଲ୍‌ରେ ଛାଉଣୀ ପକାଇଥିଲେ ଏକଥା ପୂର୍ବରୁ ସୂଚନା ଦେଇଛି। ମୁଁ ରାତିରେ ତାଂକ ସଂଗେ ଦେଖାକରିଥିଲି। ସେ ମୋତେ ବଡ଼ିଭୋରରୁ ତାଂକ ସଂଗେ ଭୂଦାନ ଗସ୍ତରେ ନୁଜ୍‌ଭିଡ୍ ପର୍ଯନ୍ତ (ପ୍ରାୟ ୬ ମାଇଲ୍) ପଦଯାତ୍ରାରେ ଯିବା ପାଇଁ ଅନୁମତି ଦେଇଥିଲେ। ସେ ମୋତେ ବାଟରେ ଆମେରିକା ଓ ୟୁରୋପ ସଂବଂଧରେ ଅନେକ କଥା ପଚାରିଥିଲେ।

ଏହାର ଦୁଇ-ତିନି ଦିନ ପରେ ମୁଁ ମୋ ସ୍ତ୍ରୀ ଓ ପିଲାପିଲିଂକି ନେଇ କଲିକତା ଫେରିଥିଲି ଏବଂ ମୋ କାମରେ ଯୋଗଦେଇଥିଲି।

**ମିଲ୍‌ରେ ସଂବର୍ଧନା –**

କେଶୋରାମ କଟନ୍ ମିଲ୍‌କୁ ଫେରିବା ପରେ ମୋତେ ମିଲ୍‌ର ଷ୍ଟାଫ୍‌ମାନଂକ ପକ୍ଷରୁ ଏକ ସଂବର୍ଧନା ଜ୍ଞାପନ କରାଯାଇଥିଲା। ଏଥିରେ ମିଲ୍‌ର ମ୍ୟାନେଜର, ବିଭାଗୀୟ ମୁଖ୍ୟ ଏବଂ ଅନ୍ୟାନ୍ୟ କର୍ମଚାରୀମାନେ ଯୋଗଦେଇଥିଲେ। ଶ୍ରମିକମାନଂକ ତରଫରୁ ଏକ ସ୍ୱତଂତ୍ର ସଭାରେ ଅନ୍ୟ ଏକ ଦିନ ମୋତେ ସଂବର୍ଧନା ଦିଆଯାଇଥିଲା। ମୁଁ ଏ ସମସ୍ତ ସଭାରେ ମୋର ଆମେରିକା ଓ ୟୁରୋପ ଗସ୍ତ ଅଭିଂଜ୍ଞତା ବର୍ଣନା କରିଥିଲି।

ମିଲ୍‌ରେ ମୁଁ ପୂର୍ବଭଳି ଏକ୍ଜିକ୍ୟୁଟିଭ୍ ଅଫିସରଭାବେ ନିଜ କାର୍ଯ୍ୟ ସଂଭାଳିଥିଲି। ବିଦେଶରେ ଥିଲାବେଳେ, ମୁଁ ଭୂଦେବୀ ନିକଟରୁ ନିୟମିତ ଚିଠିପତ୍ର ପାଉଥିଲି ଏବଂ ପିଲାପିଲିମାନଂକର ଖବର ରଖୁଥିଲି। କେତେକ ଆମେରିକୀୟ ଓ ୟୁରୋପୀୟ ରାଜଧାନୀରେ ମୋର ଠିକଣା ପୂର୍ବରୁ ଜଣାନଥିବାରୁ ଭୂଦେବୀ ଓ ଅନ୍ୟମାନେ C/o - American Express, Paris/Rome/Geneva ଠିକଣାରେ ଚିଠିପତ୍ର ଦେଉଥିଲେ। ମୁଁ ସେଠାକୁ ଯାଇ ଚିଠିପତ୍ର ସଂଗ୍ରହ କରିନେଉଥିଲି।

## ଷଟ୍‌ତ୍ରିଂଶ ଉଲ୍ଲାସ

## କେଶୋରାମ କଟନ୍ ମିଲ୍‌ସ ଚାକିରିରୁ ଇସ୍ତଫା : ଓଡ଼ିଶା ପ୍ରତ୍ୟାବର୍ତ୍ତନ

**ମିଲ୍‌ରେ ଶ୍ରମିକ ଅସଂତୋଷ –**

ମୁଁ ବିଦେଶରୁ ଫେରିବା ପରେ ମିଲ୍‌ର ଆବହାଓ୍ୱା ଉତ୍ତେଜନାପୂର୍ଣ୍ଣ ଜଣା-ପଡୁଥିଲା। ଶ୍ରମିକମାନଂକ ଭିତରେ ଅଶାଂତି କୁହୁଳୁଥିଲା। ଶ୍ରମିକ ୟୁନିୟନ୍‌ଗୁଡ଼ିକ ମଧ୍ୟରେ କମ୍ୟୁନିଷ୍ଟ ୟୁନିୟନ୍ ହିଁ ଅଧିକ ଲଢୁଆ ଥିଲା। କମ୍ୟୁନିଷ୍ଟ୍ ୟୁନିୟନ୍‌ରେ ଓଡ଼ିଆ ଶ୍ରମିକମାନେ ଅଧିକ ସଂଖ୍ୟାରେ ଯୋଗଦେଇଥିଲେ। ଆମ ମିଲ୍‌ର ଓଡ଼ିଆ ଶ୍ରମିକମାନଂକ ସଂଖ୍ୟା ପ୍ରାୟ ଚାରିହଜାର ଥିଲା। ଅବଶିଷ୍ଟ ଆଠହଜାର ଶ୍ରମିକମାନେ ଥିଲେ ଉତ୍ତର ପ୍ରଦେଶ, ବିହାର ପ୍ରଭୃତିର ଲୋକ। ଯେ କୌଣସି ଆଂଦୋଳନ ହେଲେ ଓଡ଼ିଆ ଶ୍ରମିକମାନେ ଆଗଭର ହୋଇ ବାହାରୁଥିଲେ। ତେଣୁ ମିଲ୍ କର୍ତ୍ତୃପକ୍ଷ ଓଡ଼ିଆ ଶ୍ରମିକମାନଂକ ପ୍ରତି ବିମୁଖ ଥିଲେ। କମ୍ୟୁନିଷ୍ଟ ୟୁନିୟନ୍‌ରେ ନେତା ଫରୁକୀ ଓ ଅରୁଣ ସେନ୍ କୌଣସି ପ୍ରକାର ଆପୋଷମୂଳକ ଆଲୋଚନାର ପରିପଂଥୀଥିଲେ।

ଦୁଇ-ତିନିବର୍ଷ ପରେ ମିଲ୍‌ର ମ୍ୟାନେଜରମାନେ ବଦଳି ହୋଇଗଲେ। ମିଃ. ବାଗ୍ରୀ, ମିଃ. ଆର୍. ଏନ୍. ଶର୍ମା ଓ ଶ୍ରୀ ତିଓ୍ୱାରି ପ୍ରଭୃତି ଦିଲ୍ଲୀ, ଅହମ୍ମଦାବାଦ ପ୍ରଭୃତିରେ ଥିବା ବିରଳା ମିଲ୍‌ମାନଂକର ମ୍ୟାନେଜର ରୂପେ ସ୍ଥାନାଂତରିତ ହେଲେ। ବାଗ୍ରୀଜୀ ଅବସର ଗ୍ରହଣ କଲେ। ଏସ୍.ଏନ୍. ହାଡ୍‌ଡା ଯେକି ବିରଳାଂକର ଅହମ୍ମଦାବାଦ କଟନ୍ ମିଲ୍‌ର ମୁଖ୍ୟ ମ୍ୟାନେଜର ଥିଲେ, ସେ ଆମ ମିଲ୍‌ର ଚିଫ୍ ଏକ୍‌ଜିକ୍ୟୁଟିଭ୍ ଅଫିସର୍ ବା ସର୍ବୋଚ୍ଚ ମ୍ୟାନେଜର ରୂପେ ଦାୟିତ୍ୱ ଗ୍ରହଣ କଲେ। ସେ ତାଂକ ସାଂଗରେ କେତେଜଣ ସହକାରୀ ମ୍ୟାନେଜର ଓ ଲେବର ଅଫିସର ଆଣିଥିଲେ। ସେମାନେ ମିଲ୍‌ର କାର୍ଯ୍ୟଭାର ଗ୍ରହଣ କଲାପରେ ପୁରୁଣା କର୍ମଚାରୀ-ମାନଂକୁ ବଦଳିକରିବାରେ ଲାଗିଲେ। ଆମ ମିଲ୍‌ର ଅଧିକାଂଶ ବିଭାଗୀୟ ଅଧିକାରୀ-ମାନଂକୁ ବିଭିନ୍ନ ବିରଳା ଅନୁଷ୍ଠାନମାନଂକୁ ଧିରେ ଧିରେ ସ୍ଥାନାଂତରିତ କରାଗଲା। କେତେକଂକୁ ମଧ୍ୟ ବାଧ୍ୟତାମୂଳକ ଅବସର ଦିଆଗଲା। ତେଣୁ ଆମେ ଯେଉଁ ପୁରୁଣା କର୍ମଚାରୀମାନେ ଥିଲୁ, ସେମାନେ ନିଜକୁ ନିଜ ପଦରେ ସୁଦୃଢ଼ ମନେକରୁନଥିଲୁ। କେତେବେଳେ ଯେ କାହାର ଅନ୍ୟ ପ୍ରତିଷ୍ଠାନକୁ ବଦଳି ହେବ, କେହି ଜାଣିନଥିଲେ।

ଶ୍ରମିକମାନଂକ ମଧ୍ୟରେ ମଧ୍ୟ ବହୁ ଅଦଳ ବଦଳ କରାଗଲା। ନୂଆ ଅଧିକାରୀମାନେ ବଡ଼ବଡ଼ ହେଡ୍‌ମିସ୍ତ୍ରୀ ଓ ଜବରମାନଂକୁ ଧିରେ ଧିରେ ମିଲ୍‌ରୁ ହଟାଇବାକୁ ଲାଗିଲେ, କେତେକ ଓଡ଼ିଆ ମିସ୍ତ୍ରୀଂକୁ ମଧ୍ୟ ଚୁକ୍ତା ବା pay off କରାଗଲା। ଚୁକ୍ତା ଦିଆଯିବା ଅର୍ଥ ସେମାନେ ଯେତେବର୍ଷ କାର୍ଯ୍ୟ କରିଛନ୍ତି, ବର୍ଷ

ପିଛା କେତେଦିନର ମୂଳ ଦରମା ବା ମାଇନା ମିଶାଇ ଏକ ମୋଟା ଅଂକର ଟଂକା ଦିଆଯାଉଥିଲା । ଓଡ଼ିଆ ଶ୍ରମିକମାନେ ଚୁକ୍ତା ନେଇ ଫେରିବାବେଳେ ହିଂନ୍ଦୁସ୍ଥାନୀ ଶ୍ରମିକମାନେ ତାହା ମିଲ୍ ଭିତରେ ଦିବାଲୋକରେ ସେମାନଂକଠାରୁ ଛଡ଼ାଇ ନେଉଥିଲେ । ନୂତନ ବଡ଼ ମ୍ୟାନେଜରେ ହାଣ୍ଡାଂକ ସହିତ ମୋର ସଂପର୍କ ସେତେ ଭଲନଥିଲା । ସେ ମୋର ଅଧସ୍ତନ ସହକାରୀମାନଂକୁ ଅଧିକ ବିଶ୍ୱାସ କରୁଥିଲେ ।

ଓଡ଼ିଆ ଶ୍ରମିକମାନେ ବେଶୀ ସଂଖ୍ୟାରେ ସ୍ପିନିଂ ଡିପାର୍ଟମେଂଟରେ କାମ କରୁଥିଲେ । warehouse ରେ ମଧ ଅଧିକାଂଶ ମିସ୍ତ୍ରୀ ଓ ଶ୍ରମିକମାନେ ଓଡ଼ିଆ ଥିଲେ । ଓଡ଼ିଆ ଶ୍ରମିକମାନେ ଅଧିକାଂଶ କମ୍ୟୁନିଷ୍ଟ ୟୁନିୟନର ସକ୍ରିୟ ସଭ୍ୟ ଥିଲେ, ତେଣୁ ମିଲରୁ ସେମାନଂକୁ ଧିରେ ଧିରେ ହଟାଇବା ନୂଆ ଅଧିକାରୀମାନଂକ କାମ ଥିଲା; ମାତ୍ର ମୁଁ ଥିବାଯାଏ ସେମାନେ ତାହା କରିବାକୁ ସାହସ କରୁନଥିଲେ । ଏହିପରିଭାବରେ ପାଂଚ-ଛଅ ବର୍ଷ ଚାଲିଗଲା ।

ଥରେ ଅଗଷ୍ଟ-୧୫ ତାରିଖ ସ୍ୱାଧୀନତା ଦିବସ ଦିନ କମ୍ୟୁନିଷ୍ଟମାନଂକର ଏକ ବିରାଟ ଶୋଭାଯାତ୍ରା ବାହାରିଥିଲା । ଅଣକମ୍ୟୁନିଷ୍ଟ ଶ୍ରମିକମାନଂକର ମଧ ଏକ ଶୋଭାଯାତ୍ରା ବାହାରିଥିଲା । ଅଣକମ୍ୟୁନିଷ୍ଟ ଶୋଭାଯାତ୍ରାର ନେତୃତ୍ୱ ନେଇଥାଂତି ମୋର ବରିଷ୍ଠ ସହକାରୀ ବିଜୟ ବାହାଦୁର ସିଂ । ଆଖୋରା ରୋଡ଼୍‌ଠାରେ ଦୁଇ ଶୋଭାଯାତ୍ରା ଦୁଇଦିଗରୁ ଆସୁଥିବାବେଳେ ମୁହାଁମୁହିଁ ହୋଇଗଲେ, ଉଭୟ ପକ୍ଷର ନେତୃସ୍ଥାନୀୟ ଶ୍ରମିକ ଓ କର୍ମଚାରୀମାନଂକ ମଧରେ ଧସ୍ତାଧସ୍ତି ଲାଗିଗଲା । ବିଜୟ ବାହାଦୁର ସିଂଙ୍କ ନାକରେ ଚୋଟ ଲାଗିବାରୁ ତାଂକୁ ହସ୍‌ପାତାଳକୁ ନିଆଗଲା । ସେଠାରେ ସେ ପାଂଚ-ଛଅ ଦିନ ରହି ଫେରିଲେ । ତାଂକୁ ହାସ୍‌ପାତାଳରେ ଦେଖିବା ପାଇଁ ମିଲର ଉଚ୍ଚ-ଅଧିକାରୀମାନେ ଓ ହାଣ୍ଡା ପ୍ରଭୃତି ଯାଇଥିଲେ । ସେହିଦିନୁ ବିଜୟ ବାହାଦୁରଂକର ପ୍ରତିପତ୍ତି ବଢ଼ିବାକୁ ଲାଗିଲା ।

**ଓଡ଼ିଶାର ରାଜନୈତିକ ଅବସ୍ଥା –**

ସେ ଯାହାହେଉ, ୧୯୬୧ ମସିହାବେଳକୁ ଓଡ଼ିଶାରେ କଂଗ୍ରେସ ନେତୃତ୍ୱରେ ମଧ ପରିବର୍ତ୍ତନ ହୋଇଥିଲା । ହରେକୃଷ୍ଣ ମହତାବଂକ ଜାଗାରେ ବିଜୁ ପଟ୍ଟନାୟକ କଂଗ୍ରେସର ନେତୃତ୍ୱ ହାସଲ କରିଥାଂତି । ତାଂକର ପ୍ରଧାନ ସହକାରୀ ଥିଲେ ବୀରେନ୍ ମିତ୍ର ଓ ନୀଳମଣି ରାଉତରାୟ । ଏ ଦୁହେଁ ମୋର ରେଭେନ୍‌ସା କଲେଜରେ ଛାତ୍ର ଆଂଦୋଳନରେ ପ୍ରଧାନ ସହଯୋଗୀ ଥିଲେ । ବିଜୁ ପଟ୍ଟନାୟକଂକ ସଂଗେ ମଧ ମୋର କଲିକତାରେ ବହୁତଥର ସାକ୍ଷାତ ଓ ଆଳାପ ଆଲୋଚନା ହୋଇଥିଲା । ସେ ସେତେବେଳକୁ କଳିଂଗ ଏୟାରଲାଇନ୍‌ସ୍ ନାମକ ଏକ କଂପାନୀ ଚଳାଉଥାଂତି । ସେ ନିଜେ ମଧ ଜଣେ ଦକ୍ଷ ବିମାନଚାଳକ ଥିଲେ । ସେ ଚୌଦ୍ୱାରଠାରେ ଓଡ଼ିଶା ଟେକ୍ସଟାଇଲ୍ ମିଲ୍ ପ୍ରତିଷ୍ଠା କରିଥିଲେ । ଅନ୍ୟ କେତେକ କଳକାରଖାନା ମଧ ସ୍ଥାପନ କରିଥିଲେ । ତା' ମଧରେ କଳିଂଗ ଟ୍ୟୁବ୍‌ସ ଅନ୍ୟତମ ।

**ନିର୍ବାଚନରେ ଅଂଶଗ୍ରହଣ –**

ସେହି ସମୟରେ ଓଡ଼ିଶାରେ ସାଧାରଣ ନିର୍ବାଚନ ହୋଇଥିଲା । ମୁଁ ଖୋରଧାରୁ କଂଗ୍ରେସ୍ ପ୍ରାର୍ଥୀରୂପେ ନିର୍ବାଚନ ଲଢ଼ିବାକୁ କଂଗ୍ରେସ୍ ଟିକେଟ ଚାହିଁଥିଲି; ମାତ୍ର ସେମାନେ ମୋତେ ଖୋରଧାରୁ ଟିକେଟ୍ ନଦେଇ ବାଣପୁରରୁ ଟିକେଟ୍ ଦେବାକୁ କହିଲେ । ମୁଁ ଏଥିପୂର୍ବରୁ ବାଣପୁର ବା ବାଲୁଗାଁ କେବେ ଯାଇନଥିଲି । ସେଠାରେ କାହାକୁ ଜାଣିନଥିଲି କେବଳ ନରସିଂହ ସାମଂତ ସିଂହାର ଯେକି ଖୋରଧା ହାଇସ୍କୁଲ୍‌ରେ ମୋର ସହପାଠୀ ଥିଲେ ଏବଂ ସ୍କୁଲରୁ ବହିଷ୍କୃତ ହୋଇଥିଲେ ମୋର ଏକମାତ୍ର ଜଣାଶୁଣା ବ୍ୟକ୍ତିଥିଲେ; ମାତ୍ର ସେ ନିଜେ କଂଗ୍ରେସ ପ୍ରାର୍ଥୀରୂପେ ନିର୍ବାଚନ ଲଢ଼ିବାକୁ ଚାହୁଁଥିଲେ । ତେଣୁ ସେ ମୋର କଂଗ୍ରେସ ପ୍ରାର୍ଥୀତ୍ୱର ବିରୋଧ କରିଥିଲେ ।

ମୁଁ ଏ ସମସ୍ତ ବିଷୟ ବିରେନ୍, ବିଜୁ ଓ ନିଳମଣୀଂକୁ କହିଥିଲେ ମୋତେ ବାଣପୁରରୁ କଂଗ୍ରେସ ଟିକେଟ ନଦେଇ ମୋର ଜନ୍ମସ୍ଥାନ ଏବଂ ବାଲ୍ୟକାଳର କର୍ମଭୂମି ଖୋରଧାରୁ ଟିକେଟ୍ ଦେବାକୁ ଅନୁରୋଧ କରିଥିଲି; ମାତ୍ର ସେମାନେ ବନମାଳୀ ପଟ୍ଟନାୟକଂକୁ ଖୋରଧାରୁ ଟିକେଟ ଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ସେ ସେଠାରେ ପୁରୁଣା ଏମ୍.ଏଲ୍.ଏ. ଥିଲେ । ବୀରେନ୍ ମୋତେ କହିଲା, ‘‘ବାଣପୁରରେ ତୋର ଅସୁବିଧା କ’ଣ ହେବ । ସେଠି ତ ମୋ’ ଭଉଣୀ ଅଛି, ତା’ ଘରେ ଖାଇବୁ ତା’ପରେ ଇଲେକ୍‌ସନ୍ ପ୍ରଚାର କରିବୁ ।’’

ମୁଁ କହିଲି, ଖୋରଧାରେ ସବୁ ଗ୍ରାମରେ ମୋର ପରିଚିତ ବ୍ୟକ୍ତି ଓ ଆତ୍ମୀୟ-ସ୍ୱଜନ ଅଛନ୍ତି, ଯଥା – ହଳଦିଆର ଭଂଜବଂଶ ପ୍ରଭୃତି । ମାତ୍ର କଂଗ୍ରେସ ନେତାମାନେ ମୋତେ ବାଣପୁରରୁ ଛିଡ଼ା ହେବାପାଇଁ କହିଲେ ସେମାନଂକ ଯୁକ୍ତି ହେଲା, ‘ମୁଁ ଜଣେ ଆଂତର୍ଜାତିକ ଖ୍ୟାତିସଂପନ୍ନ ଲୋକ । ଆମେରିକା, ଇଂଲଂଡ ପ୍ରଭୃତିରେ ଓ ସମଗ୍ର ଭାରତବର୍ଷରେ ମୋର ଖୁବ୍ ସୁଖ୍ୟାତି ଅଛି, ମୋତେ ସମସ୍ତେ ଜାଣନ୍ତି । ତେଣୁ ମୋ ପକ୍ଷରେ ଖୋରଧା ବା ବାଣପୁର ସବୁ ସମାନ, ‘‘ଲୋକେ ତୋତେ ଭଲଭାବରେ ଜାଣନ୍ତି ତୋର ଅସୁବିଧା କିଛି ହେବନି ।’’

ମାତ୍ର କାର୍ଯ୍ୟକ୍ଷେତ୍ରରେ ତାହା ହେଲା ନାହିଁ, ମୋତେ ସିନା ମୁଷ୍ଟିମେୟ ଶିକ୍ଷିତ ଲୋକ ଜାଣିଛଂତି ଏବଂ ମୋ ସାହିତ୍ୟ ପଢ଼ିଛନ୍ତି; ମାତ୍ର ଗାଁଗହଳର ଅଧିକାଂଶ ଭୋଟର ମୋତେ ପ୍ରାୟ ଜାଣଂତି ନାହିଁ । ସ୍ଥାନୀୟ କଂଗ୍ରେସ କର୍ମୀମାନେ ଜିଦ୍ ଧରିବସିଲେ ଯେ ଆମ ବାଣପୁର ନିର୍ବାଚନମଂଡଳୀରୁ ଜଣେ ବାଣପୁରବାସୀଙ୍କୁ ପ୍ରାର୍ଥୀ କରାଯାଉ, ଖୋରଧାରୁ କାହିଁକି ଜଣେ ପ୍ରାର୍ଥୀ ହେବେ । ଏହିପରି ବହୁ ସ୍ଥାନୀୟ ବାଧାବିଘ୍ନ ଦେଖାଦେଲା ସେ ଯାହାହେଉ ନିର୍ବାଚନ ହେବାକୁ ପନ୍ଦରଦିନ ଥାଏ ଦିଲ୍ଲୀର କଂଗ୍ରେସ୍ କର୍ତ୍ତୃପକ୍ଷ ମୋତେ ବାଣପୁରରୁ କଂଗ୍ରେସ ଟିକେଟ୍ ଦେବାକୁ ନିଷ୍ପତ୍ତି କଲେ । ଏହାପରେ ସ୍ଥାନୀୟ କର୍ମୀମାନେ ମୋ ସହିତ ସହଯୋଗ କରିବାକୁ ଏବଂ କାଂପେନ୍‌ରେ ଯୋଗଦେବାକୁ ରାଜିହେଲେ । ଆଗରୁ କହିଛି ମୁଁ ପୂର୍ବରୁ ବାଣପୁର ଦେଖିନଥିଲି । ମୋ ଡ୍ରାଇଭର୍ ବାଣପୁର କେଉଁଆଡ଼େ ପଚାରି ପଚାରି

ମୋତେ ନେଇ ସେଠାରେ ପହଂଚାଇ ଦେଲା । ମୁଁ ବୀରେନ୍‌ର ଭଉଣୀଘରେ ମଧ୍ୟାହ୍ନ ଭୋଜନ କଲି । ତାଂକ ସ୍ୱାମୀ ବାଣପୁରରେ ଜଣେ ଡାକ୍ତର, ପ୍ରାଇଭେଟ୍ ପ୍ରାକ୍‌ଟିସନର୍ ଥିଲେ । ମୁଁ ଖାଇସାରି ବାଲୁଗାଁ ଗଲି, ସେଠାରେ ଡାକବଂଗଳାରେ ମୋର କ୍ୟାଂପ୍ ରହିବ ବୋଲି ସ୍ଥିର ହେଲା ।

ସ୍ଥାନୀୟ କଂଗ୍ରେସ କର୍ମୀମାନଂକ ମଧ୍ୟରେ ରାମଚଂଦ୍ର ପ୍ରହରାଜ ମୋତେ ବିଶେଷ ସାହାଯ୍ୟ କରିଥିଲେ । ସେ ମୋ ସାଂଗେ ଚାରିଆଡ଼େ ବୁଲି ସଭାସମିତିରେ ଭାଷଣ ଦେଉଥିଲେ । କଥାକାର ସୁରେନ୍ଦ୍ର ମହାନ୍ତି ଏବଂ ମନମୋହନ ମିଶ୍ର ମଧ୍ୟ ଦୁଇ-ତିନିଟି ସଭାରେ ମୋ ପାଇଁ ପ୍ରଚାର କରିଥିଲେ । କୌଣସି ସର୍ବଭାରତୀୟ ନେତା ମୋ ନିର୍ବାଚନମଂଡଳୀକୁ ଆସିନଥିଲେ । ପଂଡିତ ନେହେରୁ ଓ ଅନ୍ୟାନ୍ୟ ବଡ଼ ବଡ଼ କଂଗ୍ରେସ୍ ନେତାମାନେ ଓଡ଼ିଶାର କେତେକ ନିର୍ବାଚନମଂଡଳୀରେ ଭାଷଣ ଦେଇଥିଲେ । ମାତ୍ର ମୋ ନିର୍ବାଚନମଂଡଳୀକୁ କେହି ଆସିନଥିଲେ । ଏହିସବୁ ପ୍ରୋଗ୍ରାମ୍ ପ୍ରଦେଶ କଂଗ୍ରେସ କମିଟି ସ୍ଥିର କରେ । ସେମାନେ କାହିଁକି ମୋର ନିର୍ବାଚନମଂଡଳୀରେ ତୁଂଗ ନେତାମାନଂକର କାର୍ଯ୍ୟସୂଚୀ ରଖିଲେ ନାହିଁ, ତାହା ମୁଁ ବୁଝିପାରିଲି ନାହିଁ । ପଂଡିତ ନେହେରୁ ଯେ କି କଂଗ୍ରେସ ସଭାପତି ଏବଂ ପ୍ରଧାନମଂତ୍ରୀ ଥିଲେ, ସେ ଏକ ବାର୍ତ୍ତା ପଠାଇ ମୋତେ ନିର୍ବାଚନରେ ସମର୍ଥନ କରିବା ପାଇଁ ଭୋଟରମାନଂକୁ ଅନୁରୋଧ କରିଥିଲେ । ତାଂକର ସେ ବାର୍ତ୍ତାଟି ଛପାଯାଇ ବଂଟାଯାଇଥିଲା ।

ମୋର ମୁଖ୍ୟ ପ୍ରତିଦ୍ୱଂଦ୍ୱୀ ଥିଲେ ପଂଡିତ ରଘୁନାଥ ମିଶ୍ର । ସେ ପଂଡିତ ଗୋଦାବରୀଶ ମିଶ୍ରଂକର ଜ୍ୟେଷ୍ଠପୁତ୍ର । ସେ ରାଜା ରାଜୁଡ଼ାମାନଂକର ଅନୁଷ୍ଠାନ 'ଗଣତଂତ୍ର ପରିଷଦ' ପକ୍ଷରୁ ପ୍ରାର୍ଥୀ ଥିଲେ । ସେ ପୂର୍ବରୁ ମଧ୍ୟ ସେହି ଦଳର ପ୍ରାର୍ଥୀରୂପେ ବିଧାୟକ ଭାବେ ନିର୍ବାଚିତ ହୋଇଥିଲେ । ଜଣେ କମ୍ୟୁନିଷ୍ଟ ପ୍ରାର୍ଥୀ ଶ୍ରୀଚରଣ ବରାଳ ମଝିରେ ଛିଡ଼ା ହୋଇପଡ଼ି ମୋ' ଭୋଟଗୁଡ଼ିକୁ ବିଭକ୍ତ କରିଦେଇଥିଲେ । ସେ ଛିଡ଼ା ହୋଇନଥିଲେ ମୁଁ ବୋଧହୁଏ ଜିତିଯାଇଥାଂତି । ରଘୁନାଥ ମିଶ୍ରେ ଚାରିହଜାର ଛଅଶହ ଭୋଟ ପାଇଥିବାବେଳେ ମୁଁ ତିନି ହଜାର ସାତଶହ ଭୋଟ ପାଇଥିଲି । ଶ୍ରୀଚରଣ ବରାଳ (କମ୍ୟୁନିଷ୍ଟ) ଏକ ହଜାର କେତେଶହ ଭୋଟ ପାଇଥିଲେ । ମୋର ପ୍ରଚାର ଅଭିଯାନରେ ବଡ଼ ଅଂତରାୟ ଥିଲା ସ୍ଥାନୀୟ କଂଗ୍ରେସ୍ କର୍ମୀମାନଂକର ଅସହଯୋଗ । ସେମାନେ କହୁଥିଲେ, ଆମ ବାଣପୁରରୁ କାହିଁକି ଜଣକୁ କଂଗ୍ରେସ ପ୍ରାର୍ଥୀ କରାନଗଲା । ମାତ୍ର ଛଅ-ସାତ ଜଣ ଜଣାଶୁଣା କର୍ମୀଂକ ଛଡ଼ା ଗାଁଗହଳର କର୍ମୀମାନେ ଉଦାସୀନ ଥିଲେ । ସେମାନଙ୍କ ମଧ୍ୟରୁ କେତେକ କର୍ମୀ ବିପକ୍ଷ ପ୍ରାର୍ଥୀଂକୁ ମଧ୍ୟ ଭିତରେ ଭିତରେ ସାହାଯ୍ୟ କରୁଥିଲେ । ତା'ର କାରଣ ବୋଧହୁଏ ମୋର ସେମାନଂକ ସହିତ ପୂର୍ବରୁ କୌଣସି ପରିଚୟ ନଥିଲା ।

**ଗାଡ଼ିର ଅଭାବ –**

ମୋର ପ୍ରଚାରକାର୍ଯ୍ୟରେ ଗାଡ଼ିର ଅଭାବ ସବୁଠାରୁ ବଡ଼ ଅଂତରାୟ ଥିଲା। ମୋତେ ପ୍ରଦେଶ କଂଗ୍ରେସ୍ କମିଟି ନିର୍ବାଚନର ମାତ୍ର ଦଶ-ବାର ଦିନ ପୂର୍ବରୁ ଗୋଟିଏ ଜିପ୍ ପଠାଇଥିଲେ; ମାତ୍ର ସେ ଜିପ୍‌ଟି କିଛିଦିନ ପରେ ଖରାପ ହୋଇଗଲା। ବିଲବାଡ଼ି ରାସ୍ତାରେ ହିଡ଼ ଇତ୍ୟାଦି ଡେଇଁ ଯିବାକୁ ହେଉଥିଲା। ଶେଷବେଳକୁ ଦୁଇ-ଚାରିଦିନ ପ୍ରବଳ ବର୍ଷା ମଧ୍ୟ ହୋଇଥିଲା। ଫଳରେ ମୁଁ ଅଧିକାଂଶ ଗ୍ରାମକୁ, ଯାହା ବିଲବାଡ଼ି ରାସ୍ତାରେ ଯିବାକୁ ହୁଏ, ଯାଇପାରିଲିନାହିଁ।

**ଭୟାବହ ଜିପ୍ ଦୁର୍ଘଟଣା –**

ନିର୍ବାଚନ ପ୍ରାୟ ସାତ-ଆଠଦିନ ଅଛି ମୋ ଜିପ୍‌ଟି ଖରାପ ହୋଇଗଲା। ମୁଁ ତାକୁ ମରାମତି ପାଇଁ କଟକ ପଠାଇଲି, ତାହା କଟକରେ ମରାମତି ହୋଇ ଦୁଇ-ତିନିଦିନ ପରେ ବାଲୁଗାଁ ଆସୁଥିଲା। ପ୍ରଦେଶ କଂଗ୍ରେସର ଛଅଜଣ ସ୍ୱେଚ୍ଛାସେବିକା ଝିଅଂକୁ ସେଥିରେ ରଣପୁର ପଠାଉଥିଲେ। ରଣପୁର ରାଜମାତା କେତେଜଣ ନାରୀ ସ୍ୱେଚ୍ଛାସେବିକା ତାଂକ ରଣପୁର ନିର୍ବାଚନମଂଡଳୀକୁ ପଠାଇବା ପାଇଁ ପି.ସି.ସି. ଅଫିସ୍‌କୁ ଘନଘନ ଖବର ପଠାଉଥିଲେ। ତେଣୁ ଭବାନୀ ପଟ୍ଟନାୟକ ଓ ନଂଦିନୀ ଶତପଥୀ କେତେଜଣ ସ୍ୱେଚ୍ଛାସେବିକାଂକୁ ମୋ ଜିପ୍‌ରେ ରଣପୁର ପଠାଇଥିଲେ। ରଣପୁରରେ ସ୍ୱେଚ୍ଛାସେବିକାମାନଂକୁ ଛାଡ଼ିଦେଇ ମୋ ଜିପ୍‌ଟି ବାଲୁଗାଁ ଯାଇଥାଂତା।

ବାଟରେ ଗୋଳବାଇଠାରେ ୧୯୬୧ ମସିହା ମଇମାସ ୨୯ ତାରିଖ ଦିନ ଜିପ୍‌ଟି ଗୋଟିଏ ଛୋଟ ନଦୀ ପୋଲ ଉପରେ ଯାଉଥିବାବେଳେ ସାମନାରୁ ଏକ ବଡ଼ ନୂଆ ଟ୍ରକ୍ ଆସି ଧକ୍କା ଦେଲା। ଧକ୍କା ଲାଗି ଜିପ୍‌ଟି ଖଂଡଖଂଡ ହୋଇଗଲା। ଦୁର୍ଘଟଣାରେ ପାଂଚଜଣ ବଂଗାଳୀ ଝିଅ ଘଟଣାସ୍ଥଳରେ ମରିଗଲେ। ସେମାନେ କଲିକତାରୁ ଏକ ନାରୀ ଅନୁଷ୍ଠାନ ତରଫରୁ ସ୍ୱେଚ୍ଛାସେବିକା ରୂପେ ଓଡ଼ିଶା ନିର୍ବାଚନରେ କଂଗ୍ରେସ ପକ୍ଷରେ କାମ କରିବା ପାଇଁ ଆସିଥିଲେ। ଓଡ଼ିଶା କଂଗ୍ରେସ ନାରୀଶାଖାର ସଂପାଦିକା କୁମାରୀ ନିର୍ମଳା ମିଶ୍ର ସେହି ଜିପ୍‌ରେ ଯାଉଥିଲେ। ସେ ଗୁରୁତରଭାବେ ଆହତ ହୋଇ କଟକ ବଡ଼ ଡାକ୍ତରଖାନାକୁ ପଠାଗଲେ। ସେଠାରେ ତାଂକର ଗୋଟିଏ ହାତ କାଟିଦିଆଗଲା। ଯେଉଁ ବଂଗାଳୀ ଝିଅମାନେ କଲିକତାରୁ ଆସିଥିଲେ ଏବଂ ଦୁର୍ଘଟଣାରେ ମଲେ, ସେମାନଂକ ଦୁଇଜଣଂକର ନାମ ହେଉଛି ଛଂଦା ଓ ତପତୀ। ଅନ୍ୟମାନଂକର ନାମ ମୋର ମନେନାହିଁ। ନିର୍ମଳା ମିଶ୍ର ପରେ ଅଧ୍ୟାପକ ତତ୍ତ୍ୱକଂଦର ମିଶ୍ରଂକୁ ବିବାହକରି ଅଛଂତି। ଏଭଳି ଭୟାବହ ଦୁର୍ଘଟଣା ଖୁବ୍ କମ୍ ହୋଇଛି। ମୋ ନିର୍ବାଚନମଂଡଳୀରେ ଏ ଖବର ସେହି ରାତିରେ ବ୍ୟାପୀଗଲା। ସବୁଆଡ଼େ କିପରି ଏକ ଅମଂଗଳର ଛାୟା ଦେଖାଗଲା। ଏକେତ ଗାଡ଼ିନଥିଲା, ଦ୍ୱିତୀୟରେ ମୋ ଗାଡ଼ିରେ ଆସୁଥିବା

ଝିଅମାନେ ଦୁର୍ଘଟଣାରେ ମରିଯିବା ଓ ହାତ କଟିଯିବା ସବୁଆଡ଼େ ଦୁଃଖ ଓ ବିଷାଦର ଛାୟା ଖେଳାଇ ଦେଇଥିଲା ।

**ଓଡ଼ିଶାରେ ନାରୀଙ୍କ ଦୁର୍ଦ୍ଦଶା –**

ଏହି ଦୁର୍ଘଟଣାରେ ଯେଉଁ ବଂଗାଳୀ ଓ ଓଡ଼ିଆ ଝିଅମାନେ ଓଡ଼ିଶା ପାଇଁ ଆତ୍ମବଳୀ ଦେଲେ, ସେମାନଂକ ଲାଗି ଆମେ କ'ଣ କରିଛୁ ? ସେମାନେ ଘରଦ୍ୱାର ଛାଡ଼ି କଂଗ୍ରେସର ବିଜୟ ପାଇଁ ମୃତ୍ୟୁବରଣ କଲେ । ଯେଉଁମାନେ ମରିଗଲେ ସେମାନେ ତ ଗଲେ; ମାତ୍ର ଅବଶିଷ୍ଟ କେତେକ ବଂଗାଳୀ ସ୍ୱେଚ୍ଛାସେବିକାଂକର କିଛି ଖବର ଅଂତର ମିଳିଲା ନାହିଁ । ଶୁଣାଯାଏ କଳିଂଗ ଗେଷ୍ଟହାଉସ୍‌ରେ ସେମାନଂକୁ ରାଖାଯାଇଥିଲା । ସେମାନଂକୁ କେତେକ କଂଗ୍ରେସ ପ୍ରାର୍ଥୀଂକ ଜିମା ପ୍ରଚାର ପାଇଁ ଦିଆଯାଇଥିଲା । ଏହାର କେତେବର୍ଷ ପରେ ଓଡ଼ିଶାରେ ଏକ ସମ୍ମିଳନୀରେ ସ୍ୱେଚ୍ଛାସେବିକା ଭାବେ କାର୍ଯ୍ୟ କରିବା ପାଇଁ ଆସିଥିବା ପିଲୁ ବେନ୍ ଏବଂ ତାଂକର କେତେଜଣ ସଂଗୀନିଂକର ଏହିପରି ଦୁର୍ଦ୍ଦଶା ହୋଇଥିଲା । ପିଲୁ ବେନ୍ ଜିପ୍‌ରୁ ଖସିପଡ଼ି ମରିଯାଇଛନ୍ତି ବୋଲି କୁହାଯାଉଥିଲା; ମାତ୍ର ଲୋକେ ତାହା ବିଶ୍ୱାସ କରୁନଥିଲେ । ସରଳା ଦେଶପ୍ରାଣା ନାରୀମାନଂକର ଓଡ଼ିଶାର କେତେକ ନର-ରାକ୍ଷସଂକ ହାତରେ ଏପରି ଦୁର୍ଦ୍ଦଶା ହେଉଛି, ତାହା ଓଡ଼ିଶାବାସୀ ପକ୍ଷରେ ଘୋର ଲଜ୍ଜାର କଥା । ଯେପରି ମନେହୁଏ ଏ ଦେଶରେ ରାଜନୀତିକମାନେ ମାଆ-ଭଉଣୀ ଜ୍ଞାନ ହରାଇଛଂତି । ସେମାନଂକ ଲାଳସା ବହ୍ନିରେ କେତେ ଯେ ପବିତ୍ର ନାରୀ ବଳି ପଡୁଛଂତି, ତାହାର ଖବର କେହି ରଖଂତିନି । ବରଂ ଏହି ନାରୀମାଂସ ଲୋଭୀଂକର ଜୟଜୟକାର କରଂତି । ଏହିମାନେ ପୁଣି ଓଡ଼ିଶା ଶାସନ କରଂତି ।

ନାନା ପ୍ରତିକୂଳ ଅବସ୍ଥା ଭିତରେ ମୁଁ ନିର୍ବାଚନରେ ହାରିଗଲି । ବିନା ଗାଡ଼ିରେ ପାଦରେ ଚାଲି ଚାଲି ବିଲବାଡ଼ି ପାରହୋଇ ଗ୍ରାମମାନଂକରେ ପହଂଚିବା, ତାହା ପୁଣି ଝଡ଼ିବର୍ଷା ଭିତରେ, ଆଦୌ ସଂଭବ ନଥିଲା ।

ନିର୍ବାଚନରେ ହାରିଯିବା ଖବର ଆମ ମିଲ୍‌ରେ ମିଶ୍ରିତ ପ୍ରତିକ୍ରିୟା ସୃଷ୍ଟିକରିଥିଲା । ଅହମ୍ମଦାବାଦରୁ ଆସିଥିବା ପରିଚାଳକମାନେ ମନେମନେ ଖୁସି ହେଉଥିଲେ ।

**'ପଦ୍ମଶ୍ରୀ' ସମ୍ମାନ ଲାଭ –**

୧୯୬୨ ମସିହା ଜାନୁୟାରୀ ୨୬ ତାରିଖରେ ମୁଁ ରାଷ୍ଟ୍ରୀୟ ସମ୍ମାନ 'ପଦ୍ମଶ୍ରୀ' ଲାଭ କରିବାର ଖବର ଘୋଷିତ ହେଲା । ସ୍ୱରାଷ୍ଟ୍ରମନ୍ତ୍ରୀ ଲାଲ୍‌ବାହାଦୁର ଶାସ୍ତ୍ରୀ ମୋତେ ଏକ ଟେଲିଗ୍ରାମ୍ ପଠାଇ ଅଭିନଂଦନ ଜଣାଇଥିଲେ । ଏ ସଂବାଦଟି ମୁଁ ଦକ୍ଷିଣ ଓ ପଶ୍ଚିମ-ଓଡ଼ିଶା କାର୍‌ରେ ଭ୍ରମଣ କରୁଥିବା ସମୟରେ ବ୍ରହ୍ମପୁରଠାରେ ପାଇଥିଲି । ମୁଁ ଦକ୍ଷିଣ ଓଡ଼ିଶାରେ ଏକ ହାର୍ଡ଼ ବୋର୍ଡ଼ ମିଲ୍ ବସାଇବା ପାଇଁ କଲିକତାର ଇଷ୍ଟର୍ଣ୍ଣ ପେପର୍ ମିଲ୍‌ସ୍‌ର ମାଲିକ ଅଧିର ବୋଷ ଓ ମ୍ୟାନେଜର

ଆର୍. ସେନଙ୍କ ସଂଗେ ଗଞ୍ଜାମ, କୋରାପୁଟ, ବୌଦ୍ଧ, ଫୁଲବାଣୀ, ସୋନପୁର ଏବଂ କଳାହାଣ୍ଡି ଜିଲ୍ଲା ଗସ୍ତ କରୁଥିଲି। ରାତିରେ ଡାକବଙ୍ଗଳାରେ ରହିଥିଲୁ। ବୌଦ୍ଧରେ ଏକ ରାତି ଓ ତା' ପରେ ଦିନ ସକାଳ ଓଳି ସ୍ଥାନୀୟ ଡାକବଂଗଳାରେ ରହିଥିଲୁ। ଏହି ବୌଦ୍ଧଠାରେ ମୋ ଜେଜେବାପା ମଧୁସୂଧନ ରାଉତରାୟ ବହୁବର୍ଷ ଦେବୋନ୍ ଥିଲେ। ବଡ଼ଦେଈ, ବାପା, ଦାଦା ଏବଂ ପିଉସୀମାନଂକ ମଧ୍ୟରୁ ଅଧିକାଂଶଂକର ଜନ୍ମ ଏହି ବୌଦ୍ଧରେ ହୋଇଥିଲା। ମୁଁ ବୌଦ୍ଧରେ କେତେକ ପୁରୁଖା ଲୋକଂକୁ ଭେଟି ମଧୁସୂଧନ ରାଉତରାୟ ଦେବାନ୍ ସାହେବଂକ ବିଷୟରେ କିଛି ଖବର ସଂଗ୍ରହ କରିବା ପାଇଁ ଚେଷ୍ଟା କରିଥିଲି। ସେ କେଉଁ ଘରେ, କେଉଁଠାରେ ରହୁଥିଲେ, ତାହା ଠାବ କରିବା ପାଇଁ ମୁଁ ବହୁ ପୁରୁଣା ଲୋକଂକୁ ପଚରାଉଚୁରା କରିଥିଲି; ମାତ୍ର କେହି ସେପରି ସଠିକ୍ ଖବର ଦେଇପାରିଲେନାହିଁ।

ମୁଁ 'ପଦ୍ମଶ୍ରୀ' ପାଇବା ଖବର କଲିକତାର ବିଭିନ୍ନ ସଂବାଦପତ୍ରମାନଂକରେ ପ୍ରକାଶ ପାଇଥିଲା 'ଷ୍ଟେଟ୍‌ସ୍‌ମ୍ୟାନ୍' ପତ୍ରିକାରେ ମୋ ବିଷୟ ଭଲଭାବରେ ପ୍ରକାଶ ପାଇଥିଲା। ବଂଗଳା ଓ ହିନ୍ଦୀ ଖବର କାଗଜମାନଂକରେ ମଧ୍ୟ ଏହା ପ୍ରକାଶପାଇଥିଲା। ମିଲ୍‌ର ଅଧିକାଂଶ ଶ୍ରମିକ ଏହା ପଢ଼ି ଏବଂ ରେଡ଼ିଓ ଇତ୍ୟାଦିରୁ ଏ ସଂବାଦ ଶୁଣି ଅତ୍ୟଂତ ଖୁସି ହୋଇଥିଲେ। ମୁଁ ଓଡ଼ିଶା ଗସ୍ତ ସାରି ମିଲ୍‌କୁ ଫେରିବା ପରେ ସେମାନେ ମୋତେ ଉଚ୍ଛ୍ୱସିତ ସଂବର୍ଧନା ଜଣାଇଥିଲେ। କଲିକତାର କେତେକ ସାଂସ୍କୃତିକ ଅନୁଷ୍ଠାନ ମଧ୍ୟ ମୋତେ ସଭାସମିତିରେ ଅଭିନଂଦନ ଜଣାଇଥିଲେ।

'ପଦ୍ମଶ୍ରୀ' ସମ୍ମାନ ବା (ମେଡାଲ୍) ଦିନାଂକ ୨୬ ଏପ୍ରିଲ୍ ୧୯୬୨ରେ ଦିଲ୍ଲୀ ବିଜ୍ଞାନଭବନଠାରେ ଏକ ସ୍ୱତଂତ୍ର ଉତ୍ସବରେ ରାଷ୍ଟ୍ରପତି ଡଃ. ରାଜେଂଦ୍ର ପ୍ରସାଦ ପ୍ରଦାନ କରିଥିଲେ। ଏହି ସମାରୋହରେ ପ୍ରଧାନମଂତ୍ରୀ ପଂଡିତ ଜବାହାରଲାଲ୍ ନେହେରୁ, ଶ୍ରୀମତୀ ବିଜୟଲକ୍ଷ୍ମୀ ପଂଡିତ ପ୍ରମୁଖ ଉପସ୍ଥିତ ଥିଲେ। ଉତ୍ସବ ପରେ ମୋର ରାଷ୍ଟ୍ରପତି ଡଃ. ରାଜେଂଦ୍ର ପ୍ରସାଦ, ପଂଡିତ ନେହେରୁ ଏବଂ ବିଜୟଲକ୍ଷ୍ମୀ ପଂଡିତ ପ୍ରଭୃତିଂକ ସହ କିଛିସମୟ ଆଳାପ ହୋଇଥିଲା। ଫିଲ୍ମ ଅଭିନେତା ଅଶୋକ କୁମାରଂକୁ ମଧ୍ୟ ସେହି ଉତ୍ସବରେ 'ପଦ୍ମଶ୍ରୀ' ଦିଆଯାଇଥିଲା। ସେ ମୋ ପାଖ ଚୌକିରେ ବସିଥିଲେ, ତାଂକ ସହିତ ମଧ୍ୟ ଆଳାପ ହୋଇଥିଲା।

**ଯୁଗୋସ୍ଲୋଭିଆ ପ୍ରଦର୍ଶନୀ –**

ଯୁଗୋସ୍ଲୋଭିଆ ସରକାର କଲିକତାରେ ତାଂକ ରାଷ୍ଟ୍ରର ଉନ୍ନତିମୂଳକ କାର୍ଯକଳାପର ଏକ ପ୍ରଦର୍ଶନୀ କରିବାକୁ ଚାହୁଁଥିଲେ। କଲିକତାରେ ତାହା ଆୟୋଜନ କରିବାପାଇଁ ଦିଲ୍ଲୀରେ ଥିବା ତାଂକ ରାଷ୍ଟ୍ରଦୂତ ମୋତେ ଅନୁରୋଧ କରିଥିଲେ। ଯୁଗୋସ୍ଲୋଭିଆ, ମିଶର ଓ ଭାରତବର୍ଷ ନିରପେକ୍ଷ ବା non-alignment ରାଷ୍ଟ୍ରଗୋଷ୍ଠୀର ସଭ୍ୟ ଥିଲେ। ମାର୍ଶାଲ ଟିଟୋ, ନାସାର ଓ ନେହେରୁ, ଏହି ତିନିରାଷ୍ଟ୍ରର ମୁଖ୍ୟ ନାୟକ ଥିଲେ। କଲିକତାରେ ମୁଁ ସେମାନଂକର ପ୍ରଦର୍ଶନୀ

ଆୟୋଜନ କରିଥିଲି । ଭବାନୀପୁରରେ ଥିବା ଆଶୁତୋଷ କଲେଜରେ ଦୁଇଟି ରୁମ୍ ନେଇ ଯୁଗୋସ୍ଲୋଭିଆରୁ ଆସିଥିବା ଫଟୋଚିତ୍ରମାନ ପ୍ରଦର୍ଶିତ ହୋଇଥିଲା । ଏହି ପ୍ରଦର୍ଶନୀ ବିଷୟରେ ଦର୍ଶକମାନଂକୁ ବୁଝାଇବାପାଇଁ ମୁଁ ନୀତାଂକୁ ଦାୟିତ୍ୱ ଦେଇଥିଲି । ଏହି ପ୍ରଦର୍ଶନୀ ପ୍ରାୟ ୭ ଦିନ ଚାଲିଥିଲା ।

ଏହାର କିଛିଦିନ ପରେ ନୀତାର ମିଃ. ଦାସ୍ ନାମକ ଜଣେ ବଂଗାଳୀ ଅଫିସରଂକ ସହିତ ବିବାହ ହୋଇଯାଏ । ବିବାହ ପରେ ମଧ୍ୟ ସେ ମୋ ସହିତ ସଂପର୍କ ରଖିଥିଲା । ଆମେ ଓଡ଼ିଶା ଆସିବାପରେ ସେ ଓଡ଼ିଶା ଆସି ମୋତେ ଏବଂ ଭୂଦେବୀଙ୍କୁ ଦେଖିଯାଇଥିଲା ।

**ମିଲ୍ ଚାକିରିରୁ ଇସ୍ତଫା –**

ଏଣେ ମିଲ୍‌ରେ କର୍ତ୍ତୃପକ୍ଷଂକ ଶ୍ରମିକ ବିରୋଧୀ ମନୋଭାବ ଏବଂ ଓଡ଼ିଆ ଶ୍ରମିକ ମାରଣ ନୀତିରେ ମୁଁ ଅତିଷ୍ଠ ହୋଇଉଠୁଥିଲି । ମିଲ୍ କର୍ତ୍ତୃପକ୍ଷ ସହିତ ମୋର କେତେଥର ଏ ବିଷୟରେ ଯୁକ୍ତିତର୍କ ହୋଇଥିଲା । ମୁଁ ଯେ ଏ ସବୁକୁ ତୀବ୍ର ନାପସଂଦ କରୁଛି ଏହା ସେମାନଂକୁ ଅଜଣା ନ ଥିଲା । ସେମାନେ ମୋତେ ମୋ ଦାୟିତ୍ୱରୁ ଅବ୍ୟାହତି ଦେବାପାଇଁ ମନେମନେ ଚକ୍ରାଂତ କରୁଥିଲେ । ଦିନେ ଟି.ଆର୍. ବିରଳା ନାମକ ଜଣେ ମ୍ୟାନେଜର ଜେନେରାଲ୍ ମ୍ୟାନେଜର ହାଡ଼ାଂକ ଆଦେଶ ଅନୁସାରେ ମୋତେ ତାଂକ ଅଫିସ୍‌କୁ ଡାକି କହିଲେ ଯେ, ''ମୋତେ ବିରଳା ବ୍ରଦର୍ସର ସ୍ଥାପିତ ତ୍ରିବେଣୀଠାରେ ଅବସ୍ଥିତ 'ତ୍ରିବେଣୀ ଟିସୁ'କୁ ବଦଳି କରିବା ପାଇଁ କର୍ତ୍ତୃପକ୍ଷ ସ୍ଥିର କରିଛଂତି । ତ୍ରିବେଣୀ କଲିକତା ଉପକଂଠରେ ଅବସ୍ଥିତ ।

ମୁଁ ତାଂକ ଆଦେଶ ଶୁଣି ଖୁବ୍ ଚିଡ଼ିଯାଇଥିଲି । ମୁଁ ତାଂକୁ ରୋକ୍‌ଠୋକ୍ ଜଣାଇଦେଲି ଯେ ମୁଁ ମୋ ଚାକିରିରୁ ଇସ୍ତଫ ଦେଇଦେବାକୁ ଚାହେଁ । ମୁଁ ତ୍ରିବେଣୀ ଟିସୁରେ ଜଏନ୍ କରିବାକୁ ଚାହେଁନି । ଏହା କହି ମୁଁ ତାଂକ ଅଫିସ୍‌ରୁ ଚାଲି-ଆସିଥିଲି । ଏହାର ଦୁଇ-ତିନି ଦିନ ପରେ ମୁଁ ତାଂକୁ ମୋ ଇସ୍ତଫାପତ୍ର ଦେଇଦେଲି ।

**ମିଲ୍‌ରୁ ବିଦାୟ –**

ଏହି କେଶୋରାମ୍ କଟନ୍ ମିଲ୍‌ରେ ମୁଁ ପ୍ରାୟ କୋଡ଼ିଏ ବର୍ଷ ଧରି କାମ କରୁଥିଲି । ହଠାତ୍ ସେଠାରୁ ଇସ୍ତଫା ଦେଇ, ମୁଁ ଓଡ଼ିଶା ଚାଲିଆସିଲି । ମୁଁ ଦୁଇ-ତିନି ବର୍ଷ ତଳେ ଆରଂଭ କରିଥିବା ଜଗତ୍‌ପୁର ଇଂଡଷ୍ଟ୍ରିଆଲ୍ ଇଷ୍ଟେଟ୍‌ରେ ଓଡ଼ିଶା ବୋର୍ଡ଼ ମିଲ୍ ଲିମିଟେଡ଼୍‌କୁ ଚାଲୁ କରିବାପାଇଁ ସ୍ଥିର କଲି ।

ଏହି ମିଲ୍‌ରେ ମୁଁ ଏବଂ ମୋର ସ୍ତ୍ରୀ ଜଣକେ ଦଶହଜାର ଲେଖାଏଁ କୋଡ଼ିଏ ହଜାର ଟଂକା ମୂଲ୍ୟର ଅଂଶଧନ କିଣିଥିଲୁ । ମୁଁ ମ୍ୟାନେଜିଂଗ୍ ଡାଇରେକ୍ଟର ରୂପେ କାର୍ଯ୍ୟ ସଂପାଦନା କରୁଥିଲି । ପରେ ମିଲ୍‌ରେ ଆର୍ଥିକ ସଂକଟ ଦୂରକରିବା ପାଇଁ ମୁଁ ଏବଂ ମୋ ସ୍ତ୍ରୀ ପୁଣି କୋଡ଼ିଏ ହଜାର ଟଂକାର ଅଂଶଧନ କିଣିଥିଲୁ । ଏହାଛଡ଼ା ଦଶହଜାର ଟଂକା ଟେଂପୋରାରୀ ଲୋନ୍ ଦେଇଥିଲୁ । ସମୁଦାୟ

ପଚାଶ ହଜାର ଟଂକା ଖଟାଇଥିଲୁ। ଏହି ମିଲ୍‌ର ଯଂତ୍ରପାତି କଲିକତାର 'ଇଷ୍ଟର୍ଣ ପେପର ମିଲ୍‌ସ ଲିମିଟେଡ୍'ରୁ କିଣାଯାଇଥିଲା। Dryer ଟି ପଶ୍ଚିମ-ଜର୍ମାନୀରୁ ଆମଦାନୀ କରାଯାଇଥିଲା। ଏହି ମିଲ୍‌କୁ ଷ୍ଟେଟ୍‌ବ୍ୟାଂକ୍ ଓ ରାଜ୍ୟ ଅର୍ଥ ନିଗମ ପ୍ରାୟ ଛଅ ଲକ୍ଷ ଟଂକା ଋଣ ଦେଇଥିଲେ। ଓଡ଼ିଶା ସରକାର ୨ ଲକ୍ଷ ଟଂକାର ଅଂଶଧନ କିଣିଥିଲେ। ଏଥିରେ ମୋଟ ୧୦ ଲକ୍ଷ ଟଂକା ଖଟାଯାଇଥିଲା। ଏହା ଏକ Pilot Project Mill ଥିଲା।

**ମୋର ବିଦାୟ ସଂବର୍ଧନା –**

ମୋ ଇସ୍ତଫା ଗୃହୀତ ହେବା ପରେ ମୁଁ ମିଲ୍ କ୍ୱାର୍ଟର୍‌ରେ ପ୍ରାୟ ତିନି-ଚାରି ମାସ ଥିଲି। ତା'ର କାରଣ କଟକରେ ମୁଁ ମୋ ପରିବାର ରହିବାପାଇଁ ଭଲ ଘର ସେପର୍ଯ୍ୟଂତ ଠିକ୍ ହୋଇନଥିଲା ଓଡ଼ିଶା ସରକାରଂକର ଯୁଗ୍ମ-ସଚିବ ସଚ୍ଚିଦାନଂଦ ନାୟକଂକର ଏକ ଦି'ତାଲା ଘର ମେରିଆ ବଜାରରେ ଥିଲା। ସେ ତଳେ ରହୁଥିଲେ, ଦି' ତାଲାରେ ମୁଁ ଓ ମୋ ପରିବାର ରହିବୁ ବୋଲି ସ୍ଥିର ହୋଇଥିଲା। ଏହି ଘରଟି ତତ୍‌କାଳୀନ ଫିସେରୀ ବା ମତ୍ସ୍ୟ ବିଭାଗର ଡିରେକ୍‌ଟର୍ ମୋ ବଂଧୁ ଶ୍ରୀ ଗଜେଂଦ୍ର ମିତ୍ରଂକ ଜରିଆରେ ଠିକ୍‌ହୋଇଥିଲା। ସେହି ଘରର ମୋଜାଇକ୍ ଇତ୍ୟାଦି ସଂପୂର୍ଣ ହେବାପାଇଁ କିଛିଦିନ ଲାଗିଥିଲା। ତେଣୁ ମୁଁ କଲିକତା ଛାଡ଼ିପାରୁନଥିଲି। ମୋର ପିଲାମାନଂକର ଟି.ସି. ବିଭିନ୍ନ ସ୍କୁଲରୁ ଆଣିଥିଲି ମାତ୍ର ବଡ଼ଝିଅ ମଂଜୁଶ୍ରୀ ଯେ କି ମାଟ୍ରିକ୍ ଶେଷ କ୍ଲାସ୍‌ର ଛାତ୍ରୀ ଥିଲା ଏବଂ ଲର୍ଡ଼ ସିହ୍ନା ରୋଡ୍‌ସ୍ଥିତ ଶ୍ରୀଶିକ୍ଷାୟତନରେ ପଢୁଥିଲା, ତାକୁ ତା'ର ଫାଇନାଲ୍ ପରୀକ୍ଷା ଦୃଷ୍ଟିରୁ କଟକ ଆଣିହେଲା ନାହିଁ। ତାକୁ ସେହି ସ୍କୁଲର ହଷ୍ଟେଲ୍‌ରେ ରଖିଦେଇ ଆମେ ସବୁ କଟକ ଚାଲିଆସିବୁ ବୋଲି ସ୍ଥିର କଲୁ। ମୋର ଗାଡ଼ି ଅଷ୍ଟିନ୍-୮ଟିକୁ ରେଳରେ କଟକ ପଠାଇଦେଇଥିଲି

**ମୋର ବିଦାୟ-ସଭା –**

ମୋର ବିଦାୟସଭା ମାଟିଆବୁରୁଜର କାରବାଲା ମଇଦାନରେ ଅନୁଷ୍ଠିତ ହୋଇଥିଲା। ମୁଁ ଖାଲି କେଶୋରାମ କଟନ୍ ମିଲ୍‌ସ୍ ନୁହେଁ ମାଟିଆବୁରୁଜର ବହୁ ଅନୁଷ୍ଠାନ ସହିତ ସଂପୃକ୍ତ ଥିଲି। ତେଣୁ ମୋର ବିଦାୟ ସଂବର୍ଧନା ସଭା ମିଲ୍ ବାହାରେ ଏକକ ସାଧାରଣ ସ୍ଥାନରେ ଆୟୋଜନ କରିବାପାଇଁ ଉଦ୍ୟୋକ୍ତାମାନେ ସ୍ଥିର କରିଥିଲେ। ଏହି ସଭାରେ ପ୍ରାୟ ପଂଚ-ଛଅ ହଜାର ଲୋକ ଏବଂ ମିଲ୍‌ର ଶ୍ରମିକମାନେ ଯୋଗଦେଇଥିଲେ। ଓଡ଼ିଶାର ପୂର୍ବତନ ମୁଖ୍ୟମଂତ୍ରୀ ହରେକୃଷ୍ଣ ମହତାବ ଏହି ସଭାରେ ସଭାପତିତ୍ୱ କରିଥିଲେ। କଲିକତାର ବହୁ ଓଡ଼ିଆ ଓ ବଂଗାଳୀ ନେତା ଯଥା– ପଂଡିତ ଆକୁଳୀ ମିଶ୍ର, ଜାହାଂଗୀର କବି ଏବଂ ପ୍ରତାପ ଚଂଦ୍ର ଚଂଦ୍ର (ପରେ କେଂଦ୍ର କ୍ୟାବିନେଟ୍ ମଂତ୍ରୀ) ପ୍ରମୁଖ ଯୋଗଦେଇଥିଲେ ଏବଂ ଭାଷଣମାନ ଦେଇଥିଲେ। ସେମାନେ କଲିକତାର ଶ୍ରମିକ-କଲ୍ୟାଣ ଓ ସାହିତ୍ୟ

ସଂସ୍କୃତି କ୍ଷେତ୍ରରେ ମୋର ଅବଦାନ କଥା ସ୍ମରଣ କରି ମୋର ବିଦାୟରେ ଘୋର ଦୁଃଖ ପ୍ରକାଶକରିଥିଲେ।

**ଓଡ଼ିଶା ପ୍ରତ୍ୟାବର୍ତ୍ତନ –**

ମୁଁ ଦୀର୍ଘ କୋଡ଼ିଏ ବର୍ଷ କଲିକତାରେ ପ୍ରବାସୀ ଜୀବନଯାପନ କରିସାରି ଓଡ଼ିଶା ଫେରିଆସିଲି। ଓଡ଼ିଶାରେ ମେରିଆ ବଜାରରେ ପିଲାପିଲିଂକ ସହିତ ରହିବାକୁ ଲାଗିଲି। ମୋର ବଡ଼ଝିଅ ମଂଜୁଶ୍ରୀ କଲିକତାରେ ସ୍କୁଲ ହଷ୍ଟେଲ୍‌ରେ ରହୁଥିଲା। ବାକି ଅନ୍ୟ ତିନୋଟି ପିଲା କଟକ ଆସି ବିଭିନ୍ନ ସ୍କୁଲରେ ଭର୍ତ୍ତି ହେଲେ। ଚିତ୍ରା କନ୍‌ଭେଂଟ୍ ସ୍କୁଲରେ, ହର୍ଷ ଓ ବୁଚି (ଉଦୟନ) ଷ୍ଟିୱାର୍ଟ ସ୍କୁଲ୍‌ରେ ନାମ ଲେଖାଇଲେ। ଆମ ଘରେ ଜମ୍ବୁ ନାମକ ଜଣେ ଲୋକ ଯିଏକି କଲିକତାରେ ମୋ ପ୍ରତିବେଶୀ ଅଫିସରଙ୍କ କ୍ୱାଟର୍ରରେ ରୋଷେଇବାସ କରୁଥିଲା, ସେ କଟକ ଆସି ଆମ ଘରେ ରୋଷେଇବାସ କଲା ଓ ପୂଜାରୀ ରୂପେ କାମ କଲା। ଏହାଛଡ଼ା ସେ ବଜାର ହାଟ ମଧ କରୁଥିଲା। ଡ୍ରାଇଭର ବିଷ୍ଣୁ ମଧ ଥିଲା। ଏଥିପୂର୍ବରୁ ଆଉଜଣେ ଡ୍ରାଇଭର ଥିଲା, ତାଙ୍କୁ ମୁଁ ଖଣ୍ଡେ ଚିଠିଦେଇ ଜଣେ ପ୍ରକାଶକଂକ ନିକଟକୁ ପଠାଇଥିଲି। ସେ ଆଉ ଉତ୍ତର ନେଇ ଫେରିଲା ନାହିଁ। ପ୍ରକାଶକଂକ ଗାଡ଼ି ଚଳାଇବାକୁ ଲାଗିଲା। ମୁଁ ମୋ ଗାଡ଼ିରେ ରୋଜ ଜଗତ୍‌ପୁର ଇଂଡଷ୍ଟ୍ରିଆଲ୍ ଇଷ୍ଟେଟ୍‌କୁ ଯାଇ 'ଓଡ଼ିଶା ବୋର୍ଡ଼ ମିଲ୍' କଥା ବୁଝୁଥିଲି।

**ଦ୍ୱିତୀୟବାର ଆମେରିକା ଯାତ୍ରା –**

୧୯୬୨ ମସିହା ମଧ୍ୟଭାଗରେ ମୁଁ ସପରିବାର ଓଡ଼ିଶା ଆସି କଟକରେ ଦଶ-ବାରଦିନ ରହିବା ପରେ ହଠାତ୍ ଏକ ଦୁଇମାସିଆ ବକ୍ତୃତା ଗସ୍ତରେ The Study Mission International of America ଆନୁକୂଲ୍ୟରେ ଆମେରିକା ଯିବାପାଇଁ ନିମଂତ୍ରଣ ଆସିଲା। କଲିକତାର U.S.I.S. ଜରିଆରେ ଏ ଚିଠି ପାଇ ମୁଁ ପୁଣି ଆମେରିକା ଯିବାପାଇଁ ପ୍ରସ୍ତୁତ ହେଲି। ଏଥର ଆମେରିକାର ପ୍ରାୟ ପ୍ରତ୍ୟେକ ଷ୍ଟେଟ୍‌ର ରାଜଧାନୀକୁ ଯିବାର କାର୍ଯକ୍ରମ ସ୍ଥିର ହୋଇଥିଲା। ସେହି ସବୁ ଷ୍ଟେଟ୍‌ର ବଡ଼ବଡ଼ ଖବରକାଗଜମାନଂକର Study Mission International ଏକ ମିଳିତ ଅନୁଷ୍ଠାନ ଥିଲା। ପ୍ରତି ଷ୍ଟେଟ୍ ରାଜଧାନୀରେ ସେଠାର ସଂବାଦପତ୍ର ଆସୋସିଏସନ୍ ଜରିଆରେ ସଭାସମିତିର ଆୟୋଜନ କରାଯାଇଥିଲା। ସେହି ସବୁ ସଭାସମିତିରେ ଭାରତର ସାଂପ୍ରତିକ ପରିସ୍ଥିତି ଏବଂ ସାଂସ୍କୃତିକ ବିକାଶ ସଂପର୍କରେ ଭାଷଣ ଦେବାର କାର୍ଯସୂଚୀ ରଖାଯାଇଥିଲା।

**ବହିପତ୍ର ପ୍ରକାଶ –**

ମୁଁ ଓଡ଼ିଶା ଫେରି କଟକରେ ରହିବା ପରେ ମୋର କେତେକ ଗୁରୁତ୍ୱପୂର୍ଣ୍ଣ ପୁସ୍ତକ ପ୍ରକାଶ ପାଇଥିଲା। 'ଗ୍ରଂଥମନ୍ଦିର'ଦ୍ୱାରା ମୋର 'ଗ୍ରଂଥାବଳୀ' ପଦ୍ୟ ଓ ଗଦ୍ୟ ପ୍ରକାଶ ପାଇଥିଲା ମୋର କବିତା ସଂକଳନ 'କବିତା-୧୯୬୨'

ପ୍ରକାଶିତ ହେଲା । ଏହି ପୁସ୍ତକ ପାଇଁ ମୋତେ 'କେନ୍ଦ୍ରୀୟ ସାହିତ୍ୟ ଏକାଡେମୀ' ପୁରସ୍କାର ୧୯୬୪ ମସିହାରେ ମିଳିଥିଲା । ଏହି ପୁସ୍ତକ ଆଧୁନିକ ଓଡ଼ିଆ କବିତାର ସ୍ଥିତି ଓ ଭିତ୍ତି ସୁଦୃଢ଼ କରିଥିଲା । ମୋର 'ପାଣ୍ଡୁଲିପି' ଆଧୁନିକ ସାହିତ୍ୟର ମୂଳଦୂଆ ପକାଇଥିଲା । 'ସ୍ୱଗତ' ଓ 'କବିତା-୧୯୬୨' ତାହାକୁ ଆହୁରି ମଜବୁଦ୍ କଲେ । ପ୍ରଥମେ ପ୍ରଥମେ କଟକର ବାତାବରଣ ଆମକୁ ଭଲ ଲାଗୁନଥିଲା; ମାତ୍ର କ୍ରମେ ସବୁ ଦିହସୁହା ହୋଇଗଲା । ମୋର ଗବେଷଣା ଓ ତାତ୍ତ୍ୱିକ ପ୍ରବନ୍ଧମାନ ଲେଖିବା ପାଇଁ ଓଡ଼ିଶାରେ ପ୍ରଶସ୍ତ କ୍ଷେତ୍ର ମିଳିଲା ।

**ଓଡ଼ିଶା ବୋର୍ଡ଼ ମିଲ୍ସ ଲିଃ. –**

ଓଡ଼ିଶା ବୋର୍ଡ଼ ମିଲ୍ସ କ୍ରମେ ଉତ୍ପାଦନ ଆରମ୍ଭ କଲା । ଏହି ମିଲ୍‌ରେ ପ୍ରସ୍ତୁତ ନଡ଼ା ବୋର୍ଡ଼ ସମଗ୍ର ଭାରତରେ ବିଶେଷ ସୁନାମ ଅର୍ଜନ କଲା । ନଡ଼ାରୁ ବୋର୍ଡ଼ ତିଆରି କରିବାରେ ଏହି ମିଲ୍ ଓଡ଼ିଶାରେ ପ୍ରଥମ ଥିଲା । ଜଗତ୍‌ପୁର ଇଣ୍ଡଷ୍ଟ୍ରିଆଲ୍ ଇଷ୍ଟେଟ୍‌ରେ ଆମେ ଏକ 'A' ଶ୍ରେଣୀୟ shed ରେ ଏହି ମିଲ୍ ବସାଇଥିଲୁ; ମାତ୍ର Digeeter ଓ Boiler ବସାଇବାପାଇଁ ଏଥିରେ ଜାଗାନଥିଲା । ତେଣୁ ସରକାରୀ Shed ସଂଗେ ଆମ ନିଜ ଖର୍ଚ୍ଚରେ Digeeter shed ଓ Boiler shed ନିର୍ମାଣ କରିଥିଲୁ । ଏ ମିଲ୍‌ର ନଡ଼ା ବୋର୍ଡ଼ ଦିଲ୍ଲୀ, କଲିକତା, ଅହମ୍ମଦାବାଦ, କାନପୁର, ମାଡ୍ରାସ ପ୍ରଭୃତି ସ୍ଥାନରେ ଭଲ ବିକ୍ରି ହେଉଥିଲା । ଏହାର ଚାହିଦା ଦିନକୁଦିନ ବଢୁଥିଲା । ଦିଲ୍ଲୀ, ଅହମ୍ମଦାବାଦ, ବରୋଦା ପ୍ରଭୃତିରେ ଆମର Sole Agent ନିଯୁକ୍ତ ହୋଇଥିଲେ । ମାତ୍ର ପାଟନା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ 'ଜନ-କଂଗ୍ରେସ' ସହ ମିଳି ଓଡ଼ିଶାରେ ମନ୍ତ୍ରିମଣ୍ଡଳ ଗଢ଼ି ମୁଖ୍ୟମନ୍ତ୍ରୀ ହେଲାପରେ ସେ ମିଲ୍‌ଟିକୁ ଧ୍ୱଂସ କରିଦେଲେ । ସେ ଏହାକୁ ସମ୍ବଲପୁରର ଜଣେ ଲୋକକୁ ଲିଜ୍ ଦେଇଦେଲେ ଓ ଏହାର ଯନ୍ତ୍ରପାତି ବିକି ଭାଙ୍ଗି ଖାଇଗଲେ । ଏବେ ଦଶଲକ୍ଷ ଟଙ୍କା/ ମୂଲ୍ୟର ଏହି ମିଲ୍‌ଟି ଜଗତ୍‌ପୁର ଇଣ୍ଡଷ୍ଟ୍ରିଆଲ୍ ଇଷ୍ଟେଟ୍‌ରେ ଖତ ଖାଉଛି । ମୁଁ ଦିନେହେଲେ ଆଉ ସେ ମିଲ୍ ଦ୍ୱାର ମାଡ଼ିନି ଗଡ଼ଜାତ ପ୍ରଜା ଆନ୍ଦୋଳନରେ ବୈପ୍ଲବିକ ଭୂମିକା ନେଇଥିବାରୁ ଏବଂ ବାଜିରାଉତ କାବ୍ୟ ଲେଖି ସମଗ୍ର ଭାରତରେ ଓ ପୃଥିବୀରେ ସାମନ୍ତବାଦୀ ଶାସକ ଓ ଶାସନର ବିକଟରୂପ ଦେଖାଇ ଦେଇଥିବାରୁ ତା'ର ପରିଣାମ ମୋତେ ଭୋଗ କରିବାକୁ ପଡ଼ିଲା । ଏହା ରାଜା ରାଜୁଡ଼ାମାନଙ୍କର ଏକ ପ୍ରତିଶୋଧମୂଳକ କାର୍ଯ୍ୟ । ଗଡ଼ଜାତର ରାଜା ମହାରାଜାମାନେ କ୍ଷମତାକୁ ଆସିବାପରେ ମୋ ପ୍ରତିଷ୍ଠିତ ଓଡ଼ିଶା ବୋର୍ଡ଼ ମିଲ୍ସକୁ ନଷ୍ଟ କରିଦେଲେ । ମୁଁ ଏବଂ ମୋ ସ୍ତ୍ରୀ ଖଟାଇଥିବା ପ୍ରାୟ ପଚାଶ ହଜାର ଟଙ୍କାର ମୂଳଧନ ଗଲା । ମୁଁ ଏକପ୍ରକାର ସର୍ବସ୍ୱାନ୍ତ ହୋଇପଡ଼ିଲି ।

# ସପ୍ତତ୍ରିଂଶ ଉଲ୍ଲାସ

## ଦ୍ୱିତୀୟବାର ପାଇଁ ଆମେରିକା ଯାତ୍ରା

**ଚୀନ-ଭାରତ ଯୁଦ୍ଧ –**

ମୁଁ କଲିକତା ଚାକିରିରୁ ଇସ୍ତଫା ଦେଇ ୧୯୬୨ ମସିହା ସେପ୍‌ଟେଂବର ମାସରେ ସପରିବାର କଟକ ଆସି ମେରିଆ ବଜାରସ୍ଥ ବାସଭବନରେ ରହିବାକୁ ଲାଗିଲୁ । ମାତ୍ର ଅଳ୍ପ କେତେଦିନ ପରେ ମୋତେ Study Mission International of America ର ଆମଂତ୍ରଣ ଆନୁକୂଲ୍ୟରେ ପ୍ରାୟ ଦେଢ଼ମାସ ପାଇଁ ଏକ ବକ୍ତୃତା ଗସ୍ତରେ ପୁଣି ଆମେରିକା ଯିବାକୁ ହେଲା । ଭାରତରୁ ଆଉ ୮-୯ଜଣ ସାଂବାଦିକ ଓ ଲେଖକ ମଧ୍ୟ ଆମଂତ୍ରିତ ହୋଇ ଯାଇଥିଲେ । ସେମାନଂକ ମଧ୍ୟରେ ଗୁଜୁରାଟର ନାଟ୍ୟକାର 'ବ୍ରୋକର' ଓ ବଂବେର 'Eve's weekly'ର ଜଣେ ସହଯୋଗୀ ସଂପାଦିକା କୁମାରୀ ପାମେଲା ଅନ୍ୟତମ ଥିଲେ । କେରଳର ବିଖ୍ୟାତ ଔପନ୍ୟାସିକ ଶିବଶଂକର ପିଲେ ମଧ୍ୟ ଆମ ସଂଗେ ଯାଇଥିଲେ ।

**ଆମେରିକା ଗସ୍ତକ୍ରମ –**

ଆମେ ୧୯୬୨ ମସିହା ଅକ୍ଟୋବର ୧୮ ତାରିଖ ଗୁରୁବାର ସଂଧ୍ୟା ୬୪୫ ମିନିଟ୍‌ରେ ଇଂଡିଆନ୍ ଏଆର୍‌ଲାଇନସ୍‌ର ଫ୍ଲାଇଟ୍ ନଂବର ୧୮୨ ଯୋଗେ ଦିଲ୍ଲୀ ପାଲାମ ବିମାନ ଘାଟି ଛାଡ଼ିଲୁ । ରାତି ୯ଟାରେ ବଂବେ ସାଂତାକ୍ରୁଜ ବିମାନ-ଘାଟୀରେ ପହଂଚିଲୁ । ସେଠାରେ ଖିଆପିଆ ସାରି ରାତି ଗୋଟାଏରେ ଏଆର ଇଂଡିଆ ଜେଟ୍ ଫ୍ଲାଇଟ୍ ନଂବର ୧୦୯ ଯୋଗେ ବଂବେ ଛାଡ଼ିଲୁ । ଅକ୍‌ଟୋବର୍ ୧୯ ତାରିଖ ଶୁକ୍ରବାର ୧୧.୨୫ ମିନିଟ୍‌ରେ ଲଂଡନର ହିଥ୍ରୋ ବିମାନ ଘାଟୀରେ ପହଂଚିଲୁ । ସେଠାରେ ପ୍ରାୟ ଏକଘଂଟା ରହି ୧୨.୪୫ ମିନିଟ୍‌ରେ ଏଆର୍ ଇଂଡିଆ ଜେଟ୍ ଫ୍ଲାଇଟ୍ ନଂବର ୧୧୧ ଯୋଗେ ନ୍ୟୁୟର୍କ ଅଭିମୁଖେ ଯାତ୍ରାକଲୁ ।

ଅକ୍ଟୋବର ୨୦ ତାରିଖ ୩.୨୦ ମିନିଟ୍‌ରେ ନ୍ୟୁୟର୍କ ବିମାନ ପୋତରେ ପହଂଚିଲୁ । ସେଠାରୁ ୪.୫୦ ମିନିଟ୍‌ରେ ନେସ୍‌ନ୍ୟାଲ୍ ଏଆର୍‌ଲାଇନ୍‌ସ ୭୦୧ ନଂବର ଯୋଗେ ୱାଶିଂଗଟନ୍ ଗଲୁ । ଅକ୍‌ଟୋବର୍ ୨୦ ତାରିଖ ୬.୧୦ ମିନିଟ୍‌ରେ ୱାଶିଂଗଟନ୍ ଡି.ସି.ରେ ପହଂଚିଲୁ । ସେଠାରେ ଅକ୍ଟୋବର ୨୦ ତାରିଖରୁ ୨୪ ତାରିଖ ପର୍ଯ୍ୟନ୍ତ Sheraton-Carlton Hotel ରେ ଆମମାନଙ୍କର ରହିବାର ବ୍ୟବସ୍ଥା କରାଯାଇଥିଲା । ୨୨ ତାରିଖରେ ସେଠାରେ ଏକ ମିଟିଂଗ୍‌ରେ ମୁଁ ଭାଷଣ ଦେଇଥିଲି । ଏହି ମିଟିଂଗ୍ 'ୱାଶିଂଗଟନ୍ ପୋଷ୍ଟ' ଓ ଅନ୍ୟାନ୍ୟ ସ୍ଥାନୀୟ

ସଂବାଦପତ୍ରମାନଙ୍କ ଦ୍ୱାରା ଆୟୋଜିତ ହୋଇଥିଲା । ଏଥିରେ ଭାରତର ସାଂପ୍ରତିକ ପରିସ୍ଥିତି, ଚୀନ-ଭାରତ ସଂପର୍କ ବିଷୟରେ ମୁଁ କିଛି ସମୟ କହିଥିଲି ।

**ଚୀନ୍-ଭାରତ ଯୁଦ୍ଧ –**

ମୁଁ ଆମେରିକାରେ ପହଂଚିବାର ଦିନକ ପରେ ଚୀନ୍ ଭାରତ ଆକ୍ରମଣ କଲା । ପଂଡିତ ନେହେରୁଂକ 'ପଂଚଶୀଳ ନୀତି' ଏବଂ 'ହିଂଦୀ-ଚୀନ୍ ଭାଇ ଭାଇ' ଧ୍ୱନି କୁଆଡ଼େ ପବନରେ ମିଳାଇଗଲା । ଚୀନ୍ ଏଥିପୂର୍ବରୁ ମଝିରେ ମଝିରେ ଭାରତ ଲାଇନ୍‌କୁ ଉଭୟ ଦେଶର ସୀମାରେଖା ରୂପେ ମାନୁନଥିଲା । ଚୀନ୍‌ର କାର୍ଯକଳାପ ଭାରତରେ ପ୍ରବଳ ଉତ୍ତେଜନା ସୃଷ୍ଟି କରୁଥାଏ । ତିବତ୍‌ର ଦଲାଇଲାମାଂକୁ ଭାରତ ଆଶ୍ରୟ ଦେଇଥିବାରୁ ଚୀନ୍ ଭାରତ ପ୍ରତି କ୍ରୁଦ୍ଧ ହୋଇଥିଲା । ଚୀନ୍ ଆକାସାଇ-ଚୀନରେ ଏକ ରାସ୍ତା ନିର୍ମାଣ କରିଥିଲା । ଲଦାଖ୍ ଓ ନେପାଂକୁ ଚୀନର ଅଂଚଳ ବୋଲି ନିଜ ଦେଶ ମାନଚିତ୍ରରେ ଦେଖାଇଥିଲା । ଚୀନ୍ ଶେଷରେ ଭାରତ ଆକ୍ରମଣ କଲା । ଭାରତ ସରକାର ଅକ୍ଟୋବର ୨୬ ତାରିଖରେ ଦେଶରେ ଜାତୀୟ ଜରୁରୀ ଅବସ୍ଥା ଜାରି କରିଥିଲେ । ଚୀନ୍ କ୍ଷିପ୍ରଗତିରେ ଭାରତର ଅଂଚଳ ପରେ ଅଂଚଳ ଯଥା – ନେପାଂସେକ୍ଟର, ୱାଲଂଗ, ସାଲା ଓ ବୋମିଡିଲା ପ୍ରଭୃତି ଦଖଲ କରିନେଇଥିଲା । ଭାରତର ପରାଜୟ ଏବଂ ପଛଘୁଂଚା ପୃଥିବୀରେ ସର୍ବତ୍ର ବିସ୍ମୟ ସୃଷ୍ଟି କରିଥିଲା । ଆମେରିକାର ଜନମତ ଚୀନ ଆକ୍ରମଣର ତୀବ୍ର ବିରୋଧ କରୁଥିଲେ ମଧ୍ୟ ଭାରତର ପଛଘୁଂଚାରେ ଆଶ୍ଚର୍ଯ ହେଉଥିଲେ ।

ଆମେ ଆମେରିକାକୁ ଯିବାକୁ ଦିନେ ଡେରି କରିଥିଲେ ଆଉ ବୋଧହୁଏ ଆମେରିକା ଯାଇପାରିନଥାଂତୁ । କାରଣ ଯୁଦ୍ଧକାଳୀନ ଜରୁରୀ ପରିସ୍ଥିତି ଯୋଗୁଁ ବିଦେଶ ଯାତ୍ରା ନିଷିଦ୍ଧ କରାଯାଇଥିଲା । ଆମେରିକାରେ ଆମକୁ ପ୍ରଶ୍ନବାଣରେ ଲୋକେ ଅସ୍ଥିର କରିପକାଉଥିଲେ । ସକାଳୁ ଉଠିଲେ ହୋଟେଲରେ, ସଭାସମିତିରେ ଏବଂ ବଜାର ହାଟରେ ସବୁଠି ଖାଲି ପ୍ରଶ୍ନ ଉପରେ ପ୍ରଶ୍ନ 'ତମ ନେହେରୁ କ'ଣ କରୁଛଂତି ?' 'କାହିଁକି ଭାରତ ହାରୁଛି ?' ଇତ୍ୟାଦି ଇତ୍ୟାଦି ।

ଆସାମ ଉପରେ ବିପଦ ଘନେଇ ଆସୁଥିଲା । ପ୍ରଧାନମଂତ୍ରୀ ପଂଡିତ ନେହେରୁ ଆମେରିକା ଏବଂ ଗ୍ରେଟ୍‌ବିଟେନ୍‌କୁ ଏହି ଯୁଦ୍ଧରେ ଭାରତକୁ ସାହାଯ୍ୟ କରିବାପାଇଁ ନିବେଦନ କରିଥିଲେ । ଶେଷରେ ନଭେଂବର ୨୧ ତାରିଖରେ ଚୀନ ଏକତରଫା ଯୁଦ୍ଧ ବିରତି ଘୋଷଣା କରିଥିଲା । ନିଜ ସୈନ୍ୟବାହିନୀକୁ ଚୀନ ଦଖଲ କରିଥିବା ସୀମାର ୧୨ ମାଇଲ୍ ପଛକୁ ହଟିଯିବା ପାଇଁ ନିର୍ଦ୍ଦେଶ ଦେଇଥିଲା ।

ଭାରତ ସରକାର ଦାବୀ କରିଥିଲେ ଯେ ୧୯୬୨ ସାଲ ସେପ୍‌ଟେଂବର ୮ ତାରିଖ ପୂର୍ବରୁ ଦୁଇଦେଶ ମଧ୍ୟରେ ଯେଉଁ ସୀମାରେଖା ଥିଲା ତାହାକୁ ଚୀନ ପ୍ରତ୍ୟର୍ପଣ କରୁ । ସେହିବର୍ଷ ଡିସେଂବର ୧୦ ତାରିଖରେ ସିଂହଳର ପ୍ରଧାନମଂତ୍ରୀ ଏକ ଆଫ୍ରୋ-ଏସିଆନ୍ ନିରପେକ୍ଷ ରାଷ୍ଟ୍ରମାନଂକର ଯଥା – ବର୍ମା, କାଂବୋଡିଆ,

ସିଂହଳ, ଘାନା, ଇଂଡୋନେସିଆ ଓ ୟୁ.ଏ.ଆର୍. ପ୍ରଭୃତି ଦେଶମାନଂକର ଏକ ସମ୍ମିଳନୀ ଡାକି ଚୀନ ବର୍ତମାନ ଦଖଲ କରିଥିବା ସ୍ଥାନରୁ ପଶ୍ଚିମ ଦିଗରେ ୨୦ ମାଇଲ୍ ହଟିଯାଉ ଏବଂ ଏହି ଅଂଚଳ ଶେଷ ନିଷ୍ପତ୍ତି ହେବା ପର୍ଯ୍ୟନ୍ତ ଦୁଇଦେଶର ସିଭିଲ୍ ଅଫିସରଂକ ଦ୍ୱାରା ଶାସିତ ହେଉ ବୋଲି ପ୍ରସ୍ତାବ ଦେଇଥିଲା । ଅନ୍ୟ ପ୍ରସ୍ତାବଗୁଡ଼ିକ ଥିଲା ପୂର୍ବ ଦିଗରେ ଚୀନ ଓ ଭାରତ ଦୁଇଦେଶ ଦ୍ୱାରା ଗୃହୀତ ସୀମାରେଖା ଯୁଦ୍ଧ ବିରତି ରେଖା ରୂପେ ସ୍ୱୀକୃତ ହେଉ । ମଧ୍ୟବର୍ତ୍ତୀ ଅଂଚ ସଂବଂଧିୟ ମତଭେଦ ଆପୋଷ ମୀମାଂସା ଦ୍ୱାରା ଦୂର କରାଯାଉ । ଏହି ପ୍ରସ୍ତାବଗୁଡ଼ିକ 'କଲୋଂବ ପ୍ରସ୍ତାବ' ନାମରେ ନାମିତ ହୋଇଛି । ଭାରତ ଏହାକୁ ଗ୍ରହଣ କରିନେଇଥିବାବେଳେ ଚୀନ୍ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲା ।

ଭାରତ-ଚୀନ ଯୁଦ୍ଧ ଶେଷ ହେବାପରେ ମଧ୍ୟ ଭାରତ ଚୀନ ସହିତ ସୁସଂପର୍କ ରଖିବାପାଇଁ ଚେଷ୍ଟା କରିଆସୁଅଛି । ଉଦାହରଣ ସ୍ୱରୂପ ୧୯୭୧ ମସିହାରେ ଭାରତର ପ୍ରଧାନମଂତ୍ରୀ ଶ୍ରୀମତୀ ଇଂଦିରା ଗାଂଧୀ ଚୀନର ୟୁ.ଏନ୍.ଓ. ରେ ପ୍ରବେଶକୁ ସ୍ୱାଗତ କରି ଚୀନର ପ୍ରଧାନମଂତ୍ରୀ ଚୋନ୍-ଏନ୍-ଲାଇଂକୁ ଅଭିନଂଦନ ଜଣାଇଥିଲେ । ଇତିମଧ୍ୟରେ ଚୀନ୍‌ର ପ୍ରଧାନମଂତ୍ରୀ ଜିଂଗ୍ ଭାରତ ପରିଦର୍ଶନ କରିଯାଇଛଂତି । ଉଭୟ ଦେଶ ମଧ୍ୟରେ ସଦ୍‌ଭାବନା ବୃଦ୍ଧି ପାଇଛି । ମାତ୍ର ମୂଳ ସୀମା ସମସ୍ୟାର ଏ ପର୍ଯ୍ୟଂତ ସମାଧାନ ହୋଇନାହିଁ ।

ଆମେରିକାରେ ମୁଁ ନଭେଂବର ୧୮ ତାରିଖ ପର୍ଯ୍ୟଂତ ରହିଥିଲି । ଆମେରିକାର ରାଜଧାନୀ ୱାଶିଂଗ୍‌ଟନ୍‌ରେ ଥିଲାବେଳେ ଆମେ କ୍ୟାପିଟଲ୍ (Capital) ବା ସଂସଦଗୃହ ପରିଦର୍ଶନ କରିଥିଲୁ । ଆମେରିକାର କଂଗ୍ରେସ ଏହି ଗୃହରେ ବସେ । ଅନ୍ୟାନ୍ୟ କେତେକ ରାଜ୍ୟର ବିଧାନସଭାକୁ ମଧ୍ୟ (Capital) କୁହାଯାଏ । କ୍ୟାପିଟାଲ୍ ଅଟ୍ଟାଳିକା ୧୭୯୬ ମସିହାରେ ଆରଂଭ ହୋଇ ୧୮୦୦ ମସିହାରେ ବ୍ୟବହୃତ ହୋଇଥିଲା । ଆମେରିକାର ସ୍ୱାଧୀନତା ସଂଗ୍ରାମ ସମୟରେ ବ୍ରିଟିଶ୍‌ମାନେ ଏହାକୁ ୧୮୧୪ ମସିହାରେ ଜାଳିଦେଇଥିଲେ । ମାତ୍ର ୧୮୧୫-୧୭ ମଧ୍ୟରେ ଏହା ପୁନଃ-ନିର୍ମିତ ହୋଇଥିଲା । ଏଥିରେ ୧୮୫୧-୬୭ ମଧ୍ୟରେ ଏକ wing ଯୋଡ଼ାଯାଇ-ଥିଲା । ନୂତନ ଅଟ୍ଟାଳିକାର ବିଶାଳ ଡୋମ୍ ଏବଂ ସ୍ତଂଭମାନ ବିଶେଷଆକର୍ଷଣୀୟ ।

ଏହାର କୋରିଥିଆନ୍ ଖିଲାଣଗୁଡ଼ିକ ବିଶେଷ ଦର୍ଶନୀୟ । ଏହାର ପ୍ରଧାନ ଆପାର୍ଟମେଂଟ୍ ହେଲା ରୋଟୁଂଡା, ଷ୍ଟାଚ୍ୟୁଟାରୀ ହଲ୍ (ପୂର୍ବେ ହାଉସ୍ ଅଫ୍ ରିପ୍ରେଜଂଟେଟିଭ୍ ଏବଂ ସିନେଟ୍ କକ୍ଷ) ରୂପେ ବ୍ୟବହୃତ ହେଉଥିଲା । ପରେ ସୁପ୍ରିମ୍‌କୋର୍ଟ ଦ୍ୱାରା ବ୍ୟବହୃତ ହେଲା । ଏହା ନିକଟରେ କଂଗ୍ରେସର ବିରାଟ ପାଠାଗାର ଅବସ୍ଥାନ କରୁଅଛି ।

ଆମେ ଆଲିଗେଟନ୍ ନ୍ୟାସନ୍ୟାଲ୍ ସିମେଟ୍ରି (କବର ସ୍ଥାନ) ବୁଲି ଦେଖିଥିଲୁ । ଅଂଗ୍ୟାତ ସୈନ୍ୟଂକର ସମାଧି ବିଶେଷ କରି ଗାର୍ଡ଼ ବଦଳି ଦେଖିଥିଲୁ । ଆମେ

ନ୍ୟାସନାଲ୍ ଆଂଫିଥିଏଟରସ୍ ବୁଲିଦେଖିଥିଲୁ। ଆମେରିକାର ସର୍ବୋଚ୍ଚ ସାମରିକ ଅଫିସ୍ 'ପେଂଟାଗନ୍' ଦେଖେଇଥିଲୁ। ଆମେ ଯେଉଁସବୁ ଦର୍ଶନୀୟ ସ୍ଥାନମାନ ଦେଖିଥିଲୁ ତାହା ହେଲା ଆମେରିକାର ପ୍ରେସିଡେଂଟ ରହୁଥିବା ବାସଭବନ 'ହ୍ୱାଇଟ୍ ହାଉସ୍', ସ୍ମିଥ୍‌ସୋନିଆନ ଇନ୍‌ଷ୍ଟିଟ୍ୟୁସନ, ନ୍ୟାସନାଲ୍ ଗ୍ୟାଲେରୀ ଅଫ୍ ଆର୍ଟ, ଲିଂକନ ମେମୋରିଆଲ୍ ପ୍ରଭୃତି। ଆଲେକ୍‌ଜାଂଡ୍ରିଆ ଓ ଭର୍ଣ୍ଣ ମଧ୍ୟ ଯାଇଥିଲୁ।

ନ୍ୟାସନାଲ୍ ଆର୍ଟ ଗ୍ୟାଲେରୀ ବହୁ ଅମୂଲ୍ୟ ଚିତ୍ର ସଂପଦ ଓ ଭାସ୍କର୍ଯ୍ୟରେ ଋଦ୍ଧିମଂତ। ଏଥିରେ ପୃଥିବୀର ବିଭିନ୍ନ ଦେଶର କେତେକ ମୂଲ୍ୟବାନ୍ କଳାକୃତି ସଂଗୃହିତ ହୋଇ ସଂରକ୍ଷିତ ଅଛି।

ଲିଂକନ ମେମୋରିଆଲ୍ ଆମେରିକାର ସୁନାମଧନ୍ୟ ପ୍ରେସିଡେଂଟ୍ ଆବ୍ରାହାମ ଲିଂକନଂକର (୧୨।୨।୧୮୦୯–୧୪।୪।୧୮୬୫) ବୃହଦକାୟ ଓ ଉପବିଷ୍ଟ ପ୍ରତିମୂର୍ତ୍ତି। ଲିଂକନ ଥିଲେ ଜଣେ ଉଦାରଚେତା-ରାଷ୍ଟ୍ରନାୟକ। ସେ ଥିଏଟର ଦେଖୁଥିବାବେଳେ ଜଣେ ଉତ୍‌କ୍ଷିପ୍ତ ଅଭିନେତା ଦ୍ୱାରା ନିହତ ହୋଇଥିଲେ। ଆମେରିକାରୁ କ୍ରୀତଦାସ ପ୍ରଥା ଲୋପ କରିବାପାଇଁ ସେ ୧୮୬୧ ମସିହାରେ କ୍ଷମତାକୁ ଆସିବାର ବର୍ଷକ ପରେ ନିର୍ଦ୍ଦେଶନାମା ଜାରି କରିଥିଲେ। ଏହାଫଳରେ ଆମେରିକାରେ ଗୃହଯୁଦ୍ଧ ଲାଗିଯାଇଥିଲା ଏବଂ ବହୁ ଷ୍ଟେଟ୍ ବିଦ୍ରୋହ କରିଥିଲେ। ଦକ୍ଷିଣାଂଚଳର ଅନେକ ଷ୍ଟେଟ୍ ଫେଡେରାଲ୍ ସରକାରଠାରୁ ସାମୟିକ ଭାବରେ ବିଚ୍ଛିନ୍ନ ହୋଇଯାଇଥିଲେ। ମାତ୍ର ଶେଷରେ ମାନବିକତାର ଜୟ ହେଲା। ବିଶ୍ୱ ଇତିହାସରେ ଲିଂକନ ଏକ ଉଦାରଚେତା ମାନବିକତାବାଦୀ ରାଷ୍ଟ୍ରପତି ଭାବେ ଅମର ହୋଇ ରହିବେ।

**ୟୁଲିୟମସ୍ ବର୍ଗ –**

ଅକ୍‌ଟୋବର ୨୪ ତାରିଖ ସକାଳ ସାଢ଼େ ୯ଟାରେ ଆମେ ମୋଟର କୋଚ୍ ଯୋଗେ ସ୍କାଏ ଲାଇନ୍ ଡ୍ରାଇଭ ଦେଇ ୟୁଲିୟମସ୍ ବର୍ଗ ଗଲୁ। ୟୁଲିୟମସବର୍ଗ ଭାର୍ଜିନିୟାର୍ ଔପନିବେଶକ ରାଜଧାନୀ ଥିଲା।

ଏଠାରେ ବହୁ ଔପନିବେଶିକ ସ୍ମାରକ ଏବଂ ପୋଷାକ ପରିଚ୍ଛଦ ସଂଗ୍ରହାଳୟରେ ରହିଛି। ଭାର୍ଜିନିୟାର ଗ୍ରାମାଂଚଳ ମନୋରମ ପ୍ରାକୃତିକ ଦୃଶ୍ୟରେ ପରିପୂର୍ଣ୍ଣ। ସହଳ ମଧ୍ୟାହ୍ନ ଭୋଜନ ସାରି ୟୁଲିୟମସ୍‌ବର୍ଗରୁ ଆମେ ମୋଟର କୋଚ୍ ଯୋଗେ ବଲ୍‌ଟିମୋର୍ ଫ୍ରେଣ୍ଡ୍‌ସିପ୍ ଏଆର୍‌ପୋର୍ଟକୁ ଯାଇଥିଲୁ। ସେଠାରୁ ଅପରାହ୍ଣ ୬ଟାରେ ଡେଲ୍‌ଟା ଏଆରଲାଇନ୍‌ସର ୮୭୫ ନଂବର ଫ୍ଲାଇଟ୍‌ରେ ଲୁଇସେନିଆର ନ୍ୟୁଓରିଲିନ୍‌ସ ବିମାନପୋତରେ ପହଂଚିଥିଲୁ।

**ଲୁଇସେନିଆ, ନ୍ୟୁଓରିଲିନ୍‌ସ –**

ନ୍ୟୁଓରିଲିନ୍‌ସ ଲୁଇସେନିଆର ମୁଖ୍ୟ ନଗର ଓ ବଂଦର। ନ୍ୟୁଓରଲିନ୍‌ସ ମିସିସିପି ନଦୀର ବାମପାର୍ଶ୍ୱରେ ଅବସ୍ଥିତ। ସେହାରଟନ୍– ଚାଲର୍ସ ହୋଟେଲ୍‌ରେ ୨୫ ତାରିଖରେ ଏକ ସାଂବାଦିକ ସଭାରେ ମୁଁ ଏବଂ ଭାରତର ତିନିଜଣ

ବିଶିଷ୍ଟ ସଂପାଦକ ଭାରତୀୟ ପରିସ୍ଥିତି ଉପରେ କିଛି କହିଥିଲୁ। ଚୀନର ଭାରତ ଆକ୍ରମଣ ସାରା ବିଶ୍ୱର ଶାଂତି ପ୍ରତି ଏକ ପ୍ରଚଂଡ ଆଘାତ ବୋଲି ଆମେ କହିଥିଲୁ। ଆମେରିକା ଏହି ଯୁଦ୍ଧରେ ପୃଥିବୀର ବୃହତ୍ତମ ଗଣତଂତ୍ର ଭାରତକୁ ସାହାଯ୍ୟ କରିବା ଆବଶ୍ୟକ ବୋଲି ଆମେ ଦୃଢ଼ ମତ ପ୍ରକାଶ କରିଥିଲୁ।

**ଆମେରିକାରେ ଆତଂକ –**

ମୋଟର କୋର୍‌ରେ ଗଲାବେଳେ ଆମ ସାଂଗରେ ଷ୍ଟଡି ମିଶନ ଇଂଟରନ୍ୟାସନାଲ୍‌ର ପ୍ରମୁଖ କର୍ତ୍ତାମାନଂକର ପିଲାମାନେ ଆମ ସଂଗେ କୋଚ୍‌ରେ ଯାଉଥାଂତି। ତାହାର କାରଣ ସଂବଂଧରେ କେତେକ ସଭ୍ୟ ନିଜନିଜ ଭିତରେ ଫୁସ୍‌ଫାସ୍ ହେଉଥାଂତି। ସେମାନଂକଠାରୁ ଜାଣିବାକୁ ପାଇଥିଲୁ ଯେ ଆମେରିକାରେ ଆତଂକ ବ୍ୟାପିଯାଇଛି ଯେ ତୃତୀୟ ବିଶ୍ୱ ମହାଯୁଦ୍ଧ ଏଇ ଦିନେ ଦି'ଦିନ ଭିତରେ ଲାଗିଯାଇପାରେ। ସେଥିପାଇଁ ସେମାନେ ପିଲାମାନଂକୁ ସଂଗରେ ନେଇଯାଉଛଂତି। ତୃତୀୟ ମହାଯୁଦ୍ଧର କାରଣ ଥିଲା ଆମେରିକାର କ୍ୟୁବା ଘେରାଉ। ଏଣେ ତହିଁର ମୁକାବିଲା କରିବାପାଇଁ ସୋଭିଏଦ୍ ରୁଷ୍‌ର ସପ୍ତମଭେଳା ଦକ୍ଷିଣ ପ୍ରଶାଂତ ମହାସାଗରରେ ଅଗେଇ ଆସୁଥାଏ। ଯେକୌଣସି ମୁହୂର୍ତ୍ତରେ ବିଶ୍ୱ ମହାଯୁଦ୍ଧ ଲାଗିଯାଇପାରେ ବୋଲି ଆମେରିକାର ଲୋକମାନେ ଆଶଂକା କରୁଥାଂତି। ଚାରିଆଡ଼େ ଏକ ଆତଂକ ଖେଳିଯାଇଥାଏ।

ସେଦିନ ରାତିରେ ମୁଁ ଟେଲିଭିଜନରେ ପ୍ରେସିଡେଂଟ କେନେଡିଂକର ଭାଷଣ ଶୁଣିଥିଲି। ସେ ବଡ଼ ଗୁରୁଗଂଭୀର ହୋଇ ଯେକୌଣସି ଆସନ୍ନ ବିପଦ ପାଇଁ ଜାତିକୁ ପ୍ରସ୍ତୁତ ହୋଇ ରହିବାକୁ କହୁଥାଂତି। କହିବାବେଳେ ତାଂକ ମୁହଁ ଇଷତ୍ ଲାଲ୍ ହୋଇଉଠୁଥାଏ।

ନ୍ୟୁ ଓରଲିନ୍‌ସ ରହଣୀ କାଳରେ The vieux carre ବା ଫରାସୀ ଅଧ୍ୟୁଷିତ ସ୍ପେନିଶ୍‌ଓ କ୍ରିଲୋ ବସତି ଦେଖିବାର ସୁଯୋଗ ପାଇଥିଲୁ।

**ଭୂଦେବୀର ଚିଠି –**

ମୁଁ ମିନିଆପୋଲିରେ ଭୂଦେବୀଠାରୁ ଖଣ୍ଡେ ଚିଠି ପାଇଲି। ସେ ଚିଠିଟି ଓଡ଼ିଆରେ ଲେଖିଥିଲା। ସେ ଯେ ଏକ ମାସ ଭିତରେ କଟକରେ ରହି ଓଡ଼ିଆ ଲେଖି ଓ ପଢ଼ି ପାରିଲାଣି ଏହା ଜାଣି ମୁଁ ବହୁତ ଖୁସି ହେଲି। ସେ ଚିଠିରେ ମଝିରେ ମଝିରେ କିଛି ଭୁଲ୍‌ଭଟକା ସତ୍ତ୍ୱେ ମଧ୍ୟ ଓଡ଼ିଆରେ ଚିଠି ଲେଖି ପାରୁଥିଲା। ସେ କଟକରେ ସମସ୍ତଙ୍କ ସହିତ ଓଡ଼ିଆରେ କଥାବାର୍ତ୍ତା କରୁଥିଲା।

**ଆଇଓ୍ୱା-ସିଟି –**

ନଭେମ୍ବର ୯ ତାରିଖରେ Braniff ଏଆର୍‌ଲାଇନସ୍ ଯୋଗେ ଆମେ ଆଇଓ୍ୱା ନଗରୀରେ ପହଞ୍ଚିଥିଲୁ। ଆଇଓ୍ୱାରେ ଆମେ ବିଭିନ୍ନ ପରିବାରରେ ଅତିଥି ରୂପେ ରହିଥିଲୁ। ମୁଁ ମିଃ ଓ ମିସେସ୍ ବେନସଂକ ଘରେ ଅତିଥି ହୋଇଥିଲି।

ମିଃ ବେନ୍ ଜଣେ କୂଟନୀତିଜ୍ଞ ଥିଲେ। ତାଙ୍କର ୨ଟି ପୁତ୍ର ସନ୍ତାନ ଥିଲେ। ସେମାନଙ୍କ ବୟସ ୧୦-୧୨ ବର୍ଷ। ବେନସ୍ ଦମ୍ପତ୍ତି ଖୁବ୍ ମେଳାପୀ ଥିଲେ।

ଆଇଓ୍ୱା ବିଶ୍ୱବିଦ୍ୟାଳୟର ଜର୍ନାଲିଷ୍ଟ ବିଭାଗ ଆମର ହୋଷ୍ଟ ଥିଲେ। ମୁଁ ଆଇଓ୍ୱା ବିଶ୍ୱବିଦ୍ୟାଳୟରେ ଚାଲିଥିବା ଇଂଟରନ୍ୟାସନାଲ୍ ରାଇଟିଂଗ୍ କାର୍ଯ୍ୟକ୍ରମ (International writting Department) ର କେତୋଟି କ୍ଲାସ୍‌ରେ କିଛି ସମୟ ଥିଲି। ସେଥିରେ ଭାରତୀୟ ଛାତ୍ରଛାତ୍ରୀ ଜଣେ ଦୁଇଜଣ ଥିଲେ। ଏହି ବିଭାଗଟି ପରେ ଆତର୍ଜ୍ଜାତିକ ଲେଖକ କର୍ମଶାଳା ବୋଲି ଖ୍ୟାତିଲାଭ କଲା। ଏହାର ପ୍ରତିଷ୍ଠାତା ଥିଲେ ବିଖ୍ୟାତ କବି ପଲ୍ ଇଂଗଲ୍। ମୁଁ ତାଂକ ଘରକୁ ଯାଇଥିଲି ମାତ୍ର ସେ ନଥିଲେ। ସେ ବିଦେଶ ଗସ୍ତରେ ଥିଲେ। ସେ ଦୁଇମାସ ପରେ ଭାରତ ଆସିଥିଲାବେଳେ ମୋ ଅନୁରୋଧ କ୍ରମେ ଓଡ଼ିଶା ଆସିଥିଲେ ଏବଂ ଓଡ଼ିଶା ସରକାରଙ୍କ ଅତିଥିରୂପେ ଭୁବନେଶ୍ୱର ଗେଷ୍ଟହାଉସରେ ୩-୪ ଦିନ ରହିଥିଲେ। ସେ କଟକରେ ମୋ ମେରିଆବଜାରସ୍ଥ ବାସଭବନରେ ହେଉଥିବା ଦିଗଂତ ଲେଖକ କର୍ମଶାଳାର ଏକ ସଭାରେ ଯୋଗ ଦେଇଥିଲେ। ସେ ଦିଗଂତ କର୍ମଶାଳା ଆଇଓ୍ୱା ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା କରିଥିଲେ ବୋଲି ମୋତେ ଏକ ଚିଠିରେ ଜଣାଇଥିଲେ। ସେ ବିଷୟ ପରେ କହିବି।

**ଚିକାଗୋ, ଇଲିନୋଏସ୍ –**

ନଭେଂବର ୧୨ ତାରିଖରୁ ନଭେଂବର ୧୪ ତାରିଖ ପର୍ଯ୍ୟଂତ ଆମେ ଚିକାଗୋରେ Ambassador Hotel ରେ ଥିଲୁ। ଚିକାଗୋ ଯୁକ୍ତରାଷ୍ଟ୍ର ଆମେରିକାର ଦ୍ୱିତୀୟ ବୃହତ୍ତମ ନଗରୀ। ଏହା ସୁରମ୍ୟ ଅଟ୍ଟାଳିକାରେ ପରିପୂର୍ଣ୍ଣ। ଚିକାଗୋ ନଦୀକୂଳରେ ଏହି ନଗରୀଟି ଅବସ୍ଥିତ। ମୁଁ ଚିକାଗୋର 'ପୋଏଟ୍ରି' ପତ୍ରିକା ଅଫିସ୍‌ରେ କିଛି ସମୟ କଟାଇଥିଲି। ଆମେ ବିଖ୍ୟାତ ମିଚିଆଗାନ୍ ବୁଲେଭାର୍ଡ ପରିଦର୍ଶନ କରିଥିଲୁ। ଗ୍ରାଂଟ୍ ଏବଂ ଓ୍ୱାଶିଂଗ୍‌ଟନ୍ ପାର୍କ, ଚିକାଗୋ ବିଶ୍ୱବିଦ୍ୟାଳୟ, ଯାହାକି ଆଟମିକ୍ ବୋମାର ଜନ୍ମସ୍ଥଳୀ, ଜ୍ୟାକ୍‌ସନ୍ ପାର୍କ, ହାଇଡ୍ ପାର୍କ, ଚିକାଗୋର ଐତିହାସିକ ସାଉଥ୍ ସାଇଡ୍, Larado Tafl's Fountain of time ଇତ୍ୟାଦି ବୁଲି ଦେଖିଥିଲୁ। ସଂଧ୍ୟା ୫ଟାରେ ଆମେ ଆମେରିକାନ୍ ଏଆରଲାଇନ୍‌ସ୍ ଯୋଗେ ନ୍ୟୁୟର୍କ ଯାତ୍ରା କରିଥିଲୁ। ଆମେ ଡେଟ୍ରିଆଟ୍ ଓ ମିଚିଆଗାନ୍ ପ୍ରଭୃତି ଦୁଇ-ତିନିଦିନ ସକାଶେ ଯାଇଥିଲୁ। ଡେଟ୍ରିୟଟ୍ ଆମେରିକାର ଚତୁର୍ଥ ବୃହତ୍ତମ ନଗରୀ। ଏହା ଏକ ବଡ଼ ଶିଳ୍ପନଗରୀ ମଧ୍ୟ।

**ଫୋନିକ୍‌ସ୍‌ରେ ତିନିଦିନ –**

ଫୋନିକ୍‌ସ୍‌ର West Ward-Ho-Hotel ରେ ତିନିଦିନ ଆମେ ରହିଥିଲୁ। ଏହା ବ୍ରିଟିଶ୍ ଔପନ୍ୟାସିକ Sir Walter Scottଙ୍କର ପ୍ରସିଦ୍ଧ ଉପନ୍ୟାସର ନାମ। ଏହାର ବିଲ୍ଡିଂଗସ୍ ବା କୋଠାବାଡ଼ିଗୁଡ଼ିକ ଆମେରିକାରେ ସବୁଠାରୁ

ଆଧୁନିକ ବୋଲି କୁହାଯାଉଥିଲା । ଫୋନିକସ୍ ରହଣୀ କାଳରେ ଆମେ ଷ୍ଟେଟ୍ ରାଜଧାନୀର ବହୁସ୍ଥାନ ବୁଲି ଦେଖିଥିଲୁ ଯଥା– ଆବସିକ ପଡ଼ା, କଂଟ୍ରିକ୍ଲବ୍, ଏକାଡିଆ ଜିଲ୍ଲା, ବିଖ୍ୟାତ ରେସର୍ଟ (Resort) ହୋଟେଲ୍, ସ୍କଟ୍‌ଡେଲ୍‌ର ପଶ୍ଚିମାଂଚଳର ବିରାଟ ଦୋକାନ ବଜାର, ସଲ୍ଟରିଭର୍ ଇଂଳିଆନ୍ ରିଜର୍ବସେନ୍ (ଆଦିମ ଆମେରିକୀୟ ଜନଜାତି ବସତି), Moroon Temple, Arizona State college ଏବଂ Pueblo Grande Ruins ।

ଫୋନିକ୍ସିରେ ଥିଲାବେଳେ ମୁଁ ଦୁଇଟି ଗୋଲ୍‌ଗୋଲ୍ କାକ୍‌ଟସ୍ ସଂଗ୍ରହ କରି ଏକ ଗଛ ବକ୍‌କଳରେ ତିଆରି ଖୋଲା ଡବାରେ ରଖିଥିଲି । ମୁଁ ଭାରତ ଫେରିବାବେଳେ କଲିକତା ଏଆର୍‌ପୋର୍ଟରେ ଓହ୍ଲାଇଥିଲି, ଏଠାରେ କଷ୍ଟମ୍ ଅଫିସର ମୋ ଜିନିଷପତ୍ର ତନଖି କଲାବେଳେ ସେ କାକଟସ୍ ଦୁଇଟିକୁ ନିଷିଦ୍ଧ ଜିନିଷ ବୋଲି କହି ଆଣିବାକୁ ଦେଇନଥିଲେ ।

**ଗ୍ରାଂଡ୍‌କେନିୟନ୍ –**

ଏହାପରେ ଆମେ ଆରିଜୋନାର ଗ୍ରାଂଡ୍‌କେନିୟନ୍ ଯାଇଥିଲୁ । ସେଠାରେ El Travar Hotel ରେ ଅକ୍‌ଟୋବର ୨୯ ଓ ୩୦ ତାରିଖ ଦୁଇଦିନ ରହିଥିଲୁ । ଗ୍ରାଂଡ୍ କେନିୟନ୍ ଏକ ଗଭୀର ପ୍ରାଚୀନ ପଥର ଗହ୍ୱର (Gorge) । ଏହା କଲରାଡୋ ନଦୀ ଦ୍ୱାର । ଏହା ପୃଥିବୀର ଏକ ଆଶ୍ଚର୍ଯ୍ୟ ରୂପେ ପରିଗଣିତ । ଏହା ୮,୦୦୦ ଫୁଟ ଉଚ୍ଚ । ଏହାର ଆକୃତି 'V' ପରି । ମୁଁ ଗ୍ରାଂଡ୍‌କେନିୟନ୍ ନିକଟସ୍ଥ ଏକ ଦୋକାନରୁ ଖଂଡେ ପଥର କିଣିଥିଲି ତାହା ମୋ ପାଖରେ ଅଛି । ସେଥିରେ ସଂଲଗ୍ନ କାର୍ଡ଼ରୁ ଜଣାଯାଏ ଯେ ଏହି ପଥର ଖଂଡର ବୟସ ୧୫୦ ନିୟୁତ ବା ଦେଢ଼କୋଟି ବର୍ଷ । ଗ୍ରାଂଡ୍‌କେନିୟନ୍‌କୁ ୧୮୬୯ ମସିହାରେ ମେଜର୍ I.W. Powell ପରିକ୍ରମା କରିଥିଲେ ।

**ସାନ୍‌ଫ୍ରାସିସ୍‌କୋ, କାଲିଫର୍ଣିଆ –**

ସାନ୍‌ଫ୍ରାସିସ୍‌କୋ ଓ କାଲିଫର୍ଣିଆ ଆମେ ଅକ୍‌ଟୋବର୍ ୩୧ ତାରିଖରୁ ନଭେଂବର ୩ ତାରିଖ ପର୍ଯ୍ୟଂତ Sir Fransis Drake Hotel ରେ ପ୍ରାୟ ୪ ଦିନ ରହିଥିଲୁ । ସେଠାରେ ଚାଇନା ଟାଉନ୍, ଫିସରମ୍ୟାନ୍ ରାଫ୍ ଓ ଟେଲିଗ୍ରାଫ୍ ହିଲ୍‌ରେ ଗୋଟିଏ ସଂଧ୍ୟା କଟାଇଥିଲୁ । କାଲିଫର୍ଣିଆ ବିଶ୍ୱବିଦ୍ୟାଳୟରେ ଏକ ସଭାରେ ମୁଁ ଏବଂ ଅନ୍ୟକେତେଜଣ ଭାରତୀୟ ପ୍ରତିନିଧି ଭାଷଣ ଦେଇଥିଲୁ ।

ଏହିଠାରେ ପ୍ରସିଦ୍ଧ ହିନ୍ଦୀ କବି ସଚ୍ଚିଦାନଂଦ ବାତ୍ସାୟନ ସଂଗେ ମୋର ଦେଖାହୋଇଥିଲା । ସେ ଏଠାରେ ଗତ କେତେଦିନ ହେଲା କାଲିଫର୍ଣିଆରେ ଏକ କାର୍ଯ୍ୟକ୍ରମରେ ରହୁଥିଲେ । ତାଂକ ସହିତ ଏକତ୍ର ଚା'ପାନ କଲୁ । ବାତ୍ସାୟନ ଆଧୁନିକ ହିଂଦୀ କବିତାର ଜଣେ ପଥିକୃତ୍ । ତାଂକ ସ୍ତ୍ରୀ କପିଳା ବାତ୍ସାୟନ ଭାରତ ସରକାରଂକର ସଂସ୍କୃତି ବିଭାଗର ଜଣେ ଅଧିକାରୀ ଥିଲେ । ତାଂକ

ସହିତ ମୋର କେତେଥର ଦିଲ୍ଲୀରେ ଆଳାପ ହୋଇଥିଲା। 'ପଦ୍ମଶ୍ରୀ' ସମ୍ମାନ ଗ୍ରହଣ କରିବାପାଇଁ ମୁଁ ଦିଲ୍ଲୀ ଯାଇଥିଲାବେଳେ କେନ୍ଦ୍ର ସାହିତ୍ୟ ଏକାଡେମୀର ସଂପାଦକ ଡଃ. ପ୍ରଭାକର ମାଚ୍ଛୁଏଂକ ସହିତ ତାଂକ ଘରକୁ ଯାଇଥିଲି। ଡଃ. ବାତ୍ସାୟନ ପୂର୍ବରୁ ମୋ ଲେଖା ସହିତ ପରିଚିତ ଥିଲେ। ସେ ମୋ ସଙ୍ଗେ ଆଳାପରେ ଖୁବ୍ ଖୁସି ହୋଇଥିଲେ।

କାଲିଫର୍ଣିଆରେ ଆମେ Twin peaks, Seal Rocks, The Cliff House, Mission Doleres, Palace of legion of Art Museum, Civil Centre, Palace of Fine Art, Lincon park, Sea Cliff, St. Francis Woods, The Marina Occean Beach, Yacht Harbour, Sleinhart Aquarium, Golden gate ପ୍ରଭୃତି ବୁଲି ଦେଖିଥିଲୁ।

ସାନ୍ ଫ୍ରାଂସିସ୍କୋରେ ଦିନେ ସଂଜବେଳେ ବୁଲୁବୁଲୁ କେତେଜଣ ଶ୍ୱେତାଂଗ ରିକ୍ସାବାଲାଂକୁ ହାତଟଣା ରିକସା ଧରି ଛିଡ଼ା ହୋଇଥିବାର ଦେଖିଲୁ। ସେମାନେ ରିକ୍ସା ଟାଣି ପେଟ ପୋଷୁଥିଲେ। ସେମାନଂକ ସହିତ କିଛି ସମୟ ଆଳାପକରିଥିଲୁ।

**ସଲ୍ଟଲେକ୍-ସିଟି : Utah –**

ନଭେଂବର ୩ ତାରିଖରୁ ନଭେଂବର ୬ ତାରିଖ ପର୍ଯ୍ୟଂତ Utah Hotel ରେ ଆମେ ରହିଥିଲୁ। Utah ରେ ଆମେ କେତେକ ବଡ଼ବଡ଼ ସମ୍ବାଦପତ୍ର ଅଫିସକୁ ଯାଇଥିଲୁ। Utah ରହଣୀ ଭିତରେ ଆମେ Mormon Temple, Tabernads, Brigham young's Homes, Historic salt Lake or Mormon Trail, Big Cotton wood caryon ଓ Brighton Resent ପ୍ରଭୃତି ପରିଦର୍ଶନ କରିଥିଲଲୁ। ନଭେଂବର ୬ ତାରିଖ ସକାଳ ୯.୧୫ ମିନିଟ୍‌ରେ ଆମେ ୱେଷ୍ଟର୍ଣ ଏଆର୍‌ଲାଇନସ୍‌ର ୬୦ ନମ୍ବର ବିମାନରେ ମିନିଆପୋଲିସ୍ ଯାଇଥିଲୁ।

**ମିନିଆପୋଲିସ୍ ମିନିସୋଟା –**

ମିନିଆପୋଲିସ୍‌ରେ ଆମେ Radisson Hotel ରେ ନଭେଂବର ୬ ତାରିଖରୁ ନଭେଂବର ୯ ତାରିଖ ପର୍ଯଂତ ରହିଥିଲୁ ସେଠାରେ ପ୍ରେସ୍‌କ୍ଲବ୍ ଦ୍ୱାରା ଆୟୋଜିତ ଏକ ସଭାରେ ମୁଁ ଓ ଅନ୍ୟ କେତେଜଣ ଭାରତୀୟ ପ୍ରତିନିଧି ଭାରତୀୟ ପରିସ୍ଥିତି ଏବଂ ଭାରତୀୟ ସଂସ୍କୃତି ସଂବଂଧରେ ଭାଷଣ ଦେଇଥିଲୁ। ଗଭର୍ଣର ଆଂଡରସନଂକ ସହିତ ଷ୍ଟେଟ୍ କ୍ୟାପିଟାଲ୍‌ରେ କ୍ଷାତ ଓ ଆଲୋଚନା ହୋଇଥିଲା। ଆମେ ମିନିଆପୋଲିସ୍‌ର ଯୁଗ୍ମ ନଗରୀ ପରିଦର୍ଶନ କରିଥିଲୁ। ଆମେ 'ଷ୍ଟାର୍' ଓ 'ଟ୍ରିବ୍ୟୁନ୍' ପତ୍ରିକା ଅଫିସରେ ଆଲୋଚନାରେ ଭାଗ ନେଇଥିଲୁ। ତାହାପରେ Front door film Mri ଦେଖିଥିଲୁ। ସେଠାରେ ଆମେ Lake of Isles, Minehaha Falls, Dam & locks, Food plant, University Campus, St. Anthony Falls Milling District, Indian Mounds park, University Agricultural college, The state capital & Historical Society

Building ପରିଦର୍ଶନ କରିଥିଲୁ । ମିନିଆପୋଲିର ଜଳପ୍ରପାତ ଆମକୁ ପ୍ରଚୁର ଆନନ୍ଦ ଦେଇଥିଲା । ମିନିଆପୋଲିର ଏକ ବଡ଼ ଦୋକାନରୁ ମୁଁ ଏକ କ୍ୟାମେରା କିଣିଥିଲି ।

**ନ୍ୟୁୟର୍କ-ସିଟି –**

ନ୍ୟୁୟର୍କରେ ଆମେ ରୁଜ୍‌ଭେଲଟ୍ ହୋଟେଲରେ ନଭେଂବର ୧୪ ତାରିଖରୁ ନଭେଂବର ୧୮ ତାରିଖ ପର୍ଯ୍ୟଂତ ଅବସ୍ଥାନ କରିଥିଲୁ । ନ୍ୟୁୟର୍କରେ ଆମେ ନ୍ୟୁୟର୍କ ଟାଇମସ୍ ଏବଂ Christian Science Monitor ପ୍ରେସ୍ ଓ ଅଫିସ୍ ବୁଲି ଦେଖିଥିଲୁ । ନ୍ୟୁୟର୍କ ଟାଇମସ୍‌ରେ ମଧ୍ୟାହ୍ନ ଭୋଜନ-ବନାମ-ଆଲୋଚନା-ଚକ୍ରରେ ଯୋଗ ଦେଇଥିଲୁ । ସେଠାରେ ଆମେ ଭାରତର ବିଭିନ୍ନ ସମସ୍ୟା ଚୀନ ଆକ୍ରମଣ ଓ ପାକିସ୍ଥାନର ଶତ୍ରୁତା ପ୍ରଭୃତି ବିଷୟରେ ଆଲୋକପାତ କରିଥିଲୁ । ଆମର ବକ୍ତବ୍ୟ ବିଭିନ୍ନ ପତ୍ରିକାରେ ବଡ଼ ଆକାରରେ ପ୍ରକାଶ ପାଇଥିଲା । ମୁଁ ନ୍ୟୁୟର୍କ ଆସିବା ପୂର୍ବରୁ ନ୍ୟୁଜର୍ସିର ବ୍ରୁସ୍‌କୁ ମୋତେ ନ୍ୟୁୟର୍କର ହୋଟେଲରେ ଦେଖା କରିବାପାଇଁ ଲେଖିଥିଲି । ମୁଁ ତାଙ୍କ ଘରେ ୧୯୫୫ ମସିହାରେ ପ୍ରାୟ ଦେଢ଼ମାସ ଅତିଥି ଭାବେ ରହିଥିଲି । ଏହା ପୂର୍ବରୁ ସୂଚନା ଦେଇଛି । ମାତ୍ର ଦୁଃଖର କଥା ବ୍ରୁସ୍ ସଂଗେ ଦେଖା ହୋଇପାରିଲାନାହିଁ । ଯଦି ସେ ଆସିଲାବେଳେ ମୁଁ ହୋଟେଲ୍‌ରେ ନଥିଲି ସେ ରିସେପ୍‌ସନ୍‌ରେ ଏକ ମେସେଜ୍ ବା ସ୍ଲିପ୍ ଛାଡ଼ି ଯାଇପାରିଥାଂତା, ମୁଁ ଜାଣେନା ତାର କ'ଣ ହେଲା । ତାର ଟେଲିଫୋନ୍ ନମ୍ବର ମଧ୍ୟ ମୋ ପାଖରେ ନଥିଲା । ତାହା ସହିତ ଦେଖା ନ ହେବାରୁ ମୁଁ ଦୁଃଖିତ ହୋଇଥିଲି ।

ନ୍ୟୁୟର୍କରେ ଚାରିଦିନ ରହଣି ଭିତରେ ଆମେ ୟୁ.ଏନ୍.ଓ. ହେଡ୍‌କ୍ୱାଟର୍ ଦେଖିଥିଲୁ । ନୌକା ଯୋଗେ ଲିବର୍ଟି ଆଇଲ୍ୟାଂଡକୁ ଯାଇ ସେଠରେ 'ଲିବର୍ଟି ବିଗ୍ରହ' ଦେଖିଥିଲୁ । ଏହାଛଡ଼ା ଏଂପାୟାର୍ ଷ୍ଟେଟ୍ ବିଲ୍‌ଡିଙ୍ଗ୍, NBC Radio Station ଓ ଟେଲିଭିଜନ୍ ଷ୍ଟୁଡିଓ ବୁଲି ଦେଖିଥିଲୁ । ଅବଶ୍ୟ ମୁଁ ଏସବୁ ଏଥିପୂର୍ବରୁ ୧୯୫୫ ମସିହାରେ ଦେଖିଥିଲି । ଏହିଠାରେ ଷ୍ଟଡି ମିଶନ ଶେଷ ହୋଇଥିଲା । ନ୍ୟୁୟର୍କ ଛାଡ଼ିଲାବେଳେ ନ୍ୟୁୟର୍କ ଏଆର୍‌ପୋର୍ଟ ଉପରେ ମୁଁ ଏକ କବିତା ଲେଖିଥିଲି । ସେତେବେଳେ ପୃଥିବୀ ଉପରେ ତୃତୀୟ ମହାଯୁଦ୍ଧର କଳାବାଦଲ ଡାକି ରହିଥିଲା । କେତେବେଳେ ଯେ କ'ଣ ହେବ କିଛି ଜଣାଯାଉନଥିଲା । ସେ କବିତାର କେତୋଟି ଲାଇନ୍ –

ଏଆର୍‌ପୋର୍ଟ, ନ୍ୟୁୟର୍କ

× × × ×

ଭୀଷଣ ସଂବାଦ ଅଛି, ଜରୁରୀ ଖବର
ଏ ମୁହୂର୍ତ୍ତେ, କିଂବା ଟିକେ ପରେ ।
ଭୀଷଣ ଖବର ଅଛି ମଣିଷ ମନର,
ମେରୁ-ବୃତ୍ତେ, ବିକ୍ଷୁବର ଘରେ ।

× × × × (କବିତା – ୧୯୬୨)

**ଇଂଲଂଡରେ ଦଶଦିନ –**

କମନ୍‌ୱେଲ୍‌ଥ୍ ସରକାରଂକର ଅତିଥି ରୂପେ ଦଶଦିନ ଲଂଡନରେ ରହିବାପାଇଁ ମୋତେ ନିମନ୍ତ୍ରଂଣ ଆସିଥିଲା । ତେଣୁ ମୁଁ ନ୍ୟୁୟର୍କରୁ ବିମାନ ଯୋଗେ ଲଂଡନ ଯାତ୍ରା କଲି । ଲଂଡନରେ ହାଇଡ୍‌ପାର୍କ ନିକଟରେ ଏକ ବଡ଼ ହୋଟେଲ୍‌ରେ ମୋର ରହିବାର ବ୍ୟବସ୍ଥା କରାଯାଇଥିଲା । ମୋତେ ଜଣେ ଗାଇଡ୍ ଦିଆଯାଇଥିଲା । ତାଂକ ନାମ ଥିଲା ମିସେସ୍ ଷ୍ଟେଲାବର୍ଟନ ସେ ମୋତେ ବିଭିନ୍ନ ସ୍ଥାନକୁ ନେଇ ପୁଣି ଗାଡ଼ିରେ ରାତି ୮ଟା ମଧ୍ୟରେ ହୋଟେଲରେ ଛାଡ଼ିଦେଇ ଯାଉଥିଲେ । ସେ ପାକିସ୍ତାନ ପ୍ରତି ଅଧିକ ସହାନୁଭୂତିଶୀଳ ଥିଲେ । କଥାବାର୍ତାରେ ପାକିସ୍ତାନକୁ ସମର୍ଥନ କରୁଥିଲେ ।

**କବି ଟି.ଏସ୍. ଏଲିଏଟଂକ ସହ ଭେଟ –**

ମୁଁ ଆଧୁନିକ କବିତାର ଅଗ୍ରସୁରୀ କବି ଟି.ଏସ୍. ଏଲିଏଟଂକୁ ଭେଟି ତାଂକ ସହ ପ୍ରାୟ ଅଧଘଣ୍ଟାଏ ଆଲୋଚନା କରିଥିଲି । Dissociation of Sensibilities ସଂବଂଧରେ ତାଂକ ମତାମତ କିଛି ବଦଳିଛି କି ନାହିଁ ବୋଲି ପଚାରିଥିଲି । ସେ କହିଥିଲେ ଚେତନାର ବିଚ୍ଛେଦ ଓ ସମନ୍ୱୟ ଗୋଟାଏ କିଛି ଜିନିଷ କବିତାରେ ବରାବର ରହିଆସିଛି । ଜନ୍‌ସନ୍ ମଧ୍ୟ ଏହା ଲକ୍ଷ୍ୟ କରିଥିଲେ ।

ଭାରତର କବିତା ଲେଖକମାନଙ୍କର ଆର୍ଥିକ ସ୍ଥିତି ସଂବଂଧରେ ସେ ମୋତେ ପଚାରିଥିଲେ । ଭାରତରେ ସାହିତ୍ୟିକମାନେ ଶୋଚନୀୟ ଆର୍ଥିକ ଅବସ୍ଥା ଭିତରେ ଗତି କରୁଛନ୍ତି ବୋଲି ମୁଁ କହିଥିଲି । ସେ କହିଥିଲେ ଇଂଲଂଡରେ ମଧ୍ୟ କବିମାନଙ୍କର ଅବସ୍ଥା ଭଲ ନୁହେଁ ।

ସେମାନେ ଅନ୍ୟ କିଛି ବୃତ୍ତି ଅବଲଂବନ କରିବାକୁ ବାଧ ହୁଅଂତି । ତାଂକ ସହିତ ମୋର ଆଳାପ ଆଲୋଚନା ସହୃଦୟତାପୂର୍ଣ ଥିଲା ।

ଲଂଡନରେ ଥିଲାବେଳେ ମୁଁ India library କୁ ଦୁଇଥର ଯାଇଛି । ସେଠାରେ କେତେକ ପୁସ୍ତକର ପ୍ରାଚୀନ ସଂସ୍କରଣ ପଢ଼ିଛି । ଜୟଦେବଙ୍କ ‘ଗୀତଗୋବିନ୍ଦ’ର ଓଡ଼ିଆ ଓ ବଂଗଳା ସଂସ୍କରଣମାନ ପଢ଼ି ବିଶେଷ ଉପକୃତ ହୋଇଛି ।

କମନ୍ ୱେଲଥ୍ ମାଗାଜିନ୍ ଅଫିସରେ କେତେକ ସାହିତ୍ୟିକ ବନ୍ଧୁ ଓ ଲେଖକମାନଙ୍କ ସହିତ ମିଶିବାର ଏବଂ ଭାବର ଆଦାନ ପ୍ରଦାନ କରିବାର ସୁଯୋଗ ପାଇଥିଲି । ଲଂଡନରେ ‘ଅବଜରଭର୍’ ଏବଂ ‘ଟାଇମସ୍’ ପତ୍ରିକାର ସାହିତ୍ୟ ବିଭାଗର ସଂପାଦକମାନଙ୍କ ସହିତ କେତେକ ବିଷୟରେ ଆଲୋଚନା କରିଥିଲି ।

ଅକ୍‌ସ୍‌ଫୋର୍ଡ ବିଶ୍ୱବିଦ୍ୟାଳୟକୁ ପୁଣି ଥରେ ଯାଇ ସେଠାରେ ସାହିତ୍ୟିକ ବଂଧୁମାନଙ୍କ ସହିତ କେତେକ ଘଂଟା କଟାଇଥିଲି । ବାଟରେ ବ୍ଲାସ୍‌ଗୋଠାରେ ରାଜା ରାମମୋହନ ରାୟଂକ ସମାଧି ଦେଖିଥିଲି ଏବଂ ପୁଷ୍ପମାଲ୍ୟ ଦେଇଥିଲି ।

ଲଂଡନରେ ଥିଲାବେଳେ ହାଇଗେଟ୍ ଷ୍ଟ୍ରୀଟ୍‌ରେ ଥିବା କାର୍ଲମାର୍କ୍ସ ଏବଂ ତାଂକ ପତ୍ନୀ ପ୍ରିନ୍‌ସେସ୍ ଜେନିଂକ ସମାଧି ଦେଖି ବିଶେଷ ଅଭିଭୂତ ହୋଇଥିଲି। ମାର୍କ୍ସଂକର ବ୍ରୋଞ୍ଜର ଆବକ୍ଷ ମୂର୍ତି ତଳେ ଯେଉଁ କେତେ ଧାଡ଼ି ଉଦ୍ଧୃତି ସୁନେଲି ଅକ୍ଷରରେ ଖୋଦିତ ହୋଇଥିଲା, ତାହା ଏବେବି ମୋର ମନେଅଛି– 'Philosophers have interpretted the world in various ways. But the point is to change it' – Karl Marx

କମନ୍‌ୱେଲଥ୍ ସେକ୍ରେଟେରୀଏଟ୍‌ର ବରିଷ୍ଠ ଅଫିସରମାନଙ୍କ ସହିତ ଆଳାପ କଲାବେଳେ କମନ୍‌ୱେଲଥ୍ ଦେଶମାନଙ୍କ ମଧ୍ୟରେ ସାଂସ୍କୃତିକ ବିନିମୟ ସୂତ୍ର ଆହୁରି ପ୍ରଭାବଶାଳୀ କରିବାପାଇଁ କ'ଣ ପଦକ୍ଷେପ ନିଆଯାଇପାରେ ସେ ବିଷୟରେ ସେମାନେ ମୋର ମତାମତ ଲୋଡ଼ିଥିଲେ। ମୁଁ ଚିତ୍ର ଓ କଳା ପ୍ରଦର୍ଶନୀମାନ ଆୟୋଜନ କରିବାପାଇଁ ପରାମର୍ଶ ଦେଇଥିଲି। ଏହାର ବହୁବର୍ଷ ପରେ ଲଂଡନରେ 'ଭାରତ ଉତ୍ସବ' ଆରମ୍ଭ ହୋଇଥିଲା। ଅନ୍ୟାନ୍ୟ ଦେଶମାନଙ୍କର ମଧ୍ୟ ସେହିଦିନଠାରୁ ଏହି ଉତ୍ସବ ଅନୁଷ୍ଠିତ ହୋଇଆସୁଛି। ଏଥିପାଇଁ ଭାରତ ସରକାର ନିଶ୍ଚୟ ଧନ୍ୟବାଦାର୍ହ। ମୁଁ ୧୯୮୨ ମସିହାରେ ଏହି ଉତ୍ସବରେ ଲଂଡନ ବିଶ୍ୱବିଦ୍ୟାଳୟଂକ ଆମଂତ୍ରଣ କ୍ରମେ ଲଂଡନସ୍ଥ ସ୍କୁଲ ଅଫ୍ ଓରିଏଂଟାଲ୍ ଆଂଡ୍ ଆଫ୍ରିକାନ୍ ଷ୍ଟଡ଼ିଜ୍‌ରେ ଏକ ତିନିମାସ ବ୍ୟାପି ଓଡ଼ିଶାର ପଟ୍ଟଚିତ୍ର ଓ ପୋଥିଚିତ୍ରର ପଦର୍ଶନୀ ଅନୁଷ୍ଠିତ କରିଥିଲି। ଏହି ବିଷୟରେ ପରେ କହିବି।

**ଭାରତ ପ୍ରତ୍ୟାବର୍ତନ –**

ମୁଁ କଲିକତା ବିମାନଘାଟିରେ ପହଂଚି ଦେଖିଲି ବିମାନ ଘାଟିଟି କିପରି ବିମର୍ଷ ଓ ନିଛାଟିଆ ଦେଖାଯାଉଛି। ତାହା ଚୀନ୍-ଭାରତ ଯୁଦ୍ଧ ବିରତିର ପ୍ରାୟ ଦଶ-ବାର ଦିନ ପରର ଘଟଣା। କଲିକତା ବିମାନଘାଟିରେ କଷ୍ଟମ ଅଫିସରମାନେ ମୋର ସୁଟ୍‌କେଶ୍ ଓ ବ୍ୟାଗ୍ ପ୍ରଭୃତି ଯାଞ୍ଚ କରି କେତେକ ଜିନିଷ ଓ କାକ୍ଟସ୍ ନେଇଯାଇଥିଲେ। ଏସବୁର ମୁଁ ରସିଦ୍ ମାଗିବାରୁ ସେମାନେ ରସିଦ୍ ଦେବାକୁ ଅସ୍ୱୀକାର କରିଥିଲେ। ସେମାନଂକ ସହିତ ମୋର ଟିକେ ବଚସା ହୋଇଥିଲା। ମୁଁ କଲିକତାର କେତେକ ଖବରକାଗଜରେ ପ୍ରକାଶ ପାଇଁ କଲିକତା କଷ୍ଟମ ବିଭାଗର କାର୍ଯ୍ୟକଳାପର ସମାଲୋଚନା କରି ବିମାନଘାଟିରେ ଥିବା ୨-୩ ଜଣ ସାଂବାଦିକଂକୁ ମୋର ଆପତ୍ତି ଅଭିଯୋଗ ଜଣାଇଥିଲି। ସେମାନେ ଏହା ନିଜନିଜ ପତ୍ରିକାରେ ପ୍ରକାଶ କରିଥିଲେ ବୋଲି ଖବର ପାଇଥିଲି।

**ପୋଷ୍ୟ-ପିତାଂକ ମହାପ୍ରୟାଣ –**

୧୯୬୩ ମସିହାରେ ମୋର ପୋଷ୍ୟପିତା ଅର୍ଥାତ୍ ବଡ଼ ଦଦେଇ ସଦାନଂଦ ରାଉତ୍‌ରାୟଂକର ଆମ ଗ୍ରାମ ଗୁରୁଜଂଗରେ ମୃତ୍ୟୁ ହୋଇଥିଲା। ଖବର ପାଇ ମୁଁ ମହନୀ ଅପାକୁ ମୋ ଗାଡ଼ିରେ ନେଇ ଗୁରୁଜଂଗ ଯାଇଥିଲି ଏବଂ ତାଙ୍କର

ଅଂତ୍ୟେଷ୍ଟି-କ୍ରିୟା ସମାପନ କରିଥିଲି । ତାଂକର ମୃତ୍ୟୁ ଫାଲ୍‌ଗୁନ ମାସ ଶୁକ୍ଳ-ଦ୍ୱାଦଶୀ ଦ୍ୱିପ୍ରହର ସମୟରେ ହୋଇଥିଲା । ସେ ଦୀର୍ଘଦିନ ଧରି ଭଗଂଦର ରୋଗରେ ପୀଡ଼ିତ ଥିଲେ ।

**ଦିଗଂତ ଲେଖକ କର୍ମଶାଳା –**

ଦିଗଂତ ଲେଖକ କର୍ମଶାଳା ମୋ ମେରିଆବଜାରସ୍ଥ ବାସଭବନରେ ଅନୁଷ୍ଠିତ ହେଉଥିଲା । ବହୁତ ଲେଖକ ଲେଖିକା ଏଥିରେ ଯୋଗ ଦେଉଥିଲେ । ସେମାନେ ସ୍ୱରଚିତ କବିତା ଏବଂ କେବେକେବେ କ୍ଷୁଦ୍ରଗଳ୍ପ ପାଠ କରୁଥିଲେ । ଆଲୋଚ଼ନାରେ ମଧ ଅଂଶଗ୍ରହଣ କରୁଥିଲେ । ପ୍ରବୀଣ ସମାଲୋଚକମାନେ ଏହାର ସମୀକ୍ଷା କରୁଥିଲେ । ପ୍ରତି ଦୁଇ-ତିନି ମାସରେ ଏହା ମୋ ବାସଭବନରେ ଆୟୋଜିତ ହେଉଥିଲା । ମୁଁ ୧୯୬୨ ମସିହା ଡିସେଂବର ପ୍ରଥମ ସପ୍ତାହରେ ଆମେରିକାରୁ ଫେରିବା ପରେ ଆଇଓ୍ୱା ବିଶ୍ୱବିଦ୍ୟାଳୟ ଇଂଟରନ୍ୟାସନାଲ୍ ରାଇଟିଂଗ୍ ପ୍ରୋଗ୍ରାମର ପ୍ରତିଷ୍ଠାତା ଓ ପରିଚାଳକ କବି ପଲ୍ ଇଂଗଲ ଭାରତ ଆସିଥିଲେ । ମୁଁ ତାଙ୍କୁ ଓଡ଼ିଶା ଡାକିଥିଲି । ସେ ସରକାରୀ ଅତିଥି ବା State-Guest ଭାବେ ଭୁବନେଶ୍ୱରରେ ୩-୪ ଦିନ ରହିଥିଲେ । ସେ ଦିଗଂତ ଲେଖକ କର୍ମଶାଳାର ଏକ ବିଶେଷ ଅଧିବେଶନରେ ଯୋଗ ଦେଇଥିଲେ । ଏହା ପୂର୍ବରୁ କହିଛି । ଏହି ଅଧିବେଶନଟି ମୋ ମେରିଆବଜାରସ୍ଥ ବାସଭବନ ଛାତ ଉପରେ ବସିଥିଲା । ଏଥିରେ ବହୁ ବିଶିଷ୍ଟ ପ୍ରବୀଣ ଓ ତରୁଣ ଲେଖକ-ଲେଖିକା ଯୋଗ ଦେଇଥିଲେ ଏବଂ ସ୍ୱରଚିତ କବିତା ପାଠ କରିଥିଲେ । ସେମାନଂକ ମଧରେ ଡଃ ହରେକୃଷ୍ଣ ମହତାବ, କାଳଂଦି ଚରଣ ପାଣିଗ୍ରାହୀ, କବିଚଂଦ୍ର କାଳୀଚ଼ରଣ ପଟ୍ଟନାୟକ, ବୈକୁଣ୍ଠନାଥ ପଟ୍ଟନାୟକ ଓ ଶ୍ରୀମତୀ ପଦ୍ମାଳୟା ଦାଶ ପ୍ରଭୃତି ବିଶେଷ ଉଲ୍ଲେଖଯୋଗ୍ୟ । ସେହିଠାରେ ମୁଁ ପଦ୍ମଳୟା ଦାଶଂକୁ ପ୍ରଥମେ ଭେଟିଥିଲି । ଆମର ସୌହାର୍ଦ୍ୟ କ୍ରମେ ଅଂତରଂଗ ହୋଇଥିଲା । ସେ କିଛି ବର୍ଷପରେ ହିନ୍ଦୁସ୍ଥାନ ଷ୍ଟାଂଡାର୍ଡ ପତ୍ରିକାରେ ଓନିଶା ବିଷୟରେ ଏକ ସ୍ତମ୍ଭ ନିୟମିତଭାବେ ଲେଖି ପ୍ରଶଂସାଭାଜନ ହୋଇଥିଲେ । ଗଭୀର ଦୁଃଖର ବିଷୟ ଗତ ତିନିମାସ ତଳେ ତାଂକର ମୃତ୍ୟୁହୋଇଯାଇଛି ।

ପଲ୍ ଇଂଗଲ୍ ଆମେରିକା ଫେରି ଆଇଓ୍ୱା ବିଶ୍ୱବିଦ୍ୟାଳୟରେ ଏକ ଆନ୍ତର୍ଜାତିକ ଲେଖକ କର୍ମଶାଳା ବା International writer's workshop ସ୍ଥାପନ କରିଥିଲେ । ଏହି କର୍ମଶାଳାକୁ ପୃଥିବୀର ବିଭିନ୍ନ ଦେଶର କେତେକ କବି ଓ ଲେଖକଂକୁ ଅଂଶ ଗ୍ରହଣ କରିବାପାଇଁ ଆମଂତ୍ରଣ କରାଯାଇଥାଏ । ସେମାନଂକୁ ଆଇଓ୍ୱା ବିଶ୍ୱବିଦ୍ୟାଳୟରେ ୮-୯ ମାସ ରହିବା ଓ ଖାଇବା ପ୍ରଭୃତି ଆତିଥ୍ୟ ପାଇଁ ବ୍ୟବସ୍ଥା କରାଯାଇଥାଏ । ଆମ ଓଡ଼ିଶାରୁ କବି ସୌଭାଗ୍ୟ ମିଶ୍ର ଏବଂ ଜୟଂତ ମହାପାତ୍ରଂକୁ ଏହି କର୍ମଶାଳାକୁ ଡକାଯାଇଥିଲା । କବି ପଲ୍ ଇଂଗଲ୍ ଓଡ଼ିଶାର ଦିଗଂତ ଲେଖକ କର୍ମଶାଳାରୁ ଏହି ଆଂତର୍ଜାତିକ କର୍ମଶାଳା ପ୍ରତେଷ୍ଠା କରିବାର

ପ୍ରେରଣା ପାଇଥିଲେ ବୋଲି ମୋତେ ପରେ ଲେଖିଥିବା ଖଣ୍ଡିଏ ଚିଠିରୁ ଜଣାଯାଏ । ସେ ଚିଠିଟି ତଳେ ଦିଆଗଲା ।

**University of Iowa**

International writing Programme,

Iowa city, U.S.A. August, 30, 1973

Dear Sachi Rout-Ray,

One of my clearest memories of India is that Superb party on the terrace (or roof) of your house. It was in large part as a result of my visit that I conceived the idea of this programme. With warmest wishes

Poul Engle

Director.

ଏହି ଚିଠିଟି ମତ୍‌ସଂପାଦିତ ଦିଗଂତ ସାହିତ୍ୟ ପତ୍ରିକାର ୧୯୮୧ ମସିହା ଜୁନ୍ ସଂଖ୍ୟାରେ ସଂପାଦକୀୟ ଅଗ୍ରଲେଖାରେ ପ୍ରକାଶ ପାଇଥିଲା ।

ଏହି ଚିଠିରୁ ସ୍ପଷ୍ଟ ଜଣାଯିବ ଯେ ଦିଗଂତ ଲେଖକ କର୍ମଶାଳାରୁ ପଲ୍ ଇଂଗଲ୍ ବିଶ୍ୱବିଦ୍ୟାଳୟରେ ଆତଂର୍ଜାତିକ ଲେଖକ କର୍ମଶାଳା ଗଢ଼ିବାକୁ ପ୍ରେରଣା ଓ ଧାରଣା ପାଇଥିଲେ ।

**ବିଡ଼ଂବନାର ଅଂତ ନାହିଁ–**

ଗଭୀର ପରିତାପର ବିଷୟ ଯେ ଦିଗଂତ ଲେଖକ କର୍ମଶାଳା ଯାହା ଆଇଓ୍ୱା ବିଶ୍ୱବିଦ୍ୟାଳୟରେ ଆଂତର୍ଜାତିକ ଲେଖକ କର୍ମଶାଳାର ପ୍ରେରଣାର ଉତ୍ସ ଥିଲା ତାହା ଆମ ଦେଶରେ ଉଧେଇ ପାରିଲାନାହିଁ । ଏହା ମୋ ଜୀବନର ବହୁ ବିଡ଼ଂବନା ମଧ୍ୟରେ ଅନ୍ୟତମ । 'ଦିଗଂତ' ପତ୍ରିକା ମଧ୍ୟ ଆମ ଓଡ଼ିଶା ଜଳବାୟୁରେ ତିଷ୍ଠି ପାରିଲାନାହିଁ । ଅଗଣିତ ପାଠକ ପାଠିକା ଏବେ ମଧ୍ୟ ଏହି ପତ୍ରିକାକୁ ସ୍ମରଣ କରୁଛନ୍ତି ଏବଂ ଏହା ଓଡ଼ିଶାର ଶ୍ରେଷ୍ଠ ସାହିତ୍ୟ-ପତ୍ରିକା ମଧ୍ୟରେ ଅଗ୍ରଣୀ ଥିଲା ବୋଲି ମତ ପ୍ରକାଶ କରୁଛନ୍ତି ।

ଓଡ଼ିଶା ବୋର୍ଡ ମିଲ୍ କଥା ଆଗରୁ କହିଛି । ଏହା ରାଜନୈତିକ ପ୍ରତିହିଂସାର ଶିକାର ହୋଇ ରାଜ ରାଜୁଡ଼ାମାନଂକ ଦ୍ୱାରା ଧ୍ୱଂସ ହୋଇଗଲା । ଓଡ଼ିଶାରେ କେହି ଏହାକୁ ରକ୍ଷା କରିପାରିଲେ ନାହିଁ । କଲିକତା ଚାକିରିରୁ ଇସ୍ତଫା ଦେଇ ମୁଁ ଓଡ଼ିଶା ଆସିବା ପରେ ବହୁ ବିପର୍ଯ୍ୟୟ ଭୋଗ କରିଛି । ଏସବୁ ମୋ ଜୀବନରେ ଗଭୀର ରେଖା କାଟିଛଂତି ।

# ଅଷ୍ଟାତ୍ରିଂଶ ଉଲ୍ଲାସ

## ଭାରତ-ପାକିସ୍ତାନ ଯୁଦ୍ଧ : ସ୍ୱାଧୀନ ବାଂଲାଦେଶ ଓ ମୋ କବିତା

**ପାକ୍-ଭାରତ ସଂପର୍କ –**

ମାଉଂଟ୍‌ବେଟେନ୍ ପ୍ଲାନ୍ ଅନୁସାରେ ପାକିସ୍ତାନ ୧୯୪୭ ମସିହା ଅଗଷ୍ଟ ୧୪ ତାରିଖରେ ସ୍ୱାଧୀନ ହୁଏ। ଭାରତବର୍ଷ ତା ପରଦିନ ଅର୍ଥାତ୍ ଅଗଷ୍ଟ ୧୫ ତାରିଖରେ ସ୍ୱାଧୀନତା ଲାଭକରେ। ଜନ୍ମ-ମୁହୂର୍ତ୍ତରୁହିଁ ପାକିସ୍ତାନ ଭାରତବିରୋଧି କାର୍ଯକଳାପ ଆରଂଭକରିଦିଏ। ପାକ୍-ଭାରତ ବିବାଦର ମୂଳ କାରଣ ଥିଲା କାଶ୍ମୀର। ଭାରତ ସ୍ୱାଧୀନତା ଲାଭ କରିବା ପରେ କାଶ୍ମୀରର ହିନ୍ଦୁ ରାଜା ସାର୍ବଭୌମତ୍ୱ ଘୋଷଣାକରିଥିଲେ। ମାତ୍ର ପାକିସ୍ତାନ ଚାହୁଁଥିଲା ଯେ କାଶ୍ମୀର ପାକିସ୍ତାନରେ ସାମିଲ ହେଉ। ସେ କାଶ୍ମୀର ମହାରାଜାଂକ ଉପରେ ପାକିସ୍ତାନରେ ମିଶିଯିବା ପାଇଁ ପ୍ରବଳ ଚାପ ଦେଇଥିଲା; ତା'ପରେ କାଶ୍ମୀର ଆକ୍ରମଣ କରିଥିଲା। କାଶ୍ମୀର ମହାରାଜା ଭାରତର ସହାୟତା ଲୋଡ଼ିଥିଲେ। ସେ ଭାରତରେ ମିଶିବା ପାଇଁ ଚୁକ୍ତିବଦ୍ଧ ହୋଇଥିଲେ; ଫଳରେ ଭାରତୀୟ ସୈନ୍ୟବାହିନୀ କାଶ୍ମୀରରେ ପ୍ରବେଶକରିଥିଲେ ଏବଂ ପାକ୍ ଆକ୍ରମଣକାରୀଂକୁ ଅଧିକାଂଶ ସ୍ଥାନରୁ ବିତାଡ଼ିତ କରିଥିଲେ। ୧୯୪୯ ମସିହା ଜାନୁୟାରୀ ମାସରେ ଭାରତ ଓ ପାକିସ୍ତାନ ମଧ୍ୟରେ ଯୁଦ୍ଧ-ବିରତି ଘୋଷଣା କରାଯାଏ। କେବଳ କାଶ୍ମୀରର ଏକ କ୍ଷୁଦ୍ର ଅଂଶ ପାକିସ୍ତାନ ଅଧୀନରେ ରହିଥିଲା; କିଂତୁ ପାକିସ୍ତାନ ଜାତିସଂଘର ଜେନେରାଲ୍ ଆସେଂବ୍ଲିରେ କାଶ୍ମୀର ଦାବି ଉପସ୍ଥାପିତ କରିଥିଲା। ୧୯୪୫ ମସିହା ଫେବୃୟାରୀ ମାସରେ ଜାମ୍ମୁ ଓ କାଶ୍ମୀରର ସଂବିଧାନ ପ୍ରଣୟନ ସଭା ବା କନଷ୍ଟିଚୁଏଂଟ୍ ଆସେଂବ୍ଲିରେ କାଶ୍ମୀର ଭାରତର ଅବିଚ୍ଛେଦ୍ୟ ଅଂଶ ବୋଲି ପ୍ରସ୍ତାବ ଗୃହୀତ ହୋଇଥିଲା।

ଏହାଛଡ଼ା ଅବିଭକ୍ତ ଭାରତର କେତେକ ଧନସଂପତ୍ତି ପାଇବା ପାଇଁ ପାକିସ୍ତାନ ଦାବି କରିଥିଲା। ତାକୁ ଏ ବାବଦରେ ୫୫୦ ନିୟୁତ ଟଂକା ଭାରତ ଦେଇଥିଲା। ସିଂଧୁ ନଦୀର କେନାଲ ଜଳ-ବିଭାଜନ ନେଇ ଦୁଇ ଦେଶ ମଧ୍ୟରେ ତିକ୍ତ ସଂପର୍କ ସୃଷ୍ଟିହୋଇଥିଲା। ନେହେରୁ ଓ ପାକିସ୍ତାନର ପ୍ରଧାନମଂତ୍ରୀ ଆୟୁବ୍ ଖାଁଙ୍କ ମଧ୍ୟରେ ଏ ସଂପର୍କରେ World Bankର ସଭାପତି Eugene Blackଙ୍କ ମଧ୍ୟସ୍ଥତାରେ ଏକ ରାଜିନାମା ସ୍ୱାକ୍ଷରିତ ହୋଇଥିଲା; ଫଳରେ ଏ ସଂକ୍ରାନ୍ତ ବିବାଦର କିଛିଟା ସମାଧାନ ହୋଇପାରିଥିଲା। ଏହା ପରେ ପାକିସ୍ତାନ ପଶ୍ଚିମବଂଗର ଫାରକ୍କା ବ୍ୟାରେଜ୍ ପ୍ଲାନ୍ ବିରୁଦ୍ଧରେ ସ୍ୱର-ଉତ୍ତୋଳନ କରିଥିଲା।

ଚୀନର ଭାରତ ଆକ୍ରମଣ ପରେ ପାଶ୍ଚାତ୍ୟ ରାଷ୍ଟ୍ରମାନେ ଭାରତକୁ ସାହାଯ୍ୟ ସହାନୁଭୂତି ଦେଉଥିବାରୁ ପାକିସ୍ତାନ ତହିଁର ତୀବ୍ର ବିରୋଧ କରିଥିଲା ଏବଂ ଚୀନର ଭାରତ ଆକ୍ରମଣକୁ ସମର୍ଥନ ଜଣାଇଥିଲା; ଫଳରେ ଚୀନ ପାକିସ୍ତାନ ମଧ୍ୟରେ ବନ୍ଧୁତା ସ୍ଥାପିତ ହୋଇଥିଲା । ୧୯୬୫ ମସିହାରେ ପାକିସ୍ତାନର ତତ୍‌କାଳୀନ ବୈଦେଶିକ ମନ୍ତ୍ରୀ ଜୁଲଫିକର ଅଲ୍ଲୀ ଭୁଟ୍ଟୋ ଚାଇନା ପରିଦର୍ଶନ କରିଥିଲେ । ପାକିସ୍ତାନ ଓ ଚୀନ ମଧ୍ୟରେ ସେ ଘନିଷ୍ଠତା ସ୍ଥାପନକରିଥିଲେ । ଚୀନ ଓ ପାକିସ୍ତାନ ମଧ୍ୟରେ ସଦ୍‌ଭାବ ବୃଦ୍ଧିପାଇଥିଲା । ଦୁଇ ଦେଶ ମଧ୍ୟରେ ଏକ Sino-Pak ସୀମାନ୍ତ ରାଜିନାମା ସ୍ୱାକ୍ଷରିତ ହୋଇଥିଲା ।

ଏହାପରେ ପାକିସ୍ତାନ ଭାରତ ବିରୁଦ୍ଧରେ ସାମରିକ ପଦକ୍ଷେପ ନେବା ପାଇଁ ପ୍ରସ୍ତୁତି ଆରମ୍ଭ କରିଦେଇଥିଲା । ୧୯୬୫ ମସିହା ଜାନୁୟାରୀ-ଫେବୃୟାରୀ ମାସରେ ପାକିସ୍ତାନ ସିନ୍ଧୁ ଓ ଗୁଜୁରାଟ ସୀମାନ୍ତରେ ଭାରତ ଉପରେ ଆକ୍ରମଣ କଲା । ଭାରତ ନିଜ ସୀମାନ୍ତର ପ୍ରତିରକ୍ଷା ପାଇଁ ପ୍ରତି-ଆକ୍ରମଣ କରିବାକୁ ବାଧ‌୍ୟ-ହୋଇଥିଲା । ଭାରତ-ପାକିସ୍ତାନ ଯୁଦ୍ଧ କଚ୍ଛର ଅନ୍ତର୍ଗତ ରାନ୍‌ଠାରେ ଆରମ୍ଭ ହୋଇଥିଲା ଏବଂ ଏହା ୧୯୬୫ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ଲାଗିରହିଥିଲା । ପାକିସ୍ତାନର ସିନ୍ଧୁ ପ୍ରଦେଶ ଏବଂ ଭାରତର ଗୁଜୁରାଟ ସୀମାରେଖାକୁ ଲାଗି Rann of Kutch ଅବସ୍ଥିତ । ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ୱିଲସନଙ୍କ ମଧ୍ୟସ୍ଥତାରେ ଭାରତ-ପାକ୍ ମଧ୍ୟରେ ଯୁଦ୍ଧ ନିବୃତ୍ତି ସ୍ୱାକ୍ଷରିତ ହୋଇଥିଲା । ଏଥିରେ ଦୁଇ ଦେଶ ରାଜିହୋଇଥିଲେ ଯେ, ସେମାନେ ଦୁଇ ମାସ ମଧ୍ୟରେ ସେମାନଙ୍କର ସୀମାବିବାଦ ତୁଟାଇଦେବେ । ମାତ୍ର ଏକ ମାସ ପରେ ପାକିସ୍ତାନ ଯୁଦ୍ଧ ବିରତି ସର୍ତ୍ତ ଲଙ୍ଘନକରି କାଶ୍ମୀର ଆକ୍ରମଣ କରିଥିଲା । ପ୍ରଥମେ ବହୁସଂଖ୍ୟକ ପାକିସ୍ତାନୀ ଛଦ୍ମବେଶରେ କାଶ୍ମୀରରେ ପ୍ରବେଶକରିଥିଲେ । ୧୯୬୫ ମସିହା ଅଗଷ୍ଟ ୨୭ ତାରିଖରେ ୫୦୦୦ ପାକିସ୍ତାନୀ ସୈନ୍ୟ ଯୁଦ୍ଧ-ବିରତି ସୀମାରେଖା ଲଙ୍ଘନକରି କାଶ୍ମୀର ଭିତରେ ପ୍ରବେଶକରିଥିଲେ । କିନ୍ତୁ ଭାରତୀୟ ସୈନ୍ୟମାନେ ସେମାନଙ୍କୁ ପଛକୁ ହଟାଇଦେଇଥିଲେ । ୧୯୬୫ ମସିହା ସେପ୍‌ଟେମ୍ବର ମାସରେ ପାକିସ୍ତାନ ଏକ ବଡ଼ ଧରଣର ଦୁଇ ରେଜିମେଣ୍ଟବିଶିଷ୍ଟ ଆମେରିକୀୟ ପ୍ୟାଟନ୍ ଟ୍ୟାଙ୍କ୍ ଓ ସବ୍ରେଜେଟ୍ ଲଢୁଆ ବିମାନ ସହ କାଶ୍ମୀର ଆକ୍ରମଣ କରିଥିଲା ।

ପାକିସ୍ତାନବାହିନୀ ଚାମ୍ ଅଞ୍ଚଳର ଅନ୍ତର୍ଜାତୀୟ ସୀମାରେଖା ଅତିକ୍ରମ କରି ଜାମ୍ମୁର କେତେକ ମାଇଲ୍ ଟପିଯାଇଥିଲା । ଭାରତ ଏହାର ଠିକଣା ଜବାବ ଦେଇଥିଲା । ଭାରତୀୟ ସେନା ପାକିସ୍ତାନର ବହୁ ଅଞ୍ଚଳ ଉପରେ ଚଢ଼ାଉକରି ବହୁ ଆମେରିକୀୟ ପ୍ୟାଟନ୍ ଟ୍ୟାଙ୍କ ଧ୍ୱଂସକରିଦେଇଥିଲେ ଏବଂ ପାକିସ୍ତାନର ଅଗ୍ରଗତି ରୋକିଦେଇଥିଲେ । ଇତିମଧ୍ୟରେ ଭାରତୀୟ ସୈନ୍ୟବାହିନୀ ଲାହୋର ପର୍ଯ୍ୟନ୍ତ ମାଡ଼ିଯାଇ ଲାହୋର ଅଧିକାର କରିଥିଲେ । ଭାରତୀୟ ବିମାନବାହିନୀଦ୍ୱାରା

ପେଶୱାର୍ ଓ ସରଗୋଦା ସାମୟିକ ବିମାନଘାଟି ଦୁଇଟି ଆକ୍ରାଂତ ହେବା ଫଳରେ ପାକ୍ ବିମାନବାହିନୀ ଅଚଳ ହୋଇଯାଇଥିଲା । ଭାରତ ମଧ୍ୟ ହାଜିପୀର୍ ପାସ୍ ଦଖଲ କରିନେଇଥିଲା । ଏହି ପାକ୍-ଭାରତ ଯୁଦ୍ଧ ୨୨ ଦିନ ପର୍ଯ୍ୟଂତ ଚାଲିଥିଲା । ଜାତିସଂଘର ନିରାପତ୍ତା ପରିଷଦରେ ଏ ବିଷୟ ଆଲୋଚିତ ହୋଇଥିଲା । ଜାତିସଂଘ ଦୁଇଦେଶକୁ ଯୁଦ୍ଧରୁ ବିରତ ହେବାପାଇଁ ନିର୍ଦ୍ଦେଶ ଦେଇଥିଲା । ୧୯୬୫ ସେପ୍ଟେମ୍ବର ୨୩ ତାରିଖରେ ଭାରତ ଓ ପାକିସ୍ତାନ ଜାତିସଂଘ ପ୍ରସ୍ତାବକୁ ଗ୍ରହଣ-କରିଥିଲେ ଏବଂ ଯୁଦ୍ଧରୁ ନିବୃତ୍ତ ହୋଇଥିଲେ ।

ରୁଷ୍ ପ୍ରଧାନମଂତ୍ରୀ କୋସିଜିନ୍ ଭାରତ ଓ ପାକିସ୍ତାନ ମଧ୍ୟରେ ବଂଧୁତ୍ୱ ସଂପର୍କ ଫେରାଇଆଣିବା ପାଇଁ ଆଂତରିକ ଉଦ୍ୟମ କରିଥିଲେ । ସେତେବେଳେ ଭାରତର ପ୍ରଧାନମଂତ୍ରୀ ଥିଲେ ଲାଲ୍‌ବାହାଦୁର ଶାସ୍ତ୍ରୀ । ଶାସ୍ତ୍ରୀଜୀ ଏବଂ ପାକିସ୍ତାନର ରାଷ୍ଟ୍ରପତି ଆୟୁବ୍ ଖାଁଙ୍କ ମଧ୍ୟରେ ରୁଷ୍‌ର ତାସ୍‌କେଂଟଠାରେ ୧୯୬୬ ମସିହା ଜାନୁୟାରୀ ମାସରେ ଏକ ଆଲୋଚନା ବୈଠକର ବ୍ୟବସ୍ଥା କରିଥିଲେ । ଶେଷରେ ଏକସପ୍ତାହବ୍ୟାପୀ ଆଲୋଚନା ପରେ ରୁଷ୍‌ର କୋସିଜିନ୍ ତାସ୍‌କେଂଟ୍‌ଠାରେ ୧୦-୧-୬୬ ତାରିଖରେ ଦୁଇ ଦେଶ ମଧ୍ୟରେ 'ତାସ୍‌କେଂଟ ରାଜିନାମା' ସ୍ୱାକ୍ଷରିତ ହୋଇଥିଲା । ଦୁଇପକ୍ଷ ନିଜ ନିଜ ବିବାଦ ଶାଂତିପୂର୍ଣ୍ଣ ଭାବରେ ଆପୋଷ-ମୀମାଂସାଦ୍ୱାରା ସମାଧାନ କରିବାକୁ ରାଜିହୋଇଥିଲେ । ୧୯୬୫ ଅଗଷ୍ଟ ୪ ତାରିଖର ସ୍ଥିତିକୁ ସୈନ୍ୟବାହିନୀ ଫେରିଯିବେ ବୋଲି ଦୁଇପକ୍ଷ ରାଜିହୋଇଥିଲେ ।*

**ଶାସ୍ତ୍ରୀଜୀଂକର ମହାପ୍ରୟାଣ –**

ସମଗ୍ର ବିଶ୍ୱର ଦୁର୍ଭାଗ୍ୟକୁ ଭାରତର ପ୍ରଧାନମଂତ୍ରୀ ଲାଲ୍‌ବାହାଦୁର ଶାସ୍ତ୍ରୀ ତାସ୍‌କେଂଟଠାରେ ୧୧.୧.୧୯୬୬ ତାରିଖରେ ହୃଦ୍‌ରୋଗରେ ଆକ୍ରାଂତ ହୋଇ ମୃତ୍ୟୁବରଣ କରିଥିଲେ । ସମଗ୍ର ମାନବଜାତି ଶାଂତି-ମୈତ୍ରୀର ଅଗ୍ରଦୂତ ଶାସ୍ତ୍ରୀଜୀଂକୁ ହରାଇ ଗଭୀର ଶୋକରେ ମ୍ରିୟମାଣ ହୋଇପଡ଼ିଥିଲା ।

**ବାଂଲାଦେଶର ଜନ୍ମ –**

୧୯୭୧ ସାଲ ଡିସେଂବର ମାସରେ ପୃଥିବୀର ମାନଚିତ୍ରରେ ଦେଖାଦେଇଥିଲା ଏକ ନୂତନ ଦେଶ– ବାଂଲାଦେଶ । ବାଂଲାଦେଶ ମୁକ୍ତି-ସଂଗ୍ରାମରେ ପାକ୍ ସୈନ୍ୟବାହିନୀ ସଂପୂର୍ଣ୍ଣ ପରାଜିତ ହୋଇଥିଲା । ପୂର୍ବ-ପାକିସ୍ତାନ 'ବାଂଲାଦେଶ' ନାମରେ ମାନବଜାତିକୁ ଅଭିନଂଦନ ଜଣାଇଥିଲା ।

**ବାଂଲାଦେଶ ଓ ମୁଁ –**

ବାଂଲାଦେଶ ସହିତ ମୋର ଚେତନାର ଯୋଗସୂତ୍ର ବହୁ ପୂର୍ବରୁ ସ୍ଥାପିତ ହୋଇଥିଲା । ମୁଁ କଲିକତାରେ ଚାକିରି କରୁଥିବାବେଳେ ଦୀର୍ଘ ୨୦ ବର୍ଷ ଭିତରେ ଅବିଭକ୍ତ ଭାରତର ଅଂଶ ପୂର୍ବବଂଗ କେତେ ଥର ଯାଇଛି । ପୂର୍ବବଂଗର ବହୁ

---

* N.K. Karmee

ନରନାରୀ, ପଲ୍ଲୀ, ସହର, ନଦନଦୀ ଓ ପାହାଡ଼ ପର୍ବତ ସଂଗେ ମୋର ପରିଚୟ ଥିଲା । ୧୯୪୭ ମସିହାରେ ଦେଶ-ବିଭାଜନ ପରେ ପୂର୍ବବଂଗ ପୂର୍ବ-ପାକିସ୍ତାନର ନାମ ନେଇ ପାକିସ୍ତାନର ଅଂଗୀଭୂତହୁଏ । କିଂତୁ ଏହାର ପ୍ରାକୃତିକ ପରିବେଶ ମୋ ମନରେ ଅଲିଭା ଦାଗ କାଟିଛି । ବାଂଲାଦେଶର ନଦୀମାନେ – ମେଘନା, କପୋତାକ୍ଷୀ, ମୟୂରାକ୍ଷୀ ମୋର ସ୍ମୃତିର ସହଚରୀରୂପେ ଆଜିଯାଏ ରହିଛଂତି ।

**ଭାଷା ଧର୍ମଠାରୁ ଅଧିକ ଶକ୍ତିଶାଳୀ –**

ପୂର୍ବ-ପାକିସ୍ତାନର ଅଧିକାଂଶ ଅଧିବାସୀ ମୁସଲମାନ ହେଲେ ମଧ୍ୟ ସେମାନେ ନିଜ ମାତୃଭାଷାରୂପେ ବଂଗଳା ଭାଷାକୁ ଗ୍ରହଣକରିନେଇଥିଲେ । ଘରେ ବାହାରେ ସେମାନେ ବଂଗଳାରେ କଥାବାର୍ତ୍ତା କରୁଥିଲେ । ସେମାନଂକ ସହିତ ପାକିସ୍ତାନର ନାଡ଼ିର ଯୋଗ ଶିଥିଳଥିଲା । ତା'ଛଡ଼ା ପାକିସ୍ତାନୀମାନେ ସେମାନଂକ ଉପରେ ନାନା ଅତ୍ୟାଚାର ଓ ଶୋଷଣ ଚଳାଇଥିଲେ । ଭଡ଼ାଟିଆ 'ବିହାରୀମାନଂକୁ' ଆଣି ସେମାନଂକ ଉପରେ ଅମାନୁଷିକ ନିର୍ଯାତନା ଓ ଲୁଣ୍ଠନ ଚଳାଇଥିଲେ । ପଶ୍ଚିମ ପାକିସ୍ତାନ ଓ ପୂର୍ବ-ପାକିସ୍ତାନ ମଧ୍ୟରେ ଆବେଗିକ ସଂହତି ଅତି କ୍ଷୀଣ ଥିଲା । ସେମାନେ ଖୁବ୍ ଶୀଘ୍ର ପାକିସ୍ତାନ କବଳରୁ ମୁକ୍ତ ହୋଇ ଏକ ସ୍ୱାଧୀନ ଦେଶ ଗଢ଼ିବାକୁ ସଂକଳ୍ପବଦ୍ଧ ଥିଲେ । କ୍ରମେ ଏହା ଏକ ସଂଗଠିତ ବିଦ୍ରୋହରେ ପରିଣତହୁଏ । ବାଂଲାଦେଶ ମୁକ୍ତି-ସଂଗ୍ରାମ କ୍ରମେ ବ୍ୟାପକ ଗଣସଂଗ୍ରାମ ଆକାର ଧାରଣକରେ ।

ବାଂଲାଦେଶର ଉଦାହରଣରୁ ଜାଣିହେବ ଯେ, ଧର୍ମ ଅପେକ୍ଷା ଭାଷା ଓ ସଂସ୍କୃତିର ପ୍ରଭାବ ଜନମାନସରେ କିଭଳି ପ୍ରବଳ ଓ ଗଭୀର । ଭାଷା ମଣିଷର ଅବଚେତନ ସହିତ ଜଡ଼ିତ । ଏହାର ଉତ୍ସ ମଣିଷର ମଗ୍ନଚୈତନ୍ୟରେ ନିହିତ ।

**ଭାରତର ସମସ୍ୟା –**

ବାଂଲାଦେଶ ମୁକ୍ତି-ସଂଗ୍ରାମ ଆରଂଭ ପରେ ଲକ୍ଷ ଲକ୍ଷ ନରନାରୀ ପୂର୍ବ-ପାକିସ୍ତାନ ଛାଡ଼ି ଭାରତକୁ ପଳାଇଆସଂତି । ପ୍ରାୟ ୬୦ ଲକ୍ଷ ଶରଣାର୍ଥୀ ଭାରତର ପଶ୍ଚିମବଂଗର ବିଭିନ୍ନ ସ୍ଥାନରେ, ବିଶେଷକରି କଲିକତା ଓ କଲିକତାର ଉପକଂଠ ଏବଂ ସୀମାଂତବର୍ତ୍ତୀ ଗ୍ରାମମାନଂକରେ ଆଶ୍ରୟ ଗ୍ରହଣ କରଂତି । କ୍ରମେ ଏହି ସଂଖ୍ୟା ୯୦ ଲକ୍ଷକୁ ସ୍ପର୍ଶକରିଥିଲା । ପ୍ରାୟ ଏକ କୋଟି ଦୁର୍ଗତ ଶରଣାର୍ଥୀଂକୁ ଆଶ୍ରୟ ଦେବା ଭାରତ ସରକାରଂକ ପକ୍ଷରେ ଏକ ଅସାଧ୍ୟ କାର୍ଯ ଥିଲା । ଭାରତର ପ୍ରଧାନମଂତ୍ରୀ ଇଂଦିରା ଗାଂଧୀ ପୃଥିବୀର ବିଭିନ୍ନ ଦେଶକୁ ଯାଇ ଭାରତର ସମସ୍ୟା ସଂବଂଧରେ ଆଲୋଚନା କରଂତି ଏବଂ ସେମାନଂକର ସକ୍ରିୟ ସାହାଯ୍ୟ କାମନା କରଂତି । ସେ ଇଂଲଣ୍ଡ୍, ଆମେରିକା ପ୍ରଭୃତିରେ ଭାରତ ସପକ୍ଷରେ ଜନମତ ସୃଷ୍ଟି କରିବାକୁ ଚେଷ୍ଟାକରଂତି । ସେ ସବୁ ଦେଶର ଜନନାୟକମାନଂକୁ ଭେଟି ଭାରତର ଜଟିଳ ସମସ୍ୟା ସଂବଂଧରେ ଅବହିତ କରଂତି । ମାତ୍ର ସେମାନେ ମୌଖିକ ସହାନୁଭୂତି ଦେଖାଉଥିଲେ ମଧ୍ୟ ବାସ୍ତବ

କ୍ଷେତ୍ରରେ ଭାରତର ସମସ୍ୟା ଲାଘବ କରିବା ଦିଗରେ ବିଶେଷ କିଛି କରିନଥିଲେ।

ଶେଷରେ ଭାରତୀୟ ସୈନ୍ୟମାନେ ପୂର୍ବ-ପାକିସ୍ତାନରେ (ବାଂଲାଦେଶ) ପ୍ରବେଶକରଂତି। ଭାରତୀୟ ସୈନ୍ୟମାନଂକର ପ୍ରତ୍ୟକ୍ଷ ହସ୍ତକ୍ଷେପଦ୍ୱାରା ବାଂଲା-ଦେଶର ମୁକ୍ତି ଫଉଜ ଅଧିକ ଶକ୍ତିଶାଳୀ ହୁଏ। ଶେଷରେ ପାକିସ୍ତାନର ପରାଜୟ ଘଟେ। ଇତିହାସରେ ମୁକ୍ତ ବାଂଲାଦେଶ ଆତ୍ମପ୍ରକାଶ କରେ। ଏହି ଗଣ-ସଂଗ୍ରାମରେ ଯେଉଁମାନେ ବଳିଷ୍ଠ ନେତୃତ୍ୱ ନେଇଥିଲେ, ସେମାନଂକ ମଧ୍ୟରେ ଶେଖ୍ ମୁଜିବୁର୍ ରହମାନ୍, ମୌଲାନା ଭାସାନୀ ପ୍ରଭୃତି ବିଶେଷ ଉଲ୍ଲେଖନୀୟ। ଶେଖ୍ ମୁଜିବୁର୍ ନୂତନ ବାଂଲାଦେଶର ପ୍ରଥମ ପ୍ରଧାନମଂତ୍ରୀ ହୁଅଂତି। ତାଂକୁ ଲୋକମାନେ 'ବଂଗବଂଧୁ' ବୋଲି ଅଭିହିତ କରୁଥିଲେ।

ବାଂଲାଦେଶ ମୁକ୍ତି-ସଂଗ୍ରାମ ସମୟରେ ମୁଁ ବହୁତ କବିତା ଓଡ଼ିଆରେ ଲେଖି କଲିକତାରୁ ପ୍ରକାଶିତ 'ନବରବି' ଏବଂ 'ଆସଂତାକାଲି' ପତ୍ରିକାରେ ପ୍ରକାଶକରିଥିଲି। ଏହା କଲିକତାର ବହୁ ବଂଗାଳୀ ପାଠକ-ପାଠିକା ଓ ମୁକ୍ତି-ସଂଗ୍ରାମବେଳେ ପୂର୍ବ-ପାକିସ୍ତାନରୁ ପଳାଇଆସି କଲିକତାରେ ଆଶ୍ରୟ ନେଇଥିବା ବୃଦ୍ଧିଜୀବୀଂକ ମହଲରେ ଆଲୋଡ଼ନ ସୃଷ୍ଟି କରିଥିଲା। ଏସବୁ କବିତା ସେତେବେଳେ ବଂଗଳା ଭାଷାରେ ଅନୂଦିତ ହୋଇ ଢାକାର 'ଅଳିଂଦ' ପତ୍ରିକାରେ ପ୍ରକାଶ ପାଇଥିବା ଏବଂ ସାରା ବାଂଲାଦେଶରେ ଚହଳପକାଇଦେଇଥିଲା। ମୋର ଏହିସବୁ କବିତା ସେତେବେଳେ ପାଠକରି ବହୁ ପୂର୍ବବଂଗୀୟ ଲେଖକ-ଲେଖିକା ଓ ପାଠକ-ପାଠିକା ମୁଗ୍ଧ ଓ ଉଦ୍‌ବୋଧିତ ହୋଇଥିଲେ। ଏହି କବିତାଗୁଡ଼ିକ ମଧ୍ୟରେ 'ରୋସନାରା', 'ମୁଜିବୁର ରହମାନ', 'ୟାହିୟା ଖାଁ' ଓ 'ଉପକଥା' ପ୍ରଭୃତି କବିତା ଆଜିପର୍ଯଂତ ପୂର୍ବବଂଗ ପାଠକମହଲରେ ସ୍ମରଣୀୟ ହୋଇ ରହିଛି। ଏହି କବିତାଗୁଡ଼ିକ ମୋର 'କବିତା-୧୯୭୧' ପୁସ୍ତକରେ ଗ୍ରଥିତ ହୋଇଛି।

କବିବଂଧୁ ସ୍ୱର୍ଗତ ବିବେକ ଜେନା ଏକ ପ୍ରବଂଧରେ ଲେଖିଥିଲେ ଯେ ମୋର 'ଉପକଥା' କବିତାରେ ମୋର କାବ୍ୟଧର୍ମ ଓ କାବ୍ୟତତ୍ତ୍ୱ ପ୍ରତିଫଳିତ ହୋଇଛି। ଏହା କେତେଦୂର ଠିକ୍ ତାହା ପାଠକପାଠିକାମାନେ ବିଚାର କରିବେ।

**'ଉପକଥା'**

''ସେ ଏକ ଅଦ୍‌ଭୁତ ମୁହଁ ଦେଖାଦେଲା
ଏକ ସାପ୍ତାହିକେ,
ଉପକଥା ଇଲାକାରୁ।
ଖଂଡାଧାର ପରି ଯା'ର ନାକେ
ଝରିପଡୁଥିଲା ମୁକ୍ତା-ଫଳ
ଉପଧାର ପରି, ଦୁଇ ତଟିନୀର।
ଏବଂ ପୁଣି ଲୋକକଥା, କିଛି ଇତିହାସ—

ଏକ କଳା ହ୍ରଦର କୁଆର
ମଂଡିଥିଲା ଯେ ମୁହଁକୁ ଅପୂର୍ବ ଆଲୋକେ
ବାଂଲାର ମୁହଁପରି।
ଅବା କେଉଁ ଦରଭୁଲା କାହାଣୀର
ଆର୍ଦ୍ର ଚାହାଣିରେ
ଫୁଟିଥିଲା ଯେଉଁ ମୁହଁ
ନବ ବସ୍ତ୍ରତଳେ।
ଅବ୍ୟକ୍ତ ଅଗୁରୁ ଗଂଧେ
କାଠର ଆଧାରେ
ଏବଂ କହୁଥିଲା ଯାହା ଏକ
ଯଂତ୍ରଣାର କଥା
ତା' ଆଖିର ମୁଦ୍ରିତ ଫଳକେ।
ହଠାତ୍ ସେ ଦେଖାଦେଲା
ଦିନେ ସାପ୍ତାହିକେ।
ମନେହେଲା, ଦୂର ଦେଶୁ ଛାଏଁ
ଉଡ଼ିଆସି କାହୁଁ କେଉଁ କପୋତୀଟିଏ
ଝରିପଡ଼ି ପଚେ ଏଠି ନିଃଶବ୍ଦେ ରାସ୍ତାରେ।
ଏବଂ ସେ ଛଂଚାଣଟା ହାଇମାରେ
ବସି ଦୂରେ ବଡିଖୁଂବ ପରେ।
ଗଂଗାଧାରେ, ଉଡ଼ି ଉଡ଼ି ଆସିଛି ଯେ ଦେପାଂତର ଦେଶୁ
ଅନୁସରି କେଉଁ ଏକ ଜାହାଜ-ମାସ୍ତୁଲ।
ଏବଂ ଆସି ଥକାମାରେ ଏଠି ଏଇ ଆଉଝରାମ ଘାଟେ।
ଏବଂ ଫେର୍ ଉଡ଼ିଯାଏ ଡେଣା ଝାଡ଼ି ଟିକିଏ ନିକଟେ
ଭଂଗାତୁଟା କ୍ଲାଇଭର କବଂଧ ଆଡ଼କୁ
ଆଖିର ପଂଝାରେ ରଖି ମୃତା କପୋତୀକୁ।
ସେ ଏକ ଅଦ୍ଭୁତ ମୁହଁ ଦେଖାଦେଲା
ଦିନେ ସାପ୍ତାହିକେ।
(ତା'ପରେ କୌଣସି ଦୈନିକେ)
ତା' ଆଖିର ଝରାପତ୍ରେ ବହୁ ବିହ୍ୱଳତା
ଉପକଥା ଇଲାକାରୁ ଆଣିଥିବା ଯଂତ୍ରଣାର କଥା
ସେ କେଉଁ ପବିତ୍ର ସୁରା
ତିକ୍ତେ ସ୍ୱାଦେ ଭରା।

ଲୋକକଥା ଦେଇଥିଲା ଯା'ରେ ଏକ ଅପୂର୍ବ ପୂର୍ଣତା।
ହଠାତ୍ ଯେ ଫିକା ଦେଖାଯାଏ
ଏ ରାସ୍ତାର ଚୌଡ଼ା ବୁକ୍‌ସ୍ଥଳେ।
ପ୍ରତ୍ୟହର ହଲେ
ଭୋର୍‌ର ଅପେରା ପରି।
ଏବଂ ସେ ଅଦ୍‌ଭୁତ ମୁହଁ
ହୁଏ ପୁଣି କଠିନୁ କଠିନ,
ଜଟିଳୁ ଜଟିଳତର ମମୀ ମୁହଁ ଭଳି।
ଏବଂ ମନେହୁଏ
ମହମରେ ଢଳା ଏକ ଛାଂଚରେ ତିଆରି
ସେ ଯେପରି କେଉଁ ଏକ ସ୍ମୃତିରହିଁ ଛାପା।
ଏବଂ ତା' ଭିତରେ ଫୁଟିଉଠେ ଖୁଣୀ ଆଖିପରି
ପରିଷ୍କାର, ସଫା
ସେ ଘାଉଆ ଜଖମୀ ଚିଲଟା
ପିଂଧି ଏକ ଝଲମଲ ଜରିର ମୁକୁଟ।
ଠିକ୍ ଯା' ସେ ମୁହଁର ଓଲଟା।'' ('କବିତା– ୧୯୭୧')

ମୋ 'ରୋସନାରା' କବିତାଟି ସମଗ୍ର ବାଂଲାଦେଶରେ ବେଶ୍ ଚାଂଚଲ୍ୟ ସୃଷ୍ଟି କରିଥିଲା। ସଂଗ୍ରାମରତ ବାଂଲାଦେଶ ଏହି କବିତାରୁ ଅପୂର୍ବ ପ୍ରେରଣା ପାଇଥିଲା କବିତାଟି ତଳେ ଦିଆଗଲା।

'ରୋସନାରା'

(ଢାକା ମହିଳା କଲେଜର ପ୍ରଥମ-ବାର୍ଷିକ କଳାଶ୍ରେଣୀର ଛାତ୍ରୀ ରୋସନ୍ନାରା ବେଗମ୍ ନିଜ ବୁକୁରେ ମାଇନ୍ ଖଂଜି ପାକ୍ ବାହିନୀର ଏକ ପ୍ୟାଟନ ଟ୍ୟାଂକ ଉପରେ ଝାଂପମାରି ସେ ପ୍ୟାଟନ୍ ଟ୍ୟାଂକଟାକୁ ଉଡ଼ାଇଦେବା ସଂଗେ ସଂଗେ ନିଜେ ମଧ ଛିନ୍‌ଛତ୍ର ହୋଇଯାଇଥିଲା।)

''ମୁଁ ତାର ଶବକୁ ଧରି କାଂଧେ ମୋର
  କରୁଅଛି ବିଶ୍ୱ ପ୍ରଦକ୍ଷିଣ,
ମୁଁ ଏକ ଉନ୍ମତ୍ତ ରୁଦ୍ର କାଂଧେ ମୋର ଦେହ ପ୍ରାଣହୀନ
ବୁଲେଁ ମୁଁ ନିଭୃତଚାରୀ ଏଠିସେଠି, ସମଗ୍ର ଭୁବନେ।
ଏସିଆର ଯଥେ ପଥେ ଆଫ୍ରିକାର ନିଘଂଚ ଅରଣ୍ୟେ।
  (ପୁଣି ଦକ୍ଷଯଜ୍ଞର ଅଂଗନେ)
ବିକଳ ନିଖିଳ ଧରା, ଖଂଡ ଖଂଡ ଅଗ୍ନିଶିଳା ଇଥର ଗଗନେ
  ଖସିପଡ଼ି ହୁଏ କକ୍ଷଚ୍ୟୁତ।

ମୋ ପାଦର ମୁଦ୍ରା କଂପେ, ହିମାଦ୍ରିର କଠିନ ଶିଳାଣେ ।
ମୋ ପରେ ତା' ହିମ ଦେହ, ମୁକ୍ତ ତାର ଦୀର୍ଘ ନୀଳ କେଶ,
ସର୍ବାଂଗ ମୋ ଛାଇଅଛି ଯେପରି ବା ସାପର ନିଶ୍ୱାସ ।
ଏବଂ ତା ଶିଥିଳ ହାତ ଝୁଲିପଡ଼ି ମୋର ପଛପଟେ
    ଦରପୋଡ଼ା ମାଟିର ଆଡ଼କୁ
ଛୁଟେ ମୋର ସଂଗେ ସଂଗେ ଯେଉଁପରି ପବନ-ଚାଳିତ,
ତାଳ ରଖେ ମୋ ଅସ୍ଥିର ପଦେ, ତାଳିମାରେ ଅଟ୍ଟହାସ୍ୟେ
    ତାର ଦୀର୍ଘ ବୁକୁ
ନିଭୃତ ଶବ୍ଦରେ ।
ଏବଂ ମୋତେ ଭୟତ୍ରସ୍ତ କରେ ।
ସ୍ଥିର ହୋଇ ଛିଡ଼ାହୋଇଯାଏଁ, ନିଜଛାଏଁ, କାକୁସ୍ଥ ଚକିତ ।
    (ରୁଦ୍ର ହୁଏ ପାଉଁଶଠୁ ବଳି ପରାହତ)
ଏବଂ ଶୁଣେ କିଛି ଶବ୍ଧ ନାଇ, ଝୁଣୁଝୁଣୁ ଅବଶିଷ୍ଟ କେତେ ପଟି କାଚ
ତାର କ୍ଷୀଣ ପଳିତ ହାତର, ଅବିରତ ଯାହା ବାଜୁଥିଲା ମୋର ନେପଥ୍ୟେ
ମୋର କାନେ କାନେ, ହଠାତ୍ ଯେ ମୌନ ହୋଇଯାଏ ।
ଏବଂ ତାର ବ୍ଲାଉଜର ସର୍ବଶେଷ ଅଂଶ
ଶାନ୍ତିହୀନ ଦେହୁ ଛିଂଡି ମୋତେ କରେ ପୁଣି ରୁଦ୍ଧଶ୍ୱାସ
    ତୀବ୍ର ଯଂତ୍ରଣାରେ ।
ମନେହୁଏ ଏକ ବଡ଼ ନୀଳ ସରୀସୃପ ସତେ ଅବା ତାର ଅକ୍ଟୋପାସ୍
ବଂଧନରେ ମୋତେ ଥରେ ବାଂଧିବାକୁ ଚାହେଁ ।
    (ପଳେ ପଳେ ମୃତ୍ୟୁର ପାଶରେ)
ଏବଂ ଶେଷେ ଢାଂକିହୋଇପଡ଼େ ମୁହିଁ ତାର ମହାନଗ୍ନତାରେ ॥

ଘୂରିବୁଲେଁ ଏଣେତେଣେ, ପବନେ ପବନେ,
ମେରୁରୁ ମେରୁକୁ, ଏକ ଶୃଙ୍ଗୁ ଅନ୍ୟ ଏକ ଶୃଙ୍ଗେ ।
ଏକ ନୀଳ ତରଂଗରୁ ଅନ୍ୟ ଏକ ନିଥର ତରଂଗେ ।
ୟୁରୋପର ହୃଦ୍‌ପିଂଡରୁ ଜାପାନ୍‌ର ଶ୍ୟାମଶସ୍ୟ ରଂଗେ ।
ପଚାରେଁ ମୁଁ କିଏ ନେବ ସୁରଭିତ ଏ ପବିତ୍ର ଦେହ ।
ଯାହାକୁ ମୁଁ କରିଛି ବହନ, ଯାହାକୁ ମୁଁ କରିଛି ଧାରଣ,
    ଯାହା ମୋର ଧର୍ମ, ଆୟୁ, ପ୍ରାଣ ।
କିଏ ନେବ କହ, କହ, କହ ।
ଏ ଶବ ଯେ ଭାରୀ ହୋଇଉଠେ ହିମାଳୟଠାରୁ,
ହୋଇପଡ଼େ ଏକାଂତ ଦୁର୍ବହ ।

ଯଦିଚ ତା' ଫୁଲଠୁ ଉଶ୍ବାସ ଏବଂ ମନେହୁଏ ତାହା ନାହିଁ।
ତାହା ମୋର ଏକ ଅଂଶ, ଏକଇ ମୋ କ୍ରୁଦ୍ଧ ଶ୍ବାସ।
କିଏ ନେବ ଏ ନାରୀର ଅଂଗ
କହ କହ ଅଂଗ, ବଂଗ, ମଗଧ, କଳିଂଗ,
  ଗାଂଧାର, ଦ୍ରାବିଡ଼।
କେ ଛୁଇଁବ ପରିପୂର୍ଣ, ମହତ୍ତର, ବୃହତ୍ତର ଏ 'ବାଂଲାଦେଶ'?
ଉତ୍ତର ଯେ ପାଏ ନାଇ, ଉତ୍ତର ଯେ ଯା'ର ନାଇ,
  ଚିରଦିନ ଏହା ଖାଲି ପ୍ରଶ୍ନ।
ଚିରଦିନ ଏହା ଖାଲି ଏକ ପଚାରିବା।
ଅଶାଂତ ଅବୁଝ କଂଠେ, ଅମାନିଆ ଓଠେ
  ବହୁ ତ୍ରସ୍ତ ଆଖିର ବେଙ୍କାରେ,
କେଉଁ ଜୈନ ସଂଶୟବାଦର,
  ଅବା ବୌଦ୍ଧ ଦୁଃଖବାଦ ସ୍ବରେ?
କିଂତୁ ମୋ ପ୍ରାଣରେ
ନୁହେ ସେ ସଂଦେହ ଚିହ୍ନ, ନୁହେ ସେ ତ ଦୁଃଖ,
ଆନଂଦର ଶିଖାପରି ସେ ଯେ ଜଳେ, ଜଳେ।
ସେଇ ଶବ ଆନଂଦ-ସ୍ବରୂପ।
ଦୁଃଖର ପ୍ରତିମା ନୁହେଁ, ସଂଶୟର ନୁହେଁ ଅଂଧକୂପ।
  ନୁହେଁ ତା' ଛାଉଣୀ ମୃତ୍ୟୁର।
ସେ ଯେପରି ମଣିଷର ଚିରକାଳ ନୂଆ ରୂପାଂତର।
ସେ ସେଇ ମୂହୂର୍ତ, ଯାହାଲାଗି ସମୟର ସମୁଚ୍ଚ ତୋରଣ
ମୂହୁର୍ମୂହୁଃ ଜାଗିରହେ, ସିଏ ଏକ ପ୍ରେମର ହରଫ୍
ମଣିଷକୁ ପରସ୍ପରେ ଏକତାର ସୂତ୍ରେ ବାଂଧିବାର।
  ଯୁଗେ ଯୁଗେ ଦେଶେ ଦେଶେ
  ସେ ଯେ ଉତ୍ତରଣ।
ଧର୍ମଠାରୁ ସେ ଯେ ବଡ଼, ଈଶ୍ବରକୁ ବଳି ବରାଭୟ,
ସେ ଯେ ଭାଷା, ସେ ପରା ବାଙ୍ମୟ।।
ତଥାପି ନୀରବ କିଆଁ? କହ କହ ହେ ନିଖିଳ ବିଶ୍ବ!
ଦାକ୍ଷିଣାତ୍ୟ ଓ ଉତ୍ତରଖଂଡ
କହ କହ ରୁଷ୍ ଓ ଇଂଲଂଡ,
ଯୁକ୍ତରାଷ୍ଟ୍ର ଓ ମୂକ ଫ୍ରାନ୍ସ।
ଏ ଶବରୁ ମୁକ୍ତ ମୋତେ କରିବ କି ନାଇ,

ଭରି ତୁମେ ଦେଇପାର ଗୋଟିଏ ନିଃଶ୍ୱାସ ଯେଉଁଥିରେ,
   ଏବଂ କରିପାର କିଛିଟା ଉଶ୍ୱାସ।
ତଥାପି ଉତର ନାଇଁ, ଛୁଟେ ମୁହିଁ ଉର୍ଦ୍ଧ୍ୱେ ମହାକାଶେ, ଗ୍ରହାଂତରେ-
ଏ କୃତଘ୍ନ ମଣିଷ ଜଗତ ବାହାରେ।
ଚଂଦ୍ରେ ଓ ମଂଗଳେ।
ବୁଧ ଆଉ ଦୂର ଶନିଶ୍ଚରେ।
ଶୁକ୍ରର ବଳୟେ, ସୂର୍ଯର କକ୍ଷରେ।
ଛୁଟେ ମହାକାଳେ,
କାଳାଂତରେ, କଳ୍ପାଂତ, ପରାର୍ଧେ, ପଦ୍ମ, ମନ୍ୱାଂତରେ
ମୋର ଗଣ ପଛେ ପଡ଼ିରହେ।
ଛୁଟେ ମୁହିଁ ଜନ୍ମଜନ୍ମାଂତରେ। ଅସତାର କୂଳେ।
ପୁଣି ଫେରିଆସେ ବିକଳଭୂଇଁରେ।
ଦଗ୍ଧ ମୃତ୍ତିକାରେ।
ଖସିପଡ଼େ ରୋସନାରା ଖଂଡ ଖଂଡ ହୋଇ।
ମୁଁ ପାରେନା ରକ୍ଷାକରି।
ନାଭି ତାର ଛିଡ଼ିପଡ଼େ
ପ୍ୟାରିସ୍‌ର ସହରତଳିରେ,
ନିର୍ବେଦ ଶ୍ରମିକବସ୍ତି ଅତଳ ଗଂଡରେ।
ଯୋନି ତାର ସଢ଼ି ଗଳେ ନ୍ୟୁୟର୍କ ସହରେ
(ଇଷ୍ଟ ନଦୀତୀରେ ଯେଉଁଠାବେ ଜାତିସଂଘ ପ୍ରାସାଦଟା ଥରେ।)
ଏବଂ ତାର ପଳିତ ଚିବୁକ
ଶାଗୁଣାକୁ ଫାଂକିଦେଇ ନୂଆଦିଲ୍ଲୀ ଗଣିକାପଡ଼ାରେ
ଖସିପଡ଼େ ଚାହିଁରହେ ମୁହିଁ ହତ୍‌ବାକ୍।
ତାର ନୀଳ କେଶଦାମ, ନିରଂଧ୍ର ଚିକୁର
ଛିନ୍ନଭିନ୍ନ ଚିରାଳର ସ୍ୱର୍ଣତଂତୁ ପରି
   ଗଳିପଡ଼େ ପେକିଂ ମହଲେ।
(ଯେଉଁଠି ୟାହିୟା ଖାଁ ବ୍ୟାଟେରୀରେ ଭରାଯାଏ ଦମ ହରଦମ୍)
ତାର ଶିଥିଳ ବାହୁ ଖସିପଡ଼େ ଉଲ୍‌କାଖଂଡ ପରି
   ରୁଷ୍‌ର ସୀମାଂତେ,
ଜଂଘ ପଡ଼େ ନୀଳ ନଦ ପ୍ରାଂତେ, ମୃତ ପ୍ୟାଗୋଡ଼ାର ତଳେ।
ଆଖି ତାର ଖସିପଡ଼ି ଦୀପ ପରି ଜଳେ,
ବହୁ ଦୂରେ କୁତବ ମିନାରେ।

ରୋସନାରା ଖଂଡ ଖଂଡ ହୁଏ ।
ସଢ଼େ ନାଇ କେବଳ ତା' ବୁକୁ,
  ସଢ଼େନାଇ ଦୁଇ ପୀନ ସ୍ତନ —
ଯେଉଁଠି ସେ ଖଂଞ୍ଜିଥିଲା ଲୁହାର ମାଇନ୍
ଯେଉଁଠି ସେ ରଖିଥିଲା ଲୁଚାଇ ତା' ଶେଷ ଅସ୍ତ୍ରଟିରେ,
କରିବାକୁ ସାମନା କମାଣ ଏବଂ ଶେଷ ଦୁସ୍‌ମନ ।
ସେ ସ୍ତନ ଯେ ଶୋଭାପାଏ ପଦ୍ମସୌରଭରେ
ନିର୍ଜୀବ କଂକାଳ ବୁକେ ମୋର, କାଂଧ ପରେ ।
ରୋସନାରା ! କମାଣର ମୁକାବିଲା
କରାଯାଏ କମାଣରେ ।
ପୁଣି ତାହାଛଡ଼ା ଆଉ ଏକ ମୁକାବିଲା କରାଯାଇପାରେ —
ଆତ୍ମବିଲୁପ୍ତିରେ, ନିଜର ସମଗ୍ର ସତ୍ତା ବିଛାଡ଼ି ଦେବାରେ
ନିଜର ବାହାରେ ।
ନିଜର ଓଜନ ଭୁଲି ହଜିଯିବାଦ୍ୱାରା ଅସତ୍ତାରେ ।
କରିଅଛ ତୁମେ ସେଇ ମୁକାବିଲା
ଭୁଲିଅଛ ନିଜ ଭାର
ସତ୍ତାର ଦଂଶନ
ତୁମ ଭାରେ କିଂତୁ ମୁହିଁ ଭାଂଗିପଡ଼େ
ଆଜୀବନ ।
ମୁଁ କବି, ମୁଁ ରୂପକାର
ମୋର ଏଠୁ ମୁକ୍ତି କାହିଁ ?
ଧୂଳିଶାୟୀ କରେ ମୋତେ ମୋର ଓ ତୁମର ଓଜନ
ଏବଂ ଏକ ଅସୀମ ଯଂତ୍ରଣା,
ଯହିଁ ପାଇଁ ତୁମେ ଦାୟୀ
କେବଳହିଁ ତୁମେ ।
ତୁମେ ମୋର ଶେଷ ବଂଦିଶାଳା,
ମୁହିଁ ତୁମ ଶେଷ ବଂଦୀ ସିନା ।          ('କବିତା – ୧୯୭୧')

ଏହି କବିତାର ବଂଗଳା ଅନୁବାଦ କରିଥିଲେ ମୈମନସିଂହ ବାଂଲାଦେଶ କୃଷି ବିଶ୍ୱବିଦ୍ୟାଳୟର ବଂଗଳା ଅଧ୍ୟାପକ ଅବ୍‌ଦୁଲ୍ ରହମାନ୍ । ଏହା ବାଂଲାଦେଶର 'ଅଳିଂଦ' ଓ ଅନ୍ୟାନ୍ୟ କେତେକ ପତ୍ରିକାରେ ପ୍ରକାଶ ପାଇଥିଲା ।

**ପାକ୍ ଶାସକମାନଂକର ଅକଥ୍ୟ ଅତ୍ୟାଚାର –**

ସ୍ୱାଧୀନ ବାଂଲାଦେଶ ପାଇବାପାଇଁ ପୂର୍ବ-ପାକିସ୍ତାନୀମାନଂକୁ ପାକ୍ ଶାସକଂକ

ହାତରେ ଅକଥ୍ୟ ଅତ୍ୟାଚାର ଭୋଗ କରିବାକୁ ପଡ଼ିଛି। ସେମାନଂକୁ ବହୁ କୁର୍ବାନୀ ଦେବାକୁ ହୋଇଛି। ଗଣହତ୍ୟା, ନାରୀଧର୍ଷଣ ଓ ନାରୀ-ଅପହରଣ ସେତେବେଳେ ପୂର୍ବ-ପାକିସ୍ତାନରେ ଦୈନଂଦିନ ଘଟଣା ଥିଲା। ଲକ୍ଷ ଲକ୍ଷ ନରନାରୀ ପାକ୍ ସୈନ୍ୟବାହିନୀ ଓ ପୁଲିସ୍ ଫଉଜ ଗୁଳିରେ ସହିଦ୍ ହୋଇଛଂତି। ଶିକ୍ଷିତ ଲୋକେ ପାକ୍ ଶାସନର ବିରୋଧ କରୁଛଂତି ବୋଲି ପାକ୍ ଶାସକମାନଂକର ବଦ୍ଧମୂଳ ଧାରଣାଥିଲା। ସେଥିପାଇଁ ପାକ୍ ଫଉଜ ଓ ପୁଲିସମାନଂକୁ ଶିକ୍ଷିତ ଲୋକଂକୁ ଖତମ୍ କରିବାପାଇଁ ଭିତିରି ଆଦେଶ ଦିଆଯାଇଥିଲା। ସେମାନେ ଢାକା ବିଶ୍ୱବିଦ୍ୟାଳୟ ହତାରେ ପଶି ବହୁ ନିରୀହ ପ୍ରଫେସର, ଅଧ୍ୟାପକ ଓ ଛାତ୍ରଛାତ୍ରୀ-ମାନଂକୁ ଅତି ନୃଶଂସ ଭାବରେ ହତ୍ୟାକରିଛଂତି।

୧୯୭୨ ମସିହା ଡିସେଂବର ମାସରେ ମୈମନସିଂଠାରେ ଅବସ୍ଥିତ ବାଂଲାଦେଶ କୃଷିବିଶ୍ୱବିଦ୍ୟାଳୟ ବାର୍ଷିକ ଉତ୍ସବରେ ମୁଖ୍ୟଅତିଥିଭାବେ ଯୋଗଦେବାପାଇଁ ଏବଂ ସେହି ଅବସରରେ ମୈମନସିଂଠାରେ ଅନୁଷ୍ଠିତ ସାରା ବାଂଲାଦେଶ ଛାତ୍ର-ସମ୍ମିଳନୀରେ ମୁଖ୍ୟ ଅତିଥିରୂପେ ଉଦ୍‌ବୋଧନ ଦେବାପାଇଁ ମୋତେ ଆମଂତ୍ରଣ କରାଯାଇଥିଲା। ମୁଁ ମୈମନସିଂରେ ପ୍ରାୟ ଏକ ସପ୍ତାହ ରହି କାର୍‌ଯୋଗେ କେତେକ ବଂଧୁଂକ ସହ ଢାକା ଯାଇଥିଲି। ସେଠାରେ ବଂଧୁମାନେ ମୋତେ ଢାକା ବିଶ୍ୱବିଦ୍ୟାଳୟକୁ ନେଇଯାଇ ଯେଉଁ ଯେଉଁ ସ୍ଥାନରେ ପ୍ରଫେସର୍ ଓ ବୁଦ୍ଧିଜୀବୀମାନଂକୁ ନୃଶଂସ ଭାବରେ ହତ୍ୟାକରାଯାଇଥିଲା, ସେ ସବୁ ସ୍ଥାନ ବୁଲାଇ ଦେଖାଇଥିଲେ। ଶିକ୍ଷିତ ଲୋକ କହିଲେ ପାକ୍ ପୁଲିସ୍ ମାଟ୍ରିକ୍ୟୁଲେସନ ପାଶ୍ କରିଥିବା ଲୋକଂକୁ ବୁଝୁଥିଲେ। ଏ ବିଷୟରେ ଏକ କୌତୂହଳଜନକ କଥା ମଧ୍ୟ ଶୁଣିଲି। ଥରେ ଜଣେ ଅଧ୍ୟାପକଂକୁ ପୁଲିସ୍‌ମାନେ ହତ୍ୟା କରିବାପାଇଁ ଧରିନେଇଯାଇଥିଲେ। ତାଂକୁ ପଚାରିଲେ – ତୁ ମାଟ୍ରିକ୍ୟୁଲେସନ ପାଶ୍‌କରିଛୁ ? ଅଧ୍ୟାପକଂକ ମୁଂଡରେ ଗୋଟାଏ ବୁଦ୍ଧି ଜୁଟିଗଲା; ସେ କହିଲେ – ମୁଁ ଏମ୍.ଏ. ପାଶ୍ କରିଛି। ପୁଲିସ୍ ହାବିଲ୍‌ଦାର୍ ତାଂକୁ ଛାଡ଼ିଦେବାପାଇଁ ହୁକୁମ ଦେଲେ। ମୋର ବାଂଲାଦେଶ ଅନୁଭୂତି କଥା ପରେ କହିବି।

**ମୁଜିବୁର୍ ରହମାନ୍ –**

ରକ୍ତତୀର୍ଥ ବାଂଲାଦେଶର ନେତା ଥିଲେ ମୁଜିବୁର୍ ରହମାନ୍। ମୁଁ ମୋର 'ମୁଜିବୁର୍ ରହମାନ୍' କବିତାର କେତେକ ଅଂଶ ତଳେ ଦେଲି। ତାଂକ ସହିତ ମୋର ଢାକାରେ ସାକ୍ଷାତ୍‌କାର ଓ ଆଲୋଚନା ହୋଇଥିଲା। ତାଂକୁ ଏ କବିତାର ଏବଂ 'ରୋସନାରା' କବିତାର ବଂଗଳା ଅନୁବାଦ ଅଧ୍ୟାପକ ରହମାନ୍ ପଢ଼ି ଶୁଣାଇଥିଲେ। ସେ 'ରୋସନାରା' କବିତାଟି ପୂର୍ବରୁ ବଂଗଳା ଭାଷାଂତର ମାଧ୍ୟମରେ ପଢ଼ିଥିଲେ ଏବଂ ସେଥିରୁ ଯଥେଷ୍ଟ ପ୍ରେରଣା ପାଇଥିଲେ ବୋଲି କହିଥିଲେ।

**'ମୁଜିବୁର୍ ରହମାନ୍'**

''ଏବେ ବି ଇଦ୍‌ର ଜହ୍ନ ତେରିଅଛି,

ରୌଦ୍ର-ଦଗ୍ଧ ଧୂ-ଧୂ କାରବଲା।
ସାକିନାର ମରୁତୃଷ୍ଣା କରିବାକୁ ଚାହେଁ ମୁକାବିଲା
ମଣିଷର ନିରୀହ ଖୁଣ୍ରେ।
ଚାଜା ଲହୁ ମୁକ୍ତ ମଣିଷର, ନୂତନ ବାଂଲାର।
ଯେ ଖୁଣ୍ରେ ନାମ ହିଁ କୁର୍ବାନି,
ସେ ଖୁଣ୍ରେ ନାମ ଇନ୍‌ସାନି।
ଯେଉଁ ଖୁଣ୍ ଗୋଟିଏ ଆହ୍ୱାନ–
ମସଜିଦ୍‌ର ଗଂବୁଜରୁ, ମିନାରୁ ମିନାରେ–
ଯେଉଁପରି ସଂଧ୍ୟାର ଆଜାନ୍।

× × × ×

ନୂତନ ବାଂଲା ଆସେ ଫୁଟି ଚଟଗାଁଓ
ଅସ୍ତ୍ରାଗାର ଚୂରି।
ଆଜାଦ୍‌ବାଂଲା ଆସେ ଛୁଟି
ଖେତ, ମାଠ, କାରଖାନା ଚିରି
କବ୍‌ଜା କରି ସହର ଓ ଗ୍ରାମ
ତାଲୁକା, ପ୍ରଗଣା, ଜିଲା, ମହକୁମା,
ଏକ ଆଲ୍ଲା, ଏକଇ ଈଶ୍ୱର,
ଏକଇ ଆକାଶ, ଏକ ଧରାତଳ, ଏକ ଭାଷା
(ସୟତାନ ଖାଲି ଭିନ୍ନ ଭିନ୍ନ
ଭିନ୍ନ ଭିନ୍ନ ଖାଲି ଦୁସ୍‌ମନ୍)
ସମଗ୍ର ବାଂଲାଦେଶ ସତେ ଅବା ଗୋଟିଏ ସଲାମ୍।
ସାତକୋଟି ମୁକ୍ତ ବୁକୁ ସତେ ଏକ ଜଂଗ୍,
ଗୋଟିଏ ସଂଗ୍ରାମ
ମୁଜିବୁର ଯା'ର ନାମାଂତର
ମୁଜିବୁର ଯା'ର ଖାସ୍ ନାମ।। ('କବିତା – ୧୯୭୧')

**ବାଂଲାଦେଶ ପରିଦର୍ଶନ – ବାଂଲାଦେଶ ମୋତେ ଭୁଲିନଥିଲା –**

୧୯୭୨ ମସିହା ଡିସେଂବର ଶେଷ ସପ୍ତାହରେ ମୈମନସିଂସ୍ଥ ବାଂଲାଦେଶ କୃଷିବିଶ୍ୱବିଦ୍ୟାଳୟର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥିରୂପେ ଭାଷଣ ଦେବାକୁ ମୋତେ ଉକ୍ତ ବିଶ୍ୱବିଦ୍ୟାଳୟର ବଂଗଳା ଭାଷା ଓ ସାହିତ୍ୟ ବିଭାଗର ପ୍ରଫେସର୍ ଅଲ୍ଲିନଓ୍ଵାଜ୍ ଆମଂତ୍ରଣ କରିଥିଲେ। ମୁଁ ଆନଂଦରେ ମୋର ସମ୍ମତି ଜଣାଇଥିଲି। ଏହାର କିଛିଦିନ ପରେ ସାରା ବାଂଲାଦେଶ ଛାତ୍ରସଂଘର ସଂପାଦକ ମୈମନସିଂଠାରେ ୧୯୭୩ ମସିହା ଜାନୁୟାରୀ ୩/୪ ତାରିଖରେ ଅନୁଷ୍ଠିତ ହେବାକୁ ଥିବା ସେମାନଂକର

ସମ୍ମିଳନୀରେ ମୁଖ୍ୟ ଅତିଥିରୂପେ ଯୋଗଦେବାକୁ ନିମଂତ୍ରଣ କରିଥିଲେ। ମୁଁ ସମ୍ମତି ଦେଇଥିଲି। ମୁଁ ଢାକା ବିମାନଘାଟୀରେ ପହଂଚି କାହାରିକି ଦେଖିଲିନାହିଁ। କୃଷିବିଶ୍ୱବିଦ୍ୟାଳୟର କୌଣସି ଲୋକ ମୋତେ ନେବାପାଇଁ ଢାକା ବିମାନଘାଟୀକୁ ଆସିନଥିଲେ। ମୋତେ ବଡ଼ ଆଶ୍ଚର୍ଯ ଲାଗିଲା। ମୁଁ ଢାକା ବିମାନଘାଟୀରୁ ପ୍ରଫେସର ନଓ୍ୱାଜ୍‌କୁ ଟେଲିଫୋନ୍ କରିଥିଲି। ସେ ବଡ଼ ଦୁଃଖିତ ହୋଇ କହିଲେ ଯେ ମୁଁ କେଉଁ ଫ୍ଲାଇଟ୍‌ରେ କେଉଁଦିନ ଢାକା ଯାଉଛି ତାହା ତାଂକୁ ଜଣାଇ ଯେଉଁ Air-mail ଚିଠି ଦେଇଥିଲି ସେମାନେ ତାହା ପାଇନାହାଂତି; ତେଣୁ ଢାକା ବିମାନଘାଟୀକୁ କାହାକୁ ପଠାଇ ନାହାଂତି। ସେ କହିଲେ ଦିନ ୩ଟା ବେଳେ ଗୋଟାଏ ଟ୍ରେନ୍ ଢାକାରୁ ମୈମନସିଂ ଆସିବ; ତେଣୁ ମୋତେ ସେଥିରେ ଚାଲିଯିବାକୁ ସେ ପରାମର୍ଶ ଦେଲେ। ସେମାନେ ମୈମନସିଂ ରେଲଷ୍ଟେସନରେ ମୋତେ ଅପେକ୍ଷା କରିବେ ବୋଲି କହିଲେ। ମୁଁ ସେହିପରି କରିବି ବୋଲି ସ୍ଥିର କଲି। ସେତେବେଳକୁ ଦିନ ପ୍ରାୟ ୧୨ଟା। ତିନିଘଂଟା ସମୟ ବିମାନଘାଟୀରେ ବସିରହିବା ବଡ଼ ବିରକ୍ତିକର। ସେ ଯାହାହେଉ, କିଛି ସମୟପରେ କଲିକତାରୁ ମୋ ସଂଗରେ ସେହି ବିମାନରେ ଆସୁଥିବା ମିଃ. ରହିମ୍ ନାମକ ଜଣେ ଭଦ୍ରଲୋକ ମୋଠୁ ସବୁକଥା ଶୁଣି ତାଂକ ସଂଗେ ତାଂକ ଘରକୁ ଯିବାକୁ ଡାକିଲେ। କହିଲେ, "ଆମାର୍ ବାଡ଼ିଟା ଏଇ କାଛେଇ, ଆମି ଆପ୍‌ନାକେ ଠିକ୍ ସମୟେ ଷ୍ଟେସନେ ପୌହଚିୟେଦେବ।" ମୁଁ ତାଂକ ସଂଗେ ତାଂକ ଘରକୁ ଗଲି। ସେଠାରେ ଖିଆପିଆ କରି କିଛି ସମୟ କଥାବାର୍ତା କରିବାପରେ ସେ ମୋତେ ନେଇ ଢାକା ରେଲଷ୍ଟେସନରେ ପହଁଚାଇଦେଲେ। ମିଃ. ରହିମ୍‌ଂକର ଦୁଇଝିଅ ଶାଂତିନିକେତନରେ ପଢୁଥିଲେ, ସେ ସେମାନଂକୁ ଦେଖିବାପାଇଁ ଯାଇଥିଲେ, କଲିକତାରୁ ବିମାନଯୋଗେ ଢାକା ଫେରୁଥାଂତି। ମୁଁ ଢାକା ରେଲଷ୍ଟସନକୁ ଯାଇ ସେଠାରୁ ଟ୍ରେନ୍ ଧରିଲି। ରାତି ପ୍ରାୟ ୮-୯ଟାରେ ମୈମନସିଂରେ ପହଂଚିଗଲି। ରେଲଷ୍ଟେସନ୍‌ରେ ପ୍ରଫେସର୍ ନଓ୍ୱାଜ୍ ଏବଂ ବହୁ ଅଧ୍ୟାପକ ଓ ଛାତ୍ର ମୋତେ ଅପେକ୍ଷା କରିଥିଲେ। ସେମାନେ ମୋତେ ଉଲ୍ଲସିତ ସଂବର୍ଦ୍ଧନା ଜଣାଇଲେ ଏବଂ ଫୁଲମାଳରେ ପୋତିପକାଇଲେ। ପ୍ରଫେସର୍ ନଓ୍ୱାଜ୍ ମୋତେ ଗାଡ଼ିରେ ନେଇ ତାଂକ କ୍ୱାଟର୍‌କୁ ଗଲେ। ମୁଁ କେଉଁଠି ରହିବି ବୋଲି ପଚାରିବାରୁ ସେ ମୋତେ ତାଂକ ଘରେ ରହିବାକୁ ଅନୁରୋଧକଲେ। ମୁଁ ମୈମିନସିଂରେ ଯେଉଁ ଏକ ସପ୍ତାହ ଥିଲି, ପ୍ରଫେସର୍ ନଓ୍ୱାଜଂକ ଘରେ ତାଂକ ଅତିଥି ରୂପେ ରହିଥିଲି। ଶ୍ରୀମତୀ ନଓ୍ୱାଜ ଏବଂ ତାଂକର ଦୁଇ କଲେଜ ଛାତ୍ରୀ କନ୍ୟା ମୋର ସମସ୍ତ କଥା ଟିକିନିଖି କରି ବୁଝୁଥାଂତି। ସେମାନେ ବାସ୍ତବିକ୍ ଖୁବ୍ ଖୁସି ହୋଇଥିଲେ।

**କୃଷି-ବିଶ୍ୱବିଦ୍ୟାଳୟର ବାର୍ଷିକଉତ୍ସବ : ମୁଖ୍ୟ-ଅତିଥିରୂପେ ଭାଷଣ –**

ତା' ପରଦିନ ସଂଧ୍ୟାବେଳେ ବାଂଲାଦେଶ କୃଷି-ବିଶ୍ୱବିଦ୍ୟାଳୟ ବାର୍ଷିକ

ଉତ୍ସବରେ ମୁଁ ବଂଗଳା ଭାଷାରେହିଁ ଭାଷଣଦେଇଥିଲି। ବାଂଲାଦେଶର ମୁକ୍ତି-ସଂଗ୍ରାମରେ ମୁଁ କିପରି ଆଗ୍ରହୀ ଥିଲି, ତାହା ମୋ ଭାଷଣରେ ସୂଚାଇଥିଲି। ଭାରତ ଓ ବାଂଲାଦେଶ ମଧ୍ୟରେ ସହୃଦୟତାର ସଂପର୍କ ଗଢ଼ି ଉଠିବା ଅପରିହାର୍ଯ୍ୟ ବୋଲି ମୁଁ ମତପ୍ରକାଶ କରିଥିଲି। ଭାରତ ବାଂଲାଦେଶ ମୁକ୍ତିସଂଗ୍ରାମରେ କିପରି ସକ୍ରିୟ ସାହାଯ୍ୟ କରିଛି, ତାହାର ସଂକ୍ଷିପ୍ତ ସୂଚନା ଦେଇ ଦୁଇଦେଶ ମଧ୍ୟରେ ସାଂସ୍କୃତିକ ସଂପର୍କ ଓ ଭାବଗତ ଆଦାନପ୍ରଦାନ ବ୍ୟାପକ ଓ ଦୃଢ଼ତର ହେବ ବୋଲି ଅଟଳ ବିଶ୍ୱାସ ପ୍ରକାଶକରିଥିଲି।

ସମ୍ମିଳନୀରେ ମୋର 'ରୋସନାରା' କବିତାର ବଂଗଳା ଅନୁବାଦ ବିଶ୍ୱବିଦ୍ୟାଳୟର ବଂଗଳା ଅଧ୍ୟାପକ ଅବଦୁଲ୍ ରହମାନ ଆବୃତ୍ତି କରିଥିଲେ। ସେ କବିତା ପଢ଼ିଲାବେଳେ ଦର୍ଶକମାନେ ଆନଂଦରେ ବିହ୍ୱଳ ହୋଇ ଘନଘନ କରତାଳି ଦେଇଥିଲେ। ପ୍ରଫେସର୍ ନୱାଜ, ଯିଏ କି ଏହି ଉତ୍ସବରେ ଅଧ୍ୟକ୍ଷତା କରିଥିଲେ, ଭାରତ ଓ ବାଂଲାଦେଶ ମଧ୍ୟରେ କିପରି ସାଂସ୍କୃତିକ ସୁସଂପର୍କ ରହିଆସିଛି, ତାହା ବର୍ଣ୍ଣନାକରିଥିଲେ। ସେ କହିଥିଲେ, ଦୁଇଦେଶ ମଧ୍ୟରେ ଭାବଗତ ସଂହତି ଚିରସ୍ଥାୟୀ ହେବ ବୋଲି ତାଂକର ଦୃଢ଼ ଆଶା ଓ ବିଶ୍ୱାସ।

ସମ୍ମିଳନୀ ପରେ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା। ସେଥିରେ ଏକ ଆଧୁନିକ ବଂଗଳା ନାଟକ ଅଭିନୀତ ହୋଇଥିଲା।

**ଛାତ୍ର-ସମ୍ମିଳନୀରେ ମୁଖ୍ୟ-ଅତିଥି—**

ତିନି ଚାରି ଦିନ ପରେ ମୈମନସିଂଠାରେ ସାରା ବାଂଲାଦେଶ ଛାତ୍ରସମ୍ମିଳନୀ ଆରଂଭ ହୋଇଥିଲା। ମୁଁ ସେଥିରେ ପ୍ରଧାନ ଅତିଥିରୂପେ ବଂଗଳାରେ ଭାଷଣ ଦେଇଥିଲି। ଛାତ୍ରମାନଂକ ମଧ୍ୟରେ ଐକ୍ୟ ଓ ଦେଶର ସ୍ୱାଧୀନତାକୁ ବଜାୟ ରଖିବା ପାଇଁ ଦୃଢ଼ସଂକଳ୍ପ ଜାତ ହେବା ଏକାଂତ ଆବଶ୍ୟକ ବୋଲି ମୁଁ କହିଥିଲି। ବାଂଲାଦେଶ ଆଜାଦ୍ ହେବା ଦିଗରେ ଯେଉଁ ଉତ୍ସର୍ଗୀକୃତ ମନୋବଳ ପ୍ରଦର୍ଶନ କରିଛି, ତାହା ସମଗ୍ର ବିଶ୍ୱ-ଇତିହାସରେ ବିରଳ ବୋଲି ମୁଁ ମତପ୍ରକାଶ କରିଥିଲି।

ଛାତ୍ରସଂଘର ସାଧାରଣ ସଂପାଦକ ଅନ୍ୟାନ୍ୟ ବିଷୟ ମଧ୍ୟରେ ଛାତ୍ରମାନେ ପରୀକ୍ଷାରେ କପି କରିବାରୁ ନିବୃତ୍ତ ହୁଅଂତୁ ବୋଲି ଏକ ପ୍ରସ୍ତାବ ଆଣିଥିଲେ ଏବଂ ତାହା ବିପୁଳ କରତାଳି ମଧ୍ୟରେ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା। ଆମ ଭାରତବର୍ଷରେ କୌଣସି ଛାତ୍ର-ସମ୍ମିଳନୀରେ ଛାତ୍ରମାନେ କପି କରିବା ବିରୁଦ୍ଧରେ ସ୍ୱର ଉଠାଇବାର ମୁଁ ଶୁଣିନଥିଲି; ତେଣୁ ବାଂଲାଦେଶ ଛାତ୍ରମାନଙ୍କର ଏଭଳି ମୂଲ୍ୟବୋଧ ମୋତେ ଖୁବ୍ ଆନଂଦ ଦେଇଥିଲା। ଏହି ସମ୍ମିଳନୀରେ ମୁଁ ଭାଷଣ ଦେବି ବୋଲି ସାରା ମୈମନସିଂ, ଢାକା ଏବଂ ଅନ୍ୟାନ୍ୟ ସହରମାନଂକରେ ପୂର୍ବରୁ ପ୍ରାଚୀରପତ୍ର ଯୋଗେ ଘୋଷଣାକରାଯାଇଥିଲା। ମୈମନସିଂରେ ସମ୍ମିଳନୀର ଦୁଇଦିନ ଆଗରୁ ଜିପ୍‌ରେ ମାଇକ୍ ଯୋଗେ ଏହା ପ୍ରଚାର କରାଯାଇଥିଲା।

**ଢାକା ପରିଦର୍ଶନ –**

ମୁଁ ମୈମନସିଂରୁ କାର୍ ଯୋଗେ ଢାକା ଯାଇଥିଲି । ମୋ’ ସଂଗରେ ଯାଇଥିଲେ ଅଧ୍ୟାପକ ଅବଦୁଲ୍ ରହମନ୍ ଏବଂ ଆଉ ଜଣେ ଅଧ୍ୟାପକ ଡଃ. ସମଜାନ୍ । ମୈମନସିଂରୁ ଢାକା ଯିବାବାଟରେ ବହୁତ ଧାନକ୍ଷେତ, ନଦୀ ଓ ଗଛବୃକ୍ଷ ପ୍ରଭୃତି ଆଖିରେ ପଡ଼େ । ଗଛବୃକ୍ଷ, ବିଲ, ତୋଟା, ସବୁ ଭାରତବର୍ଷ ପରି । ରାସ୍ତା ଦୁଇପଟେ ବହୁ ଆମ୍ବଗଛ, ଇଉକ୍ଲିପଟାସ ଗଛ ଦୃଷ୍ଟିରେ ପଡ଼ିଲା । ବାଂଲାଦେଶର ପ୍ରାକୃତିକ ଦୃଶ୍ୟ ଠିକ୍ ଭାରତବର୍ଷ ପରି ।

**ଭାସାନୀଂକ ସହିତ କିଛି ସମୟ –**

ଢାକା ଯିବା ବାଟରେ ସଂତୋଷ ପଡ଼ିଲା । ସଂତୋଷ ଏକ ଛୋଟ ସହର । ତାହା ଏକ ବଡ଼ ଜମିଦାରିର ସଦର ମହକୁମା । ସଂତୋଷର ରାଜବାଟୀ ବେଶ୍ ବଡ଼ ଏବଂ ଉଦ୍ୟାନ-ପରିବେଷ୍ଟିତ । ସଂତୋଷର ରାଜା ଅଧିକାଂଶ ସମୟ କଲିକତାରେ ରହୁଥିଲେ ।

ସଂତୋଷରେ ପହଂଚି ଆମେ ଭାବିଲୁ ସେଠାରେ ରହୁଥିବା ମୌଲାନା ଭାସାନୀଂକ ସହିତ ଦେଖାକରି ଯିବା । ଭାସାନୀ ଥିଲେ ବାଂଲାଦେଶ ମୁକ୍ତି-ସଂଗ୍ରାମର ଜଣେ ତୁଂଗ ନେତା । ସେ ଆଜାଦି ପରେ ବିରୋଧୀଦଳର ନେତା ଥିଲେ । ତାଂକ ବୟସ ୯୨ ବର୍ଷ ବୋଲି ସେ କଥାବାର୍ତ୍ତାରେ ପ୍ରକାଶକରିଥିଲେ । ଆମେ ଭାସାନୀଂକ ଘରେ ପହଞ୍ଚିଲୁ । ସେତେବେଳକୁ ଦିନ ପ୍ରାୟ ୧୧ଟା ହେବ । ଭାସାନୀଂକ ଘର କହିଲେ ଦୁଇ ବଖରା ଟିଣଛପର ଘର; ତାକୁ ସେ ‘ଇସଲାମୀୟ ବିଶ୍ୱବିଦ୍ୟାଳୟ’ ଆଖ୍ୟା ଦେଇଥିଲେ । ସାଇନ୍‌ବୋର୍ଡ଼ରେ ତାହା ମଧ୍ୟ ଲେଖାଥିଲା । ମୌଲାନା ଭାସାନୀ ଗୋଟାଏ ବଡ଼ ଖଟ ଉପରେ ବସିଥାଂତି । ସେହି ଖଟ ଉପରେହିଁ ତାଂକ ଖାଇବା ବାସନପତ୍ର ରଖାଯାଇଥାଏ । ସେ ଖଟ ଉପରେ ବସିହିଁ ଖାଉଥିଲେ ।

ଭାସାନୀଂକ କଥାବାର୍ତ୍ତାରୁ ପ୍ରବଳ ଭାରତ-ବିଦ୍ୱେଷ ଫୁଟି ଉଠୁଥାଏ । ସେ କହିଲେ, ବାଂଲାଦେଶର ସୈନ୍ୟବାହିନୀରେ ଏବେବି ବହୁ ଭାରତୀୟ ସୈନ୍ୟ ରହିଛଂତି । ଗ୍ରେ-ରଂଗର ୟୁନିଫର୍ମ ପିଂଧିଥିବା ସୈନ୍ୟମାନେ ପ୍ରାୟ ଭାରତୀୟ; ତେଣୁ ବାଂଲାଦେଶ ଆଜାଦ୍ ହୋଇଛିଁ ବୋଲି କହିବା ହାସ୍ୟକର । ବାଂଲାଦେଶ ଏବେ ଭାରତର ଉପନିବେଶରେ ପରିଣତ ହୋଇଯାଇଛି । ତା’ପରେ ସେ ଟିକିଏ ରହିଯାଇ ଆରଂଭ କଲେ – ଆମ ଦେଶର ମାଛସବୁ ଭାରତବର୍ଷ ନେଇଯାଉଛି । ଆମ ଦେଶରେ ମାଛର ଦର ଭୀଷଣ ବଢ଼ିଚାଲିଛି . . . ଇତ୍ୟାଦି ଇତ୍ୟାଦି ।

ତାଂକର ଜଣେ ଲୋକ ଆମ ହାତରେ ଗୋଟାଏ ବଡ଼ ଅମୃତଭଂଡ଼ାର ଫାଳେ ଆଣି ଧରାଇଦେଲା । ଆମେ ଦୁଇ ପାପୁଲିରେ ମଧ୍ୟ ତାକୁ ଧରି ରଖିପାରୁନଥିଲୁ । ସେ ଯାହାହେଉ, ଆମେ ତାକୁ କୌଣସିମତେ ଖାଇ ମୁହଁ

ହାତ ଧୋଇ ତାଂକ ପାଖେ ବସିଲୁ। ଅଧ୍ୟାପକ ରହମାନ୍ ମୋର 'ରୋସନାରା' କବିତାର ବଂଗଳା ଅନୁବାଦ ତାଂକୁ ଓ ତାଂକ ପାଖରେ ଥିବା ଲୋକମାନଂକୁ ପଢ଼ି ଶୁଣାଇଲେ। କବିତାଟି ଶୁଣି ସେ କହିଲେ, 'ଭାଲୋ ହଏଛେ'। ଆମେ ତାଂକଠାରୁ ବିଦାୟ ନେଇ ଢାକା ଅଭିମୁଖେ ଯାତ୍ରାକଲୁ।

**ଢାକାରେ ଏକ ସପ୍ତାହ –**

ପ୍ରଫେସର୍ ସମଜାନଂକ ମାମୁ-ପୁଅ ଭାଇ ଜନାବ୍ ଲତିଫଂକ ଘରେ ଅତିଥି ହୋଇ ରହିଲୁ। ଢାକା ବିଶ୍ୱବିଦ୍ୟାଳୟର ଅନେକ ସ୍ଥାନ ଯେଉଁଠାରେ କେତେକ ପ୍ରଫେସରମାନଂକୁ ଗୁଳିକରି ପାକ୍ ସୈନ୍ୟ ଓ ପୁଲିସ୍ ବାହିନୀ ମାରିଥିଲେ, ତାହା ସବୁ ଦେଖିଲି। ନଦୀକୂଳରେ ଥିବା କେତେକ ବଂକର ଭିତରକୁ ବଂଧୁମାନେ ନେଇଗଲେ। ସେଠାରେ ସ୍ତ୍ରୀଲୋକମାନଂକର ହାତକାଚ ଓ ଶଂଖାର ଭଂଗା ଅଂଶ ପଡ଼ିଥିବାର ଦେଖିଲି। ବଂଧୁମାନେ କହିଲେ, ବହୁ ନାରୀଂକୁ ମଧ୍ୟ ସେମାନେ ହତ୍ୟାକରିଛଂତି।

ସଂଜବେଳେ ବଜାରକୁ ଗଲେ ଦୂରରୁ ବଂଧୁକର ଆୱାଜ୍ ଶୁଣାଯାଉଥିଲା। ଆମେ ଭୟରେ ପାଖ ଦୋକାନ ଭିତରେ ପଶିଯାଉଥିଲୁ। ମୁଁ ଢାକା ରେଡ଼ିଓ ଓ ଟେଲିଭିଜନ୍ କେନ୍ଦ୍ରରୁ ଦୁଇଟି କବିତା ଆବୃତି କରିଥିଲି। ରାତି ପ୍ରାୟ ୧୦ଟାବେଳେ ପ୍ରତିଦିନ ବ୍ୟାଂକ୍ ଲୁଟ୍ ଓ ବିମାନ ହାଇଜାକ୍ ହେଉଥିଲା। ମୁଜିବୁର ରହମାନ୍ ଥରେ ଏକ ଜନସଭାରେ କହିଥିଲେ "ଆପନାରା ଜାରା ହାଇଜାକ୍ କରଛେନ୍, ବ୍ୟାଂକ୍ ଲୁଟ୍ କରଛେନ୍, ଆମି ତାଦେର୍ ବଂଧୁ ନୟି। ଆମାକେ ବଂଗ-ବଂଧୁ ବଲବେନ୍ ନା।"

**ମୁଜିବୁରଂକ ସହିତ ସାକ୍ଷାତ –**

ଦିନେ ଦୁଇଦିନ ପରେ ଆମେ ମୁଜିବୁରଂକ ସହିତ ତାଂକ ସରକାରୀ ବାସଭବନରେ ସାକ୍ଷାତ କରିଥିଲୁ। ସଂଧ୍ୟା ହୋଇଆସୁଥାଏ। ମୁଜିବୁର୍ ଓ ତାଂକ ଜଣେ ଦି'ଜଣ ବଂଧୁ ମୋତେ ଅଭ୍ୟର୍ଥନା କରି ତାଂକ ପାଖରେ ସୋଫା ଉପରେ ବସାଇଲେ। ତାଂକ ସହିତ ବହୁ ବିଷୟରେ କଥାବାର୍ତା ହେଲା। ଅଧ୍ୟାପକ ରହମାନ 'ରୋସନାରା' କବିତାର ବଂଗଳା ଅନୁବାଦ ଓ 'ମୁଜିବୁର ରହମାନ' କବିତାର ବଂଗାନୁବାଦ ପଢ଼ି ଶୁଣାଇଲେ। ସେ କହିଲେ, ମୁଁ 'ରୋସନାରା' କବିତାଟି ପୂର୍ବରୁ ପଢ଼ିଥିଲି, ସେଥିରୁ ପ୍ରଚୁର ପ୍ରେରଣା ପାଇଥିଲି। ଏହା ବାଂଲାଦେଶର ମୁକ୍ତିସଂଗ୍ରାମୀମାନଂକୁ ବିଶେଷ ଅନୁପ୍ରାଣିତ କରିଥିଲା।

ତା'ପରେ ସେ କହିଲେ, "ଭାରତ ଆମାଦେ ଯଥେଷ୍ଟ ସାହାଯ୍ୟ କରେଛେ। ଭାରତ ସାହାଯ୍ୟ ନାକରେଲୋଓ ଆମାରା ଜିତ୍‌ତୁମ। ତବେ ଏକ୍‌ଟୁ ଦେରି ହୋତୋ।" ତା'ପରେ ସେ ମୁକ୍ତିଯୁଦ୍ଧରେ ଭାରତର ସାହାଯ୍ୟ ଚାହିଁବା ପାଇଁ ଏବଂ ସେ ବିଷୟରେ ଆଲୋଚନା କରିବା ପାଇଁ କିପରି ଢାକାରୁ ଭାରତର

ଅଗରତାଲା ଯାଇଥିଲେ, ତାହା ବର୍ଣ୍ଣନାକରିଥିଲେ। ତା'ପରେ କହିଥିଲେ, ମୁଁ ସେହି ରାତିରେହିଁ ଢାକା ଫେରିଆସିଲି ଏବଂ ଢାକାରେ ଗିରଫ ହେଲି। ଢାକାରେ ସେହି ରାତିରେ ଗିରଫ ହୋଇନଥିଲେ, ସେମାନେ ହୁଏତ ମୋତେ ଶତ୍ରୁପକ୍ଷ ସହିତ ସଂପର୍କ ରଖିଛି ବୋଲି ଖତମ୍ କରିଦେଇଥାଂତେ।

ଏହିପରି ଅନେକ କଥା ସ୍ମୃତିଚାରଣ କରି ସେ କହିଲେ। ଆମକୁ ଚା' ଓ ଜଳଖିଆ ଦେଇ ଭଲଭାବେ ଆପ୍ୟାୟିତକଲେ।

**ବାଂଗଲା ଆନ୍ତର୍ଜାତିକ ଏକାଡ଼େମୀ ସେମିନାର –**

୧୯୭୫ ମସିହାରେ ଢାକାସ୍ଥିତ ବାଂଲା ଏକାଡେମୀର ଆମଂତ୍ରଣକ୍ରମେ ଏକ ଆତର୍ଂଜାତିକ ସେମିନାରରେ ସମ୍ମାନିତ ଅତିଥିରୂପେ ଯୋଗଦେବା ପାଇଁ ଅନ୍ୟ କେତେକ ପ୍ରମୁଖ ସାହିତ୍ୟିକ ବଂଧୁଂକ ସହ ଢାକା ଯାଇଥିଲି। ମୋ ସହିତ ଯାଇଥିଲେ ଡଃ ସୁନୀତି କୁମାର ଚାଟାର୍ଜୀ (ନ୍ୟାସ୍‌ନାଲ୍ ପ୍ରଫେସର୍), ଅନ୍ନଦା ଶଂକର ରାୟ, ମୈତ୍ରେୟୀ ଦେବୀ, ଜରାସଂଧ ଓ ମନୋଜ ବସୁ ପ୍ରଭୃତି। ସେମିନାରରେ ଦୁଇବେଳା କାର୍ଯବ୍ୟସ୍ତ ଥିବାରୁ ମୁଁ ସେଥର ମୁଜିବୁର ରହମାନଂକ ସଂଗେ ସାକ୍ଷାତ କରିପାରିଲିନାହିଁ। ତାର ଅଳ୍ପ କେତେମାସ ପରେ ବିଦ୍ରୋହୀ ସୈନ୍ୟଂକ ଗୁଳିରେ ସେ ନିହତ ହୁଅଂତି।

**ଦ୍ୱିତୀୟବାର ବାଂଲାଦେଶଯାତ୍ରା –**

ପୂର୍ବ-କଥିତ ଅନୁସାରେ ମୁଁ ଢାକାସ୍ଥିତ ବାଂଲା ଏକାଡେମୀ ଆମଂତ୍ରଣ କ୍ରମେ ଅନ୍ୟ କେତେକ ସାହିତ୍ୟିକଂକ ସହ ବାଂଲାଦେଶ ଯାଇଥିଲି। ଏହି ସେମିନାର ପ୍ରାୟ ଏକ ସପ୍ତାହ ଚାଲିଥିଲା।

ଆମେ ସମସ୍ତେ ଢାକାରେ ଏକ ଗେଷ୍ଟ ହାଉସ୍‌ରେ ରହିଥିଲୁ। ବାଂଲା ଏକାଡେମୀର ସାଂପାଦିକା ନୀଳିମା ରହମାନ୍ ଏହି ଆତର୍ଂଜାତିକ ସେମିନାରର ପରିଚାଳନା ଦାୟିତ୍ୱ ନେଇଥିଲେ। ସେମିନାରର ପ୍ରଥମଦିନ ମୁଁ ସମ୍ମାନିତ ଅତିଥିରୂପେ ବୌଦ୍ଧ ଚର୍ଯାପଦ ବା ଦୋହାଁ ସଂବଂଧରେ କହିଥିଲି ଯେ, ଏହାକୁ ଢାକା ବିଶ୍ୱବିଦ୍ୟାଳୟର ପ୍ରଫେସର ସାଧୁଦୁଲ୍ଲା ପ୍ରମୁଖ ପ୍ରାଚୀନ ବଂଗଳା ଭାଷାରେ ରଚିତ ବୋଲି ସେମାନଂକର ପୁସ୍ତକରେ ଲେଖିଛଂତି। ମାତ୍ର ଏହା ପ୍ରାଚୀନ ବଂଗଳା ନୁହେଁ; ଏହାକୁ ବଂଗଳା, ଓଡ଼ିଆ, ମାଗଧୀ ପ୍ରଭୃତି ସବୁ ପୂର୍ବଭାରତୀୟ ଭାଷାର ଆଦିରୂପ କୁହାଯିବା ଉଚିତ ଓ ବିଜ୍ଞାନସମ୍ମତ। ଦୋହାଁଗୁଡ଼ିକ ରଚିତ ହେଲାବେଳେ ବଂଗଳା, ଓଡ଼ିଆ ପ୍ରଭୃତି ଭାଷାର ଜନ୍ମ ହୋଇନଥିଲା। ସମଗ୍ର ପୂର୍ବଭାରତରେ ଏକହିଁ ଭାଷା ପ୍ରଚଳିତ ଥିଲା; ଯାହାକୁ ପୂର୍ବପ୍ରାକୃତ କୁହାଯାଉଥିଲା। ତେଣୁ ଏହାକୁ ପ୍ରୋଟୋ ବେଂଗଲୀ ବା ପ୍ରୋଟୋ ଓଡ଼ିଆ କହିବା ଅସମୀଚୀନ। ସେତେବେଳେ ସମଗ୍ର ପୂର୍ବଭାରତରେ ଗୋଟିଏ ଲିପି ମଧ୍ୟ ପ୍ରଚଳିତ ଥିଲା। ବଂଗଦେଶ ଓ ଆସାମ ପ୍ରଭୃତି ସେହି ଲିପିକୁ ଧରି ରଖିଲେ। ୧୨୦୦ ଶତାବ୍ଦୀ

ବେଳକୁ ଓଡ଼ିଆ ଲିପି ଅଲଗା ହୋଇ ଭିନ୍ନ ଆକାର ଧାରଣକଲା। ବୌଦ୍ଧ ଚର୍ଯାପଦର କେତେ ଜଣ କବି ଓଡ଼ିଆ ଥିଲେ, ଯଥା— କାହ୍ନୁପା ପ୍ରଭୃତି। ମୁଁ ଓଡ଼ିଆ ଓ ବଂଗଳା ଭାଷାମଧ୍ୟରେ ଥିବା ସାମଂଜସ୍ୟଦେଖାଇଥିଲି। ବାଂଲାଦେଶ ଏବଂ ଭାରତ ମଧ୍ୟରେ ସାଂସ୍କୃତିକ ଐକ୍ୟ ଦୃଢ଼ତର ହେବା ଉଚିତ ବୋଲି ମୁଁ ମୋ ଭାଷଣରେ କହିଥିଲି। ସେ ଅଧିବେଶନରେ ଅଧ୍ୟକ୍ଷତା କରୁଥାଂତି ବାଂଲାଦେଶ ସରକାରଂକର ସଂସ୍କୃତି-ମଂତ୍ରୀ। ସେ ତାଂକ ଅଭିଭାଷଣରେ ମୋ ଯୁକ୍ତିକୁ ସମର୍ଥନ କରିଥିଲେ।

ସଭା ଶେଷ ହେବାପରେ ସ୍ୱର୍ଗତ ପ୍ରଫେସର ସାଧୁଦୁଲ୍ଲାଂକର ଜ୍ୟେଷ୍ଠପୁତ୍ର ମୋ ସଂଗେ ସାକ୍ଷାତ କରିଥିଲେ। ମୁଁ ଯାହା କହିଲି, ତାହାହିଁ ଠିକ୍ ବୋଲି ସେ ତାଂକ ମତ ପ୍ରକାଶକଲେ। ସେ ମୋତେ ତାଂକ ପିତା ପ୍ରଫେସର ସାଧୁଦୁଲ୍ଲାଂକର କେତେ ଖଂଡ଼ି ବହି ଉପହାରଦେଲେ।

**ଢାକାବିଶ୍ୱବିଦ୍ୟାଳୟ ଛାତ୍ରୀନିବାସରେ ମୋର ଭାଷଣ —**

ଢାକା ବିଶ୍ୱବିଦ୍ୟାଳୟର ମହିଳା କଲେଜ ଛାତ୍ରୀ-ନିବାସ ୟୁନିୟନର ସଭାନେତ୍ରୀ କୁମାରୀ ରୋକେୟା ବେଗମ୍ ମୋତେ ତାଂକ ଛାତ୍ରୀ-ନିବାସର ଏକ ସଭାରେ ଭାଷଣ ଦେବାପାଇଁ ସାଦରେ ନିମଂତ୍ରଣ କରିଥିଲେ। ମୁଁ ସେଠାରେ ଭାଷଣ ଦେଇଥିଲି। ସେଠାରେ ଛାତ୍ରୀମାନେ ମୋର ଉଲ୍ଲସିତ ସଂବର୍ଧନା କରିଥିଲେ।

ସେମାନେ ପୂର୍ବରୁ ମୋର 'ରୋସନାରା' କବିତା ପ୍ରଭୃତି ପାଠକରି ବିଶେଷ ଅନୁପ୍ରାଣିତ ହୋଇଥିଲେ ଏବଂ ମୋତେ ଜାଣିଥିଲେ। ସଭା ଆରଂଭ ହେବା ପୂର୍ବରୁ ମୁଁ କିଛି ସମୟ ଛାତ୍ରୀନିବାସରେ କଟାଇଥିଲି। ମୁଁ ରୋକେୟାଂକୁ ରୋସନାରା ବିଷୟରେ ପଚାରିଲି— ''ସେ ତମ କଲେଜରେ ତ ପଢୁଥିଲା, ଛାତ୍ରୀ-ନିବାସରେ ଅଂତେବାସିନୀ ଥିଲା କି?'' ରୋକେୟା ଓ ତାଂକ ସଂଗିନୀମାନେ କିଛି କହିପାରିଲେନାହିଁ। ସେମାନେ ନିରୁତ୍ତର ରହିବା ଦେଖି ମୋର ଟିକିଏ ସଂଦେହହେଲା। ମୁଁ ସେମାନଙ୍କୁ ବାରଂବାର ରୋସନାରା ବିଷୟରେ ପଚାରିଲି; ମାତ୍ର କିଛି ଉତ୍ତର ପାଇଲିନାହିଁ।

ମୁଁ ଛାତ୍ରୀମାନଙ୍କର ଶାଢ଼ି ଦେଖି କ୍ଷୁବଧ ହେଲି। ସେ ଶାଢ଼ି ସବୁ ପ୍ରାୟ ମଶାରି ଜନାପରି। ମୁଁ ଜଣେ ଅଧ୍ୟାପିକାଂକୁ ସେ ବିଷୟରେ ପଚାରିବାରେ ସେ କହିଲେ, ଏସବୁ ଶାଢ଼ି ଭାରତୀୟ ବେପାରୀମାନେ ଆମ ଦେଶରେ ବିକୁଛଂତି। ଆଜାଦି ପରେ ଭାରତୀୟ ବେପାରୀମାନେ ବାଂଲାଦେଶ ବଜାରକୁ ଅଧିକାର କରି ବସିଥିଲେ। ଆମ ଦେଶର ଅର୍ଥଗୃଧ୍ନୁମାନଂକର ମୁନାଫା ଶିକାର ବାଂଲାଦେଶରେ ଉତ୍କଟ ହୋଇଉଠିଥିଲା। ଫଳରେ ବାଂଲାଦେଶର ଜନମତ ଭାରତ-ବିରୋଧୀ ହୋଇଉଠୁଥିଲା।

ମୁଁ ସେ ସଭାରେ ସ୍ୱାଧୀନତା ସଂଗ୍ରାମରେ ବାଂଲାଦେଶୀ ନାରୀମାନଂକର ଅପୂର୍ବ ଆତ୍ମତ୍ୟାଗ ଏବଂ ଆତ୍ମବଳିଦାନର ଭୂୟସୀ ପ୍ରଂଶସା କରି ଭାଷଣ ଦେଇଥିଲି।

ବାଂଲାଦେଶକୁ ଯେଉଁ ଭାରତୀୟ ବଣିକମାନେ ଚରାଭୂଇଁ ମନେକରି ଶୋଷଣ କରୁଛନ୍ତି, ସେମାନଂକର ନିଂଦାକରିଥିଲି। ଏହା ଏକ ଆତ୍ମଘାତୀ କାର୍ଯ ବୋଲି ମତ ବ୍ୟକ୍ତ କରିଥିଲି। ସଭାରେ ରୋକେୟା ବେଗମ୍ ସଭାପତିତ୍ୱ କରିଥିଲେ। ସେ ତାଂକ ଭାଷଣରେ ବାଂଲାଦେଶରେ ନାରୀ କିପରି ପାକ୍ ବର୍ବରତାର ମୁକାବିଲା କରିଛି ଏବଂ ଆଜାଦିର ସଂଗ୍ରାମରେ କିପରି ଆତ୍ମବଳି ଦେଇଛି; ତାହା ଉଲ୍ଲେଖ କରିଥିଲେ। ସେ ମୋର କେତେକ କବିତାରୁ ଉଦ୍ଧୃତିମାନ ମୁଁ କିପରି ବାଂଲାଦେଶର ମୁକ୍ତିସଂଗ୍ରାମରେ କାବ୍ୟିକ ସମର୍ଥନ ଅକୁଣ୍ଠଚିତ୍ତରେ ଢାଳିଦେଇଛି, ତାହା ବର୍ଣନା କରିଥିଲେ।

ତା' ପରିଦିନ ମୁଁ ନୀଳିମା ରହମାନଂକୁ ରୋସନାରା ବିଷୟରେ ପଚାରିଲି। ସେ ଟିକେ ଗଂଭୀର ହୋଇଯାଇ କହିଲେ, 'ହୟତ ରୋସନାରା ବଲେ କେ ଛିଲୋନା; ମାତ୍ର ଆପନାର କବିତା ସବାଇକେ ଅଦ୍‌ଭୂତ ପ୍ରେରଣା ଦିଏଛେ।''

ମୁଁ କହିଲି, ''ମୁଁ 'ଅମୃତବଜାର-ପତ୍ରିକା'ରେ ପ୍ରକାଶିତ ଏକ ସଂବାଦରୁ ରୋସନାରାର ଆତ୍ମବଳିଦାନ ବିଷୟ ଜାଣିଥିଲି। ସେ ଢାକା ବିଶ୍ୱବିଦ୍ୟାଳୟର ମହିଳା କଲେଜର ପ୍ରଥମ ବାର୍ଷିକ କଳାଶ୍ରେଣୀର ଛାତ୍ରୀ ଥିଲା ବୋଲି ସଂବାଦରେ ପ୍ରକାଶପାଇଥିଲା। ଏହା କିପରି ମିଛ ହୋଇପାରେ ?'' ନୀଳିମା ନିରୁତ୍ତର ରହିଲେ।

ସଭାରେ ନହେଉ ପଛକେ ଅସଭାରେ ରୋସନାରା ଗୋଟାଏ ଜାତିକୁ ଅଦ୍‌ଭୁତ ପ୍ରେରଣା ଦେଇଯାଇଛି। ଦେଶପାଇଁ ତାର ଆତ୍ମବଳିଦାନ ବାସ୍ତବରେ ହେଉ ବା କଳ୍ପନାରେ ହେଉ, ସଂଗ୍ରାମୀ ଜନତାକୁ ଏକ ନୂତନ ଉନ୍ମାଦନାରେ ସଂଜୀବିତ କରିଚାଲିଛି।

**ମୁଜିବୁରଂକ ତିରୋଧାନ –**

ମୁଁ ସେଥର ବାଂଲା ଏକାଡେମୀଦ୍ୱାରା ଆହୂତ ଆଂର୍ତଜାତିକ ସେମିନାର୍‌ରେ ଭୀକ୍ଷଣ ବ୍ୟସ୍ତ ରହିଲି। ପ୍ରାୟ ସମସ୍ତ ସପ୍ତାହ ସେମିନାର୍‌ରେ କଟିଗଲା। ମୁଁ ମୁଜିବରଂକୁ ସାକ୍ଷାତ୍ କରିବାକୁ ଚାହୁଁଥିଲି; ମାତ୍ର ସମୟ ପାଇଲିନାହିଁ। ଏହାର କେତେ ମାସପରେ ମୁଜିବୁର ବିଦ୍ରୋହୀ ସୈନ୍ୟଂକ ଗୁଳିମାଡ଼ରେ ନିହତ ହୁଅଂତି। ବିଦ୍ରୋହୀମାନଂକର ନେତୃତ୍ୱ ନେଇଥିଲେ କର୍ଣେଲ ଡାଲିମ୍। ମୁଜିବୁରଂକୁ ହତ୍ୟାକରି ସେମାନେ ଦେଶଛାଡ଼ି ପଳାଇଲେ। କେତେକ ବିଦେଶୀ ଶକ୍ତିର ହାତ ଏହି ଜଘନ୍ୟ ହତ୍ୟାପଛରେ ଥିବାର ସଂଦେହ କରାଯାଏ।

---

# ଊନଚତ୍ୱାରିଂଶ ଉଲ୍ଲାସ

**କେଂଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତି :**
**'ଅମୃତବଜାର ପତ୍ରିକା'ରେ ପତ୍ରକାରିତା :**
**ଦିଗଂତ ପତ୍ରିକା ପ୍ରକାଶନ :**
**କେଂଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ :**

୧୯୬୨ ମସିହା ପାଇଁ ମୁଁ ମୋର କବିତା ସଂକଳନ ('କବିତା ୧୯୬୨') ନିମଂତେ କେଂଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇବାକୁ ଯୋଗ୍ୟ ମନୋନୀତ ହେଲି । ଏହି ଘୋଷଣାଟି ବିଭିନ୍ନ ଖବରକାଗଜରେ ପଢ଼ି ମୁଁ ଏବଂ ମୋର ସ୍ତ୍ରୀ ଖୁବ୍ ଆନଂଦିତ ହୋଇଥିଲୁ । ଏହି ପୁରସ୍କାର ୧୯୬୪ ମସିହାରେ ଉପରାଷ୍ଟ୍ରପତି ଭବନରେ ଦିଆଯାଇଥିଲା । ସେତେବେଳେ ଡକ୍ଟର ଜାକୀର ହୋସେନ୍ ଭାରତର ଉପରାଷ୍ଟ୍ରପତି ଥାଂତି । ସେ ପୁରସ୍କୃତ ଲେଖକମାନଂକୁ ଏକ ତାମ୍ରଫଳକ ଏବଂ ତା ସହିତ ଏକ ପ୍ରମାଣପତ୍ର ପ୍ରଦାନ କରିଥିଲେ । ସେଥିରେ ୧୯୬୨ ମସିହାରେ ପ୍ରକାଶିତ ମୋର କବିତା ଗ୍ରଂଥର (''କବିତା ୧୯୬୨'') ସାହିତ୍ୟିକ ବୈଶିଷ୍ଟ୍ୟ ଓ ଉତ୍କର୍ଷ ଉଲ୍ଲିଖିତ ହୋଇଥିଲା । ''କବିତା ୧୯୬୨'' ଆଧୁନିକ ଓଡ଼ିଆ କବିତାରେ ଏକ ଯୁଗାଂତକାରୀ ସୃଷ୍ଟି ବୋଲି ସୁଧୀ ସମାଲୋଚକବୃନ୍ଦ ମତ ପ୍ରକାଶ କରିଥିଲେ । ଶଂସିତ କବିତାଗୁଡ଼ିକରେ ଚିତ୍ରକଳ୍ପ, ପ୍ରତୀକ ତଥା ମିଥ୍ ଆଦିର ସଫଳ ପ୍ରୟୋଗ କରାଯାଇଥିଲା ବୋଲି ସେମାନଂକର ସୁଚିଂତିତ ମତ ଥିଲା । ଏହି କବିତା ପୁସ୍ତକ ଶେଷରେ ୧୬୫ ପୃଷ୍ଠାବ୍ୟାପୀ ଏକ ପ୍ରବଂଧ ସଂଶ୍ଲିଷ୍ଟ ହୋଇଥିଲା । ଏଥିରେ ଆଧୁନିକ କବିତାର ରୂପରେଖ, ଐତିହାସିକ ପୃଷ୍ଠପଟ ଏବଂ ପୁରୋଦୃଷ୍ଟି ସଂବଂଧରେ ଏକ ବସ୍ତୁନିଷ୍ଠ ଆଲୋଚନା କରାଯାଇଥିଲା ।

ଆଧୁନିକ ଓଡ଼ିଆ କବିତାର ମୂଳଦୁଆ 'ପାଂଡୁଲିପି' ପକାଇଥିଲା । 'କବିତା ୧୯୬୨' ସେହି ଭିତ୍ତି ଓ ଭୂମିକାକୁ ସୁଦୃଢ଼ ଓ ସୁପ୍ରତିଷ୍ଠିତ କରିଥିଲା ।

କାବ୍ୟିକ ରୀତି ସହିତ ବାକ୍-ରୀତିର ସମନ୍ୱୟ ସାଧନ ଏବଂ ୧୯୦୦ ଶତକୀୟ କବିତାର ବର୍ଣ୍ଣନାତ୍ମକ ଶୈଳୀର ବାକ୍-ବାହୁଲ୍ୟ ପରିବର୍ତ୍ତେ ଚିତ୍ରକଳ୍ପ ଓ ପ୍ରତୀକ ମାଧ୍ୟମରେ କାବ୍ୟିକ ବ୍ୟଂଜନା ସୃଷ୍ଟି କରିବା ଏହି କବିତାଗୁଡ଼ିକର ଲକ୍ଷ୍ୟ ଓ ଲକ୍ଷଣ ଥିଲା ।

**ସଂବର୍ଦ୍ଧନା ସଭା :**

ମୁଁ କେଂଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇବାରେ ପ୍ରଥମ ଓଡ଼ିଆ କବି ଥିଲି । ଏହା ପୂର୍ବରୁ ଅବଶ୍ୟ କେତେଜଣ ଓଡ଼ିଆ ଲେଖକ ଗଦ୍ୟରଚନା ନିମଂତେ ଏହି ପୁରସ୍କାର

ପାଇଥିଲେ, ମାତ୍ର କବିତା ପାଇଁ କେହି ପାଇନଥିଲେ। କଟକର ଶ୍ରୀରାମଚଂଦ୍ର ଭବନରେ କେତେକ ସାହିତ୍ୟିକ ବଂଧୁଂକ ଦ୍ୱାରା ଏକ ମନୋଜ୍ଞ ସଂବର୍ଧନା ସଭାର ଆୟୋଜନ କରାଯାଇଥିଲା। ଏଥିରେ ବହୁ ବିଶିଷ୍ଟ ସାହିତ୍ୟିକ ଯଥା – ଡଃ ହରେକୃଷ୍ଣ ମହତାବ, କାଳିଂଦୀ ଚରଣ ପାଣିଗ୍ରାହୀ, ବୈକୁଂଠନାଥ ପଟ୍ଟନାୟକ, କାଳିଚରଣ ପଟ୍ଟନାୟକ, ସୁରେଂଦ୍ର ମହାଂତି, ଡଃ କୁଂଜ ବିହାରୀ ଦାଶ, ଅଧ୍ୟାପକ ପଠାଣୀ ପଟ୍ଟନାୟକ, ଅଧ୍ୟାପକ ଗୋପାଳଚଂଦ୍ର ମିଶ୍ର, ଡଃ ଶ୍ରୀରାମଚଂଦ୍ର ଦାସ, ଡଃ ସଦାଶିବ ମିଶ୍ର ପ୍ରମୁଖ ଯୋଗଦେଇଥିଲେ ଏବଂ ମୋ ସାହିତ୍ୟକୃତି ଉପରେ ଭାଷଣମାନ ଦେଇଥିଲେ।

**ବିରୋଧୀ ସଭା :**

ଏହାର ପ୍ରାୟ ଏକ ମାସ ପରେ କେତେକ ଲେଖକବଂଧୁ କଟକ ଶ୍ରୀରାମଚଂଦ୍ର ଭବନରେ ଏକ ବିରୋଧୀସଭାର ଆୟୋଜନ କରିଥିଲେ। ଏହି ସଭାର ନାମ ଥିଲା ''ସ୍ୱୟଂ ସଂବର୍ଧନା ସଭା''। ମୋତେ ଟିକେ ବିରୋଧ ଓ ବିଦ୍ରୁପ କରିବା ଏମାନଂକର ଲକ୍ଷ୍ୟ ଥିଲା, ଏହି ସଭାର ଉଦ୍ୟୋକ୍ତାମାନେ ଥିଲେ ରବି ସିଂ, ରବିନାରାୟଣ ମହାପାତ୍ର, ମୁରାରି ମୋହନ ଜେନା ଓ ନଗେନ୍ ବେଉରିଆ। ପ୍ରଚାରପତ୍ରରେ ଏହି ଚାରିଜଣଂକର ନାମ ଛପା ଯାଇଥିଲା। ଏମାନଙ୍କର ପ୍ରୋତ୍ସାହନଦାତା ଥିଲେ ଫତୁରାନଂଦ। ସେମାନେ ମଂଚ ଉପରେ ନିଜ ନିଜ ପ୍ରତିକୃତି ସ୍ଥାପନକରି ସେଥିରେ ପୁଷ୍ପମାଲ୍ୟ ଚଢ଼ାଇଥିଲେ। ଏମାନଂକୁ ସଭାସ୍ଥଳରେ ଆତ୍ମହତ୍ୟା କରିବାପାଇଁ ଫତୁରାନଂଦ ଏକ ପାଳଦଉଡ଼ି ଉପହାର ଦେଇଥିଲେ। ମଜା ଦେଖିବାପାଇଁ କେତେକ ଦର୍ଶକ ମଧ୍ୟ ଉପସ୍ଥିତ ଥିଲେ। ଅଥଚ, ମୋର ସଂବର୍ଧନା ସଭା ପାଇଁ ଯେଉଁ ପ୍ରଚାରପତ୍ର ବଂଟାଯାଇଥିଲା, ସେଥିରେ ମଧ୍ୟ ଏହି ପାଂଚଜଣଯାକ ସ୍ୱାକ୍ଷର କରିଥିଲେ। ସେ ସଭା ଡାକିବାରେ ମଧ୍ୟ ଏମାନେ ଉତ୍ସାହର ସହିତ ଲାଗିପଡ଼ିଥିଲେ। ତେଣୁ ଏହି ବିରୋଧୀସଭା ଡାକିବାର ଉଦ୍ଦେଶ୍ୟ କ'ଣ କିଛି ବୁଝିହେଲା ନାହିଁ। ମୁଁ ଏମାନଂକର ସ୍ୱବିରୋଧୀ କାର୍ଯ୍ୟକୁ କଟାକ୍ଷ କରି ଯେଉଁ ସଂପାଦକୀୟ ଟିପ୍ପଣୀ ''ଦିଗଂତ'' ପତ୍ରିକାର ''ଯତ୍ର, ତତ୍ର, ସର୍ବତ୍ର'', ସ୍ତଂଭରେ ପ୍ରକାଶ କରିଥିଲି, ତାହା ପଢ଼ି ଅଗଣିତ ପାଠକପାଠିକା ମୋତେ ପତ୍ର ଲେଖି ସେମାନଂକର ହାର୍ଦ୍ଦିକ ଆନଂଦ ଓ ଅଭିନଂଦନ ଜଣାଇଥିଲେ। ସେହି ଲେଖାଟି ତଳେ ଦିଆଗଲା।

**ଯତ୍ର, ତତ୍ର, ସର୍ବତ୍ର (''ଦିଗଂତ ପତ୍ରିକା'')**

ଜାନୁଆରୀ-ଫେବୃଆରୀ, ୧୯୬୬

**ସ୍ୱୟଂବର ସଭା :**

ସହରର ସଦାଚାରୀ (ସଂଖ୍ୟାରେ ସର୍ବଦା ଚାରି) ସାହିତ୍ୟିକ ଏକ ସ୍ୱୟଂ-ସଂବର୍ଧନା ବା ସ୍ୱୟଂବର ସଭା ସୁଚାରୁରୂପେ ସଂଗଠନ କରିଥିଲେ। ସଂଧ୍ୟା ସମୟରେ ସାହିତ୍ୟପୀଠ ଶ୍ରୀରାମଚଂଦ୍ର ଭବନରେ ଏହା ସଫଳତାର ସହିତ ସଂଘଟିତ ହୋଇଥିଲା। ସମାବେଶରେ ସଭାପତି, ସୁବକ୍ତାମାନଂକୁ ଛାଡ଼ି ସପ୍ତଦଶ ସୁଂଗ୍ୟ ସଜ୍ଜନ ସମୁପସ୍ଥିତ ଥିଲେ।

ସ୍ୱାମୀ ଫତୁରାନଂଦ ସରସ୍ୱତୀ ସୁମନମାଲ୍ୟ ସ୍ଥାନରେ ସ୍ୱହସ୍ତରେ ଶୁଖିଲା ଘାସର ଦଉଡ଼ି ସଜାଡ଼ି ପଦାଚାରୀମାନଂକ ସୁଗ୍ରୀବରେ ସଂସ୍ଥାପନ କରି ସେମାନଂକର ସୁରକ୍ଷା କାମନା କରିବା ସଂଗେ ସଂଗେ ସ୍ରୋତସ୍ୱିନୀ ସନ୍ନିକଟ ଶାଳ୍ମଳି ଶାଖାରେ ତାହା ସଂଲଗ୍ନ କରି ସେଥିରେ ଝୁଲିପଡ଼ି ସ୍ୱର୍ଗବାସୀ ହେବା ସକାଶେ ସଂକେତ ଦେଇଥିଲେ । ପଦାଚାରୀମାନେ ସର୍ବପ୍ରଥମେ ସ୍ୱ ସ୍ୱ ପ୍ରତିକୃତିରେ ସୁବାସିତ ସୁମନ ମାଲ୍ୟ ସମର୍ପଣ କରିସାରି ସୁଗଂଧତୈଳ ମର୍ଦନ କରିଥିଲେ, ଏବଂ ସାଷ୍ଟାଂଗ ହୋଇଥିଲେ । ସେଥିଉତ୍ତାରୁ ସଜୋରେ ସହସ୍ର କଂଠ ସର୍ପରାଜ ସଦୃଶ ସ୍ୱକୀୟ ପ୍ରଶସ୍ତିପୂର୍ଣ ସଂବର୍ଧନାପତ୍ରମାନ ପାଠକରି ସମସ୍ତଂକୁ ସ୍ତଂଭିତ କରିଦେଇଥିଲେ ।

ସୁଖର କଥା, ସଭାରେ ଷାଠିଏବର୍ଷାଧିକ କେତେକ ସାବାଳକ ସାହିତ୍ୟିକ ସାଗ୍ରହେ ସାମିଲ ହୋଇ ସଦାଚାରୀମାନଙ୍କୁ ସାଂତ୍ୱନା ଓ ସମ୍ମାନସୂଚକ ସଂଭାଷଣଦ୍ୱାରା ସିକ୍ତ କରିବା ସଂଗେ ସଂଗେ ସଭାସ୍ଥଳ ସରଗରମ କରିଥିଲେ ।

(ସ୍ୱକୀୟ ସ୍ୱତଂତ୍ର ସଂବାଦଦାତା)
''ଦିଗଂତ'' ଜାନୁଆରୀ-ଫେବୃଆରୀ''

x x x x x

''କଟକରେ ସ୍ୱ-ସଂବର୍ଧନା ସଭାର ସଂଗଠକମାନେ ଯେଉଁ ପଦ୍ୟ ଦୃଷ୍ଟାନ୍ତ ଦେଖାଇଲେ ତାହା ସ୍ୱକୀୟ ମୌଳିକତାରେ ଅନନ୍ୟ । ଏହା ଏକପ୍ରକାର ଯୁଗାଂତକାରୀ ପ୍ରହସନ । ଗତ ଦୁଇ ତିନି ବର୍ଷ ମଧ୍ୟରେ କଟକ ସହରରେ ପ୍ରତିଭାପୂଜା ଉଦ୍ଦେଶ୍ୟରେ କୌଣସି ବିଶେଷ ଉପଲକ୍ଷରେ ଯେତେ ବଡ଼ଧରଣର ସଂବର୍ଧନା ସଭା ହୋଇଯାଇଛି, ସେଥିରେ ଏଇ ସଂଗଠକମାନଂକ ମଧ୍ୟରୁ ଅଧିକାଂଶ ହିଁ ଅଗ୍ରଭୂମିକାରେ ଅବତୀର୍ଣ ହୋଇଛଂତି । ନିଜର ଓ ଅନ୍ୟ ବିଶିଷ୍ଟବ୍ୟକ୍ତିଂକର ନାମଲିଖିତ ହାଂଡବିଲ୍ ଓ ନିମଂତ୍ରଣ ପତ୍ର ଛପାଇ ଘରେ ଘରେ ବୁଲି ବାଂଟିବାଠାରୁ ଆରଂଭକରି ସଭାମଂଡପ ସଜାଇବା ଏବଂ ଅଭ୍ୟର୍ଥନା ସଭାରେ ବଜ୍ରକଂଠରେ ବକ୍ତୃତା ଦେବା ଏବଂ ସେସବୁକୁ ଖବରକାଗଜରେ ଛପାଇବାପର୍ଯ୍ୟଂତ ସବୁକାମରେ ଆଗୁଆହୋଇ ବାହାରିଛଂତି । କେହି କେହି ପୁଣି ପୁସ୍ତକମାନ ଉତ୍ସର୍ଗ କରି 'ଅତି ଭକ୍ତି ଚୋରର ଲକ୍ଷଣ' ପ୍ରମାଣ କରିଛଂତି । ସେ ସକ୍ରାଂତ କାଗଜପତ୍ର, ପୁସ୍ତକ ଓ ଖବରକାଗଜ ବିବରଣୀ ଏବେ ମଧ୍ୟ ମହଜୁଦ୍ ଥିବ । ବର୍ତ୍ତମାନ କୌଣସି କାରଣରୁ ସ୍ୱାର୍ଥକୁ ସୁହାଉନଥିବାରୁ ସେମାନେ ହଠାତ୍ ଭଲେଇହୋଇ ଏବଂ ସ୍ୱର ବଦଳାଇ ଏଇ ଯେଉଁ ସଦାଚାରୀ ଅଭିନୟ ଆରଂଭ କରିଛଂତି ଏବଂ ଦେଶଟା ଆତ୍ମପ୍ରଚାରରେ ବୁଡ଼ିଗଲାଣି ବୋଲି ଇଂଗିତ କରିଛଂତି ଏବଂ କେହି କେହି ଶୀତାର୍ତ 'ସ୍ମରଣିକା' ଛପାଇ ହୃତ୍‌କଂପ ପ୍ରକାଶ କରୁଛଂତି, ସେଥିରେ ଯଥେଷ୍ଟ ବିଦୂଷକତା ଥିଲେ ମଧ୍ୟ, ହୋଲି ଦିନ ଛଡ଼ା ଅନ୍ୟସମୟରେ ତା'ର କୌଣସି ସାହିତ୍ୟିକ ବା ସାମାଜିକ ମୂଲ୍ୟ ଅଛି କି ? ଏମାନଂକ ପାଇଁ ଏକ ସ୍ୱତଂତ୍ର ସଂବର୍ଧନା ସାଧାରଣଂକ ପକ୍ଷରୁ ହେବା ଦରକାର ।''

(''ଦିଗଂତ'')
(ଜାନୁଆରୀ-ଫେବୃଆରୀ, ୧୯୬୬)

**'ଅମୃତବଜାର ପତ୍ରିକା'ରେ ସ୍ତଂଭଲେଖା :**

ମୁଁ ୧୯୭୨ ମସିହାରେ କଲିକତାରୁ ପ୍ରକାଶିତ ଇଂରାଜୀ ଦୈନିକ 'ଅମୃତବଜାର ପତ୍ରିକା'ରେ ପ୍ରାୟ ଏକବର୍ଷ ରବିବାର ସଂଖ୍ୟାରେ "In and around Orissa" ଶୀର୍ଷକରେ ଏକ ସ୍ତଂଭ ଲେଖୁଥିଲି । ପ୍ରତି ରବିବାର ସଂଖ୍ୟାରେ ଏହା ପ୍ରକାଶ ପାଉଥିଲା । ଏଥିରେ ଓଡ଼ିଶାର ପ୍ରାଚୀନ କୀର୍ତ୍ତି ଓ ମହାନ୍ ଐତିହ୍ୟ ଏବଂ କେବେ କେବେ ସାଂପ୍ରତିକ ରାଜନୀତିକ ଓ ସାମାଜିକ ସ୍ଥିତି ଉପରେ ମୁଁ ଏକ ଲେଖା ଲେଖୁଥିଲି । କେବେକେବେ ଏହି ସ୍ତଂଭର ଶୀର୍ଷକ "Orissa News Letter" ବୋଲି ପ୍ରକାଶ ପାଉଥିଲା । କେଦାରଗୌରୀ ମଂଦିରର ତୋରଣ, ଯାହାକୁ ଫର୍ଗୁସନ "gem of Indian architecture" (ଭାରତୀୟ ସ୍ଥାପତ୍ୟର ରତ୍ନ) ବୋଲି କହିଥିଲେ ତାହା ଉପରେ ଏକ ସଚିତ୍ର ପ୍ରବଂଧ ଏହି ସ୍ତଂଭରେ ଲେଖିଥିଲି । ଏହାଛଡ଼ା ପାରାଦୀପ ପୋର୍ଟ ଉପରେ ଏକ ସଚିତ୍ର ପ୍ରବଂଧ ଏହି ସ୍ତଂଭରେ ପ୍ରକାଶିତ ହୋଇଥିଲା । ଏହି ସ୍ତଂଭଟି ଓଡ଼ିଶା ଓ ପଶ୍ଚିମ ବଂଗଳାର ପାଠକମାନଂକ ଦ୍ୱାରା ଆଦୃତ ହୋଇଥିଲା ।

**'ଦିଗଂତ' ପତ୍ରିକା ପ୍ରକାଶନ :**

୧୯୬୫ ମସିହାରେ ମୁଁ ଦିଗଂତ ପତ୍ରିକାର ସଂପାଦକ ଦାୟିତ୍ୱ ଗ୍ରହଣକରି ଏହାକୁ ଏକ ତ୍ରୈମାସିକ ପତ୍ରିକା ରୂପେ ପ୍ରକାଶ କରିଥିଲି । ଏହାର ନୂଆ ପ୍ରସ୍ତର ପ୍ରଥମ ସଂଖ୍ୟା ୧୯୬୫ ସାଲ ଶେଷଭାଗରେ ପ୍ରକାଶ ପାଏ । ଏହା ଏକ ରୁଚିଶୀଳ ସଂଭ୍ରାଂତ ପତ୍ରିକାରୂପେ କେତେବର୍ଷ ପ୍ରକାଶ ପାଇଥିଲା । ଏହାର ପୂର୍ବତନ ସଂପାଦକ ଓ ପ୍ରକାଶକ ମନୋଜ ଦାସ ପଂଡିଚେରୀ ଚାଲିଯିବା ପରେ ଏହାର ପ୍ରକାଶନ ବଂଦହୋଇଯାଇଥିଲା, ତେଣୁ ଶ୍ରୀ ଭଗବାନ୍ ନାୟକ ବର୍ମା ପ୍ରଭୃତି ମୋତେ ଏହାକୁ ପ୍ରକାଶ କରିବା ପାଇଁ ଅନୁରୋଧ କଲେ । ମୁଁ ଓ ମନୋଜ ଦାସ କଟକ କଲେକ୍ଟରିଏଟ୍କୁ ଯାଇ declaration ଫାଇଲ୍ କଲୁ । ମୁଁ ପ୍ରକାଶକ, ମୁଦ୍ରକ, ସଂପାଦକ ଏବଂ ମୋ ସ୍ତ୍ରୀ ସ୍ୱତ୍ତ୍ୱାଧିକାରୀ ରହିଲେ । ଓଡ଼ିଶା ପତ୍ରିକା ମହଲରେ 'ଦିଗଂତ' ଏକ ସ୍ୱତଂତ୍ର ସ୍ଥାନ ଦାବି କରେ । ଏଥିରେ ଉଚ୍ଚକୋଟୀର ପ୍ରବଂଧ, ସମାଲୋଚନା, ଗଳ୍ପ ଓ କବିତାମାନ ପ୍ରକାଶପାଉଥିଲା । ଅନେକ ନୂଆ ଲେଖକ ଦିଗଂତ ପୃଷ୍ଠାରୁ ବାହାରିଛଂତି । ସେମାନଂକ ମଧ୍ୟରେ ଗାଳ୍ପିକ କିଶୋରୀ ଚରଣ ଦାସ ଅନ୍ୟତମ । ତାଂକର ପ୍ରଥମ ଗଳ୍ପ 'ଲକ୍ଷବିହଂଗ' ଦିଗଂତରେ ଆତ୍ମପ୍ରକାଶ କରିଥିଲା । ସେ ଦିଗଂତର ଜଣେ ନିୟମିତ ଲେଖକ ଥିଲେ । ଦିଗଂତ ପତ୍ରିକାରେ ସ୍ଥିତିବାଦ ଉପରେ କେତୋଟି ଭଲ ପ୍ରବଂଧ ପ୍ରକାଶ ପାଇଥିଲା । ପ୍ରହରାଜ ସତ୍ୟନାରାୟଣ ନଂଦ ଓ ପ୍ରାଧ୍ୟାପକ ବିନୋଦ ବିହାରୀ ପଂଡ଼ା ଦିଗଂତରେ କେତୋଟି ଭଲ ସମାଲୋଚନାମୂଳକ ପ୍ରବଂଧ ପ୍ରକାଶ କରିଥିଲେ । ଏହିପରି ବହୁ ନୂଆ ଲେଖକ ଦିଗଂତ ମାଧ୍ୟମରେ ବାହାରିଛଂତି ।

**ଅପ୍ରକାଶିତ ଅମର ପୋଥି :**

ଏହାଛଡ଼ା ଦିଗଂତରେ 'ଅପ୍ରକାଶିତ ଅମର ପୋଥି' ନାମରେ ଏକ ବିଭାଗ ରଖା ଯାଇଥିଲା । ଏହି ବିଭାଗରେ ବହୁ ଅମୂଲ୍ୟ ଅପ୍ରକାଶିତ ପୋଥି ଧାରାବାହିକ ଭାବେ

ପ୍ରକାଶ ପାଉଥିଲା । ପ୍ରଫେସର ଆର୍ତ୍ତବଲ୍ଲଭ ମହାଂତି ପ୍ରାଚୀ ସମିତି ଜରିଆରେ କେତେକ ଅପ୍ରକାଶିତ ପୋଥି ଲୋକଲୋଚନକୁ ଆଣିଥିଲେ । ତାଂକ ପରେ ଏଥିପ୍ରତି ଆଉ କେହି ବିଶେଷ ଦୃଷ୍ଟି ଦେଇନଥିଲେ । ଦିଂଗତ ସେହି ଅଭାବ ପୂରଣ କରିବାକୁ ଚେଷ୍ଟା କରିଥିଲା । ଏଥିରେ ଉପେଂଦ୍ର ଭଂଜଂକ ପ୍ରଣୀତ 'ଷୋଳପୋଇ' ନାମକ କାବ୍ୟଟି ଯାହା ସେ ପର୍ଯଂତ ଅପ୍ରକାଶିତ ଥିଲା, ତାହାର ସଟୀକ ପ୍ରକାଶ ପ୍ରଫେସର ଡ. ଜାନକୀବଲ୍ଲଭ ମହାଂତିଂକ (ଭରଦ୍ୱାଜ) ସଂପାଦନାରେ ପ୍ରକାଶ ପାଇଥିଲା । କବିସୂର୍ଯ୍ୟ ବଳଦେବ ରଥଂକ ରଚିତ ଗଦ୍ୟପଦ୍ୟ ମିଶ୍ରିତ କାବ୍ୟ 'ହାସ୍ୟକଲ୍ଲୋଳ' ମଧ୍ୟ ପ୍ରଫେସର ମହାଂତିଂକ (ଭରଦ୍ୱାଜ) ସଂପାଦନାରେ ପ୍ରଥମଥର ପାଇଁ ଦିଗଂତ ପୃଷ୍ଠାରେ ପ୍ରକାଶ ପାଇଥିଲା । ପ୍ରଫେସର ଡ. ବଂଶୀଧର ମହାଂତିଂକ ସଂପାଦନାରେ ଅତିବଡ଼ୀ ଜଗନ୍ନାଥ ଦାସଂକ ଅପ୍ରକାଶିତ କାବ୍ୟ 'ଉଷାହରଣ' ଧାରାବାହିକ ଭାବେ ଦିଗଂତ ପୃଷ୍ଠାରେ ଆମୂଳଚୂଳ ପ୍ରକାଶିତ ହୋଇଥିଲା । ପ୍ରଫେସର ଡ. କାହ୍ନୁଚରଣ ମିଶ୍ରଂକ ଦ୍ୱାରା ସଂପାଦିତ ହୋଇ ତାଂକ ସଂଗୃହୀତ ଇତିବୃତ୍ତ 'ଜଗନ୍ନାଥକୈଫିୟତ' ନାମକ ଗ୍ରଂଥ ସଂସ୍କୃତରୁ ଅନୂଦିତ ହୋଇ ଧାରାବାହିକ ଭାବେ ଦିଗଂତରେ ପ୍ରକାଶ ଲାଭକରିଥିଲା । ଏହାଛଡ଼ା ଉପେଂଦ୍ର ଭଂଜଂକ 'ତ୍ରୈଲୋକ୍ୟମୋହିନୀ' ନାମକ ଅପ୍ରକାଶିତ କାବ୍ୟ ଅଧାପକ ଦୁର୍ଗାମାଧବ ନଂଦଂକ ଦ୍ୱାରା ସଂପାଦିତ ହୋଇ ଟୀକା ସହ ଧାରାବାହିକ ଭାବେ ଦିଂଗତରେ ପ୍ରକାଶପାଇଥିଲା ।

**ଦିଗଂତରେ ପ୍ରକାଶିତ ଐତିହାସିକ ତଥ୍ୟ :**

ଡଃ ସତ୍ୟନାରାୟଣ ରାଜଗୁରୁଂକ ଲିଖିତ 'ସିଂହଳରେ ପ୍ରାଚୀନ ଉଡ୍ରଭାଷା' ନାମକ ପ୍ରବଂଧରେ ସିଂହଳର ବାହୁବଂଶ ରାଜତ୍ୱର ଅବସାନପରେ କଳିଙ୍ଗର ସିଂହପୁରରୁ ଯାଇଥିବା ରାଜକୁମାର ନିଶଂକମଲ୍ଲ ୧୧୫୩ ମସିହାରେ ସିଂହଳରେ ରାଜତ୍ୱ କରିଥିଲେ । ସେ ଅତ୍ୟଂତ ପ୍ରଜାବତ୍ସଳ ଏବଂ ଦୟାଳୁ ଥିଲେ । ତାଂକ ରାଜଧାନୀ ଥିଲା ପୁଲସ୍ତିପୁର । ତାଂକର ଅନ୍ୟ ନାମ ପରାକ୍ରମ ବାହୁ ଓ କୀର୍ତ୍ତିଶ୍ରୀ ମେଘବାହନ ଥିଲା । ତାଂକର ପିତା କଳିଂଗର ସିଂହପୁର ରାଜା ଜୟଗୋପ ଓ ମାତା ରାଣୀ ପାର୍ବତୀଦେବୀ ଥିଲେ । ସେ ନିଜ ଦେହ ଓଜନର ଧନରତ୍ନ ଦରିଦ୍ର ପ୍ରଜାମାନଙ୍କ ମଧ୍ୟରେ ବିତରଣ କରିଥିଲେ । ତାଂକ ଶାସନପ୍ରଣାଳୀ ବଡ଼ ଉନ୍ନତଧରଣର ଥିଲା । ସିଂହଳର ଅଂବଲଂତୋଟ ଡାକବଂଗଳାଠାରୁ ପ୍ରାୟ ଦେଢ଼ମାଇଲ୍ ଦୂରରେ ବଂଦରୂପବିହାରନାମକ ସ୍ଥାନରୁ ଆଉ ଏକ ଶିଳାଲିପି ୧୮୭୯ ମସିହାରେ ଡଃ ମୂଲ୍ଲାର ଆବିଷ୍କାର କରିଥିଲେ ବୋଲି ଡଃ ରାଜଗୁରୁ ତାଂକ ପ୍ରବଂଧରେ ପ୍ରକାଶ କରିଥିଲେ । ସେଥିରେ ସଂସ୍କୃତ ଓ ଉଡ୍ର ଭାଷାର ପ୍ରାଚୁର୍ଯ ଥିବା କଥା ସେ ଜଣାଇଛଂତି ।

ଅନ୍ୟ ଏକ ପ୍ରବଂଧରେ ପୂର୍ବବଂଗରେ କଳିଂଗ ରାଜବଂଶୀୟମାନେ ବର୍ମଣ ରାଜବଂଶ ନାମରେ ପ୍ରାୟ ୧୦୦ ବର୍ଷକାଳ ରାଜତ୍ୱ କରିଥିବା କଥା ଡଃ ରାଜଗୁରୁ ବର୍ଣନା କରିଥିଲେ । ଉକ୍ତ ରାଜବଂଶର ରାଜେଂଦ୍ର ବର୍ମା ଓ ଶ୍ୟାମଳ ବର୍ମା ପ୍ରଭୃତି ଅଦ୍ୟାବଧି ଗୌଡ଼ୀୟବଂଗର ବାଉଲଗୀତମାନଂକରେ ଜୀବିତ ଅଛଂତି । ଏହିପରି ବହୁ ଐତିହାସିକ ତଥ୍ୟପୂର୍ଣ ପ୍ରବଂଧମାନ ଦିଗଂତ ପୃଷ୍ଠା ମଂଡନ କରିଥିଲା ।

**ଦିଗଂତରେ ଚିତ୍ରକଳା ଓ ଭାସ୍କର୍ଯ୍ୟ :**

ଦିଗଂତରେ ଆଧୁନିକ ଚିତ୍ରକଳା ସଂବଂଧରେ ବହୁ ପ୍ରବଂଧ ପ୍ରକାଶ ପାଉଥିଲା । ଏହି ପ୍ରବଂଧମାନଂକରେ ବହୁ ଚିତ୍ର ଦିଆଯାଉଥିଲା । ସାହିତ୍ୟ ଓ ଚିତ୍ରକଳା ପରସ୍ପର ଉପରେ ନିର୍ଭରଶୀଳ ବୋଲି ଦିଗଂତର ଧାରଣା ଥିଲା । ପାଶ୍ଚାତ୍ୟରେ ବହୁ ନଂଦନତାତ୍ତ୍ୱିକ ମତବାଦ ପ୍ରଥମେ ଚିତ୍ରକଳା ମାଧମରେ ପ୍ରକାଶ ପାଇ ପରେ ସାହିତ୍ୟକୁ ସଂକ୍ରମିତ ହୋଇଛି ଯଥା – Imagism, Surrealism, Cubism, Impressionism ପ୍ରଭୃତି । ତେଣୁ ଦିଗଂତ ଚିତ୍ରକଳା ଉପରେ ବିଶେଷ ଜୋର୍ ଦେଉଥିଲା ।

**ପଂଚସଖା ଉପରେ ଆଲୋକପାତ :**

ଦିଗଂତରେ ପଂଚସଖା ଉପରେ ବୈଗ୍ୟାନିକ ଦୃଷ୍ଟିକୋଣରୁ ଆଲୋକପାତ କରାଯାଇଥିଲା । ପଂଚସଖାର ଅଂତର୍ଗତ ଜଗନ୍ନାଥ ଦାସ ଏବଂ ବଳରାମ ଦାସ ଶ୍ରୀ ଚୈତ୍ୟନଂକ ସମସାମୟିକ ଥିଲେ । ବାକି ଅନ୍ୟ ତିନିଜଣ ଯଥା – ନେମାଳର ଅଚ୍ୟୁତାନଂଦ ଦାସ, ତାଂକ ମଳାଶ୍ରିର ଯଶୋବଂତ ଦାସ ଏବଂ ଶିଶୁ ଅନଂତ ପ୍ରଭୃତି ଚୈତନ୍ୟଂକର ପ୍ରାୟ ୨୫୦ ବର୍ଷ ପରବର୍ତ୍ତୀ ବୋଲି ପ୍ରମାଣ କରାଯାଇଥିଲା । ଅଚ୍ୟୁତାନଂଦ ଦାସ ଯେ କି ଏହି ପଂଚସଖା ତତ୍ତ୍ୱ ବାରଂବାର ଦୋହରାଇଛଂତି, ତାଂକ ପ୍ରଣୀତ 'ବର୍ଣ୍ଣଟୀକା'ରେ ଓ ଅନ୍ୟାନ୍ୟ ଗ୍ରଂଥରେ ଅରୁଣସ୍ତଂଭ ଓ ସତ୍ୟବାଦୀ ମଂଦିର କଥା ଲେଖିଛଂତି, ଯାହା ଅଷ୍ଟାଦଶ ଶତାବ୍ଦୀ ଶେଷଭାଗରେ ସ୍ଥାପିତ ହୋଇଥିଲା । ହଂଟର ମଧ ତାଂକ ଇତିହାସରେ ଅଚ୍ୟୁତାନଂଦ ୧୦୦ ବର୍ଷ ତଳେ ଯାଜପୁର ନିକଟରେ ବଂଚିଥିଲେ ବୋଲି ଲେଖିଛଂତି । ତେଣୁ ପଂଚସଖା ତତ୍ତ୍ୱ ଆଦୌ ବିଶ୍ୱାସଯୋଗ୍ୟ ନୁହେଁ ବୋଲି ଦିଗଂତରେ ଦର୍ଶାଇଦିଆଯାଇଥିଲା । ଏହାର ଦଶବର୍ଷ ପରେ ଅଧାପକ ଡଃ ନଟବର ସାମଂତରାୟ ଦିଗଂତର ତଥ୍ୟାବଳୀକୁ ସମର୍ଥନ କରି ପଂଚସଖା ତତ୍ତ୍ୱ ଗ୍ରହଣଯୋଗ୍ୟ ନୁହେଁ ବୋଲି କେତେକ ପ୍ରବଂଧ ଲେଖିଥିଲେ ।

ଏଥି ପୂର୍ବରୁ ଉପରିଲିଖିତ ମୂଲ୍ୟବାନ୍ ଅପ୍ରକାଶିତ ପୋଥିର ପାଠୋଦ୍ଧାର ହୋଇ ନ ଥିଲା କି ମୁଦ୍ରଣ ମଧ ହୋଇ ନ ଥିଲା । ତେଣୁ ପାଠକମାନେ ଏସବୁ ପୋଥି ସଂବଂଧରେ ବିଶେଷ କିଛି ଜାଣି ନ ଥିଲେ ।

ମାତ୍ର ଦୁଃଖର କଥା ଓଡ଼ିଶାରେ ଦିଗଂତ ପତ୍ରିକା ବଂଚିପାରିଲା ନାହିଁ । ଏହାକୁ ମୁଁ ଥରକୁଥର ତିନିଥର ପ୍ରକାଶ କରିବାକୁ ଚେଷ୍ଟା କରିଥିଲି, ମାତ୍ର କେତୋଟି ସଂଖ୍ୟା ବାହାରିବାପରେ ଏହା ବଂଦ ହୋଇଗଲା । ଓଡ଼ିଶାର ପତ୍ରିକା ଏଜେଂଟ୍‌ମାନେ ଦିଗଂତର ବିକ୍ରୟଲବ୍‌ଧ ଅର୍ଥ ପ୍ରାୟ ପଠାଉ ନ ଥିଲେ । ଦୂରଦୂରାଂତରରେ ଥିବା ଏଜେଂଟ୍‌ମାନଙ୍କଠାରୁ ପଇସା ଆଦାୟ କରିବା ବଡ଼ କଷ୍ଟକର ଥିଲା । ଏହାଛଡ଼ା ବିଜ୍ଞାପନଦାତାମାନେ ମଧ ଉଦାସୀନ ରହୁଥିଲେ ।

ସେ ଯାହାହେଉ, ଦିଗଂତ ଯେଉଁ କେତେବର୍ଷ ବଂଚିଚି ଏବଂ ତାହାର ଯେଉଁ କେତୋଟି ସଂଖ୍ୟା ପ୍ରକାଶ ଲାଭ କରିଛି ତାହା ଆଜି ପର୍ଯ୍ୟଂତ ପାଠକମାନଂକ ସ୍ମରଣରେ

ସଂଜ୍ଜୀବିତ ରହିଛି । ଏହାକୁ ଏବେ ସମାଲୋଚକ ଓ ଗବେଷକମାନେ ଓଡ଼ିଆ ପତ୍ରିକାଜଗତରେ ଅତି ଉଚ୍ଚଶ୍ରେଣୀର ପତ୍ରିକାବୋଲି ମତ ବ୍ୟକ୍ତ କରୁଛଂତି – ତାହାହିଁ ଏକମାତ୍ର ସାଂତ୍ୱନା ।

**ଦିଗଂତ ଲେଖକ କର୍ମଶାଳା :**

ଦିଗଂତ ଲେଖକ କର୍ମଶାଳା ବିଷୟରେ ଆଗରୁ କହିଛି । ଏଥିରୁ ସଂକେତ ଓ ପ୍ରେରଣା ପାଇ ଆମେରିକାର ବିଖ୍ୟାତ କବି ପଲ୍ ଏଂଗଲସ୍ (ଯିଏକି ଏହି ଦିଗଂତ ଲେଖକ କର୍ମଶାଳାରେ ଥରେ ଯୋଗଦେଇଥିଲେ) ଆଇଓ୍ୱା ବିଶ୍ୱବିଦ୍ୟାଳୟରେ ପୃଥିବୀର ସର୍ବବୃହତ୍ ଲେଖକ କର୍ମଶାଳା ସ୍ଥାପନ କରିଛଂତି ବୋଲି ମୋତେ ଯେଉଁ ଚିଠି ଲେଖିଥିଲେ ତାହା ମଧ୍ୟ ଅନ୍ୟତ୍ର ଉଦ୍ଧାର କରାଯାଇଛି । ମାତ୍ର ଦୁର୍ଭାଗ୍ୟର ବିଷୟ ଦିଗଂତ ଲେଖକ କର୍ମଶାଳା ବେଶୀଦିନ ବଂଚିପାରିଲାନାହିଁ । ଏ ବିଷୟରେ ଆଗରୁ ଆଲୋଚନା କରିଛି, ତେଣୁ ଅଧିକ କହିବା ବାହୁଲ୍ୟମାତ୍ର ।

**ଦିଗଂତ ଟେଲିଫୋନ୍ ମାମଲା :**

ଦିଗଂତ ପତ୍ରିକାର ସାରସ୍ୱତ ଭୂମିକା ସଂବଂଧରେ କିଛିଟା ସୂଚନା ଦେଲି । ମାତ୍ର ଏଥିଯୋଗୁ ଯେଉଁ ଦାରୁଣ ହଟହଟା ଭୋଗିବାକୁ ପଡ଼ିଛି ତାହା ନ କହିଲେ କାହାଣୀ ଅପୂର୍ଣ୍ଣ ରହିଯିବ । ଦିଗଂତ ପତ୍ରିକାର ପ୍ରକାଶନଭାର ନେଲାବେଳେ ମୁଁ ଜାଣିନଥିଲି ଯେ ଦିଗଂତ ନାମରେ ଏକ ଟେଲିଫୋନ୍ ପୂର୍ବରୁ ନିଆଯାଇଛି । ପରେ ଜାଣିଲି ମନୋଜ ଦାସଂକ ସଂପାଦନା ସମୟରେ ଦିଗଂତ ସହିତ ସଂପୃକ୍ତ କେହି ଜଣେ ଭଦ୍ରଲୋକ ଦିଗଂତ ଚିଠି କାଗଜରେ ଏକ ଟେଲିଫୋନ ପାଇଁ ଦରଖାସ୍ତ କରି ୧୩୩୬ ନଂବର ଟେଲିଫୋନ ପାଇଲେ ଓ ତାଂକ ଘର ତିନିକୋଣିଆବଗିଚାସ୍ଥିତ 'ଶୋଭାନିବାସ'ରେ ଲଗାଇଥିଲେ । ମୋ ସଂପାଦକତ୍ୱରେ ଦିଗଂତ ମେରିଆବଜାରରୁ ପ୍ରକାଶପାଇବାପରେ ମୁଁ ଦିଗଂତରେ ମୋ ବ୍ୟକ୍ତିଗତ ଟେଲିଫୋନ୍ ନଂବର-୬୦୬ ଛପାଉଥିଲି । ଏଥିରୁ ଜଣାଯିବ ଯେ ମୁଁ ଦିଗଂତ ନାମରେ ଏକ ଟେଲିଫୋନ ଥିବା କଥା ଜାଣିନଥିଲି । ହଠାତ୍ ୧୩୩୬ ନଂବର ଟେଲିଫୋନ ସଂକ୍ରାଂତରେ କେତେକ ବିଲ୍ ଦିଗଂତ ନାମରେ ମୋ ମାର୍ଫତରେ ଆସି ପହଂଚିଲା । ମୁଁ ଟେଲିଫୋନ ବିଭାଗକୁ ଜଣାଇଲି ଯେ ଏ ଟେଲିଫୋନ ମୋ ଘରେ ବା ଦିଗଂତ ଅଫିସରେ ଲାଗି ନାହିଁ, ମୁଁ ଏହାର ଚିହ୍ନବର୍ଣ୍ଣ ଦେଖିନି, ତେଣୁ ଏ ବିଲ୍ ମୋ ପାଖକୁ ପଠାଇବା ଉଚିତ ନୁହେଁ, ମୁଁ ଏ ବିଲ୍ ପୈଠ କରିବି ନାହିଁ । ମୋ ଚିଠିପାଇ ଟେଲିଫୋନ ବିଭାଗ ତିନିକୋଣିଆବଗିଚାରେ ଥିବା 'ଶୋଭାନିବାସ'ରେ (ଏହା ଜଣେ ଡାକ୍ତରଂକ ଘର) ଲାଗିଥିବା ୧୩୩୬ ନଂବର ଫୋନ୍‌କୁ କାଟିଦେଲେ । ମାତ୍ର ବିଲ୍‌ର ଦେୟ ବାବଦକୁ ୧୪୫୨ ଟଙ୍କା ୬୨ ପଇସା ଆଦାୟ ପାଇଁ ମୋ ନାମରେ ମୋକଦ୍ଦମା (ମନିସୁଟ୍) ପ୍ରଥମ ମୁନ୍‌ସିଫ୍ କୋର୍ଟରେ ରୁଜୁକଲେ । ଟେଲିଫୋନ ବିଭାଗର ଜଣେ ଉଚ୍ଚ ଅଧିକାରୀ କୋର୍ଟରେ ସାକ୍ଷ୍ୟ ଦେଲେ ଯେ ତାଂକ ଉପସ୍ଥିତିରେ ଏବଂ ତାଂକ ଆଦେଶରେ 'ଶୋଭାନିବାସ'ରୁ ୧୩୩୬ ନଂବର ଟେଲିଫୋନ କଟାଯାଇଛି । ସେ

ନିର୍ବିକାର ଚିତ୍ତରେ କହିଲେ ଯେ ଏ ଘର ସଚ୍ଚି ରାଉତ୍‌ରାୟଂକର । ଏଥିରେ କୋର୍ଟରେ ଉପସ୍ଥିତ ଥିବା ବହୁ ସିନିୟର ଆଡ୍‌ଭୋକେଟ୍ ପ୍ରଭୃତି ହାସ୍ୟରୋଳରେ ଘର ଫଟାଇଲେ । ମୋତେ ଆଡ୍‌ଭୋକେଟ୍‌ମାନେ ହସିକରି ପଚାରିଲେ ''ସଚ୍ଚିବାବୁ, ଆପଣଂକର କଟକରେ ଆଉ ଗୋଟେ ଘର ହେଲାଣି କି ?'' ଇତ୍ୟାଦି, ଇତ୍ୟାଦି । କଟକରେ ସମସ୍ତେ ଜାଣିଥିଲେ ମୁଁ ୧୯୭୧ ମସିହାରୁ ମେରିଆବଙ୍ଗଳାର ଘର ଛାଡ଼ି କଟକ ମିଶନ୍ ରୋଡ଼ରେ ମୋ ନିଜ ଘରେ ସପରିବାର ରହୁଥିଲି । ମୋର ଆଡ୍‌ଭୋକେଟ୍ ଥିଲେ ଶ୍ରୀ ମହୀତୋଷ ସିହ୍ନା । ସେ ଯାହାହେଉ ପ୍ରଥମ ମୁନିସିଫ୍ କିଛି ଟଂକା କମାଇଦେଇ ମୋ ବିରୋଧରେ ଅର୍ଥାତ୍ ଡାକ-ତାର ବିଭାଗ ସପକ୍ଷରେ ରାୟ ଦେଲେ । ଏହା ଏକ ମସ୍ତ ବିଡ଼ଂବନା ।

ସେ ଯାହାହେଉ ମୁଁ ଅତିରିକ୍ତ ଜିଲ୍ଲା ଦୌରା ଜଜଂକ ଅଦାଲତରେ ପ୍ରଥମ ମୁନ୍‌ସିଫ୍‌ଙ୍କ ରାୟ ବିରୋଧରେ ଅପିଲ୍ ଦାଏର୍ କଲି । ଅପିଲ୍‌ରେ ଅତିରିକ୍ତ ଜିଲ୍ଲା ଦୌରାଜଜ୍ ୧୯୮୨ ମସିହା ଜୁଲାଇ ମାସରେ ମୋ ସପକ୍ଷରେ ରାୟ ଦେଲେ ଏବଂ ଡାକ-ତାର ବିଭାଗ ଦାବିକୁ ଖାରଜ କରିଦେଲେ । (ଏହି ବିବରଣୀ ତା ୧୭.୭.୮୨ରିଖ ଦୈନିକ ସମାଜରେ ପ୍ରକାଶପାଇଥିଲା) ।

ମୁଁ ଟେଲିଫୋନ ମାମଲାରେ ସାକ୍ଷ୍ୟ ଦେବାପାଇଁ ମନୋଜ ଦାସଂକୁ ଅନୁରୋଧ କରିଥିଲି, କାରଣ ସେ ସଂପାଦକ ଥିଲାବେଳେ ଟେଲିଫୋନ୍ ଅଣାଯାଇଥିଲା । ମାତ୍ର ସେ ଆଗ୍ରହ ପ୍ରକାଶ କଲେ ନାହିଁ । ମୋତେ ଲେଖିଲେ ଯେ ସେ ଆଉ ଏ ବିଷୟରେ ମୁଂଡ ଖେଳାଇବାକୁ ଚାହାଂତିନାହିଁ ।

ଏହି ଟେଲିଫୋନ୍ ମାମଲା ପ୍ରାୟ ୧୨ ବର୍ଷ ସମୟ ଲାଗିଲା । ପ୍ରଥମ ମୁନ୍‌ସିଫ୍ କୋର୍ଟରେ ୧୦ ବର୍ଷ ଏବଂ ଅତିରିକ୍ତ ଜିଲ୍ଲା ଦୌରାଜଜ୍ କୋର୍ଟରେ ଦୁଇବର୍ଷ ସମୟ ଲାଗିଥିଲା । ଏଥିରେ ମୁଁ ବହୁତ ହଇରାଣ ଓ ଖର୍ଚ୍ଚାଂତ ମଧ୍ୟ ହୋଇଛି । ବାରଂବାର କୋର୍ଟକୁ ଦୌଡ଼ିବା ଏବଂ ମୋକଦ୍ଦମା ବାବଦରେ ଟଂକା ଖର୍ଚ୍ଚକରିବା ବାସ୍ତବିକ୍ ବଡ଼ ଦୁର୍ବିଷହ ।

**ଘରସଂସାର କଥା :**

ମୋ ବଡ଼ଝିଅ ମଂଜୁଶ୍ରୀ କଟକର ଶୈଳବାଳା ମହିଳା କଲେଜରୁ ବି.ଏ. ପାସ୍ କଲାପରେ ହିଂଦୀରେ 'କୋବିଦ' ଓ 'ରତ୍ନ' ପରୀକ୍ଷାଦେଇ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲା । ତାର ବିଭାଘର ପାଇଁ ଆମେ ବର ଖୋଜିବାରେ ଲାଗିଲୁ । କେତୋଟି ପ୍ରସ୍ତାବ ଆସିଥିଲା, ମାତ୍ର କୌଣସି ପ୍ରସ୍ତାବ ମନଃପୂତ ହେଲା ନାହିଁ । ୧୯୬୬ ମସିହା ପର୍ଯ୍ୟଂତ ଆମେ ବଡ଼ ଚିଂତାରେ ପଡିଥିଲୁ ।

**ସତ୍ୟସାଇବାବାଂକ ଚିଠି :**

ମୁଁ ଏହି ସମୟରେ ସତ୍ୟସାଇବାବାଂକୁ ଖଂଡିଏ ଚିଠି ଲେଖି ମୋର ସମସ୍ୟା ଜଣାଇଥିଲି ଏବଂ ତାଂକର ଆଶୀର୍ବାଦ ଭିକ୍ଷାକରିଥିଲି । ମୁଁ ତାଂକୁ ପୂର୍ବରୁ ଜାଣିନଥିଲି । ସେ ମୋତେ ଖଂଡିଏ ଇନ୍‌ଲ୍ୟାଂଡ ଚିଠିରେ ଏମୁଂଡୁ ସେମୁଂଡ ନିଜ ହାତରେ ତେଲୁଗୁରେ ଲେଖି ପଠାଇଥିଲେ । ଚିଠିଟିର ଇଂରାଜୀ ଅନୁବାଦ କରି ମୋ ସ୍ତ୍ରୀ ମୋତେ ଶୁଣାଇଥିଲେ ।

ସାଇବାବା ଲେଖିଥିଲେ ଯେ ମଣିଷର ସବୁ କିଛି କାର୍ଯ୍ୟ ଭଗବାନ୍‌ଙ୍କ ଦ୍ୱାରା ନିୟଂତ୍ରିତ, ଭଗବାନ୍‌ଙ୍କ ଉପରେ ଆମେ ଅଟଳ ବିଶ୍ୱାସ ରଖିବା ଉଚିତ । ଭଗବାନ୍‌ଂକ କୃପାରୁ ନିଶ୍ଚୟ କନ୍ୟାର ବିବାହ ଯଥାଶୀଘ୍ର ହୋଇଯିବ ।

୧୯୬୬ ମସିହା ଡିସେଂବର ମାସରେ କଲିକତାର ଏକ ଓଡ଼ିଆ ଜମିଦାର ପରିବାରର ବଡ଼ପୁଅ ଓ ସ୍ତ୍ରୀ କଟକରେ ଆମ ମେରିଆବଜାର ବାସଭବନରେ ଆସି ପହଂଚିଲେ । ତାଂକ ସାନପୁଅ ପ୍ରଶାଂତ ରାଉତ ପାଇଁ ସେମାନେ କନ୍ୟା ଖୋଜି ଆସିଛଂତି ବୋଲି କହିଲେ । ସେମାନେ ମଂଜୁଶ୍ରୀକୁ ଦେଖି ପସଂଦକଲେ । ସେହି ମାସ ୧୧ ତାରିଖରେ କଟକରେ ବିଭାଘର ହେବବୋଲି ନିର୍ବଂଧ କରିଗଲେ । ପ୍ରଶାଂତ ଲଂଡନରେ Cost Accountancy ଶେଷ ବର୍ଷର ଛାତ୍ର ଥିଲା । ତାଛଡ଼ା ଲଂଡନରେ ଏକ କଂପାନୀରେ ଚାକିରି ମଧ୍ୟ କରୁଥିଲା । ସେ ଛୁଟିରେ ଭାରତ ଆସିଥିଲା । ସେ ଶୀଘ୍ର ଲଂଡନ ଚାଲିଯିବ ବୋଲି ବାହାଘର ତରବରରେ କରିବାକୁ ପଡ଼ିଲା । ପ୍ରଶାଂତର ପିତା ତାରିଣୀ ରାଉତ ମେଦିନୀପୁରର ଜଣେ ଓଡ଼ିଆ ଜମିଦାର ଥିଲେ, ମାତ୍ର ସେମାନେ ବହୁ ପୁରୁଷରୁ କଲିକତାର ବାଲିଗଂଜସ୍ଥ କର୍ଣଫିଲଡ୍ ରୋଡ୍‌ରେ ଘରକରି ରହିଯାଇଛଂତି । ସେମାନେ ଓଡ଼ିଆ ଭାଷା ଭୁଲିଯାଇଥିଲେ, ବଂଗଳା କହୁଥିଲେ, ପଢୁଥିଲେ ଏବଂ ଲେଖୁଥିଲେ । ସମ୍ପୃତି ତାରିଣୀବାବୁ ପଶ୍ଚିମବଂଗ ସରକାରଂକର ରାଜସ୍ୱ ବିଭାଗରେ ଜଣେ ଅଫିସର ଥିଲେ । ତାଂକର ଆଉ ଦୁଇ ପୁଅ ନଂଦଲାଲ୍ ଓ ଗୋପାଳ ଜଣେ ସରକାରୀ ଓ ଆଉ ଜଣେ ଏକ ବଡ଼ କଂପାନୀରେ କଲିକତାରେ ଚାକିରି କରୁଥିଲେ ।

ସେ ଯାହାହେଉ, ମଂଜୁଶ୍ରୀର ବିଭାଘର ସୁରୁଖୁରୁରେ ହୋଇଗଲା । ସେ ବିଭାଘରର ଏକ ମାସ ମଧ୍ୟରେ ଲଂଡନ ଚାଲିଗଲା । ଲଂଡନରେ ପ୍ରଶାଂତ ଓ ମଂଜୁଶ୍ରୀ ସେହିଦିନଠାରୁ ନିଜ ଘରେ ରହିଛଂତି । ପ୍ରଶାଂତ ଲଂଡନରେ କିଛିବର୍ଷ Cost Accountant ଚାକିରି କରିଥିଲା । ମଂଜୁଶ୍ରୀ ମଧ୍ୟ ଏକ କଂପାନୀରେ Part-time ଚାକିରି କରିଥିଲା ।

ସେମାନଂକର ଲଂଡନରେ ଗୋଟାଏ Stationery ଦୋକାନ ଅଛି । Estate Business ମଧ୍ୟ ଅଛି । ସେମାନେ ପୁରୁଣା ଘର କିଣି ତାକୁ remodel କରି ବିକ୍ରି କରଂତି । ସେମାନଂକର ଗୋଟିଏ ପୁଅ ଶାଂତନୁ ଏବଂ ଗୋଟିଏ ଝିଅ ଶ୍ୱେତା ଅଛଂତି । ସେମାନେ ଭାରତର ଋଷିଭ୍ୟାଲୀ ସ୍କୁଲରୁ +2 ପାସ୍ କରିଛଂତି । ଶାଂତନୁ ବ୍ରହ୍ମପୁର M.K.C.G. ମେଡ଼ିକାଲ କଲେଜରୁ ଏବର୍ଷ (୧୯୯୭) M.B.B.S. ପାସ୍ କରି ମାଡ୍ରାସରେ P.G. (M.S.) କରୁଛି । ଶ୍ୱେତା ଲଂଡନରୁ ବି.ଏ. ପାସ୍ କରି ସେଠାରେ ଏକ Universityରେ M.A. ପଢୁଛି । ସେ ଏବର୍ଷ ଲଂଡନରେ 'ରିଡର୍ସ ଡାଇଜେଷ୍ଟ' ପତ୍ରିକାରେ ଏକ ୫-ଧାଡ଼ିଆ Joke ଦେଇ ପ୍ରାୟ ସାତ ହଜାର ଟଂକା (୧୦୦ ପାଉଂଡ) ପୁରସ୍କାର ପାଇଛି । ଶ୍ୱେତା ଏବେ ଲଂଡନର ଏକ ବିଶ୍ୱବିଦ୍ୟାଳୟରେ ଗଣିତରେ Ph. D. କରୁଛି ।

**ଆର୍ଥିକ ଅବସ୍ଥା :**

ମୋର ଆର୍ଥିକ ଅବସ୍ଥା ଅତ୍ୟଂତ ଖରାପ ହୋଇପଡ଼ିଥିଲା, କାରଣ ୧୯୬୬ ମସିହାରେ ପାଟଣା ମହାରାଜାଂକ ମୁଖ୍ୟମଂତ୍ରିତ୍ୱରେ ଗଠିତ ସରକାର ଓଡ଼ିଶା ବୋର୍ଡ଼

ମିଲକୁ ଲିକ୍ ଦେଇ ଏହାକୁ ଧ୍ୱଂସକରିଦେଲେ । ମୋର ଓ ମୋ ସ୍ତ୍ରୀର ପ୍ରାୟ ୫୦,୦୦୦ ଟଂକାର ଅଂଶଧନ ଓ ଅସ୍ଥାୟୀ ଋଣ ବରବାଦ ହୋଇଗଲା । ରାଜନୀତିକ ପ୍ରତିହିଂସାର ଏହା ଏକ ଜଘନ୍ୟ ଦୃଷ୍ଟାଂତ ଥିଲା । ଏ ବିଷୟ ପୂର୍ବରୁ ଆଲୋଚିତ ହୋଇଛି । ସେଥିରେ ବିଶେଷ ବିବରଣୀ ଦ୍ରଷ୍ଟବ୍ୟ ।

**ଆମ ନୂଆଘର :**

୧୯୭୧ ମସିହା ଶେଷବେଳକୁ ଆମେ କଟକ ମିଶନ୍‌ରୋଡ଼୍‌ରେ ବନାଇଥିବା ଆମ ନୂଆଘରକୁ ଚାଲିଆସିଲୁ । ୧୯୭୨ ମସିହା ଡିସେଂବର ୮ ତାରିଖରେ ମଂଜୁଶ୍ରୀର ପ୍ରଥମ ସଂତାନ ଶାଂତନୁ ବା ସାନୁର କଟକରେ ଜନ୍ମ ହେଲା । ମଂଜୁଶ୍ରୀ ସେଥିପାଇଁ ଲଂଡନରୁ ଆସି କଟକରେ ଥିଲା । ଡାକ୍ତର ଜ୍ୟୋସ୍ନା ଦେଇଂକ କ୍ଲିନିକ୍‌ରେ ତାର ଏବଂ ୧୯୭୫ ମସିହା ଏପ୍ରିଲ୍ ମାସରେ ଶ୍ୱେତାର ଜନ୍ମ ହେଲା ।

ସାନୁ ଓ ଶ୍ୱେତା ୪-୫ ବର୍ଷ ହେବା ଯାଏଁ ଆମ ପାଖରେ ରହିଥିଲେ, କାରଣ ପିଲା ଜନ୍ମର ୭-୮ ମାସ ପରେ ମଂଜୁଶ୍ରୀ ଲଂଡନ ଚାଲିଯାଇଥିଲା । ୧୯୭୨ ମସିହା ଡିସେଂବର ଶେଷ ସପ୍ତାହରେ ମୁଁ ବାଂଲାଦେଶ ଯିବାପାଇଁ ବାଂଲାଦେଶ ବିଶ୍ୱବିଦ୍ୟାଳୟର ଆମଂତ୍ରଣ ପାଇଥିଲି ଓ ବାଂଲାଦେଶ ଯାଇଥିଲି । ମିଶନ୍‌ରୋଡ୍ ଘରକୁ ଆସିବାପରେ ପ୍ରଥମେ ଟିକିଏ ଅଲଗା ଅଲଗା ଲାଗୁଥିଲା । ଏଠାରେ ନୂଆ ପ୍ରତିବେଶୀ ଓ ନୂଆ ପରିବେଶ । କଟକଚଂଡୀ ମଂଦିର ପାଖରେ ଥିବାରୁ ମୋ ସ୍ତ୍ରୀକୁ ମଂଦିର ଯିବାପାଇଁ ସୁବିଧା ହେଲା ।

ମୋ ସାନଝିଅ ଚିତ୍ରା କନ୍‌ଭେଂଟ୍‌ସ୍କୁଲ୍‌ରୁ H.S.C. ପାସ୍ କରି ରେଭେନ୍‌ସା କଲେଜରୁ ଇଂରାଜୀରେ M.A. ପାସ୍ କଲା । ସେ St. Joseph କନ୍‌ଭେଂଟ୍ ସ୍କୁଲରେ ଇଂରାଜୀ ଶିକ୍ଷୟିତ୍ରୀ ଭାବେ ଯୋଗଦେଲା । ପୁଅ ଶ୍ରୀହର୍ଷ ଷ୍ଟିୱାର୍ଟ ସ୍କୁଲରୁ B.Sc. ପାସ୍ କରିଥିଲା । ତାକୁ ରାଉରକେଲା ଇସ୍ପାତ କାରଖାନାର ମ୍ୟାନେଜର ଏକ ଟେଲିଗ୍ରାମ ପଠାଇଲେ । ସେ ବହୁବର୍ଷ State ବ୍ୟାଡ୍‌ମିଂଟନ ଚଂପିୟାନଥିବାରୁ ତାକୁ ପ୍ଲାଂଟ୍‌ର Sports ଶେଲ୍‌ରେ ଚାକିରି କରିବାକୁ ଘନଘନ ଟେଲିଗ୍ରାମ ପଠାଇଲେ । ତେଣୁ ସେ ରାଉରକେଲା ଷ୍ଟିଲ୍ ପ୍ଲାଂଟ୍‌ରେ ଯାଇ ଯୋଗଦେଲା । ସେ ସେଠାରେ କେତେକ ବର୍ଷ କାର୍ଯ କରିବାପରେ ପ୍ରଶାସନିକ ବିଭାଗକୁ ଉତ୍ତୀର୍ଣ ହୋଇ ସହକାରୀ ମ୍ୟାନେଜର ରୂପେ କାର୍ଯ୍ୟ କରିବାପରେ ସଂପ୍ରତି ତିନି-ଚାରିବର୍ଷ ହେଲା ରାଉରକେଲା Steel Plantର ଭୁବନେଶ୍ୱର ଅଫିସରେ Resident Liasion Officerରୂପେ କାର୍ଯ କରୁଛି । ସେ ପିଲାପିଲି ନେଇ ଭୁବନେଶ୍ୱର ବଦଳିହୋଇ ଆସିବାରୁ ଆମକୁ ଏ ବୟସରେ ବଡ଼ ସହାୟକ ହୋଇଛି ।

ସେତେବେଳକୁ ମୋର ସାନପୁଅ ଉଦୟନ (ବୁଚି) ଖ୍ରୀଷ୍ଟ କଲେଜରୁ ଇତିହାସ ଅନର୍ସ ନେଇ ବି.ଏ. ପାସ୍ କରିଥିଲା । ତାକୁ ଆମେ ଆହୁରି ଉଚ୍ଚ ଶିକ୍ଷା ପାଇଁ ଲଂଡନ ପଠାଇଥିଲୁ ।

# ଚତ୍ୱାରିଂଶ ଉଲ୍ଲାସ

## ଦିଗଂତ ମ୍ୟୁଜିୟମ୍ ଓ ଗବେଷଣା କେଂଦ୍ର ସ୍ଥାପନା :

## ଚିତ୍ରାର ବିବାହ ଓ ଆମେରିକା ଯାତ୍ରା – ଉଦୟନର ଲଂଡନ ପ୍ରବାସ :

## ଦିଗଂତ ମ୍ୟୁଜିୟମ :

କଟକରେ ଏକ ମ୍ୟୁଜିୟମ ସ୍ଥାପନା କରିବା ମୋର ବହୁଦିନରୁ ଇଚ୍ଛା ଥିଲା । କଟକ ଏକ ଐତିହ୍ୟପୂର୍ଣ୍ଣ ସହର । ଏହାର ପ୍ରାକୃତିକ ଦୃଶ୍ୟ ଅତି ଚମତ୍କାର । କାଠଯୋଡ଼ି ନଦୀ କୂଳରେ ଛିଡ଼ାହୋଇ ଯିଏ ସୂର୍ଯ୍ୟାସ୍ତ ଦେଖିଛି ସେ ଏହି ନଗରୀର ବର୍ଣ୍ଣିଳ ଶୋଭା ଭୁଲିପାରିବନି । ଏହାର ବାରବାଟୀ ଦୁର୍ଗ ଓଡ଼ିଶାର ଭାଗ୍ୟଚକ୍ରର ବହୁ ଇତିହାସ ଅଂଗେ ନିଭାଇଛି । ଏହାର ପ୍ରତିଟି ଧୂଳିକଣା ଇତିହାସର ସ୍ୱାକ୍ଷର ବହନକରେ । ପିଲାଦିନେ ମଧୁସୂଦନ ରାଓଂକ ବର୍ଣବୋଧରେ ପଢ଼ିଥିଲୁ 'କଟକ ନଗର ଧବଳ ଟଗର' । ଏହାର ଧବଳିମା କୁଆଡ଼େ ଗଲାଣି – ଏହା ଏବେ ଏକ ଆବର୍ଜନାମୟ ସହରରେ ପରିଣତ ହୋଇଛି । ତଥାପି ଏହାର ଅତୀତ ଚିରଅବିସ୍ମରଣୀୟ । ଏଠାରେ ଏକ ମ୍ୟୁଜିୟମ ନ ଥିବା ଘୋର ଦୁଃଖର କଥା । ତେଣୁ ମୁଁ ଦିଗଂତ ମ୍ୟୁଜିୟମ ସ୍ଥାପନ କରିବା ଦିଗରେ ମନଦେଲି ।

ଅନ୍ୟାନ୍ୟ ମ୍ୟୁଜିୟମମାନ ଯେପରି ପୁରୁଣା ଜିନିଷ ଓ ପ୍ରତ୍ନଦ୍ରବ୍ୟ ସଂଗ୍ରହ କରିଥାଂତି, ଦିଗଂତ ମ୍ୟୁଜିୟମ ମଧ ଠିକ୍ ସେହି ପ୍ରଣାଳୀରେ ବହୁ ଭାସ୍କର୍ଯ, ପ୍ରତ୍ନଦ୍ରବ୍ୟ, ଚିତ୍ରପୋଥି ଓ ପଟ୍ଟଚିତ୍ର ପ୍ରଭୃତି ସଂଗ୍ରହ କରିଥିଲା । ପ୍ରଥମେ ଖବରକାଗଜରେ ଜଣେଇ ଦେଉଁ ଯେ ଦିଗଂତ ମ୍ୟୁଜିୟମ ପୁରୁଣା ପଥର, କାଠ ଓ ପିତ୍ତଳ ମୂର୍ତ୍ତି ତଥା ପ୍ରାଚୀନ ପୋଥି ଏବଂ ପ୍ରାଚୀନ ଚିତ୍ର ଆଦି କିଣିବାକୁ ଚାହେଁ । ଯେଉଁମାନେ ଏହା ବିକ୍ରୟ କରିବାକୁ ଚାହାନ୍ତି ସେମାନେ ଉପଯୁକ୍ତ ପ୍ରମାଣ ସହ ନିର୍ଦ୍ଦିଷ୍ଟ ତାରିଖରେ ଆମ ସଂଗେ ଦେଖାକରଂତୁ । ଓଡ଼ିଶାର ବହୁ ଗାଁଗଂଡାରୁ ଏହିସବୁ ଜିନିଷ ଧରି ଲୋକମାନେ ଆଂସତି । ଆମେ ତାହାର ମୂଲ୍ୟ ସ୍ଥିରକରି ସେମାନଙ୍କୁ ନିଧାର୍ଯ୍ୟ ମୂଲ୍ୟ ଦେଇ ରସିଦ୍‌ନେଇ ସେସବୁ ଜିନିଷ ଦିଗଂତ ମ୍ୟୁଜିୟମରେ, ଯାହା ମୋର ବାସଗୃହରେ ଅବସ୍ଥିତ ଥିଲା, ସଂରକ୍ଷିତ କରି ରଖୁଥିଲୁ । ଦିଗଂତ ମ୍ୟୁଜିୟମର ସଂଗୃହୀତ ପ୍ରତ୍ନସାମଗ୍ରୀ ଓ ପୋଥିପତ୍ର ଆଦିର ବିବରଣୀ ଏବଂ ଫଟୋଚିତ୍ର ଦିଗଂତ ପତ୍ରିକାରେ ପ୍ରକାଶକରାଯାଉଥିଲା । ଉତ୍ତର ଗଂଗବଂଶର କାମାର୍ଣ୍ଣବ ଦେବଂକ (ଖ୍ରୀ ୯୪୧-ଖ୍ରୀ୯୭୬) ସମୟର ଗୋଟିଏ ଶିଳାଲିପି ଭଦ୍ରଖର ବାସୁଦେବପୁର ଅଂଚଳର ଏକ ଗ୍ରାମରୁ ମିଳିଥିଲା । ଏହି ଶିଳାଲିପିର ଅକ୍ଷର ପ୍ରୋଟୋ-ବେଂଗଲୀ ଅକ୍ଷରରେ ଲେଖା । ଏହାର ପାଠୋଦ୍ଧାର କରିଥିଲେ ପ୍ରଫେସର ଡଃ କୁଂଜବିହାରୀ ତ୍ରିପାଠୀ ଏବଂ ଓଡ଼ିଶା ମ୍ୟୁଜିୟମର କ୍ୟୁରେଟର ଶ୍ରୀ ପ୍ରଶାଂତ କୁମାର ରାୟ । ଏହାର ପାଠ, ଫଟୋସହ ଦିଗଂତରେ ପ୍ରକାଶପାଇଥିଲା ।

ଅନ୍ୟ ଏକ ଶିଳାଲିପି ବାଲେଶ୍ୱର ଜିଲ୍ଲାର ବାସୁଦେବପୁର ଅଂଚଳର ଭୈରବପୁର ଗ୍ରାମରୁ ମିଳିଥିଲା । ଗ୍ରାମବାସୀମାନେ ଏହି ମୂର୍ତ୍ତିଟିକୁ ଟ୍ରକରେ ଆଣି ମୋତେ ଦେଇଥିଲେ । ଏହାର ସମ୍ମୁଖ ଭାଗରେ ବୌଦ୍ଧଦେବୀ ମାରୀଚିଂକର ମୂର୍ତ୍ତି ଅଛି । ପଶ୍ଚାଦ୍‌ଭାଗରେ ପ୍ରୋଟୋବେଂଗଲୀ ଅକ୍ଷରରେ ଏକ ଶିଳାଲିପି ଖୋଦିତ ହୋଇଛି । ଏହାର ପାଠୋଦ୍ଧାର କରିଥିଲେ ପ୍ରଫେସର ଡଃ କୁଂଜବିହାରୀ ତ୍ରିପାଠୀ ଏବଂ ପ୍ରଶାଂତ କୁମାର ରାୟ, କ୍ୟୁରେଟର, ଓଡ଼ିଶା ମ୍ୟୁଜିୟମ । ଶ୍ରୀ ରାୟ ଏ ସମସ୍ତ ଶିଳାଲେଖ ଓ ମୂର୍ତ୍ତିର ପ୍ଲାଷ୍ଟର ଛାପ ନେଇ ଓଡ଼ିଶା ମ୍ୟୁଜିୟମ୍‌ରେ ରଖିଥିଲେ ।

ଶିଳାଲେଖ ଛଡ଼ା ବହୁ ପଥରମୂର୍ତ୍ତି ଦିଗଂତ ମ୍ୟୁଜିୟମରେ ଥିଲା । ସେମାନଂକ ସଂଖ୍ୟା ପ୍ରାୟ ୭୦ ରୁ ୮୦ ମଧ୍ୟରେ ହେବ ।

ଆଂଟିକ୍ୟୁଟିଜ୍ ଆକଟ୍ ଅନୁଯାୟୀ ଏ ସମସ୍ତ ମୂର୍ତ୍ତି ଓ ପ୍ରତ୍ନଦ୍ରବ୍ୟର ତିନି କପି କରି Post Card Sizeର ଫଟୋଗ୍ରାଫ୍ ଓ ବିବରଣୀ ସଂପୃକ୍ତ ବିଭାଗକୁ ଦିଆଯାଇଥିଲା ଏବଂ ଏସବୁର ରେଜିଷ୍ଟ୍ରେସନ କରାଯାଇଥିଲା । ଏହା ବହୁ ବ୍ୟୟସାପେକ୍ଷ ଥିଲା ।

## ପୋଥିଚିତ୍ର :

ପୋଥିଚିତ୍ର ମଧ୍ୟରେ ଉପେଂଦ୍ର ଭଂଜଂକ 'ଲାବଣ୍ୟବତୀ' କାବ୍ୟଟି ଅତି ଉଚ୍ଚକୋଟୀର ପୋଥିଚିତ୍ର ଥିଲା । ପ୍ରାୟ ୧୫୦ ପୃଷ୍ଠା ବିଶିଷ୍ଟ ଏହି ଚିତ୍ର ପୋଥିଟି ମୋତେ ଗଂଜାମର ନାରୀକବି ଅନ୍ନପୂର୍ଣ୍ଣା ଦେବୀଂକ କନ୍ୟା କୁମାରୀ ମନୋରମା ପଟ୍ଟନାୟକ (ଯେ କି ଜଣେ ସ୍କୁଲ୍ ଇନ୍‌ସ୍ପେକ୍‌ଟ୍ରେସ୍ ଥିଲେ) ଦେଇଥିଲେ । ଏହାର ଚିତ୍ରଗୁଡ଼ିକ ବହୁ ରଂଗବିଶିଷ୍ଟ ଥିଲା । ଏଭଳି ଉଚ୍ଚକୋଟୀର ପୋଥିଚିତ୍ର ଓଡ଼ିଶାରେ ଖୁବ୍ କମ୍ ଥିବ । ଆହୁରି ୪/୫ଟି ଚିତ୍ରପୋଥି ମଧ୍ୟ ଦିଗଂତ ସଂଗ୍ରହାଳୟରେ ଥିଲା, ଯଥା – 'ସର୍ବାଂଗ ସୁଂଦରୀ', 'ଚିତ୍ରକାବ୍ୟ ବଂଧୋଦୟ', 'ଦଶପୋଇ', 'ଆର୍ତତ୍ରାଣ ଚଉତିଶା', ଏବଂ 'ବଂଧ ଚିତ୍ର' । 'ସର୍ବାଂଗ ସୁଂଦରୀ' ପୋଥିଟି ବାଂକି ନିକଟସ୍ଥ ବ୍ରହ୍ମପୁର ଗ୍ରାମରୁ ଜଣେ ଭଦ୍ରଲୋକଂକ ଠାରୁ କିଣିଥିଲି । ତାଂକ ନାମ ମୋର ମନେପଡୁ ନାହିଁ । ଉପେଂଦ୍ର ଭଂଜଂକ ଦଶପୋଇ ଚିତ୍ରପୋଥିଟି ଭଦ୍ରଖ ଅଂଚଳର ଅର୍ଜୁନବିଂଧା ଗ୍ରାମରୁ ଜଣେ ଭଦ୍ରମହିଳାଂକଠାରୁ ପାଇଥିଲି । 'ଆର୍ତତ୍ରାଣ ଚଉତିଶା'ଟି ଗଂଜାମ ଜିଲ୍ଲା ଖଲିକୋଟରୁ ସଂଗ୍ରହ କରିଥିଲି । 'ବଂଧ-ଚିତ୍ର'ଟି କଟକ ସହରରୁ ସଂଗ୍ରହ କରିଥିଲି ।

## ରଂଗିନ୍ ମାଇକ୍ରୋ ଫିଲ୍ମ :

ମୁଁ ଏହି ଚିତ୍ରପୋଥିଗୁଡ଼ିକର ରଂଗିନ ମାଇକ୍ରୋ ଫିଲ୍ମ ବା Slides କଲିକତାରେ କରାଇଥିଲି । ପ୍ରତି Slide ତିନି କପି କରାଯାଇଥିଲା । ଏଥିରେ ବହୁତ ଟଂକା ଖର୍ଚ୍ଚ ହୋଇଥିଲା । ଏହାକୁ ପ୍ରଦର୍ଶନ କରାଇବା ପାଇଁ ଏକ Projector ଓ Screen ମଧ୍ୟ କିଣିବାକୁ ପଡ଼ିଥିଲା । ମୁଁ ପ୍ରାୟ ୩୦୦ ରଂଗିନ Slides କରାଇଥିଲି । ଏସବୁ କରିବା

ପାଇଁ ଜ୍ଞାନପୀଠ ପୁରସ୍କାର ପ୍ରତିଷ୍ଠାତା ଶ୍ରୀ ଶାଂତିପ୍ରସାଦ ଜୈନ ଏବଂ ତାଂକ ସ୍ତ୍ରୀ ଶ୍ରୀମତୀ ରମା ଜୈନ ପୃଷ୍ଠପୋଷକତା କରିଥିଲେ। ତାଂକ ଅନୁଷ୍ଠାନ ଛରିଆରେ କଲିକତାର ଫଟୋ କଂପାନୀକୁ ଅର୍ଥ ପ୍ରଦାନ କରିଥିଲେ।

**ପ୍ରଦର୍ଶନୀ ଓ ସ୍ଲାଇଡ୍ 'ଶୋ' :**

ତା ୫ ଅକ୍ଟୋବର ୧୯୭୦ ମସିହାରେ ମୁଁ କଟକ ଶ୍ରୀରାମଚଂଦ୍ର ଭବନରେ ଏକ ସଭା, ପ୍ରଦର୍ଶନୀ ଓ ସ୍ଲାଇଡ୍‌ଶୋର ଆୟୋଜନ କରିଥିଲି। ନ୍ୟାସନାଲ୍ ପ୍ରଫେସର ଓ କେଂଦ୍ର ସାହିତ୍ୟ ଏକାଡେମୀର ସଭାପତି ଡଃ ସୁନୀତି କୁମାର ଚାଟାର୍ଜି (ପଦ୍ମବିଭୂଷଣ) ଏହି ସଭାରେ ମୁଖ୍ୟ ଅତିଥି ରୂପେ ଯୋଗଦେଇଥିଲେ। ଅନ୍ୟମାଂନକ ମଧ୍ୟରେ ଡ. ହରେକୃଷ୍ଣ ମହତାବ, ଡଃ ସଦାଶିବ ମିଶ୍ର ଓ କାଳିଂଦୀଚରଣ ପାଣିଗ୍ରାହୀ ପ୍ରମୁଖ ଏଥିରେ ଯୋଗ ଦେଇଥିଲେ ଏବଂ ଭାଷଣ ଦେଇଥିଲେ। ଡ. ମହତାବ ଏଥିରେ ସଭାପତିତ୍ୱ କରିଥିଲେ।

ପ୍ରଫେସର ସୁନୀତି ଚାଟାର୍ଜି ତାଂକ ଭାଷଣରେ କହିଥିଲେ 'ଓଡ଼ିଶା ବା ଉତ୍କଳ କଳା ଓ ସଂସ୍କୃତିର ପୁଣ୍ୟପୀଠ। ଓଡ଼ିଆ ଭାଷା ବଂଗଳା ଭାଷାର ବଡ଼ଭଉଣୀ।''

ମୋ ସାନପୁଅ ଉଦୟନ ସ୍ଲାଇଡ୍ ଶୋ ଦେଖାଇଥିଲା। ମୁଁ ଏହି ଚିତ୍ରଗୁଡ଼ିକର ତାତ୍ପର୍ଯ୍ୟ ବୁଝାଇଥିଲି ଏବଂ ବିବରଣୀ ପ୍ରଦାନ କରିଥିଲି। ଏ ସଂକ୍ରାଂତରେ ଯେଉଁ ଓଡ଼ିଆ ପ୍ରଚାରପତ୍ର ଓ ଇଂରାଜୀ ନିମଂତ୍ରଣ ପତ୍ର ବଂଟାଯାଇଥିଲା ତାହାର ଫଟୋ କପି ତଳେ ଦିଆଗଲା।

**ଦିଗଂତ ମ୍ୟୁଜିୟମ ତରଫରୁ ପ୍ରାଚୀନ ଚିତ୍ରପୋଥି ପ୍ରଦର୍ଶନୀ ଏବଂ ସ୍ଲାଇଡ୍ ଶୋ:**

ତା ୫-୧୦-୭୦, ସୋମବାର, ଅପରାହ୍ଣ ଘ୫ଣ୍ଟାରେ
କଟକ ଶ୍ରୀରାମଚନ୍ଦ୍ର ଭବନରେ ଅନୁଷ୍ଠିତ ହେବ।

କବି ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କଦ୍ୱାରା ପ୍ରତିଷ୍ଠିତ ଦିଗଂତ ମ୍ୟୁଜିୟମ (କଟକ) ତରଫରୁ ଆସନ୍ତା ସୋମବାର, ତା ୫-୧୦-୭୦, ଅପରାହ୍ଣ ଘ. ୫ ସମୟରେ କଟକ, ଶ୍ରୀରାମଚନ୍ଦ୍ର ଭବନରେ ଏକ ପ୍ରାଚୀନ ଚିତ୍ରପୋଥି ପ୍ରଦର୍ଶନୀ ଏବଂ ତାହା ସହିତ ସେହି ପୋଥିଚିତ୍ରମାନଙ୍କରୁ ଉଠାଯାଇଥିବା ରଂଗିନ୍ ମାଇକ୍ରୋଫିଲ୍ମ ସ୍ଲାଇଡ୍ ଶୋ ଅନୁଷ୍ଠିତ ହେବ। ଓଡ଼ିଶାର ପ୍ରାଚୀନ କୀର୍ତ୍ତି ଏବଂ ତାର ମହନୀୟ ସଂସ୍କୃତିର ଉଜ୍ଜ୍ୱଳ ନିଦର୍ଶନଗୁଡ଼ିକର ଉଦ୍ଧାର, ସଂରକ୍ଷଣ ଓ ପ୍ରସାର ଏବଂ ସମଗ୍ର ଭାରତବର୍ଷ ଓ ଆଂତର୍ଜାତିକ କ୍ଷେତ୍ରରେ ଓଡ଼ିଶାର ଶିଳ୍ପ, ସାହିତ୍ୟ, ଭାସ୍କର୍ଯ୍ୟ ଓ ଚିତ୍ରକଳାର ଉଜ୍ଜ୍ୱଳ ପ୍ରତିମା ଯେପରି ପ୍ରତିଭାତ ହୋଇପାରିବ ସେ ଦିଗରେ ପ୍ରଯତ୍ନ କରିବା ଦିଗଂତ ମ୍ୟୁଜିୟମର ଲକ୍ଷ୍ୟ।

ଏହି ଉତ୍ସବରେ ଭାରତର ଜାତୀୟ ପ୍ରଫେସର ଏବଂ କେନ୍ଦ୍ର ସାହିତ୍ୟ ଏକାଡେମୀର ସଭାପତି ଡଃ ସୁନୀତି କୁମାର ଚାଟାର୍ଜି ମୁଖ୍ୟଅତିଥି ରୂପେ ଭାଷଣଦେବେ ଏବଂ

ଡ. ହରେକୃଷ୍ଣ ମହତାବ୍ ସଭାପତିତ୍ୱ କରିବେ। କେନ୍ଦ୍ର ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ପ୍ରଦର୍ଶନୀ ଉଦ୍‌ଘାଟନ କରିବେ।

ମୁଖ୍ୟବକ୍ତା ରୂପେ ଅବସରପ୍ରାପ୍ତ ଜଷ୍ଟିସ୍ ଶ୍ରୀ ରାଜକିଶୋର ଦାସ ଏବଂ ବକ୍ତା ରୂପେ ଡ. କୁଂଜବିହାରୀ ଦାସ, ଡ. କାହ୍ନୁଚରଣ ମିଶ୍ର, ଶ୍ରୀ ସୁରେନ୍ଦ୍ର ମହାନ୍ତି, ଶ୍ରୀ ଶ୍ରୀହର୍ଷ ମିଶ୍ର ପ୍ରମୁଖ ଭାଷଣ ଦେବେ।

ଯେଉଁ ଚିତ୍ରପୋଥିଗୁଡ଼ିକର ପ୍ରଦର୍ଶନୀ ଓ ସ୍ଲାଇଡ୍ ଶୋ କରାଯିବ, ତହିଁରୁ କେତେକ ସଂଗୀତ ମଧ୍ୟ ପରିବେଷଣ କରାଯିବ।

ଆପଣମାନଙ୍କର ସଦୟ ଉପସ୍ଥିତି ଓ ସହଯୋଗ ଏକାନ୍ତ ପ୍ରାର୍ଥନୀୟ।

ମେରିଆ ବଜାର — ପରିଚାଳକ
କଟକ-୧ — ଦିଂଗତ ମ୍ୟୁଜିୟମ
ତା ୨୯-୧୦-୭୦

The Diganta Museum, Cuttack-1, is going to mount an exhibition of ancient palm-leaf Pothis containing multi-coloured pictures and hold a Slides Show of colour transparencies taken out of the above Pothis, at 6 p.m. on Monday, October 5, 1970 at Shri Ramchandra Bhavan, Cuttack-1.

Dr. Suniti Kumar Chatterje the National Professor of India and the President of the Central Sahitya Akademi has kindly consented to be the Chief Guest. Dr. H.K. Mahatab will preside and Smt. Nandini Satapathy, Minister of State, India, will inaugurate the exhibition.

Your kind presence is solicited.

Meria Bazar, Cuttack-1 — **S. Raut Roy**
29-9-1970 — Founder-Director,
DIGANTA MUSEUM

ଏହାପରେ ମୁଁ ୧୯୭୯ ମସିହାରେ ମସ୍କୋ ୟୁନିଭରସିଟିଂକ ଆନୁକୂଲ୍ୟରେ ତାଂକ ମନସ୍ତତ୍ତ୍ୱ ବିଭାଗ ହଲ୍‌ରେ ଓଡ଼ିଶାର କେତେକ ଛାପା ପଟ୍ଟଚିତ୍ର ଓ ପୋଥିଚିତ୍ରର ଏକ ମନୋଜ୍ଞ ପ୍ରଦର୍ଶନୀ କରିଥିଲି। ଏଥିରେ ମସ୍କୋର T.V. ଓ Radio ପ୍ରଭୃତି ଯୋଗ ଦେଇଥିଲେ ଏବଂ ଏହାର ପ୍ରସାର ସୋଭିଏତ୍ ରୁଷ୍ ଦେଶରେ କରିଥିଲେ।

୧୯୮୨ ମସିହାରେ ଲଂଡନ ବିଶ୍ୱବିଦ୍ୟାଳୟଂକ ଆମଂତ୍ରଣ କ୍ରମେ ଲଂଡନରେ ଭାରତ ଉତ୍ସବ ଚାଲିଥିଲାବେଳେ ଉକ୍ତ ବିଶ୍ୱବିଦ୍ୟାଳୟର School of Oriental & African Studiesର Libraryରେ ଓଡ଼ିଶାର ପୋଥିଚିତ୍ରର ଓ ପଟ୍ଟଚିତ୍ରର ଏକ ତିନିମାସ ବ୍ୟାପୀ ପ୍ରଦର୍ଶନୀ କରିଥିଲି। ଏ ସମସ୍ତ ବିଷୟ ପରେ ଯଥାସ୍ଥାନରେ ବର୍ଣ୍ଣିତ ହେବ।

କଟକରେ ଏକ ମ୍ୟୁଜିୟମ କରିବା ପାଇଁ ମୋର ପ୍ରଚେଷ୍ଟା ସଫଳ ହୋଇପାରିଲା ନାହିଁ । ଓଡ଼ିଶା ସରକାର ଓ ଭାରତ ସରକାର କେହି ଏଥିପାଇଁ ଆର୍ଥିକ ସହାୟତା ଦେଲେ ନାହିଁ । ମୋର ଜଣେ ବଂଧୁ ଡଃ ତ୍ରିଗୁଣା ସେନ୍ କେଂନ୍ଦ୍ରର ଶିକ୍ଷାମଂତ୍ରୀ ଥିଲାବେଳେ ମୁଁ ତାଂକୁ ମୋର ଅଭିଳକ୍ଷିତ ପ୍ରକଳ୍ପ ବିଷୟରେ ଲେଖିଥିଲି । ସେ ସାହାଯ୍ୟ କରିବେ ବୋଲି କହିଥିଲେ, ମାତ୍ର କାର୍ଯ୍ୟରେ କିଛି କଲେନାହିଁ ।

**ଓଡ଼ିଶା ସରକାରଂକ ଚକ୍ରାଂତ :**

ମୋର ବାଲ୍ୟବଂଧୁ ଶ୍ରୀ ନିତ୍ୟାନଂଦ ମହାପାତ୍ର ଓଡ଼ିଶାର ମିଳିତ ମଂତ୍ରିମଣ୍ଡଳର (ଜନ କଂଗ୍ରେସ ଓ ଗଣତଂତ୍ର ପରିଷଦଦ୍ୱାରା ଗଠିତ ଯାହା ପାଟଣା ମହାରାଜାଂକ ମୁଖ୍ୟ ମଂତ୍ରିତ୍ୱରେ ଚାଲିଥାଏ) ଶିକ୍ଷାମଂତ୍ରୀ ଥିଲେ । ସେ କଟକରେ ମ୍ୟୁଜିୟମ୍ ସ୍ଥାପନ ପାଇଁ ମୋତେ ସାହାଯ୍ୟ କରିବେ ବୋଲି ମୁଁ ଆଶାକରିଥିଲି । ପରେ ସେ ଓଡ଼ିଶାରେ ଏକ ନିଖିଳ ଭାରତ ଲେଖକ ସମ୍ମିଳନୀ ଡାକିବେ ବୋଲି ଉଦ୍ୟମ କରିଥିଲେ, ମାତ୍ର ମୁଁ ଏହାର ବିରୋଧ କରିଥିଲି । ସୁରେଂଦ୍ର ମହାଂତି ମୋତେ ସମର୍ଥନ କରିଥିଲେ । ଆମର ଯୁକ୍ତି ଥିଲା ସରକାରୀ ଉଦ୍ୟମରେ ଲେଖକ ସମ୍ମିଳନୀ ହେଲେ ସେଥିରେ ସ୍ୱାଧୀନ ମତ ପ୍ରକାଶ କରିବା ସଂଭବ ହେବ ନାହିଁ ।

ସରକାରଂକରଂ ପ୍ରତିକ୍ରିୟାଶୀଳ କାର୍ଯ୍ୟର ବିରୋଧ ଲେଖକର ଧର୍ମ, ମାତ୍ର ସରକାରୀ ସମ୍ମିଳନୀରେ କେବଳ ସରକାରୀ ଚାକିରିଆମାନଂକର ମତ ପ୍ରକାଶପାଇବ । ଶ୍ରୀ ନିତ୍ୟାନଂଦ ମହାପାତ୍ର ପ୍ରସ୍ତାବିତ ସମ୍ମିଳନୀ ବଂଦକରିଦେଲେ, କିଂତୁ ମୋ ଉପରେ ତାଂକର ଆକ୍ରୋଶ ରହିଲା ।

ସେ ଯାହାହେଉ, ଓଡ଼ିଶା ସରକାର ମୋ ମ୍ୟୁଜିୟମକୁ କିଣିନେବେ ବୋଲି ମୋତେ ନୋଟିସ୍ ପଠାଇଲେ । ଏକ ମୂଲ୍ୟନିର୍ଦ୍ଧାରଣ କମିଟି (Valuation Committee) ମଧ ଗଠନକଲେ । ଶ୍ରୀ ରମାକାଂତ ରଥ, I.A.S ସେତେବେଳେ ସଂସ୍କୃତି ସଚିବ ଥାଂତି । ସେ ସରକାରଂକ ତରଫରୁ ଦିଗଂତ ମ୍ୟୁଜିୟମକୁ acquire କରିବା ପାଇଁ ସରକାରୀ ସିଦ୍ଧାଂତ ମୋତେ ଜଣାଇଥିଲେ । ସରକାରଂକର ଜଣେ ଦି'ଜଣ ପାଖଲୋକଂକ ଜରିଆରେ ଯିଏକି Valuation Committeeର ସଦସ୍ୟ ଥିଲେ, ବିଭାଗୀୟ କର୍ତ୍ତୃପକ୍ଷ ମୋତେ ଜଣାଇଥିଲେ ଯେ ସେମାନେ ୧ ଲକ୍ଷ ଟଂକା ପର୍ଯ୍ୟଂତ ମୂଲ୍ୟ ଦେବେ । ମୁଁ ତହିଁର ତୀବ୍ର ବିରୋଧ କରିଥିଲି । ମୁଁ ଏହି ମ୍ୟୁଜିୟମ କାହାକୁ ବିକ୍ରି କରିବି ନାହିଁ ବୋଲି ଦୃଢ଼ ମତ ତାଂକୁ ଜଣାଇ ଦେଇଥିଲି । ତାପରେ ସେ ମୋତେ ସରକାର ଗଠନ କରିଥିବା ମୂଲ୍ୟ ନିର୍ଦ୍ଧାରଣ କମିଟି ମୋ ଘରକୁ ଅମୁକ ତାରିଖରେ ଆସିବେ ବୋଲି ଜଣାଇଥିଲେ । ସମୟ ମଧ ଠିକ୍ କରିଦେଇଥିଲେ । ମାତ୍ର ମୁଁ ଦୃଢ଼ସ୍ୱରରେ ଲେଖିଲି ଯେ ମୋ ଘରକୁ କେହି ଆସିବେ ନାହିଁ, ଯଦି ଆସଂତି ମୁଁ ସେମାନଙ୍କୁ ଘରେ ପଶିବାକୁ ଦେବି ନାହିଁ । ତେଣୁ ସରକାରଂକର ଦିଗଂତ ମ୍ୟୁଜିୟମ acquire କରିବା ଉଦ୍ୟମ ସେତିକିରେ ବଂଦହୋଇଗଲା ।

ଦିଗଂତ ମ୍ୟୁଜିୟମ ଭାରତର ବହୁ ବିଶିଷ୍ଟ ଲୋକ ପରିଦର୍ଶନକରି ଉଚ୍ଚ ପ୍ରଶଂସା କରିଥିଲେ । ସେମାନେ ନିଜ ନିଜ ଅଭିମତ ପରିଦର୍ଶକ ବହିରେ ଲିପିବଦ୍ଧ କରିଯାଇଛଂତି । ସେମାନଂକ ମଧ୍ୟରେ ଓଡ଼ିଶାର ତତ୍‌କାଳୀନ ରାଜ୍ୟପାଳ ଡା. ଆନ୍‌ସାରୀ ଏବଂ ତାଂକ ପତ୍ନୀ ଶ୍ରୀମତୀ ଆନ୍‌ସାରୀ, କଲିକତା ଅମୃତବଜାର ପତ୍ରିକାର ସଂପାଦକ ତୁଷାରକାଂତି ଘୋଷ, କଲିକତା U.S.I.S.ର ଡାଇରେକ୍ଟର୍, ଏବଂ ଡଃ. ସୁନୀତି କୁମାର ଚାଟାର୍ଜି ପ୍ରଭୃତି ଏହି ମ୍ୟୁଜିୟମର ଉଚ୍ଚ ପ୍ରଶଂସା କରି ନିଜ ନିଜ ମତ ବ୍ୟକ୍ତି କରିଛନ୍ତି । ଜର୍ମାନୀର ମାକ୍ସମୁଲାର ପ୍ରତିଷ୍ଠାନର ଭାରତୀୟ ଶାଖାର ନିର୍ଦ୍ଦେଶକ ପ୍ରଭୃତି ମଧ୍ୟ ଉଚ୍ଚ ପ୍ରଶଂସା କରି ଲେଖିଛଂତି । ଡ. ଚାଟାର୍ଜି ନିଜ ମତ ଟେପ୍ ରେକର୍ଡରେ ବାଣୀବଦ୍ଧ କରିଯାଇଛଂତି ।

ଏହି ମ୍ୟୁଜିୟମ ମୋ ଘରେ ଦୁଇଟି ବଖରାରେ ରଖାଯାଇଥିଲା । ଏହା ପ୍ରାୟ ୧୨ ବର୍ଷକାଳ ମୋ ଘରର ଦୁଇଟି ବଖରା ବଂଦ କରି ରଖିଥିଲା । ଏଥିଯୋଗୁ ମୋତେ ବହୁତ କ୍ଷତି ସହିବାକୁ ପଡ଼ିଥିଲା ।

**ପ୍ରଶାଂତ ଓ ମଂଜୁଶ୍ରୀର ଭାରତ ଆଗମନ :**

ପ୍ରଶାଂତ ଓ ମଂଜୁଶ୍ରୀ ବହୁଦିନ ଧରି ଲଂଡନରେ ରହିଯାଇଥିଲେ । ସେମାନେ ଭାରତ ଆସିବାକୁ ଏବଂ ଭାରତରେ ସ୍ଥାୟୀ ଭାବରେ ବସବାସ କରିବାକୁ ଛଟପଟ ହେଉଥିଲେ । ମାତ୍ର, ଭାରତରେ ଉପଯୁକ୍ତ ବେତନରେ ଚାକିରି ମିଳିବା ପ୍ରାୟ ଅସଂଭବ ଥିଲା । ମୁଁ ଥରେ ପ୍ରଶାଂତକୁ ନେଇ ବି.କେ. ବିରଳାଂକୁ ତାଂକ କଲିକତା ଅଫିସରେ ଭେଟିଥିଲି । ବି.କେ. ବିରଳା କେଶୋରାମ କଟନ ମିଲସ୍ ଏବଂ ବହୁ ପ୍ରତିଷ୍ଠାନର ସର୍ବୋଚ୍ଚକର୍ତ୍ତା ଥିଲେ । ମାତ୍ର, ବି.କେ. ବିରଳା ମୋତେ କହିଲେ ଯେ ଆମର କୌଣସି ଶିଳ୍ପ ପ୍ରତିଷ୍ଠାନରେ ଚାକିରି ଖାଲି ନାହିଁ । ସେ ଇଚ୍ଛା କରିଥିଲେ ପ୍ରଶାଂତକୁ ତାଂକର କୌଣସି ନା କୌଣସି ଶିଳ୍ପ ପ୍ରତିଷ୍ଠାନରେ ଚାକିରି ଦେଇପାରିଥାଂତେ । ତାଂକର ଯିଏ ଚିଫ୍ ଏକାଉଂଟାଂଟ୍, ତାଂକ ଯୋଗ୍ୟତା ଥିଲା ମାଟ୍ରିକ୍ୟୁଲେସନ୍ ପାସ୍ । ସେ ମାସକୁ ପ୍ରାୟ ୮-୧୦ ହଜାର ଟଂକା ଦରମା ପାଉଥିଲେ । ମାତ୍ର, ପ୍ରଶାଂତ ଭଳି ଲଂଡନରେ କଷ୍ଟ୍ ଏକାଉଟିଂ ପାସ୍ କରିଥିବା ଏବଂ ଦୀର୍ଘ ଅଭିଜ୍ଞତା ଥିବା ଜଣେ କଲିକତାବାସୀ ବା ସ୍ଥାନୀୟ ବାସିଂଦାଂକୁ ଚାକିରି ଦେଲେନି ।

ମୁଁ ଇଂଡିଆନ୍ ମେଟାଲସ୍ ଏଂଡ୍ ଫେରୋଆଲୋଏଜ ଲିଃ (IMFA)ର ପ୍ରତିଷ୍ଠାତା ଓ ଚେୟାରମ୍ୟାନ ଡଃ. ବଂଶୀଧର ପଂଡାଂକୁ ପ୍ରଶାଂତ ବିଷୟରେ ଥରେ ଟେଲିଫୋନ୍ କରିଥିଲି । ସେ ଦୁଇ ତିନିଦିନ ପରେ ତାଂକ ଭୁବନେଶ୍ୱର ହେଡ୍ ଅଫିସରେ କଷ୍ଟ ଏକାଉଂଟାଂଟ୍ ଭାବରେ ପ୍ରଶାଂତକୁ ନିଯୁକ୍ତିଦେଇ ଏକ ଚିଠି ମୋ ଜରିଆରେ ପଠାଇଲେ । ପ୍ରଶାଂତ ଓ ମଂଜୁଶ୍ରୀ ସବୁ ଜିନିଷପତ୍ର ନେଇ ଭାରତ ଆସିଲେ । ସେମାନେ ଆମ ଘରେ ରହିଲେ । ପ୍ରଶାଂତ ପ୍ରତିଦିନ ବସ୍‌ଯୋଗେ ଭୁବନେଶ୍ୱର ଯା'ଆସ କରୁଥିଲା । ମାତ୍ର ସେ ସେଠାରେ ବେଶୀଦିନ ତିଷ୍ଠିପାରିଲାନାହିଁ । ବିଭାଗୀୟ ଅଫିସରମାନେ ତାକୁ data ଯୋଗାଇଲେନାହିଁ । ବହୁ କୁହାକୁହି କଲେ ମାସେ ଦୁଇମାସରେ ଅଳ୍ପ କିଛି data

ଦେଉଥିଲେ, ତେଣୁ ସେ costing କରିପାରିଲାନାହିଁ । ପ୍ରଶାଂତକୁ ସେମାନେ ତାଂକ ଭିତରି Circleରୁ ଦୂରେଇ ରଖିବାକୁ ଚାହୁଁଥିଲେ । ସେ ତାର ଅସୁବିଧା କଥା ଡଃ ପଂଡାଂକୁ କେତେଥର କହିଲା, ମାତ୍ର ବିଶେଷ କିଛି ଫଳ ହେଲାନି । ପ୍ରଶାଂତ ପ୍ରାୟ ଛ'ମାସ କାଳ ଏହିପରି ଅସୁବିଧା ଭୋଗି ଶେଷରେ ନିଜ ଚାକିରିରୁ ଇସ୍ତଫା ଦେଇ ଲଂଡନ ଫେରିଗଲା । ମଂଜୁଶ୍ରୀ ସଂଗେ ସଂଗେ ଲଂଡନ ଯାଇ ପାରିଲା ନାହିଁ । ତା'ର କାରଣ ସେ ଓଡ଼ିଶାରେ ସବୁଦିନ ରହିବା ଆଶାରେ ତୁଳସୀପୁରରେ ଦୁଇଟି ଫ୍ଲାଟ୍ ବିଶିଷ୍ଟ ଘର ବନାଉଥିଲା । ସେ ପ୍ରତିଦିନ ତୁଳସୀପୁରସ୍ଥ ହିଂଦୋଳକୋଠି ନିକଟକୁ ଯାଇ ଘରତିଆରି କାମ ତଦାରଖ କରୁଥିଲା । ଘରତିଆରି ସରିବା ପରେ ସେ ତାହାକୁ ଭଡ଼ାଦେଇ ଲଂଡନ ଚାଲିଗଲା । ପରେ ଆସି ସାନୁ ଓ ଶ୍ୱେତାକୁ ଲଂଡନ ନେଇଗଲା । ଆଗରୁ କହିଛି ମୁଁ ହାର୍ଭାଡ଼ରୁ ଡଃ ପଂଡାକୁ ଜାଣିଥିଲି । ମୁଁ ହାର୍ଭାଡ଼ ବିଶ୍ୱବିଦ୍ୟାଳୟ ସେମିନାରରେ ଯୋଗଦେବାକୁ ଯାଇଥିବାବେଳେ ସେ ସେଠାରେ ଛାତ୍ର ଥିଲେ । ମୋତେ କେତେଥର ତାଂକ ହଷ୍ଟେଲକୁ ଡାକିନେଇ ଭାରତୀୟ ଖାନା ଖୁଆଇଥିଲେ ।

**ଉଦୟନର ଲଂଡନ ଯାତ୍ରା :**

ପ୍ରଶାଂତ ଓ ମଂଜୁଶ୍ରୀ ଭାରତ ଆସିବା ପୂର୍ବରୁ ଆମେ ଉଦୟନ (ବୁଚି)କୁ ଉଚ୍ଚଶିକ୍ଷା ପାଇଁ ଲଂଡନ ପଠାଇଦେଲୁ, ତାର କାରଣ ତାକୁ ସେମାନେ କେତେକ ଅଫିସ୍ ସହିତ ଚିହ୍ନା କରାଇଦେବେ, ତାହାହେଲେ ସେ କିଛି ପାର୍ଟଟାଇମ୍ କାମ ପାଇପାରିବ । ତା'ଛଡ଼ା ସେ ଲଂଡନରେ ନୂଆ, ତେଣୁ ପ୍ରଥମେ ପ୍ରଥମେ ଅସୁବିଧାରେ ପଡ଼ିବ, ତେଣୁ ସେମାନେ ଲଂଡନରେ ଥାଉ ଥାଉ ୨/୩ ମାସ ପୂର୍ବରୁ ବୁଚି ସେଠାରେ ପହଂଚିଥିଲା । ବୁଚି ସେଠାରୁ ମାର୍କେଟିଂ ଓ ଲୋକସଂପର୍କ ଆଦି ଡିପ୍ଲୋମା କୋର୍ସରେ ପାସ୍‌କରି ସୁଇଜରଲ୍ୟାଂଡର ଜେନିଭାରୁ ବିଜିନେସ୍ ମ୍ୟାନେଜ୍‌ମେଂଟ୍‌ରେ କୃତିତ୍ୱର ସହ M.A. ପାସ୍ କଲା । ତାପରେ ଲଂଡନ ବିଶ୍ୱବିଦ୍ୟାଳୟରେ ବିଜିନେସ୍ ମ୍ୟାନେଜ୍‌ମେଂଟ୍ ବିଭାଗରେ ଅସ୍ଥାୟୀ ଅଧ୍ୟାପକ ରୂପେ କେତେବର୍ଷ କାମକରିବା ପରେ କେଂବ୍ରିଜ୍ ବିଶ୍ୱବିଦ୍ୟାଳୟକୁ ବଦଳିହୋଇଗଲା । ବର୍ତ୍ତମାନ ସେ ସେଠାରେ ଅବସ୍ଥିତ ଆଙ୍ଗ୍ଲିକାନ୍ ବିଶ୍ୱବିଦ୍ୟାଳୟରେ ସେହି ବିଭାଗର ପ୍ରିନ୍‌ସିପାଲ୍ ଅଧ୍ୟାପକ – ଏହା ପୂର୍ବରୁ କହିଛି ।

**ଚିତ୍ରାର ବିବାହ :**

ଚିତ୍ରାର ବିବାହ ଦେବାପାଇଁ ଆମେ ଉପଯୁକ୍ତ ପାତ୍ର ଖୋଜୁଥିଲୁ । ଚିତ୍ରା ରେଭେନ୍‌ସାରୁ ଇଂରାଜୀରେ M.A. ପାସ୍ କରି St. Joseph Convent Schoolରେ ଇଂରାଜୀ ଶିକ୍ଷୟିତ୍ରୀ ରୂପେ କାମକରୁଥିଲା । ମାତ୍ର ଉପଯୁକ୍ତ ବରପାତ୍ର ପାଇବା ସହଜ ନୁହେଁ । ବହୁ ପ୍ରସ୍ତାବ ଆସିଥିଲା ଏବଂ ଭାଂଗିଥିଲା । ଭଦ୍ରଖର ଇତିହାସ ଅଧ୍ୟାପିକା ଏବଂ ସୁଲେଖିକା ଶାଂତି ମହାପାତ୍ର (ପରେ ବଳ) ମୋର ଜଣେ ଅଂତରଂଗ ବଂଧୁ ଥିଲେ । ସେ ମୋର ସମସ୍ୟା ଜାଣିଥିଲେ । ଯାଜପୁର ନିକଟସ୍ଥ ଇଂଡସ୍ ଗ୍ରାମର ପଦ୍ମଚରଣ

ରାଉତ ତାଂକ ସାନପୁଅ ରବିପାଇଁ ପାତ୍ରୀ ଖୋଜିଦେବାପାଇଁ ତାଂକୁ ଅନୁରୋଧ କରିଥିଲେ । ରବି ଆମେରିକାର କଲଂବିଆ ବିଶ୍ୱବିଦ୍ୟାଳୟରେ ସେଲ୍‌ ଇଂଜିନିୟରିଂରେ ଡକ୍‌ଟେରେଟ୍‌ କରୁଥାଏ । ସେ ଅଳ୍ପଦିନ ଛୁଟି ନେଇ ଭାରତ ଆସିଥିଲା । ଶାଂତି ସେମାନଂକୁ ମୋ ଝିଅ ଚିତ୍ରା ବିଷୟ କହିଥିଲେ । ସେମାନେ ତା ପରଦିନ ଆମଘରକୁ ଆସି ଚିତ୍ରାକୁ ଦେଖି ପସଂଦ କଲେ । ଚିତ୍ରା ମଧ ରବିକୁ ପସଂଦକଲା । ସେମାନେ କହିଲେ ବାହାଘର ଚାରିଦିନ ମଧରେ ହେବା ଦରକାର, କାରଣ ରବିର ଛୁଟି ସରିଆସିଲାଣି ।

ପଦ୍ମଚରଣବାବୁ ଜାମ୍‌ଶେଦ୍‌ପୁର ଟାଟା ଇସ୍ପାତ କାରଖାନାରେ Time Keeper ଥିଲେ । ତାଂକର 'ଉତ୍କଳ ବୁକ୍‌ ଏଜେନ୍ସି' ନାମକ ଏକ ବଡ଼ ବହିଦୋକାନ ଜାମ୍‌ଶେଦପୁର ସାକ୍‌ଚି ବଜାରରେ ଥିଲା । ଏହା ସହରର କେଂଦ୍ରସ୍ଥଳୀ ଥିଲା । ସେହି ଦୋକାନକୁ ଲାଗି ନିଜର ରହିବାଘର ମଧ ତୋଲାଇଥିଲେ । ଗାଁରେ ତାଂକର ଜମିବାଡ଼ି, ଘରଦ୍ୱାର, ପୋଖରୀ ଇତ୍ୟାଦି ମଧ ଥିଲା । ମୁଁ ଯାଜପୁର ବିରଜା ମଂଦିରଠାରୁ ଦେଢ଼ମାଇଲ୍‌ ଦୂର ଇଂଡସ୍‌ ଗ୍ରାମକୁ ଯାଇ ତାଂକ ଘରଦ୍ୱାର ଦେଖିଆସିଲି । ତାପରେ ପଦ୍ମଚରଣବାବୁ ଓ ମୁଁ ବିରଜା ମଂଦିରକୁ ଆସି ସେଠାରେ ନିର୍ବଂଧ କଲୁ ।

ବିଭାଘର ଚାରିଦିନ ବାକିଥାଏ, ମାତ୍ର ମୋ ସ୍ତ୍ରୀ ଘରେ ନଥିଲେ । ସେ ପୂର୍ଣ୍ଣକୁଂଭ ମେଳାରେ ସ୍ନାନକରିବାପାଇଁ ଜଣେ ପଂଜାବୀ ଭଦ୍ରମହିଳା ମିସେସ୍‌ ସୁରୀଂକ ସହିତ ଆହ୍ଲାବାଦ୍‌ ଯାଇଥିଲେ । ଏପରି ମେଳା କ୍ୱଚିତ୍‌ ଘଟେ । ସେ ଯାହାହେଉ, ଆମେ ମିସେସ୍‌ ସୁରୀ ଦେଇଯାଇଥିବା ଠିକଣାରେ ଟେଲିଗ୍ରାମ ପଠାଇଥିଲୁ । ମୋ ସ୍ତ୍ରୀ କୁଂଭମେଳାର ପ୍ରଥମଦିନ ତ୍ରିବେଣୀରେ ବୁଡ଼ ପାରି ବସାରେ ପହଂଚିଲାବେଳକୁ ଟେଲିଗ୍ରାମ ପହଂଚିଲା । ସେ ସେହିଦିନ ଟ୍ରେନ୍‌ରେ କଟକ ବାହାରିଲେ ଏବଂ କଟକରେ ବିଭାଘର ପୂର୍ବଦିନ ରାତିରେ ପହଂଚିଗଲେ ।

ଆମେ ଆମର କେତେକ ଆତ୍ମୀୟଂକ ସହ ପରାମର୍ଶ କରି ସ୍ଥିରକଲୁ ଯେ ତା ପରଦିନ ପୁରୀ ଶ୍ରୀମଂଦିରରେ ବିଭାଘରହେବ । ପଦ୍ମଚରଣବାବୁ ଏବଂ ତାଂକ ଆତ୍ମୀୟମାନେ ଆସି ପୁରୀରେ ସକାଳ ୧୦ଟାରେ ପହଂଚିଗଲେ । ଆମେ କଟକରୁ ଯାଇ ପ୍ରାୟ ୧୧ଟା ବେଳେ ପହଂଚିଲୁ ଏବଂ ସଂଗେ ସଂଗେ ଆମ ପଂଡାଂକୁ ଡକାଇ ଶ୍ରୀମଂଦିରରେ ବିଭାଘର କାର୍ଯ ସଂପନ୍ନକଲୁ । ଖାଇବାର ବଂଦୋବସ୍ତ କିଛି ହୋଇନଥିଲା । ଆମେ ସମସ୍ତେ ପାଂଥନିବାସକୁ ଯାଇ ଖିଆପିଆ କରି ଘରକୁ ଫେରିଲୁ । ଚିତ୍ରା ପଦ୍ମଚରଣବାବୁଂକ ଦଳ ସହ ତାଂକ ଗ୍ରାମ ଇଂଡସ୍‌କୁ ଗଲା ।

ଦୁଇଦିନପରେ ରବି ଓ ଚିତ୍ରା ଆମେରିକା ଯିବା କଥା ସ୍ଥିରହୋଇଥିଲା, ମାତ୍ର ରବିକୁ ଆହୁରି ଏକ ସପ୍ତାହ ଛୁଟି ମିଳିଗଲା । ତେଣୁ ସେମାନେ ଆମ ଘରକୁ ଆସିଲେ । ଏଠାରେ ତରବରରେ ଏକ ବଂଧୁମିଳନର ବ୍ୟବସ୍ଥା କଲୁ । ଆମର କେତେକ ବଂଧୁ ଓ ଆତ୍ମୀୟ ଏବଂ ଚିତ୍ରାର କନ୍‌ଭେଂଟ୍‌ର ବହୁ ଇଉରୋପିୟାନ୍‌ ସାଥୀ ଏଥିରେ

ଯୋଗଦେଇଥିଲେ । ତା ପରଦିନ ଆମେ ସମସ୍ତେ କଲିକତା ଗଲୁ ଓ ସେଠାରୁ ରବି ଓ ଚିତ୍ରା ପ୍ଲେନ୍ ଯୋଗେ ଆମେରିକା ଚାଲିଗଲେ । ସେହିଦିନ ସକାଳେ ମୋର କଲିକତାରେ ରାଜା ସୁବୋଧ ମଲ୍ଲିକ୍ ପାର୍କରେ S.U.C.I ଆନୁକୂଲ୍ୟରେ ଏକ ବଡ଼ ସାଂସ୍କୃତିକ ସଭାରେ ମୁଖ୍ୟ ଅତିଥି ରୂପେ ଯୋଗଦେବାର ପ୍ରୋଗାମ ଥାଏ । ତେଣୁ ମୁଁ, ମୋ ସ୍ତ୍ରୀ ଏବଂ ଚିତ୍ରା ପ୍ରଭୃତିଂକୁ ବାଲିଗଂଜରେ ଥିବା ମୋ ଦଦାଝିଅଭଉଣୀ ସାବିତ୍ରୀ ଘରେ ଛାଡ଼ିଦେଇ ଏହି ସମ୍ମିଳନୀରେ ଯୋଗଦେଲି । ସେଠାରେ ୧୨ଟା ପର୍ଯ୍ୟଂତ ରହି ମୁଁ ସାବିତ୍ରୀଘରକୁ ଫେରିଲି । ସଂଧ୍ୟାବେଳେ ଚିତ୍ରା ଓ ରବିକୁ ପ୍ଲେନ୍‌ରେ ବିଦାୟ ଦେବାପାଇଁ ଦମ୍‌ଦମ୍ ବିମାନଘାଟିକୁ ଯାଇଥିଲୁ ।

**ଚିତ୍ରାର ପରିବାର :**

ଚିତ୍ରା ଓ ରବି ଏବଂ ତାଂକର ଦୁଇ ଝିଅ ପ୍ରୀତି ଓ ସ୍ୱାତୀ ପ୍ରଥମେ ସିନ୍‌ସିନାଟିରେ ରହୁଥିଲେ । ରବି ଏକ ବଡ଼ କାରଖାନାରେ ଏକ ବିଭାଗର ମ୍ୟାନେଜର ରୂପେ କାମ କରୁଥିଲା । ବର୍ତ୍ତମାନ ସେମାନେ ଦୁଇ-ତିନି ବର୍ଷ ହେଲା ଡେଟ୍ରିଏଟ୍‌ରେ ଅଛଂତି । ସେଠାରେ ରବି Ford କଂପାନୀରେ ସେସ୍ ଇଂଜିନିୟର ଅଛି । ଚିତ୍ରା Librarianship ପରୀକ୍ଷାରେ ପାସ୍ କରି Librarianରୂପେ ପ୍ରଥମେ ସିନ୍‌ସିନାଟିରେ କେତେବର୍ଷ କାମ କରୁଥିଲା । ବର୍ତ୍ତମାନ ଦୁଇ-ତିନି ବର୍ଷ ହେଲା ସେ ଡେଟ୍ରୟଟ୍‌ରେ Librarian ରୂପେ କାମକରୁଛି । ତାର ଦୁଇ ଝିଅ ପ୍ରୀତି ଓ ସ୍ୱାତୀ ସ୍କୁଲ ପାଠ ଶେଷକରି ଜଣେ କଲେଜରେ ଏବଂ ବଡ଼ଝିଅ ପ୍ରୀତି ମିଚିଗାନ୍ ବିଶ୍ୱବିଦ୍ୟାଳୟରେ ମେଡ଼ିକାଲ କଲେଜରେ ପଢୁଛଂତି । ପ୍ରୀତି ଦୁଇଥର ଆମେରିକାରେ ନ୍ୟାସ୍‌ନାଲ୍ ସ୍କଲାରସିପ୍ ପାଇଥିଲା । ତାର ଫଟୋ ଓ ବିବରଣୀ ବହୁ ଆମେରିକାନ୍ ପତ୍ରିକାରେ ପ୍ରକାଶପାଇଥିଲା । ସେ ଦୁଇ ବର୍ଷ ତଳେ ଚିତ୍ରା ସହିତ କଟକ ଆସି ଏଠାରେ ଦୟାଶ୍ରମରେ କେତେମାସ ସମାଜସେବା କାର୍ଯ୍ୟ କରି ପ୍ରମାଣପତ୍ର ପାଇଥିଲା ।

ରବି ଓ ଚିତ୍ରା ତାଂକର ଜାମ୍‌ଶେଦପୁର ଓ ଗାଁର ଘରଛଡ଼ା ଭୁବନେଶ୍ୱରର ଚଂଦ୍ରଶେଖରପୁରଠାରେ ଗୋଟିଏ ଘର ମଧ୍ୟ କିଣିଛଂତି । ସେମାନେ ବିଭିନ୍ନ ସେମିନାରରେ ଯୋଗଦେବା ପାଇଁ ମଝିରେ ମଝିରେ ଭାରତ ଆସଂତି । ଉଦୟନ ମଧ୍ୟ ବିଭିନ୍ନ ସେମିନାରରେ ସଂଦର୍ଭ ପଢ଼ିବାପାଇଁ ଆମେରିକା ଓ ଭାରତ ପ୍ରଭୃତି ଦେଶ ପରିଭ୍ରମଣ କରେ । ତା' ସ୍ତ୍ରୀ ଡୋମିନିକ୍ ଯେକି ଜଣେ ବେଲ୍‌ଜିୟାନ୍ ଝିଅ ଏବଂ ପିଲାମାନେ ମଧ୍ୟ ଭାରତ ଆସଂତି ଏବଂ ମାସେ ବା ପାଂଚ ସପ୍ତାହ ରହି କେଂବ୍ରିଜ୍ ଫେରିଯାଂତି ।

## ଏକଚତ୍ୱାରିଂଶ ଉଲ୍ଲାସ

### ଆଂଧ୍ର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ସମ୍ମାନସୂଚକ ଡକ୍ଟରେଟ୍ (ଡି.ଲିଟ୍) ଡିଗ୍ରୀ ଲାଭ – ଆଂଧ୍ର ବିଶ୍ୱବିଦ୍ୟାଳୟରେ ବୋର୍ଡ଼ ଅଫ୍ ଷ୍ଟଡ଼ିଜ୍‌ର ସଦସ୍ୟ :

ମୁଁ ୧୯୭୫ ମସିହାରେ ୱାଲଟିୟରସ୍ଥିତ ଆଂଧ୍ର ବିଶ୍ୱବିଦ୍ୟାଳୟର ଓଡ଼ିଆ ଓ ବଂଗଳା ବୋର୍ଡ଼ ଅଫ୍ ଷ୍ଟଡିଜ୍‌ର ସଦସ୍ୟ ନିଯୁକ୍ତ ହୋଇଥିଲି । ମୋତେ ମଝିରେ ମଝିରେ ଏହି ବୋର୍ଡ଼ ଅଫ୍ ଷ୍ଟଡିଜ୍ ମିଟିଂଗ୍‌ଗୁଡ଼ିକରେ ଅଂଶ ଗ୍ରହଣ କରିବାପାଇଁ ୱାଲଟିୟର ଯିବାକୁ ପଡୁଥିଲା । ସେଠାରେ କେତେକ ସାଂସ୍କୃତିକ ଓ ସାହିତ୍ୟ ସଭାମାନଂକରେ ମଧ ଭାଷଣ ଦେବାକୁ ଉଦ୍ୟୋକ୍ତାମାନେ ଆମଂତ୍ରଣ କରୁଥିଲେ । ଆଂଧ୍ର ବିଶ୍ୱବିଦ୍ୟାଳୟ ଭାରତର ଏକ ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟ । ଏଥିରେ ଡଃ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ କେତେବର୍ଷ କୁଳପତି ଥିଲେ । ହୁମାୟୁନ କବୀର ଏଠାରେ ଅଧାପକ ଥିଲେ ।

୧୯୭୭ ମସିହାରେ ଆଂଧ୍ର ବିଶ୍ୱବିଦ୍ୟାଳୟ କର୍ତୃପକ୍ଷ ମୋତେ ସମ୍ମାନସୂଚକ 'କଳାପ୍ରପୂର୍ଣ' ଡକଟରେଟ୍ ଡିଗ୍ରୀ ବା ଡି.ଲିଟ୍ ଡିଗ୍ରୀ ଦେବାପାଇଁ ସ୍ଥିରକରଂତି । ଏହା ୧୯୭୭ ମସିହା ଫେବୃୟାରୀ ୨୬ ତାରିଖରେ ଅନୁଷ୍ଠିତ ଏହି ବିଶ୍ୱବିଦ୍ୟାଳୟର ୫୦ତମ ସମାବର୍ତନ ଉତ୍ସବରେ ଦିଆଯାଇଥିଲା । ଏଥିରେ ଆଂଧ୍ରର ରାଜ୍ୟପାଳ ଓ ବିଶ୍ୱବିଦ୍ୟାଳୟର ଚ୍ୟାନ୍‌ସେଲର ବା କୁଳାଧିପତି ମାନ୍ୟବର B.J. Divan ସଭାପତିତ୍ୱ କରିଥିଲେ ଏବଂ ମୋତେ ଏହି ଡିଗ୍ରୀ ପ୍ରଦାନ କରିଥିଲେ । ଏ ସଂପର୍କୀୟ ପ୍ରମାଣପତ୍ରଟି ତଳେ ଉଦ୍ଧୃତ ହେଲା ।

**ANDHRA UNIVERSITY**

This is to Certify that the Honorary Degree of KALA-PRAPURNA of this University was conferred on SHRI SACCHIDANANDA RAUTROY at the Convocation of the Senate held on Saturday the 26th February 1977. Given under the seal of University.

Waltair

B.J. Divan
Chancellor

ଏହି ଡିଗ୍ରୀ ପ୍ରଦାନ କଲାବେଳେ ଯେଉଁ ମାନପତ୍ର ପଠିତ ହୋଇଥିଲା, ତାହା ତଳେ ଦିଆଗଲା ।

Andhra University Citation of Prof. Bh. Krishnamurty in presenting Padmasri Sacchidananda Raut Roy to THE

CHANCELLOR for the award of the HONORARY DOCTORATE DEGREE OF KALA-PRAPURNA at the Fiftieth Convocation of Andhra University, 26th February, 1977.

*Mr. Chancellor,*

Like the moon on the starry sky, Indra among the gods, spring among seasons, Vasistha among sages – such is the pre-eminence of Shri Sacchidananda Raut Roy among the freedom-fighters and mordern poets of Orissa.

Even as a student, Shri Raut Roy assumed a valiant role in many student and peasant movements and later entered the fray of nationalist politics. He shook the British Raj by his spirited campaigns and courted incarceration.

Shri Raut Roy is not only a political veteran, but the beloved bard in the Court of Goddess Saraswathi. At the tender age of ten, he lisped in numbers and the numbers came. At twelve he became a journalist and when he was sixteen he published a poem "Patheya". Since then he has been enrapturing the Oriya land with his mellifluous poetic melodies.

His literary output comprises thirty-two works. Of these, sixteen are volumes of poetry, four collections of short stories, two novels and two novellas. He is a poet of repute in English and Bengali, besides Oriya, which is his mother tongue. His English poems have come out in book form. His short stories in Oriya have been rendered into English and published. He is, in addition, a critic of insight, a researcher of competence and the author of over hundred critical essays. His treatise, "Sahityare Mulyabodha,' which deals with literary values and their evolution, is a masterpiece of critical exegesis.

In style and structure, theme and thought, language and form, Shri Raut Roy has blazed a new trail in the realm of Oriya letters and laid the golden pathway to a new glorious era in Oriya Poetry. He wields the reins of language and is a lord of imagination, but is not a bourgeois poet cribbed in his ivory tower. He is a people's poet with a sterling integrity and a redoubtable lieutenant in the struggle for independence, who articulated the clarion call for national resurgence. His "Raktasikha" is a barbed bludgeon directed against the alien rule. The book was proscribed by the Government

and the author was sentenced to jail. But the flame of revolt did not abate, it grew intense and leapt up in fury in myriad tongues. The poet's heart turned a furnace in indignation at the misdeeds of zamindari rulers and the privations of the people and the poem "Bajirout" was the result. Harindranath Chattopadhyaya was so much thrilled by the poetic felicity and humanistic fervour of this piece that he put it into the voice of the English muse. This English version, entitled "The Boatman Boy", was published in 1942. The volume of poems "Abhijan", written by Shri Raut Roy forty years ago, shines brightly still with its abiding concern for the commonweal and is a memorable milestone in our march to progress.

Literary luminaries of international fame like Prof. Humayun Kabir, Dr. Kalidas Nag, Prof. K.R. Srinivasa Iyengar, Kavisamrat Kala-Prapurna Dr. Viswanatha Satyanarayana, Harindranath Chattopadhyaya and Dr. Parija acclaimed the poetic achievement of Shri Raut Roy. These tributes, severally published, were collected in a volume entitled "Sacchi Raut Roy – A Poet of the People" and brought out by the Modern Review in 1955.

Shri Raut Roy is verily the cultural ambassador of India to the nations of the world. He represented India at many international literary seminars. He presided over poet's meets in this country. The coveted title of Padmashri was awarded to him in 1962 and two years later he received the Sahitya Akademi Award. In 1965, he was given the Soviet Land Nehru Award.

Shri Raut Roy is editor of "Diganta" which comes from Cuttack. He is the founder of the museum and rese·rch centre named after this journal.

Here we have a stalwart among poets who has dedicated his genius to the strirrings and aspirations of the common man and awakened the race with his winged words. His noble lady, Shrimati Bhudevi, hails from the Telugu land. As a bridge-builder between the neighbouring Orissa and our State, Shri Raut Roy is an example to emulate.

I now request you, Mr. Chancellor, to be good enough to confer the Honorary Doctorate Degree of Kala-Prapurna on Shri Sacchidananda Raut Roy.

**ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସମ୍ମାନସୂଚକ ଡକ୍‌ଟେରେଟ୍ ଡିଗ୍ରୀ ଡି. ଲିଟ୍ ପ୍ରଦାନ :**

୧୯୭୮ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତାଂକର ଦଶମ ବାର୍ଷିକ ସମାବର୍ତ୍ତନରେ ମୋତେ ସମ୍ମାନସୂଚକ ଡକ୍‌ଟେରେଟ୍ ଡିଗ୍ରୀ ଡି.ଲିଟ୍‌ରେ ଭୂଷିତ କରିଥିଲେ । ଏହି ଉତ୍ସବରେ ସଭାପତିତ୍ୱ କରିଥିଲେ କୁଳାଧିପତି, ଓଡ଼ିଶାର ରାଜ୍ୟପାଳ ମାନ୍ୟବର ଭଗବତ୍ ଦୟାଲ ଶର୍ମା । ଏହାର ପ୍ରମାଣପତ୍ର ତଳେ ଉଦ୍ଧୃତ ହେଲା ।

**BERHAMPUR UNIVERSITY**

This is to certify that the dergree of
DOCTOR OF LITERATURE
was conferred, HONORIS CASUA, this 15th day of April, 1978 on Shri Sacchidananda Raut-Roy for his contirbution to learning and education.

Berhampur University, B.D. Sharma
Berhampur (Orissa) Chancellor
the 15th April, 1978.

ଏ ସଂକ୍ରାଂତରେ ପଠିତ ମାନପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

Tenth Annual Convocation April 15, 1978, Conferment of Honorary Degree of Doctor of Literature Citation, Berhampur University.

MR. CHANCELLOR,

As the Dean of the Faculty of Arts of this University, I have the honour and unique privilege of presenting to you Sri Sachi Rout Roy, an eminent scholar and poet of repute, for award of the Degree of DOCTOR OF LITERATURE (Honoris Causa) of this University.

Sri Sachi Rout Roy was born on May 13, 1916 at Khurda in Puri District, and graduated in 1939. He underwent training in Industrial Relations in Australia, New Zealand and International Labour Organisation, Geneva. Early in life, he took part in the national struggle for freedom, students movement and the erstwhile Native States People's Movement. As a result of these activities, he was imprisoned twice.

Sri Rout Roy is a prolific writer of short stroies, novels and several volumes of critical studies of literature. He is also a poet of high order, and has been considered as the pioneer of the modern movement in Oriya poetry and of the experimental school. His

poems are charged with a feeling for the predicament of the modern age. Some of his notable poems give a vivid description of the rural life of Orissa, while others are revolutionary in nature, and it is no wonder that the latter were banned in the year 1939. His poems *Kabita 1962* earned for him the Central Sahitya Akademi award for the year 1964. Many of his other notable poems are *Patheya, Purnima, Palli-shri, Rakta-Sikha, Abhijan, Baji Rout, Hasanta, Abhijanan, Pandulipi, Swagata* and others. *Manasir Fula, Matir Taj, Chhai, Chitragriba* are some of his well-known stories and novels. *Sahitya-Vichar* and *Sahityare Mulyabodha* are his other books of criticism on literature. Some of his works have been translated into English and many Indian languages. He is the Editor of Oriya Journal *Diganta* and founder of Diganta Museum and Research Centre.

Sri Rout Roy represented India at many International Seminars. He visited Australia and New Zealand in 1952 to participate in Social Services Seminars and Harvard University. U.S.A. in 1955 to attend an International Seminar on Arts and Science. He visited U.S. and U.K. in 1962 as a member of Indian Delegation of writers. He also visited Thailand and Ceylon on Cultural Missions during the years 1952 and 1955. He addressed a Seminar in Bangladesh Agricultural University, Mymensing, in 1972, and in 1975 he addressed a similar Seminar in Bangla Academy, Dacca. He was the President of All India Poets Conference, 1968 and of the Eastern Zone Writer's Conference, 1972. Several scholars are now doing research on the works of Sri Rout Roy.

Besides the Central Sahitya Akademi Award, he received the Soviet Land Nehru Award in 1965. He has also been awarded the Honorary Degree of D.Litt. by the Andhra University in 1977.

Sri Rout Roy's devotion to the cause of education has earned him recognition both inside and outside the State, and the Chancellor of Berhampur University, on the recommendation of the Senate and Syndicate, has approved the conferment of the Degree of DOCTOR OF LITERATURE (HONORIS CAUSA) of this University on him.

I, therefore, request you, Mr. Chancellor, to confer upon Sri Sacchi Rout Roy, the Degree of DOCTOR OF LITERATURE (HONORIS CAUSA) for his contirbution to literature, literary

studies and education as a mark of the respect and esteem in which he is held by this University.

DEAN
FACULTY OF ARTS

**ସଂବଲପୁର ବିଶ୍ୱବିଦ୍ୟାଳୟର ଭରତଚଂଦ୍ର ନାୟକ ସମ୍ମାନ ପ୍ରଦାନ :**

୧୯୮୩ ମସିହା ଜାନୁୟାରୀ ୩ ତାରିଖରେ ସଂବଲପୁର ବିଶ୍ୱବିଦ୍ୟାଳୟ ମୋତେ "ଭରତଚଂଦ୍ର ନାୟକ" ସ୍ମୃତି ପୁରସ୍କାର ପ୍ରଦାନ କରିଥିଲେ ।

ସେମାନେ ଏକ ପ୍ରଶସ୍ତିପତ୍ର ଏବଂ ତିନିହଜାର ଟଙ୍କା ପ୍ରଦାନ କରିଥିଲେ । ପ୍ରଶସ୍ତିପତ୍ରରେ ମୋର ସାହିତ୍ୟକୃତି ପ୍ରଭୃତି ବିଶଦ ଭାବରେ ଉଲ୍ଲେଖ କରାଯାଇଥିଲା । ବିଶ୍ୱବିଦ୍ୟାଳୟ କୁଳପତି ଡଃ ଶ୍ରୀନିବାସ ସାହୁ ଏହି ପୁରସ୍କାର ପ୍ରଦାନ କରିଥିଲେ ।
SAMBALPUR UNIVERSITY, 3.1.1983

## ମାନପତ୍ର

କବି ପଦ୍ମଶ୍ରୀ ସଚ୍ଚିଦାନଂଦ ରାଉତରାୟ ମାନନୀୟେଷୁ,

ଆଧୁନିକ ଓଡ଼ିଆ ସାହିତ୍ୟକୁ ଆପଣ ଯେଉଁ ଶକ୍ତି ଓ ସୌନ୍ଦର୍ଯ୍ୟ ପ୍ରଦାନ କରିଛଂତି, ତାହା ବସ୍ତୁତଃ ନାନାଭାବରେ ସ୍ୱୀକୃତ; ଯେଉଁଥିପାଇଁ ଆପଣଂକୁ ଯଥାର୍ଥରେ ଆଧୁନିକତାର ପ୍ରବର୍ତ୍ତକ ବୋଲି ବର୍ଣ୍ଣନା କରାଯାଇଛି ।

ଓଡ଼ିଶାର ଜଣେ ବିଶିଷ୍ଟ ଯୁଗପ୍ରବର୍ତ୍ତକ କବି, ଜଣେ ପ୍ରତିଷ୍ଠିତ ଗାଳ୍ପିକ, ଔପନ୍ୟାସିକ ତଥା ଜଣେ ବଳିଷ୍ଠ ସାହିତ୍ୟ ସମାଲୋଚକଭାବେ ଆପଣଂକ ବହୁମୁଖୀ ପ୍ରତିଭା ସମସ୍ତଙ୍କୁ ପ୍ରଲୁବ୍ଧ କରିଛି । ଜଣେ ସଂଗଠକ ତଥା ଜଣେ ନିର୍ଭୀକ ତଥା ଆଦର୍ଶ ସମାଲୋଚକଭାବେ ଆପଣଙ୍କର ଯେଉଁ ପ୍ରତିଷ୍ଠା ରହିଛି ତାହା ମଧ୍ୟ ସର୍ବଦା ଉଲ୍ଲେଖଯୋଗ୍ୟ ।

ଏତଦ୍‌ଭିନ୍ନ ଓଡ଼ିଶାର ଗୌରବୋଜ୍ଜ୍ୱଳ ସାଂସ୍କୃତିକ ତଥା ସାହିତ୍ୟିକ ଐତିହ୍ୟକୁ ଦେଶ ବିଦେଶରେ ପ୍ରଚାର, ପ୍ରସାର କରିବାର ଯେଉଁ ନିଷ୍ଠା ଓ ଆନ୍ତରିକତା ଆପଣ ପ୍ରଦର୍ଶନ କରିଛନ୍ତି ତାହା ମଧ୍ୟ ବହୁ ଦୃଷ୍ଟିରୁ ତାତ୍ପର୍ଯ୍ୟପୂର୍ଣ୍ଣ । ଓଡ଼ିଶାର ଯେଉଁ ଉଚ୍ଚମାନର ଭାସ୍କର୍ଯ୍ୟ, ସ୍ଥାପତ୍ୟ ତଥା ଚିତ୍ରକଳା ରହିଛି, ସେହି ପରମ୍ପରାର ପୁନଃଉଦ୍ଧାର ପାଇଁ ଦିଗନ୍ତ ମିଉଜିୟମ ଆନୁକୂଲ୍ୟରେ ଆପଣ ଯେଉଁ ସାରସ୍ୱତ ଆନ୍ଦୋଳନ କରିଆସୁଛଂତି, ତାହା ଏ ଜାତିର ସାଂସ୍କୃତିକ ଇତିହାସରେ ଏକାନ୍ତ ଅବିସ୍ମରଣୀୟ ହୋଇରହିବ ।

ଆପଣଙ୍କର ସାହିତ୍ୟ ସାଧନା ପୁଣି ଓଡ଼ିଆ ବିବର୍ତ୍ତନ ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ବିଷୟ ନିଶ୍ଚୟ । କାରଣ ଆପଣଙ୍କ କବିତାଦର୍ଶ ଭିତରେ ଉଭୟ ପ୍ରାକ୍ତନ ସ୍ୱୈରବାଦୀ କାବ୍ୟାଦର୍ଶ ତଥା ବାସ୍ତବବାଦୀ ଚେତନାର ସଫଳ ସମନ୍ୱୟ ସଂଗଠିତ ହୋଇଛି । ଆପଣଙ୍କ ରଚିତ 'ପଲ୍ଲୀଶ୍ରୀ' କବିତା ଗ୍ରନ୍ଥରେ ଭାବ ଆବେଦନ ଯାହା, ସେହି ଅନୁରୂପ ଆବେଦନ ଆପଣଙ୍କର 'ପାଣ୍ଡୁଲିପି' 'କବିତା-୧୯୬୨'ରେ ହୁଏତ ନାହିଁ;

ବରଂ ଅଛି ଆପଣଙ୍କ କବିବ୍ୟକ୍ତିତ୍ୱର ଭିନ୍ନ ଏକ ପ୍ରତ୍ୟୟ ତଥା ଭିନ୍ନ ଏକ କାବ୍ୟବିଶ୍ୱାସ । ଏହି ପରିପ୍ରେକ୍ଷୀରେ ତେଣୁ ଆପଣଙ୍କ 'ହସନ୍ତ' 'ଏସିଆର ସ୍ୱପ୍ନ' 'ଅଭିଯାନ' 'ବାଜିରାଉତ' 'କବିତା-୧୯୬୯' 'କବିତା-୧୯୭୧' 'ଭାନୁମତୀର ଦେଶ' ଆଦି କବିତା ଗ୍ରନ୍ଥର ରୂପ ବୈଚିତ୍ର୍ୟ ଓ କାବ୍ୟାଦର୍ଶଗତ ବୈଭିନ୍ୟ ସ୍ୱୀକୃତ । ଜଣେ ସ୍ୱୈରବାଦୀ କବିଭାବରେ ଆପଣଙ୍କ ଉଚ୍ଛଳ ଭାବପ୍ରବଣତା, ସୁଦୂରପ୍ରସାରୀ କଳ୍ପନାବିଳାସ, ଦୂର ନିର୍ଜନ ପୃଥିବୀପ୍ରତି ସମ୍ମୋହନ, ବର୍ଦ୍ଧିଷ୍ଣୁ ଗଣତାନ୍ତ୍ରିକ ଚେତନା ପ୍ରତି ବିପୁଳ ସମର୍ଥନ, ମୁକ୍ତିପ୍ରବଣ ସଂଗ୍ରାମଶୀଳ ମଣିଷ ପ୍ରତି ଅଶେଷ ସମ୍ବେଦନଶୀଳତା, ବ୍ୟକ୍ତି ସ୍ୱାତନ୍ତ୍ର୍ୟ ପ୍ରତି ଶ୍ରଦ୍ଧା ଓ ସମ୍ମାନବୋଧ ସାମଗ୍ରିକ ଭାବେ ଆପଣଙ୍କ କବିତାକୁ ଏକ ଅନନ୍ୟ ମର୍ଯ୍ୟାଦାର ଅଧିକାରୀ କରିଛି ।

ଆପଣଙ୍କ 'ବାଜିରାଉତ' କବିତା ଗ୍ରନ୍ଥରେ ଭାରତବର୍ଷର ମୁକ୍ତି ଆନ୍ଦୋଳନ ଇତିହାସରେ ଅମର ସହିଦ ବାଜି ରାଉତର ଉତ୍ସର୍ଗୀକୃତ ଜୀବନବୃତ୍ତାନ୍ତ ଯେପରି ବର୍ଣ୍ଣିତ ହୋଇଛି ଏବଂ ସେହି କ୍ଷୁଦ୍ର ଜୀବନର ଇତିହାସ ଲେଖିବାକୁ ଯାଇ ଆପଣ ଯେଉଁ ଆଗ୍ନେୟବାଣୀ ଉଚ୍ଚାରଣ କରିଛନ୍ତି, ପୃଥିବୀର ମୁକ୍ତିପାଗଳ କୋଟି ଜନଗଣ ମନରେ ଯେଉଁ ମହାନ୍ ତ୍ୟାଗ ଓ ପ୍ରତିଜ୍ଞାର ଅଭିମନ୍ତ୍ରକୁ ପୁଣି ମୂର୍ତ୍ତ କରିଛନ୍ତି, ତାର ତୁଳନା ସେହି ବାଜିରାଉତ ଗ୍ରନ୍ଥ ହିଁ କେବଳ । ଜନ୍ମ, ମୃତ୍ୟୁ ତଥା ସର୍ବଗ୍ରାସୀ ମହାକାଳର ପ୍ରବହମାନତାକୁ ଆପଣ ଆପଣଙ୍କ ବାଜିରାଉତ ଗ୍ରନ୍ଥର ପଦ ପଙ୍‌କ୍ତି ଭିତରେ ଯେପରି ବ୍ୟାଖ୍ୟା କରିଛନ୍ତି, ତାହା ଅଜସ୍ର ପାଠକର ପ୍ରାଜ୍ଞିକ ତଥା ଶାସ୍ତ୍ରୀୟ ବ୍ୟକ୍ତିତ୍ୱକୁ ଯେପରି ପୁଷ୍ଟକରେ, ପାଠକର ବିଦଗ୍ଧ ରସଚେତନାକୁ ସେହିପରି ମଧ ଆର୍ଦ୍ର କରେ ।

ଆନ୍ତର୍ଜାତିକ ଭାବଚେତନାର ଜଣେ ବିଶିଷ୍ଟ ପ୍ରବକ୍ତା, ଓଡ଼ିଆ କବିତାରେ ଗଦ୍ୟଛନ୍ଦର ପ୍ରବର୍ତ୍ତକ, ଆଧୁନିକ କବିତାର ଜନକ ତଥା ଜଣେ ବିଶିଷ୍ଟ ପ୍ରଗତିବାଦୀ ଜନଗଣର କବିଭାବେ ଆପଣଙ୍କର ପ୍ରଖ୍ୟାତି ଏକାଂତ ପ୍ରଣିଧାନଯୋଗ୍ୟ । ଆପଣଙ୍କର ଅଜସ୍ର ପଦ ପଙ୍‌କ୍ତି ଭିତରେ ପୀଡ଼ିତ ମାନବ ଆତ୍ମା ପ୍ରତି ଅଶେଷ ସମ୍ବେଦନଶୀଳତା ଯେପରି ରହିଛି, ତାର ଉଷ୍ମ ଓ ସଶ୍ରଦ୍ଧ ଉଚ୍ଚାରଣ ସେହି ପଦପଙ୍‌କ୍ତିଗୁଡ଼ିକୁ ବସ୍ତୁତଃ ଅଧିକ ମୂଲ୍ୟ ଓ ମର୍ଯ୍ୟାଦା ଆଣିଦେଇଛି ।

ଆଧୁନିକ ଓଡ଼ିଆ କବିତାର ଉଭୟ ଅଂଗ, ଆତ୍ମା ଆପଣଙ୍କ ଶିଳ୍ପଦ୍ୱାରା ଯେପରି ପୁଷ୍ଟ ହୋଇଛି, ତାହା ବହୁଦୃଷ୍ଟିରୁ ଅଭିନବ ନିଶ୍ଚୟ, ଯେଉଁଥିପାଇଁ ଅନେକ ଆଧୁନିକ ଓଡ଼ିଆ କବି ଆପଣଙ୍କୁ ଦ୍ରୋଣଗୁରୁ ଭାବେ ସ୍ୱୀକୃତି ଦେଇ ସେମାନଙ୍କ କାବ୍ୟ ସାଧନା କରିଛନ୍ତି । ଉଭୟ ପଦ୍ୟ ଓ ଗଦ୍ୟ ରଚନା କ୍ଷେତ୍ରରେ ଆପଣଙ୍କ ସମୁଚ୍ଚ ପ୍ରତିଷ୍ଠା ଏ ଜାତିର ସାରସ୍ୱତ ଇତିହାସକୁ ନାନାଭାବେ ସମୃଦ୍ଧ ଓ ଋଦ୍ଧିମନ୍ତ କରିଛି ।

ଓଡ଼ିଶାର ଅଗଣିତ ପାଠକପାଠିକାଙ୍କୁ ସେମାନଙ୍କ ପ୍ରାକ୍‌ଯୌବନରେ 'ଭୂଗୋଳ ପୋଥି ପତରେ ପଛେ ନଥାଉ ତାର ନାଆଁଟି, ଛୋଟ ମୋର ଗାଆଁଟି'', କବିତା ଆଉ ତାପରେ 'ଅସମାପିକା' 'ବାଜିରାଉତ', 'ପାଣ୍ଡୁଲିପି' 'କବିତା-୧୯୬୨' 'ଚିତ୍ରଗ୍ରୀବ'

ଉପନ୍ୟାସ, 'ଭାନୁମତୀର ଦେଶ' ଗଦ୍ୟକାବ୍ୟ, 'ଅନ୍ଧାରୁଆ' ଗଳ୍ପ ସବୁ ଶହେବାର ଆର୍ଦ୍ର କରିଛି, ବେପଥୁବନ୍ତ କରିଛି । ଆଧୁନିକ କବିତାର ଯେକୌଣସି ଅର୍ଥ, ଯେକୌଣସି ଉପାଦାନ ଦୃଷ୍ଟିରୁ ଆପଣଙ୍କ କବିତା ନବଚେତନାର ଧ୍ରୁପଦୀ ଭାବେ ଗୌରବ ଲାଭ କରିବା ଏକାନ୍ତ ସ୍ୱାଭାବିକ । ସମଗ୍ର ୟୁରୋପୀୟ କାବ୍ୟ ଆନ୍ଦୋଳନର ପୃଷ୍ଠଚେତନା ଉପରେ ଆପଣ ପୁଣି ଯେଉଁ ନୂତନ ସମାଲୋଚନାର ଆଦର୍ଶ ନିର୍ମାଣ କରିଛନ୍ତି, ତାହା ମଧ୍ୟ ବହୁଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ ।

ଆପଣଙ୍କ ସମୁଦାୟ କାବ୍ୟଚେତନା ଭିତରେ ଓଡ଼ିଶାର ସୁଦୀର୍ଘ ଐତିହ୍ୟ ଓ ପରମ୍ପରା ପ୍ରତି ଯେଉଁ ସଶ୍ରଦ୍ଧ ମମତ୍ୱବୋଧ ରହିଛି, ପୁଣି ବର୍ଦ୍ଧିଷ୍ଣୁ ନୂତନ ଆନ୍ତର୍ଜାତିକ ଭାବ ଚେତନା ପ୍ରତି ଯେଉଁ ସମର୍ଥନ ରହିଛି, ତାର ଶୈଳ୍ପିକ ତଥା ସମନ୍ୱିତ ଅଭିବ୍ୟକ୍ତି ଯୋଗୁଁ ଆପଣଙ୍କ କବିତାକୁ ସବୁକାଳରେ ଶ୍ରଦ୍ଧା ଓ ସ୍ୱୀକୃତି ମିଳିବ ।

ଆପଣଙ୍କ କବିଚିତ୍ତରେ ସାଧାରଣ ଲୌକିକ ବିଶ୍ୱାସ, ବୁଦ୍ଧିଦୀପ୍ତ ଚେତନା, ପ୍ରାଜ୍ଞିକ ବିଶ୍ଳେଷଣ, ସୂକ୍ଷ୍ମ ପର୍ଯବେକ୍ଷଣ, ହୃଦୟସଂପ୍ରେରିତ ଆର୍ଦ୍ର ପ୍ରବଣତା, ପ୍ରାଣର ବ୍ୟାପ୍ତି ଓ ବିଶାଳତାର ଅନୁଭବ, ମହାଜାଗତିକ ଉପଲବ୍‌ଧିପାଇଁ ଉନ୍ମୁଖତା ଆପଣଙ୍କ କବିତାକୁ ସର୍ବୋପରି ଯେପରି ଏକ କ୍ଲାସିକ୍ କବିତାର ଗୁଣ ଓ ଗୌରବ ଆଣିଦେଇଛି; ସେହିପରି ଆପଣଙ୍କ କବିତାର ଉଷ୍ମତା, ଉଚ୍ଛଳପ୍ରବଣତା ଆପଣଙ୍କ କବିତାକୁ ଅଧିକ ରସନିବିଡ଼ ମାର୍ମିକତା ଆଣିଦେଇଛି ।

କୃଷକ ଓ ଶ୍ରମିକର ନିର୍ଯାତିତ ନିପୀଡ଼ିତ ଜୀବନର କବିତା ଗାଇବା ଆପଣଙ୍କ ବାସ୍ତବବାଦୀ କାବ୍ୟାଦର୍ଶର ସୌନ୍ଦର୍ଯତାତ୍ତ୍ୱିକ ପ୍ରବଣତା । ସେହି ପ୍ରବଣତା ଯେତିକି ନାନ୍ଦନିକ, ସେତିକି ସାମାଜିକ ବା ବ୍ୟାବହାରିକ ମଧ୍ୟ । ଆପଣଙ୍କ କବିତା ଉଭୟ କଳ୍ପନା ବାସ୍ତବତାର ଏକ ଚମତ୍କାର ସଂଶ୍ଳେଷଣ । ବହିର୍ବିଶ୍ୱର ଦୃଶ୍ୟମାନତା ଭିତରେ ଅନ୍ତର୍ଜଗତର ସତ୍ୟ ଅନ୍ୱେଷଣ କରିବା ପୁଣି ଅନ୍ତର୍ଜଗତ ଭିତରେ ବିଶାଳ ବିଶ୍ୱର ବିଶ୍ୱମାନ୍ୟତାକୁ ଉପଲବ୍‌ଧି କରିବାର ଉଚ୍ଚତମ ହାର୍ଦ୍ଦିକତା ଭିତରେ ଆପଣଙ୍କ କବିତ୍ୱ ପ୍ରକୃତରେ ଜଣେ ଚିନ୍ତାନାୟକର ପ୍ରାଜ୍ଞିକ ଦୃଷ୍ଟିଭଙ୍ଗୀଯୁକ୍ତ ହୋଇ ଅନୁପମ ହୋଇପାରିଛି । ଆପଣଙ୍କ କବିତା ଉଚ୍ଚତମ ମାନବିକତାର ଆବେଦନରେ ଭାସ୍ୱର । ଆପଣାକୁ ପୁରୁଣା ଇତିହାସର ଅନ୍ଧକାର ଭିତରକୁ ଫିଙ୍ଗିଦେଇ ନୂତନ ଇତିହାସ ସୃଷ୍ଟିର ସ୍ପର୍ଦ୍ଧିତ ଇଚ୍ଛା ଆପଣଙ୍କ କବିତାକୁ ପ୍ରଥମ ପୁରୁଷର ସଂଳାପଦ୍ୱାରା ପ୍ରତ୍ୟକ୍ଷ ଭାବୋଦ୍ଦୀପକ କରିଛି; ଆପଣ ମଣିଷର ପ୍ରବୃତ୍ତିପରାୟଣତାକୁ ଲେଖିବାରେ ଉଭୟ ପ୍ରକୃତିବାଦୀ ଓ ଆଦର୍ଶବାଦୀ ଚେତନାକୁ ସମନ୍ୱିତ କରିଛନ୍ତି ।

ଆପଣଙ୍କ କବିତା ଓ ଗଳ୍ପରେ ଆଦ୍ୟନ୍ତବନ୍ତ ବିରହର ସ୍ୱପ୍ନିଳତା, କଦମ୍ବିତ ରୋମାଞ୍ଚର ଢେଉ, ଦୂର ନିର୍ଜନ ପୃଥିବୀର ସଙ୍ଗୀତ, ଅମରାବତୀର ସ୍ୱପ୍ନିଳ ମାୟା, ନନ୍ଦନବନର ଐଶ୍ୱର୍ଯ୍ୟମଣ୍ଡିତ ଜୀବନ ଅପେକ୍ଷା ଗ୍ରାମ୍ୟ ନଦୀର ତୀର, ନିର୍ଜନ ପୌଷରାତିର ଗାଁ କ୍ଷେତ, ଗ୍ରାମ୍ୟ ଶ୍ମଶାନ, ପହଲି ପ୍ରଧାନ ପରି ଅସଂଖ୍ୟ କୃଷକ ଶ୍ରମିକର ବିଡ଼ମ୍ବିତ

ଜୀବନକୁ ଲେଖିବାରେ ଆପଣଙ୍କ କବିକଳ୍ପନା ଅଧିକ ଗତିଶୀଳ । କେଉଁ ମାଟିଆବୁରଜୁ ଓ ନୂଆଖାଲିର ଦଙ୍ଗାବିଧ୍ୱସ୍ତ ନିପୀଡ଼ିତ ସର୍ବହରା ମଣିଷ ପ୍ରତି ଆପଣଙ୍କ କବିଚିତ୍ତର ସହାନୁଭୂତିଶୀଳତା ଆପଣଙ୍କ କବିତାର ଧାଡ଼ିଗୁଡ଼ିକ ସୁଖଦୁଃଖ ଆର୍ଦ୍ରଅଶ୍ରୁର ମାନବୀୟ ଭାବାବେଗର ଉଷ୍ଣତା ଭିତରେ ସ୍ପନ୍ଦିତ କରିଛି । ସତ୍ୟ-ଶିବ-ସୁନ୍ଦରର ମଣିଷ ଜୀବନକୁ ଓ ତାର ବର୍ଣିଳ ରୂପାନ୍ତରକୁ ଆପଣ ନାନା ଭାବରେ ଲେଖିଛନ୍ତି ।

ସମ୍ବଲପୁର ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ବିଶ୍ୱବିଦ୍ୟାଳୟର ମାସିକ ସାହିତ୍ୟ ପତ୍ରିକା 'ସପ୍ତର୍ଷି'ର ପ୍ରତିଷ୍ଠା ଦିବସ ଉପଲକ୍ଷ୍ୟେ ଭରତଚନ୍ଦ୍ର ନାୟକ ସ୍ମୃତି ପୁରସ୍କାର ପ୍ରଦାନ କରିବା ପରିପ୍ରେକ୍ଷୀରେ ଆମେ ଆପଣଙ୍କ ଦୀର୍ଘ ନିରାମୟଜୀବନ କାମନା କରୁଁ । ଆପଣଙ୍କ ସାହିତ୍ୟ ସାଧନାର ଆଦର୍ଶ ଦେଶର ଅଗଣିତ ତରୁଣତରୁଣୀମାନଙ୍କୁ ଉଦ୍‌ବୋଧିତ କରୁ – ଏହାହିଁ କାମନା ।

ଜ୍ୟୋତି ବିହାର — ଡକ୍ଟର ଶ୍ରୀନିବାସ ସାହୁ

ତା ୩।୧।୧୯୮୩ — କୁଳପତି, ସମ୍ବଲପୁର ବିଶ୍ୱବିଦ୍ୟାଳୟ

# ଦ୍ୱିଚତ୍ୱାରିଂଶ ଉଲ୍ଲାସ

**ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ମନୋନୀତ, ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଂକୁ ମାସିକ ପେନସନ୍ ପ୍ରଦାନ :**

ଓଡ଼ିଶା ସରକାର ତାଂକର ନଂବର ୯୭୨(୩୧) ନୋଟିଫିକେସନ, ତାରିଖ ୨୪.୭.୭୮ ଦ୍ୱାରା ମୋତେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ମନୋନୀତ କରିଥିଲେ । ଏକାଡେମୀର ସଂପାଦକ ଥିଲେ ମନୋରଂଜନ ଦାସ । ମୋ ସଂଗରେ ଉପସଭାପତି ରୂପେ ରାଜକିଶୋର ରାୟ ମନୋନୀତ ହୋଇଥିଲେ ।

**ନୂଆ ସାଧାରଣ ପରିଷଦ –**

ଉକ୍ତ ବିଜ୍ଞପ୍ତିରେ ଏକ ନୂଆ ସାଧାରଣ ପରିଷଦ ମଧ ଗଠିତ ହୋଇଥିଲା । ସାଧାରଣ ପରିଷଦର ସଭ୍ୟରୂପେ ନିମ୍ନଲିଖିତ ବ୍ୟକ୍ତିମାନେ ମନୋନୀତ ହୋଇଥିଲେ । ସେମାନଂକ ମଧରେ ଥିଲେ –

୧. ସଂସ୍କୃତି ବିଭାଗର ନିର୍ଦ୍ଦେଶକ, ୨. ସୀତାକାଂତ ମହାପାତ୍ର, ସଂସ୍କୃତି ସଚିବ, ୩. ରାଜେଂଦ୍ର ପ୍ରସାଦ ଦାସ, ୪. ଗୋପୀନାଥ ମହାଂତି ୫. ଗୌରୀକୁମାର ବ୍ରହ୍ମା, ୬. ରାଧାମୋହନ ଗଡ଼ନାୟକ, ୭. ଯତୀଂଦ୍ର ମୋହନ ମହାଂତି, ୮. ସୌଭାଗ୍ୟ କୁମାର ମିଶ୍ର, ୯. କାହ୍ନୁଚରଣ ମିଶ୍ର ପ୍ରଭୃତି ।

ପରିଷଦର ସଭ୍ୟ ସଂଖ୍ୟା ୨୯ ଥିଲା । ସେତେବେଳେ ଓଡ଼ିଶାର ମୁଖ୍ୟମଂତ୍ରୀ ଥିଲେ ନୀଳମଣି ରାଉତରାୟ ଏବଂ ସଂସ୍କୃତି ମଂତ୍ରୀ ଥିଲେ ବିଶ୍ୱଭୂଷଣ ହରିଂଚନ୍ଦନ । ଓଡ଼ିଶାର ରାଜ୍ୟପାଳ ଥିଲେ ଭଗବତ ଦୟାଲ ଶର୍ମା । ସଂସ୍କୃତି ସଚିବ ଥିଲେ ସୀତାକାଂତ ମହାପାତ୍ର ।

ସେତେବେଳେ ଏକାଡେମୀର ବାର୍ଷିକ ସରକାରୀ ଅନୁଦାନ ଥିଲା ୧,୭୦,୦୦୦ – ଟଂକା । ଏଥିରୁ ୧,୫୮,୬୦୦ – ଟଂକା କର୍ମଚାରୀମାନଂକ ଦରମା ଓ ଗସ୍ତଖର୍ଚ୍ଚ ପ୍ରଭୃତିରେ ବ୍ୟୟ ହେଉଥିଲା । ଅବଶିଷ୍ଟ ୧୧,୪୦୦ – ଟଙ୍କାରେ ଓଡ଼ିଆ ସାହିତ୍ୟର କି ଉନ୍ନତି କରାଯାଇପାରିବ ?

ଏହାଛଡ଼ା ଏକାଡେମୀ ସଭାପତି ବସିବାପାଇଁ କୌଣସି ସ୍ୱତଂତ୍ର ରୁମ୍, ଏପରିକି ସ୍ୱତଂତ୍ର ଟେବୁଲ୍ ମଧ ନ ଥିଲା । ମୁଁ ଗଲେ ସେକ୍ରେଟେରୀଂକ ରୁମ୍‌ରେ ତାଂକର ଟେବୁଲ୍ ଓ ଚୌକିରେ ଅଫିସ୍ କାମ କରେ । ଏକାଡେମୀ ଗାଡ଼ିରେ ମୁଁ ଯିବାଆସିବା କରୁଥିଲି । ମୁଁ କୌଣସି ବେତନ ବା ଗସ୍ତଖର୍ଚ୍ଚ ନେଉନଥିଲି । ମୋ'ପରେ କିଂତୁ ଯେଉଁମାନେ ସଭାପତି ଓ ଉପସଭାପତି ହୋଇଛଂତି, ଯଥା – ସୁରେଂଦ୍ର ମହାଂତି, ରାଧାମୋହନ

ଗଡ଼ନାୟକ ପ୍ରଭୃତି ସେମାନଂକୁ ମୋଟା ବେତନ ଓ ସରକାରୀ କ୍ୱାର୍ଟର ପ୍ରଭୃତି ଦିଆଯାଉଥିଲା ।

ମୁଁ ଏକାଡେମୀକୁ ସରକାରୀ ଅନୁଦାନ ବଢ଼ାଇବା ପାଇଁ ଏବଂ ସଭାପତି ଓ ଉପସଭାପତିଂକ ପାଇଁ ସ୍ୱତଂତ୍ର ସ୍ଥାନ ଓ ରୁମ୍ ଦେବାକୁ ମୁଖ୍ୟମଂତ୍ରୀ ନୀଳମଣି ରାଉତରାୟ ଓ ସଂସ୍କୃତି ମଂତ୍ରୀ ବିଶ୍ୱଭୂଷଣ ହରିଚଂଦନ ପ୍ରଭୃତିଂକୁ ପତ୍ର ଦେଇଥିଲି । ରାଜ୍ୟପାଳଂକୁ ମଧ୍ୟ ୨୮.୨.୮୦ ତାରିଖରେ ସମସ୍ତ ଅସୁବିଧା ଜଣାଇ ପତ୍ର ଲେଖିଥିଲି । ମାତ୍ର, କିଛି ଫଳ ହୋଇନଥିଲା ।

ଓଡ଼ିଶା ସାହିତ୍ୟ ଏକାଡେମୀର ସାଧାରଣ ପରିଷଦର ପ୍ରଥମ ବୈଠକ ୨୧.୧୦.୭୮ ତାରିଖରେ ବସିଥିଲା । ମୁଁ ସେଥିରେ ଏକାଡେମୀର ଅନୁଦାନ ବଢ଼ାଇବା ପାଇଁ ଏବଂ ଏକାଡେମୀକୁ ଏକ ସ୍ୱୟଂଶାସିତ ଅନୁଷ୍ଠାନର ପାହ୍ୟା ଦେବା ପାଇଁ ଏବଂ ଏହା ଉପରୁ ସରକାରୀ ନିୟଂତ୍ରଣ ହଟାଇବା ପାଇଁ ପ୍ରସ୍ତାବ ଆଣିଥିଲି ।

**ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଂକୁ ପେନ୍‌ସନ୍ –**

ଏହାଛଡ଼ା ମୁଁ ପ୍ରଥମ ବୈଠକରେ ପ୍ରସ୍ତାବ ଆଣିଥିଲି ଯେ ଓଡ଼ିଶାର ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଂକୁ ସରକାର ମାସିକ ୨୦୦ ଟଂକାରୁ ୫୦୦ ଟଂକା ପର୍ଯ୍ୟନ୍ତ ପେନ୍‌ସନ୍ ଦିଅଂତୁ । ଓଡ଼ିଶାର ଲେଖକ, କଳାକାର (ଯଥା– ସଂଗୀତଶିଳ୍ପୀ, ଚିତ୍ରଶିଳ୍ପୀ, ଭାସ୍କର, ନୃତ୍ୟଶିଳ୍ପୀ, ଅଭିନେତା ଓ ଅଭିନେତ୍ରୀ ପ୍ରଭୃତି) ଓ କ୍ରୀଡ଼ାବିତ୍‌ମାନେ ଦୁଃଖକଷ୍ଟ ଓ ଅଭାବ ଅନଟନରେ ଜୀବନ ଯାପନ କରୁଛଂତି । ଏମାନଂକୁ ସୁରକ୍ଷା ଓ ସାମାଜିକ ନିରାପତ୍ତା ଦେବା ସରକାରଂକର ଆଶୁ କର୍ତ୍ତବ୍ୟ ।

ଏକାଡେମୀର ସବୁ ଖର୍ଚ୍ଚ ସରକାରୀ ଏକାଉଂଟାଂଟ୍ ପାସ୍ କଲେ ତା ପରେ ଯାଇ କାଏମ୍ ହେଉଥିଲା । ଏପରିକି ଅଫିସରେ ପାଣି ଟ୍ୟାପ୍ ଖରାପ ହୋଇଗଲେ, ଏକ ନୂଆ ଟ୍ୟାପ୍ କିଣିବା ପାଇଁ ତାହାଂକ ଅନୁମତି ବା ମଂଜୁରୀ ନିଆଯାଉଥିଲା । ଏହା ବଡ଼ ଲଜ୍ଜାଜନକ ଅବସ୍ଥା ଥିଲା । ଏକାଡେମୀ ସରକାରୀ କଳର ଏକ ତଳିଆ ବିଭାଗରେ ପରିଣତ ହୋଇଥିଲା ।

ଏହିସବୁ କାରଣରୁ ମୁଁ ସାଧାରଣ ପରିଷଦର ପ୍ରଥମ ବୈଠକରେହିଁ ଏହିସବୁ ଅପମାନଜନକ ପରିସ୍ଥିତିରୁ ଏକାଡେମୀକୁ ଉଦ୍ଧାରିବା ପାଇଁ ଏବଂ ଏହାକୁ ଏକ ସ୍ୱୟଂଶାସିତ ଅନୁଷ୍ଠାନର ମର୍ଯ୍ୟାଦା ଦେବା ପାଇଁ ପ୍ରସ୍ତାବ ଆଣିଥିଲି । ମାତ୍ର ମୋ ପ୍ରସ୍ତାବକୁ ଗୋପୀନାଥ ମହାଂତି, ରାଜେଂଦ୍ର ପ୍ରସାଦ ଦାସ, ଯତୀଂଦ୍ର ମୋହନ ମହାଂତି ସୀତାକାଂତ ମହାପାତ୍ର ପ୍ରଭୃତି ସରକାରୀ ଅଫିସରମାନେ ଘୋର ବିରୋଧକଲେ । ସେମାନେ ଜୋର୍‌ରେ ପାଟିତୁଂଡ କରି ଏ ପ୍ରସ୍ତାବ ୱାପସ୍ (Withdraw) କର ବୋଲି କହୁଥାଂତି । ବହୁ କଥା କଟାକଟି ଓ ବାଦାନୁବାଦ ହେଲା । ମାତ୍ର, ମୁଁ ମୋ ଦାବିରେ ଅଟଳ ରହିବାରୁ ଉପରୋକ୍ତ ସଭ୍ୟମାନେ ମୋ ଆଡ଼କୁ ହାତଉଂଚେଇ ଉହୁଂକି ଆସିଲେ । ଟେବୁଲ୍ ବାଡ଼େଇ withdraw, withdraw ପାଟିକରି ମୋତେ ଦବାଇଦେବାକୁ

ଚେଷ୍ଟାକଲେ । ମାତ୍ର କେତେକ ବରିଷ୍ଠ ସଭ୍ୟ ବୁଝାଇସୁଝାଇ ସେମାନଙ୍କୁ ନିଜ ନିଜ ଆସନରେ ବସାଇଦେଲେ । ଏହା ଫଳରେ ଅବସ୍ଥା ଟିକେ ଶାଂତପଡ଼ିଲା । ଜଣେ ଦୁଇଜଣ ବିରୋଧୀ ସଦସ୍ୟ ନିଜ ଆସନରେ ବସି କହିଲେ ଯେ ଏ ପ୍ରସ୍ତାବ ଭୁଲ୍ ଇଂରାଜୀରେ ଲେଖାଯାଇଛି ।

ମୁଁ କହିଲି – ମୁଁ ଅମଲାଂକଠାରୁ ଇଂରାଜୀ ଶିଖିବାକୁ ଏଠାକୁ ଆସି ନାହିଁ । ଭାରତର ଏକ ବଡ଼ ଇଂରାଜୀ ଦୈନିକରେ (ଅମୃତବଜାର ପତ୍ରିକା, କଲିକତା)ର ପ୍ରତି ରବିବାର ସଂଖ୍ୟାରେ ମୁଁ ସ୍ତମ୍ଭ ଲେଖୁଛି – ଏହା ସମସ୍ତେ ଜାଣଂତି । ତାହା ମୋର ଇଂରାଜୀ ଭାଷା-ଜ୍ଞାନ ସପକ୍ଷରେ ଯଥେଷ୍ଟ ପ୍ରମାଣ ଦିଏ । ସେମାନେ ଚୁପ୍‌ହୋଇଗଲେ । ମୋ ଇଂରାଜୀ କବିତା ମଧ ଭାରତର ଓ ବିଦେଶର ବହୁ ପତ୍ରପତ୍ରିକାରେ ପ୍ରକାଶ ପାଇଛି । ଏ ସମସ୍ତ ବିଷୟ 'ସମାଜ' ଓ 'ପ୍ରଜାତଂତ୍ର'ରେ ଉଦ୍‌ବେଗଜନକ ଭାଷାରେ ବଡ଼ ବଡ଼ ଅକ୍ଷରରେ ଛପା ହୋଇଥିଲା । ମୁଁ ଏ ପ୍ରସ୍ତାବ ଆସଂତା ବୈଠକରେ ପଢ଼ିବା ପାଇଁ ସ୍ଥଗିତରଖିଲି ।

ଅବସ୍ଥା ଶାଂତ ପଡ଼ିବା ପରେ ମୁଁ ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଂକୁ ପେନ୍‌ସନ୍ ଦେବା ପ୍ରସ୍ତାବଟି ପାଶ୍‌କରାଇନେଲି । ତା ପରଦିନଠାରୁ ତାହା କିପରି କାର୍ଯ୍ୟକାରୀ ହେବ ସେ ଦିଗରେ ପ୍ରବଳ ଉଦ୍ୟମ ଚଳାଇଲି । ମୁଁ ଏହି ପେନ୍‌ସନ୍‌ର ସର୍ବନିମ୍ନ ହାର ୨୦୦ ଟଂକାରୁ ୩୦୦ ଟଂକାକୁ ବଢ଼ାଇବା ପାଇଁ ଦାବି କଲି । ପ୍ରଥମେ ୨୦୦ ଟଂକା ରଖାଯାଇଥିବାର କାରଣ ସ୍ୱାଧୀନତା ସଂଗ୍ରାମୀମାନେ ମଧ ଏହି ହାରରେ ରାଜ୍ୟସରକାରଂକଠାରୁ ଭତ୍ତା ପାଉଥିଲେ । ମୋ ଦାବିକୁ ଓଡ଼ିଶାର ସମସ୍ତ ନେତୃବୃନ୍ଦ ଦୃଢ଼ ସମର୍ଥନ ଜଣାଇ ବିବୃତିମାନ ଦେଇଥିଲେ । ପ୍ରଥମ ନିବେଦନ ପତ୍ରଟି ୫.୨.୮୧ ତାରିଖରେ ପ୍ରକାଶିତ ଓ ପ୍ରଚାରିତ ହୋଇଥିଲା । ସବୁ ଖବରକାଗଜରେ ଏହା ମୁଖ୍ୟସ୍ଥାନ ଅଧିକାର କରି ପ୍ରକାଶ ପାଇଥିଲା । ଏଥିରେ ସ୍ୱାକ୍ଷର କରିଥିଲେ ପୂର୍ବତନ ମୁଖ୍ୟମଂତ୍ରୀ ଓ ରାଜ୍ୟପାଳ ବିଶ୍ୱନାଥ ଦାଶ, ପୂର୍ବତନ ମୁଖ୍ୟମଂତ୍ରୀ ଓ ରାଜ୍ୟପାଳ ଡ. ହରେକୃଷ୍ଣ ମହାତାବ, ପୂର୍ବତନ ମୁଖ୍ୟମଂତ୍ରୀ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ପୂର୍ବତନ ମୁଖ୍ୟମଂତ୍ରୀ ବିନାୟକ ଆଚାର୍ଯ୍ୟ, ରାଧାନାଥ ରଥ ('ସମାଜ' ସଂପାଦକ), ବାରିଷ୍ଟର ରଣଜିତ୍ ମହାଂତି (ସଭାପତି, ନିଖିଳ ଭାରତ ବାର୍ କାଉନ୍‌ସିଲ), ବୃନ୍ଦାବନ ନାୟକ (ପୂର୍ବତନ ମଂତ୍ରୀ), କାଳିଂଦୀଚରଣ ପାଣିଗ୍ରାହୀ, ଶ୍ରଦ୍ଧାକର ସୂପକାର, ଜଷ୍ଟିସ୍ ହରିହର ମହାପାତ୍ର, ଡଃ ସଦାଶିବ ମିଶ୍ର ପ୍ରମୁଖ ।

୫.୨.୧୯୮୧ ତାରିଖର ଦାବିପତ୍ରରେ ଉପରୋକ୍ତ ବିଶିଷ୍ଟ ବ୍ୟକ୍ତିମାନଂକ ସ୍ୱାକ୍ଷରରେ ପ୍ରକାଶିତ ହୋଇଥିବ ଏହି ଦାବିପତ୍ରଟି ସବୁ ନେତୃସ୍ଥାନୀୟ ବ୍ୟକ୍ତି, ରାଜ୍ୟ ସରକାର, ବିଧାୟକଙ୍କୁ ଓ ମଂତ୍ରୀମାନଂକୁ ଦିଆଯାଇଥିଲା ।

ଭାରତର ବହୁ ଲବ୍ଧପ୍ରତିଷ୍ଠ ଲେଖକ ଓଡ଼ିଶାର ମୁଖ୍ୟମଂତ୍ରୀ ଓ ରାଜ୍ୟପାଳଂକୁ ମୋ ଦାବି ଅର୍ଥାତ୍ ଓଡ଼ିଶା ସାହିତ୍ୟ ଏକାଡେମୀର ପ୍ରସ୍ତାବକୁ ଗ୍ରହଣ କରି ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଂକୁ ମାସିକ ୩୦୦ ଟଙ୍କାରୁ ଅଧିକତମ ୫୦୦ ଟଙ୍କା ପର୍ଯ୍ୟଂତ

ପେନସନ୍ ଦେବାକୁ ପତ୍ରମାନ ଲେଖିଥିଲେ । ସେମାନଙ୍କ ମଧ୍ୟରେ ଡଃ ମୁଲକରାଜ ଆନନ୍ଦ, ଅନ୍ନଦାଶଂକର ରାୟ, ପ୍ରଫେସର ଡଃ. ସୁକୁମାର ସେନ୍ ପ୍ରମୁଖ ଅଂତର୍ଗତ ଥିଲେ ।

**ଡଃ ମହତାବ ସ୍ୱାକ୍ଷର ଦେଲେ ନାହିଁ –**

କେଜାଣି କାହିଁକି ୧୨.୭.୮୨ ତାରିଖର ଦ୍ୱିତୀୟ ଆବେଦନ ପତ୍ରରେ ଡଃ ହରେକୃଷ୍ଣ ମହତାବ ସ୍ୱାକ୍ଷର ଦେବାକୁ ରୋକ୍‌ଠୋକ୍ ମନାକଲେ । ସେ ମୋତେ ଖଂଡିଏ ଚିଠିରେ ଲେଖିଲେ –

ଡକ୍ଟର ହରେକୃଷ୍ଣ ମହତାବ
ଏକାମ୍ର ନିବାସ, ଭୁବନେଶ୍ୱର-୭୫୧୦୦୨
୧୯.୭.୮୨

ସଚ୍ଚିବାବୁ,

୧୭.୭ର ପତ୍ର ପାଇଛି । ପେନ୍‌ସନ୍ ବିଷୟରେ ତୁମେ ଲେଖାଲେଖି କରୁଛ । ତୁମେ ଚେଷ୍ଟାକର । ମୁଁ ଏଥିପାଇଁ ସମୟ ଦେବା ସଂଭବ ହେବ ନାହିଁ । ଇତି ।

ଶ୍ରୀ ସଚ୍ଚିରାଉତରାୟ — ହରେକୃଷ୍ଣ ମହତାବ
ମିଶନ ରୋଡ୍
କଟକ - ୭୫୩୦୦୧

ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରସ୍ତାବରେ ଏବଂ ଏହି ଦାବିପତ୍ରମାନଂକରେ ଦର୍ଶାଇ ଦିଆଯାଇଥିଲା ଯେ ଆଂଧ୍ର, କେରଳ, କର୍ଣ୍ଣାଟକ, ତାମିଲ୍‌ନାଡୁ ଆଦି ସବୁ ରାଜ୍ୟ ସରକାର ମାନେ କୃତୀ ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଂକୁ ପେନ୍‌ସନ ଦେଇଆସୁଛଂତି । ଓଡ଼ିଶା ସରକାର ମଧ୍ୟ ଏମାନଂକୁ ପେନ୍‌ସନ ଦେବା ନିତାଂତ ପ୍ରୟୋଜନ । ପୂର୍ବେ ରାଜା, ମହାରାଜା ଓ ଜମିଦାରମାନେ କବି, ସାହିତ୍ୟିକମାନଂକୁ ପୃଷ୍ଠପୋଷକତା ଦେଉଥିଲେ । ତାହା ଫଳରେ ସେମାନେ ସାଂସାରିକ ଦୁଃଖ କଷ୍ଟ ଓ ଅଭାବ ଅସୁବିଧାରୁ ମୁକ୍ତ ହୋଇ ସାରସ୍ୱତ ସାଧନାରେ ବ୍ରତୀ ଥିଲେ । ଏବେ ସରକାର ରାଜା ମହାରାଜାମାନଂକ ସ୍ଥାନ ଅଧିକାର କରିଛଂତି । ସେମାନେ ଆଉ କ୍ଷମତାରେ ନାହାଂତି, ତେଣୁ ସରକାରହିଁ ଲେଖକ ଓ କଳାକାରମାନଂକୁ ସାମାଜିକ ସୁରକ୍ଷା ଦେବା ଉଚିତ ।

ମୋତେ ପ୍ରାୟ ଦୀର୍ଘ ୩ ବର୍ଷକାଳ ଏଥିପାଇଁ ଏକପ୍ରକାର ଏକୁଟିଆଭାବେ ଆଂଦୋଳନ କରିବାକୁ ପଡ଼ିଲା । ଓଡ଼ିଶା ସାହିତ୍ୟ ଏକାଡେମୀର କୌଣସି ସଦସ୍ୟ ଏ ଦିଗରେ କିଛି ପ୍ରକାଶ୍ୟ ଭାବରେ କରିବାକୁ ବା ଆଂଦୋଳନାତ୍ମକ ପଂଥା ନେବାକୁ ଚାହୁଁ ନ ଥିଲେ ।

**କେତେକ ଲେଖକଂକ ବିରୋଧ –**

ବରଂ ଅନ୍ୟ ପକ୍ଷରେ କେତେକ ଲେଖକ ବଂଧୁ ଏହି ପେନ୍‌ସନ ଦାବିକୁ ବିରୋଧ କରୁଥିଲେ । ଗୋପୀନାଥ ମହାଂତି ଯେ କି ଜଣେ ବରିଷ୍ଠ ସାହିତ୍ୟିକ ଥିଲେ, ଥରେ ମୋତେ କହିଲେ – ଲେଖକ, କଳାକାରମାନଂକୁ ପେନ୍‌ସନ ମିଳିଲେ କେତେକ

ଅଣଲେଖକ ଧରାଧରି କରି ଏ ପେନ୍‌ସନ ପାଇଯିବେ, ଯେପରିକି ସ୍ୱାଧୀନତା ସଂଗ୍ରାମୀମାନଂକ କ୍ଷେତ୍ରରେ ଘଟିଛି । ସ୍ୱାଧୀନତା ସଂଗ୍ରାମରେ ଅଂଶ ନେଇନଥିବା କେତେକ ଲୋକ ଏ ପେନ୍‌ସନ ପାଉଛଂତି ।

ମୁଁ ତାଂକୁ ଉତ୍ତର ଦେଲି – ଏ ପେନ୍‌ସନ ପ୍ରଥା ତ ଚାଲୁହୋଇନାହିଁ, ଚାଲୁ ହେଲେ ଯଦି ଅଳ୍ପ କେତେଜଣ ଅଣଲେଖକ ବା ସ୍ୱଳ୍ପକାଟର ଲେଖକ ଏହା ପାଇଯାଂତି ତେବେ ସେଥିରେ ଚିଂତା କରିବାର କ'ଣ ଅଛି ? ଆମ ଓଡ଼ିଆ ଲୋକତ ପେନ୍‌ସନ ପାଇବେ – ସେଥିରେ ଭାବିବାର ବିଷୟ କିଛି ନାହିଁ । ସରକାରଂକର କେତେ ଟଂକା କୁଆଡ଼େ ବରବାଦ ହେଉଛି, ତେଣୁ ୨-୪ ଜଣ ସ୍ୱଳ୍ପକାଟର ଲେଖକ ପେନ୍‌ସନ ପାଇଲେ ଆମେ ଚିଂତିତ ହେବା କାହିଁକି ।

ସୀତାକାଂତ ମହାପାତ୍ର ଯେ କି ସଂସ୍କୃତି ସଚିବ ଥିଲେ ଥରେ ଗୋଟିଏ ସଭାରେ ଏହି ପେନ୍‌ସନ ଆଂଦୋଳନକୁ ବିରୋଧକରି କହିଥିଲେ – 'କୋଣାର୍କର ଶିଳ୍ପୀ କ'ଣ ପେନ୍‌ସନ ପାଉଥିଲା ? ସେ ସଭାଟି କଳାମଂଡପରେ ହେଉଥାଏ, ସେଥିରେ ସଭାପତିତ୍ୱ କରୁଥିଲେ ତତ୍‌କାଳୀନ ସଂସ୍କୃତି ମଂତ୍ରୀ ହରିଶ୍ଚଂଦ୍ର ବକ୍‌ସିପାତ୍ର । ମୁଁ ସେ ସଭାରେ ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଙ୍କୁ ସରକାର ଶୀଘ୍ର ପେନ୍‌ସନ ଦିଅଂତୁ ବୋଲି ଦାବି କରି ବକ୍ତୃତା ଦେଇଥିଲି । ପୃଥିବୀର ବିଭିନ୍ନ ଦେଶରେ ଏବଂ ଭାରତର ଅନ୍ୟାନ୍ୟ ରାଜ୍ୟରେ ସେମାନଂକୁ ସାମାଜିକ ନିରାପତ୍ତା ଦିଆଯାଇଛି । ସଂସ୍କୃତି ମଂତ୍ରୀ ମୋତେ ସମର୍ଥନ କରି ତାଂକ ଭାଷଣରେ କହିଥିଲେ ଯେ, ଓଡ଼ିଶାର ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନେ ନିଶ୍ଚୟ ପେନ୍‌ସନ୍ ପାଇବେ, ଏଥିରେ କୌଣସି ସଂଦେହ ନାହିଁ ।

ମୁଁ ସେଦିନ ୧୯୭୯ ମସିହା ମଇମାସରୁ ଦୀର୍ଘ ତିନିମାସ ରୁଷିଆ, ପୋଲାଂଡ, ଚେକୋସ୍ଲୋଭାକିଆ ଏବଂ ଲଂଡନରେ ବକ୍ତୃତା ଗସ୍ତ ସାରି ଭୁବନେଶ୍ୱର ଫେରିଥାଏ । ମୋତେ ଭୁବନେଶ୍ୱର ଏଆରପୋର୍ଟରୁ ଆଣିବା ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ଗାଡ଼ି ପଠାଇଥିଲା । ମୁଁ ଘରକୁ ନଯାଇ ସିଧା ଏକାଡେମୀ ଅଫିସକୁ ଗଲି । ମୋ ଅନୁପସ୍ଥିତିରେ ଏକାଡେମୀର ହାଲଚାଲ ବୁଝିଲି । ମୋତେ ଏକାଡେମୀର ସେକ୍ରେଟେରୀ ଓ ଅନ୍ୟ କର୍ମଚାରୀମାନେ କହିଲେ – ଘଂଟାଏ ଅପେକ୍ଷାକରି କଳାମଂଡପରେ ହେଉଥିବା ସଭାରେ ଆପଣ ଯୋଗଦେଲେ ସମସ୍ତେ ଖୁସିହେବେ । ସଂସ୍କୃତିମଂତ୍ରୀ ଏଥିରେ ସଭାପତିତ୍ୱ କରିବେ । ମୁଁ ସମସ୍ତଂକ କଥା ମାନି ଆଉ କିଛି ସମୟ ଅପେକ୍ଷାକରି ଉକ୍ତ ସଭାକୁ ଯାଇଥିଲି ।

ସୁପରିଚିତ କବି ଓ ସଂସ୍କୃତି ସଚିବ ସୀତାକାଂତ ମହାପାତ୍ରଂକର ବକ୍ତବ୍ୟରେ ମୁଁ କ୍ଷୁଣ୍ଣ ହୋଇଥିଲି । ମୁଁ ଉଠି କହିଲି – କୋଣାର୍କର ଶିଳ୍ପୀ ପେନସନ ପାଉନଥିଲା ସତ, ମାତ୍ର ତାହାର ସାମାଜିକ ନିରାପତ୍ତା ଥିଲା । ସେ ବାଟି ବାଟି ନିଷର ଜମି ଜାଗିରି ପାଉଥିଲା । ତାର ପୁଅ ନାତି ସମସ୍ତେ ସୁରକ୍ଷା ପାଉଥିଲେ । ସାମାଜିକ ନିରାପତ୍ତାହିଁ ଶିଳ୍ପୀର ସୃଜନୀ ଶକ୍ତିକୁ ବଢ଼ାଏ । ଅଭାବ ଅନଟନରେ ପଡ଼ି ଶିଳ୍ପୀ କଦାପି ଉଚ୍ଚକୋଟୀର କଳା ସୃଷ୍ଟି କରିପାରିବନାହିଁ ।

**ଅବୈତନିକ କାର୍ଯ୍ୟ :**

ପୂର୍ବରୁ କହିଛି, ମୁଁ ସାହିତ୍ୟ ଏକାଡେମୀର ସଭାପତି ରୂପେ କୌଣସି ବେତନ ନେଉ ନ ଥିଲି । ଗସ୍ତଖର୍ଚ୍ଚ ମଧ୍ୟ ନେଉନଥିଲି । ମାତ୍ର ମୋ ପରେ ଯେଉଁମାନେ ସଭାପତି ଓ ଉପସଭାପତି ହେଲେ ସେମାନେ ଦରମା ଓ ଗସ୍ତଖର୍ଚ୍ଚ ନେଉଥିଲେ । ସରକାରୀ କ୍ୱାର୍ଟର ମଧ୍ୟ ପାଉଥିଲେ । ଥରେ ବାଲେଶ୍ୱରରେ ଫକୀରମୋହନ ସାହିତ୍ୟ ପରିଷଦ ତରଫରୁ ତାଂକର ବାର୍ଷିକ ଉତ୍ସବର ଆୟୋଜନ କରାଯାଉଥିଲା । ଉଦ୍ୟୋକ୍ତା ଶ୍ରୀ ବ୍ରଜନାଥ ରଥ ପ୍ରମୁଖ ମୋତେ ମୁଖ୍ୟ ବକ୍ତା ରୂପେ ଭାଷଣ ଦେବାକୁ ଡାକିଥିଲେ । କେଂଦ୍ର ଶିକ୍ଷାମଂତ୍ରୀ ଓ ମୋର ଜଣେ ବଂଧୁ ପ୍ରତାପ ଚଂଦ୍ର ମୁଖ୍ୟ ଅତିଥି ରୂପେ ଯୋଗଦେବାକୁ ଆସୁଥିଲେ । ମୁଁ ଉଦ୍ୟୋକ୍ତାମାନଂକର ନିମଂତ୍ରଣ ରକ୍ଷାକରି ଉକ୍ତ ସମାରୋହରେ ଯୋଗଦେଇଥିଲି, କାରଣ ଏଥିରେ ଯୋଗଦେବାକୁ ଏକାଡେମୀ ଅଫିସ୍‌ର ସମସ୍ତେ ମୋତେ ଜୋର୍ ଦେଇଥିଲେ । ଏକାଡେମୀ ଗାଡ଼ି ଖରାପ ଥିବାରୁ ମୁଁ ଟ୍ରେନ୍ ଯୋଗେ ବାଲେଶ୍ୱର ଯାଇଥିଲି । ସମାରୋହ ଶେଷରେ ମୋତେ ଏହି ଉତ୍ସବର ଉଦ୍ୟୋକ୍ତାମାନେ ଗସ୍ତଖର୍ଚ୍ଚ ଯାଚୁଥିଲେ, ମାତ୍ର ମୁଁ ତାହା ନେଲିନାହିଁ । ମୁଁ କହିଲି ଯେ ମୁଁ ସାହିତ୍ୟ ଏକାଡେମୀ ସଭାପତି ରୂପେ ଏ ସମାରୋହରେ ଯୋଗଦେଇଛି, ତେଣୁ ସାହିତ୍ୟ ଏକାଡେମୀ ଗସ୍ତଖର୍ଚ୍ଚ ଦେବେ । ମୁଁ କିଛିଦିନ ପରେ ମୋର ଗସ୍ତଖର୍ଚ୍ଚ ବାବଦ ୧୮୦ ଟଂକାର ଏକ ବିଲ୍, ଯାହା ଅଫିସ୍ ପ୍ରସ୍ତୁତ କରିଦେଇଥିଲା, ତାହା ଏକାଡେମୀ ସଂପାଦକଂକୁ ଦେଇଥିଲି । କେଜାଣି କାହିଁକି ସେ ମୋ ବିଲ୍‌ଟି ସିଧାସଳଖ ପାସ୍ ନକରି କାର୍ଯକାରୀ କିମିଟିରେ ପକାଇଥିଲେ । ଉକ୍ତ କିମଟି ବୈଠକରେ ଗୋପୀନାଥ ମହାଂତି ଓ ଯତୀଂଦ୍ରମୋହନ ମହାଂତି ପ୍ରଭୃତି ମୋ ବିଲ୍ ଉପରେ ଆପତ୍ତି ଉଠାଇଲେ । ଗୋପୀବାବୁ କହିଲେ ଯେ ସେମାନେ ତାଂକୁ ଡାକିଲେ, ସେ ଗଲେ, ସେ ତାଂକ କଥା ବୁଝିବେ, ଏକାଡେମୀ କାହିଁକି ଗସ୍ତ ଖର୍ଚ୍ଚ ଦେବେ ? ମୁଁ ଚୁପ୍ ହୋଇ ବସିଥାଏ । କିଛି ସମୟ ପରେ ଗୋପୀବାବୁ ପ୍ରସ୍ତାବ ଦେଲେ ସଭାପତିଂକ ଗସ୍ତଖର୍ଚ୍ଚ ବିଲ୍ ଏଥର ପାସ୍ କରାଯାଉ । ମାତ୍ର ଭବିଷ୍ୟତରେ ସେ ଏପରି ଗସ୍ତଖର୍ଚ୍ଚ ବିଲ୍ ଦେଲେ ତାହା ପାସ୍ କରାଯିବ ନାହିଁ ବୋଲି ଏକ ପ୍ରସ୍ତାବ କରାଯାଉ । ବିଲ୍‌ଟି ସେହିପରି ଭାବରେ ପାସ୍ ହୋଇଗଲା । ମୁଁ ସେ ବିଲ୍ ବାବଦ ୧୮୦ ଟଙ୍କା ଏକାଡେମୀ ଅଫିସରୁ ନେଲି । ମାତ୍ର ସେ ଟଂକା ସେଇଠି ସାହିତ୍ୟ ଏକାଡେମୀ ଫଂଡକୁ ଦାନକରିଦେଲି । ଏହା ମୋର ପ୍ରଥମ ଓ ଶେଷ ଗସ୍ତଖର୍ଚ୍ଚ ବିଲ୍ ।

ମୁଁ ପ୍ରତି ମାସରେ ଏକାଡେମୀ ଅଫିସ୍‌କୁ ୪-୫ ଥର ଯାଉଥିଲି । ଏକାଡେମୀ ଗାଡ଼ିରେ ହିଁ ଯାଉଥିଲି ଏବଂ ଆସୁଥିଲି । ମୁଁ ଦୈନିକ ଭତ୍ତା ପାଇବାକୁ ହକଦାର୍ ଥିଲେ ମଧ୍ୟ ତାହା ନେଉନ ଥିଲି ।

**ଏକାଡେମୀର ନୂଆ ସଂପାଦକ :**

ଏକାଡେମୀର ସଂପାଦକ ମନୋରଂଜନ ଦାସଂକ କାର୍ଯକାଳ ପୂରିଯିବାରୁ ସେ ସଂପାଦକ ପଦରୁ ଅବ୍ୟାହତି ନେଇଥିଲେ । ତାଂକ ସ୍ଥାନରେ ଓଡ଼ିଶା ସରକାର

ରାଇଚରଣ ଦାସଂକୁ (ଓ.ଏ.ଏସ୍. ଓ ପରେ ଆ.ଏ.ଏସ୍.) ସଂପାଦକ ରୂପେ ନିଯୁକ୍ତ କରିଥିଲେ । ସେ ନିଜେ ଜଣେ ଭଲ ପ୍ରାବଂଧିକ ଥିଲେ । ମାତ୍ର ନୀତିଗତ ଦୃଷ୍ଟିରୁ ଜଣେ ସରକାରୀ ଅଫିସରଂକୁ ଏକାଡେମୀର ସଂପାଦକ କରିବା ଉଚିତ ନୁହେଁ ବୋଲି ମୁଁ ତହିଁର ବିରୋଧ କରିଥିଲି । ମୋ ବକ୍ତବ୍ୟ ଥିଲା, ଏକାଡେମୀ ଏକ ସ୍ୱୟଂଶାସିତ ଅନୁଷ୍ଠାନ, ଏହାର କର୍ମକର୍ତାମାନେ ସରକାରୀ ଅଫିସର ହେବା ଉଚିତ ନୁହେଁ । ମାତ୍ର ସରକାର ତାଂକର କାର୍ଯ ବଦଳାଇଲେ ନାହିଁ । ଏହାପରେ ମୋର ଆଉ କିଛି କରିବାର ନ ଥିଲା ।

**ଏକାଡେମୀର କାର୍ଯ ପରିସର :**

ମୁଁ ସଭାପତି ଥିବା ତିନିବର୍ଷ ମଧ୍ୟରେ ଏକାଡେମୀର କାର୍ଯ ପରିସର ଢେର୍ ବଢ଼ିଯାଇଥିଲା । ଏଥିପୂର୍ବରୁ ଏକାଡେମୀର ସମସ୍ତ କାର୍ଯ କେବଳ ଭୁବନେଶ୍ୱରରେ ସୀମାବଦ୍ଧ ଥିଲା । ସବୁ ସଭାସମିତି କେବଳ ଭୁବନେଶ୍ୱରରେହିଁ ହେଉଥିଲା । ମୁଁ ଏହାକୁ ବ୍ୟାପକ ଓ ବହୁମୁଖୀ କରି ସାରା ଓଡ଼ିଶାରେ ସଂପ୍ରସାରିତ କରାଇଥିଲି । ଫୁଲବାଣୀ, କେଂଦୁଝର, ବାରିପଦା, ବାଲେଶ୍ୱର ଓ କଟକ ଆଦି ସ୍ଥାନମାଂନକରେ ବିଭିନ୍ନ ସେମିନାର୍, ଲେଖକ କର୍ମଶାଳା, ସମ୍ମିଳନୀ ପ୍ରଭୃତି କରାଯାଇଥିଲା ।

କଟକରେ ଗଳ୍ପଲେଖକମାନଂକର ଏକ କର୍ମଶାଳା ସ୍ଥାନୀୟ Y.M.C.A. ହଲ୍‌ରେ କରାଯାଇଥିଲା । ଏଥିରେ ଓଡ଼ିଶାର ବହୁ ଲେଖକ ଓ ଗାଳ୍ପିକ ଯୋଗଦେଇଥିଲେ । ଏହା ତିନିଦିନ ବ୍ୟାପୀ ଚାଲିଥିଲା । ଏଥିରେ ଯୋଗଦେଇଥିବା ବ୍ୟକ୍ତିମାନଂକ ମଧ୍ୟରେ ହରେକୃଷ୍ଣ ମହତାବ, ଅଖିଳ ମୋହନ ପଟ୍ଟନାୟକ ପ୍ରଭୃତିଂକ ନାମ ଉଲ୍ଲେଖଯୋଗ୍ୟ । ପ୍ରଥମେ କେତେକ ବଂଧୁ କର୍ମଶାଳା ବିରୋଧରେ ସ୍ୱର ଉଠାଇଥିଲେ । ମାତ୍ର ଲେଖକ କର୍ମଶାଳା କିପରି ହୁଏ ସେ ବିଷୟରେ ମୁଁ ଆଇଓ୍ୱା ବିଶ୍ୱବିଦ୍ୟାଳୟ ଲେଖକକର୍ମଶାଳାଠାରୁ ଆରଂଭକରି ଅନ୍ୟାନ୍ୟ ଦେଶରେ ହେଉଥିବା ଲେଖକକର୍ମଶାଳାର ଦୃଷ୍ଟାଂତ ଦେଇ ଏକ ଲିଫ୍‌ଲେଟ୍ ପ୍ରକାଶକରି ସଂପୃକ୍ତ ବ୍ୟକ୍ତିମାନଂକୁ ପଠାଇଥିଲି । ତାପରେ ସେମାନେ ଚୁପ୍ ହୋଇଯାଇଥିଲେ ।

ପୂର୍ବେ ଲେଖକମାନଂକୁ ପୁରସ୍କାର ବିତରଣ ସଭାମାନଂକରେ ମୁଖ୍ୟମଂତ୍ରୀ ସଭାପତିତ୍ୱ କରୁଥିଲେ ଏବଂ ପୁରସ୍କାର ବିତରଣ କରୁଥିଲେ । ଏହା ଏକ ପରପଂରାରେ ପରିଣତ ହୋଇଥିଲା । ମୁଁ ତାହା ବଂଦ କରିଦେଇଥିଲି । ମୁଁ କହିଲି – ଏ ସମସ୍ତ ଉତ୍ସବରେ ଏକାଡେମୀ ସଭାପତି ହିଁ ସଭାପତିତ୍ୱ କରିବା ଉଚିତ, ଯେପରି କେଂଦ୍ର ଏକାଡେମୀରେ ହେଉଛି । ମୋ କାର୍ଯକାଳ ପୂରିଯିବାପରେ ଏକାଡେମୀ ପୁଣି ପୂର୍ବାବସ୍ଥାକୁ ଫେରିଗଲା ।

ଏକାଡେମୀର କାର୍ଯ ପରିସରକୁ ସୁଦୂରପ୍ରସାରୀ କରିବାରେ ଏବଂ ଏହାକୁ ସାରା ଓଡ଼ିଶାରେ ପରିବ୍ୟାପ୍ତ କରିବା ଦିଗରେ ମୁଁ ଯେଉଁ ପଦକ୍ଷେପ ନେଇଥିଲି ତାହା ମୋ ପରେ ଧିମେଇଯାଇଛି ବା ବଂଦହୋଇଯାଇଛି – ଏହା ବଡ଼ ଦୁଃଖର କଥା ।

**ପୁସ୍ତକ ପ୍ରକାଶନ କାର୍ଯକ୍ରମ :**

ମୁଁ ଏକାଡେମୀର ସଭାପତି ଥିଲାବେଳେ କେତୋଟି ବହି, ଯଥା – 'ଶତାବ୍ଦୀର ଶ୍ରେଷ୍ଠ କବିତା, 'ଶତାବ୍ଦୀର ଶ୍ରେଷ୍ଠ ଗଳ୍ପ' ପ୍ରଭୃତି ପ୍ରକାଶପାଇଥିଲା । ଏସବୁ ବହି ୫-୬ ବର୍ଷ ଧରି ପ୍ରେସ୍‌ରେ ପଡ଼ିଥିଲା । ସେସବୁ ବହିରେ ବହୁତ ମୁଦ୍ରଣ ପ୍ରମାଦ ରହିଥିଲା । ଏସବୁ ପୁସ୍ତକମାନ ପ୍ରକାଶକରାଗଲା ।

କେତେକ ନୂଆ ପୁସ୍ତକ, ଯଥା – 'ଓଡ଼ିଆ ସାହିତ୍ୟର ଇତିହାସ', 'କୋଣାର୍କ ପତ୍ରିକାର ଉନ୍ନୟନ' ଆହୁରି ଅନେକ ବହି ପ୍ରକାଶ କରିବାର ଯୋଜନା କରାଯାଇଥିଲା ।

ମୋ କାର୍ଯକାଳ ଶେଷହେବାର ଅବ୍ୟବହିତ ପୂର୍ବରୁ ସାହିତ୍ୟ ଏକାଡେମୀକୁ ସରକାରୀ ଅନୁଦାନ ପ୍ରାୟ ଦ୍ୱିଗୁଣିତ ହୋଇଥିଲା । ଏହା ମୋ ପକ୍ଷରେ ଅତୀବ ଆନନ୍ଦର କଥା ଥିଲା, ଯଦିଚ ମୁଁ ଏହାର କୌଣସି ସଦୁପଯୋଗ କରିବା ଅବସ୍ଥାରେ ନ ଥିଲି ।

**ଲେଖକ, କଳାକାର, କ୍ରୀଡ଼ାବିତ୍‌ମାନଂକୁ ପେନ୍‌ସନ୍ ମିଳିଲା –**

ଶେଷରେ ବହୁ ଆଂଦୋଳନ ପରେ ୨୩.୪.୧୯୮୨ ତାରିଖ ସୂଚନାଭବନଠାରେ ଅନୁଷ୍ଠିତ ସଭାରେ ମୁଖ୍ୟମଂତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ୧୮୨ ଜଣ କୃତୀ ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ଂକୁ ମାସିକ ୨୦୦ ଟଂକାରୁ ୫୦୦ ଟଙ୍କା ପର୍ଯଂତ ପେନ୍‌ସନ୍ ଦେଇଥିଲେ (ଉତ୍କଳପ୍ରସଂଗ) । ଦୁଇଜଣ ବିଶିଷ୍ଟ-ଶିଳ୍ପୀଙ୍କୁ ମାସିକ ୫୦୦ ଟଙ୍କା ହାରରେ ପେନ୍‌ସନ୍ ମଂଜୁର ହୋଇଥିଲା । ସେମାନେ ହେଲେ ଜର୍ଜ ପଟ୍ଟନାୟକ ଏବଂ ସଂଗୀତ ଶିଳ୍ପୀ ନିମାଇଁ ହରିଚଂଦନ । ପ୍ରଥମ ଦଫାରେ ଅନ୍ୟୂନ ୨୦୦ ଜଣଂକୁ ପେନ୍‌ସନ ଦିଆଯାଉ ବୋଲି ଆମେ ଦାବିକରିଥିଲୁ, ମାତ୍ର ସରକାର ପ୍ରଥମ ଦଫାରେ ୧୮୨ ଜଣଂକୁ ପେନ୍‌ସନ ମଞ୍ଜୁଂର କରିଥିଲେ ।

ଦ୍ୱିତୀୟରେ ଆମେ ସର୍ବନିମ୍ନ ପେନ୍‌ସନ ମାସିକ ୩୦୦ ଟଂକା ହେଉ ବୋଲି ଦାବି କରି ଆସୁଥିଲୁ, ମାତ୍ର ସରକାର ସର୍ବନିମ୍ନ ହାର ୨୦୦ ଟଙ୍କା ରଖିଥିଲେ ।

**ଓଡ଼ିଶା ରାଜ୍ୟ ଲେଖକ, କଳାକାର, କ୍ରୀଡ଼ାବିତ୍ ସଂଗଠନ :**

ଆମେ 'ଓଡ଼ିଶା ରାଜ୍ୟ ଲେଖକ, କଳାକାର ଓ କ୍ରୀଡ଼ାବିତ୍ ସଂଗଠନ' ଗଠନ କରିଥିଲୁ । ଏହା ୧୯୮୨ ମସିହା ଡିସେମ୍ବର ମାସ ୧୩ ତାରିଖରେ ରେଜେଷ୍ଟ୍ରିଭୁକ୍ତ ହୋଇଥିଲା । ଏହାର ରେଜିଷ୍ଟ୍ରେସନ ନଂ ଥିଲା – 1868-528 of 1982-83 । ଏହାର ସଭାପତି ଥିଲେ କାଳିଂଦୀଚରଣ ପାଣିଗ୍ରାହୀ । ମୁଁ କାର୍ଯକାରୀ ସଭାପତି ଥିଲି । ସଂପାଦକ ଥିଲେ ପ୍ରଫୁଲ୍ଲଚଂଦ୍ର ପଟ୍ଟନାୟକ, ଜେନାମଣି ଅଶୋକ କୁମାର ରାୟ ଥିଲେ ସଂଗଠନ ସଂପାଦକ ।

ଏହାର ବୈଠକ ନିୟମିତ ବସୁଥିଲା । ଆମେ ସର୍ବନିମ୍ନ ପେନ୍‌ସନ୍ ହାର ୩୦୦ ଟଙ୍କାକୁ ବଢ଼ାଇବାଁକୁ ବରାବର ଦାବି କରୁଥିଲୁ । ମାତ୍ର ଏହା ସଂଗେ ସଂଗେ ବଢ଼ିନଥିଲା, କେତେବର୍ଷ ପରେ ବଢ଼ିଥିଲା ।

### ମୋତେ ପ୍ରଥମ ୪ ବର୍ଷ ଯାଏଁ ପେନ୍‌ସନ ମିଳି ନ ଥିଲା :

ଓଡ଼ିଶା ସରକାର ପ୍ରତିବର୍ଷ ୨୦-୨୫ ଜଣ ଲେଖକ, କଳାକାର, କ୍ରୀଡ଼ାବିତ୍‌ଙ୍କୁ ପେନ୍‌ସନ୍ ଦେଉଥିଲେ, କିନ୍ତୁ ମୋତେ ପେନ୍‌ସନ ଦିଆଯାଉ ନ ଥିଲା । କେତେ ବର୍ଷ ପରେ ରାଜ୍ୟ ସରକାରଙ୍କ ସଂସ୍କୃତି ନିର୍ଦ୍ଦେଶାଳୟ ତାଙ୍କର ନଂ-ସିଜି-1-6/86, 1194/3 ଜୁଲାଇ ମାସ ୧୨ ତାରିଖ ଚିଠିରେ ମୋତେ ଜଣାଇଥିଲେ ଯେ ମୋତେ 1986 ସାଲ ଆର୍ଥିକ ବର୍ଷରୁ ମାସିକ ୫୦୦ ଟଙ୍କା ପେନ୍‌ସନ ଦେବାକୁ ରାଜ୍ୟସରକାର ସ୍ଥିର କରିଛନ୍ତି । ଏଥି ପୂର୍ବରୁ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ମୋତେ ଟେଲିଫୋନ୍ କରି ଏକଥା ଜଣାଇଥିଲେ । ମୁଁ ତାଙ୍କୁ ହାର୍ଦ୍ଦିକ ଧନ୍ୟବାଦ ଦେଇଥିଲି । ଏ ପେନ୍‌ସନ୍‌ର ଆର୍ଥିକ ପରିମାଣ ଯାହା ହେଉନା କାହିଁକି, ଜଣେ ସାହିତ୍ୟିକ ଭାବରେ ଏହା ମୋର ସାରସ୍ୱତ ଅବଦାନର ସରକାରୀ ସ୍ୱୀକୃତି ହିସାବରେ ମୂଲ୍ୟବାନ୍ ।

ସରକାର ପ୍ରଥମ ବର୍ଷ ଏ ପେନ୍‌ସନ୍ ଦେଲାବେଳେ ମୁଁ ଭାରତରେ ନ ଥିଲି । ୧୯୮୨ ମସିହା ମାର୍ଚ୍ଚ ମାସରେ ମୁଁ ଲଣ୍ଡନରେ ଥିଲି । ଲଣ୍ଡନ ବିଶ୍ୱବିଦ୍ୟାଳୟଙ୍କ School of Oriental & African Studiesରେ ଓଡ଼ିଶା ପଟ୍ଟଚିତ୍ର ଓ ପୋଥିଚିତ୍ରର ଏକ ତିନିମାସବ୍ୟାପୀ ପ୍ରଦର୍ଶନୀ କରିବାପାଇଁ ମୋତେ ଲଣ୍ଡନ ବିଶ୍ୱବିଦ୍ୟାଳୟଙ୍କ ତରଫରୁ ଆମନ୍ତ୍ରଣ କରାଯାଇଥିଲା । ମୁଁ ଏବଂ ମୋର ସ୍ତ୍ରୀ ଲଣ୍ଡନରେ ରହୁଥିଲୁ । ସେତେବେଳକୁ ମୋର ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଭାବେ କାର୍ଯ୍ୟକାଳ ୧୯୮୧ ମସିହା ଜୁଲାଇ ମାସରୁ ପୂରିଯାଇଥାଏ । ସେ ଯାହାହେଉ, ଦିନେ ମୁଁ ଲଣ୍ଡନରେ ବ୍ରିଟିଶ୍ ମ୍ୟୁଜିୟମ୍ ସାମ୍ନା ରାସ୍ତାରେ ଛିଡ଼ାହୋଇଥିବାବେଳେ ଓଡ଼ିଶା ମ୍ୟୁଜିୟମ୍‌ର କ୍ୟୁରେଟର ହରିଶ୍ ରାୟ ମୋତେ ଦେଖିପାରି ଆସି ନମସ୍କାର କଲେ । ସେ ଏକ ସେମିନାର୍‌ରେ ଯୋଗଦେବାପାଇଁ ଲଣ୍ଡନ ଯାଇଥିଲେ । ଅନ୍ୟାନ୍ୟ କଥା ମଧ୍ୟରେ ମୁଁ ତାଙ୍କୁ ଓଡ଼ିଶା ସରକାର ରାଜ୍ୟର ଲେଖକ, କଳାକାର, କ୍ରୀଡ଼ାବିତ୍‌ମାନଙ୍କୁ ପେନ୍‌ସନ ଦେଲେଣି କି ନାହିଁ ବୋଲି ପଚାରିଲି । ସେ ହଁ କହିଲେ । ୧୮୨ ଜଣଙ୍କୁ ପେନସନ୍ ଦିଆଯାଇଛି ବୋଲି ମୁଁ ତାଙ୍କଠାରୁ ଜାଣିଲି । ମୋର ଦୀର୍ଘ ୫ ବର୍ଷର ଆନ୍ଦୋଳନ ସଫଳ ହୋଇଛି ବୋଲି ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି ।

### ବର୍ତ୍ତମାନ ସ୍ଥିତି :

ଆଜି ସୁଦ୍ଧା ଓଡ଼ିଶା ସରକାର ଏକ ହଜାରରୁ ଅଧିକ ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ଙ୍କୁ ମାସକୁ ୩୦୦ ଟଙ୍କାରୁ ୫୦୦ ଟଙ୍କା ପର୍ଯ୍ୟନ୍ତ ପେନ୍‌ସନ ଦେଉଥିବା ଜଣାଯାଏ । କେତେକ କଳାକାର ଯଥା — ଅଭିନେତା, ନୃତ୍ୟଶିଳ୍ପୀ, ଅଭିନେତ୍ରୀ, ଦେବଦାସୀ ଏବଂ ସ୍ଥପତି, ଚିତ୍ରଶିଳ୍ପୀ ବଡ଼ ଦୁର୍ଗତ ଅବସ୍ଥାରେ କାଳକାଟୁଥିଲେ । କେତେକ ଲେଖକ, ଲେଖିକା ଓ ବୃଦ୍ଧା ଅଭିନେତ୍ରୀ ଅତି ଦୟନୀୟ ଅବସ୍ଥାରେ ଜୀବନଯାପନ କରୁଥିଲେ । ସେମାନେ ଏ ପେନ୍‌ସନ୍ ପାଇବାଦ୍ୱାରା ଟିକିଏ ଥଇଥାନ ହୋଇଗଲେ । ଏହା ମୋ ଜୀବନର ସବୁଠାରୁ ବଡ଼ ଆନନ୍ଦ ।

# ତ୍ରିଚତ୍ୱାରିଂଶ ଉଲ୍ଲାସ

**ବାରବାଟୀ କିଲ୍ଲାରେ ବୋଧିଦ୍ରୁମ ଚାରା ରୋପଣ :**

ମୁଁ ବୋଧଗୟା ମଂଦିରରୁ ଏକ ମହାବୋଧିଦ୍ରୁମ ଚାରା ଆଣିଥିଲି । ଏହି ମଂଦିର ପରିଚାଳନା କମିଟିର ଚେୟାରମ୍ୟାନ୍ ଥିଲେ ଗୟାର ଜିଲ୍ଲାପାଳ । ଏହି ଚାରା ପ୍ରଦାନ ଏକ ବିରଳ ଦୃଷ୍ଟାଂତ । ଭାରତର ଖୁବ୍ କମ୍ ଲୋକଂକୁ ଏହି ପବିତ୍ର ବୋଧିଦ୍ରୁମ ଚାରା ଦିଆଯାଇଛି । ମୋର ଉଦ୍ଦେଶ୍ୟ ଥିଲା କଟକରେ ଏକ ମିଉଜିୟମ୍ ସ୍ଥାପନ କରି ସେହି ହତାରେ ବୋଧିଦ୍ରୁମ ଚାରା ରୋପଣକରିବି । ମୁଁ ଏହି ଚାରାକୁ ପ୍ରାୟ ଦୁଇବର୍ଷ କାଳ ମୋ ମିଶନ୍ ରୋଡ୍ ବାସଭବନ ବଗିଚାରେ ଏକ ବଡ଼ ମାଟିକୁଂଡରେ ଲଗାଇଥିଲି । ଚାରା ବଡ଼ ହେବାକୁ ଲାଗିଲା । ମାଟିକୁଂଡରେ ରଖିବା ଆଉ ସଂଭବ ହେଲା ନାହିଁ । ମୁଁ କଟକ ମ୍ୟୁନିସିପାଲଟିକୁ ଅନୁରୋଧକଲି ସେମାନେ ପବିତ୍ର ବୋଧିଦ୍ରୁମ ଚାରାଟିକୁ ନେଇ କଟକର ଏକ ଉପଯୁକ୍ତ ସ୍ଥାନରେ ରୋପଣକରଂତୁ, ତାହାହେଲେ ସର୍ବସାଧାରଣ ଏହି ପବିତ୍ର ବୃକ୍ଷର ମହତ୍ୱ ଉପଲବ୍ଧି କରିପାରିବେ । ମୁଁ ଏବଂ ଇଉନିର୍ଭସ୍‌ର ସଂପାଦକ ଗିରିଜାଭୂଷଣ ପଟ୍ଟନାୟକ କଟକ ଜିଲ୍ଲାପାଳ ଏବଂ କଟକ ମ୍ୟୁନିସିପାଲ୍‌ଟିର ତତ୍କାଳୀନ ଚେୟାରମ୍ୟାନ ବିନୋଦ ଝା I.A.S.ଙ୍କୁ ମଧ ଏ ବିଷୟରେ କହିଥିଲୁ । ଶେଷରେ କଟକ ମ୍ୟୁନିସିପାଲଟି ବାରବାଟୀ କିଲ୍ଲାର ଗଡ଼ଖାଇ ନିକଟରେ ସେହି ଚାରା ରୋପଣ କରିବା ନିମଂତେ ମନସ୍ଥ କଲେ । ଜିଲ୍ଲାପାଳ ବିନୋଦ ଝା ମୋ ଘରକୁ ଆସି ତାଂକ ସିଦ୍ଧାଂତ ଜଣାଇଦେଲେ ଏବଂ ସେ ଚାରାଟିକୁ ଆସଂତା କାଲି ମୋ ଘରୁ ନେଇ ଗଡ଼ଖାଇ ନିକଟରେ ରଖିବେ ବୋଲି ଜଣାଇଦେଲେ ।

ସମାଜ ସଂପାଦକ ରାଧାନାଥ ରଥ ଜାପାନର ଧର୍ମଗୁରୁ ଏବଂ ବିଶ୍ୱ ବୌଦ୍ଧ ସଂସ୍ଥାର ପୁରୋଧା ମହାମାନ୍ୟ ଗୁରୁଜୀ ଫୁଂଜି ମହାରାଜଂକୁ କଟକ ଆସି ସେହି ଚାରାଟି ରୋପଣ କରିବାପାଇଁ ଅନୁରୋଧକଲେ । ଗୁରୁଜୀ ଫୁଂଜି ଧୌଳିସ୍ଥିତ ବୌଦ୍ଧସ୍ତୂପର ସ୍ଥାପୟିତା ଭାବେ ଓଡ଼ିଶାରେ ସର୍ବତ୍ର ପରିଚିତ ଥିଲେ । ସେ କଳିଂଗ ନିପନ ବୁଦ୍ଧ ସଂଘର ସଭାପତି ଥିଲେ । ମହାମାନ୍ୟ ଫୁଂଜି ମହାରାଜ ୧୯୭୮ ମସିହା ଅକ୍ଟୋବର ମାସ ୩୧ ତାରିଖ ଦୀପାବଳୀ ଅମାବାସ୍ୟା ଦିନ ପୂର୍ବାହ୍ନରେ ତାଂକ ଶିଷ୍ୟ ଓ ଶିଷ୍ୟାମାଂନକ ସହ କଟକ ଆସି ସେ ଚାରା ରୋପଣ କରିବେ ବୋଲି ସମ୍ମତି ଦେଲେ ।

ଗୟାରେ ବୋଧିଦ୍ରୁମ ତଳେ ବସି ଗୌତମ ବହୁବର୍ଷ ତପସ୍ୟା କଲାପରେ ବୁଦ୍ଧତ୍ୱ ପ୍ରାପ୍ତହୋଇଥିଲେ । ତେଣୁ ବୌଦ୍ଧଗୟାରେ ସେହି ସ୍ଥାନରେ ବୋଧଗୟା ମଂଦିର ନିର୍ମିତ ହୋଇଥିଲା । ମୂଳ ବୋଧିଦ୍ରୁମଟି ମଧ ସେହିଠାରେ ଆଜି ପର୍ଯଂତ ରହିଛି । ଏହି ପବିତ୍ର

ବୋଧିଦ୍ରୁମର ଏକ ଚାରା ଅଶୋକ ତାଂକ କନ୍ୟା ସଂଘମିତ୍ରାଂକ ହାତରେ ସିଂହଳ ପଠାଇଥିଲେ । ତାହା ସିଂହଳର ଅନୁରାଧାପୁରଠାରେ ରୋପିତ ହୋଇଥିଲା । ତାହା ସେହିଠାରେ ଆଜିପର୍ଯ୍ୟଂତ ରହିଛି ଓ ପୂଜିତହେଉଛି । ଭାରତରେ ବହୁ ବୌଦ୍ଧଧର୍ମ ବିରୋଧୀ ଏହି ବୃକ୍ଷକୁ ସମୂଳେ ବିନଷ୍ଟକରିବାକୁ ଚେଷ୍ଟାକରିଥିଲେ, ମାତ୍ର ଏ ପବିତ୍ର ବୃକ୍ଷଟି ସବୁ ବିଦ୍ୱେଷ ଓ ଆକ୍ରମଣ ସତ୍ତ୍ୱେ ବଞ୍ଚିଗଲା । ଇତିହାସରୁ ଜଣାଯାଏ ବଂଗଦେଶର ରାଜା ଶଶାଂକ ଗୟା ଆକ୍ରମଣ କରି ଏହି ବୃକ୍ଷକୁ ଜାଳିପୋଡ଼ି ଧ୍ୱଂସ କରିଦେବା ପାଇଁ ଉଦ୍ୟମ କରିଥିଲେ, ମାତ୍ର ବୃକ୍ଷଟି କିଛିଦିନ ପରେ ପୁଣି କଅଁଳିଉଠିଲା ।

୧୯୭୮ ମସିହା ଅକ୍ଟୋବର ମାସ ୩୧ ତାରିଖ ସକାଳ ୧୧ଟାରେ ବାରବାଟୀ କିଲ୍ଲା ଗଡ଼ଖାଇ ନିକଟରେ ଏକ ଉତ୍ସବରେ ମହାମାନ୍ୟ ଗୁରୁଜୀ ପୁଂଜିଂକ ଦ୍ୱାରା ବୋଧିଦ୍ରୁମ ଚାରା ରୋପିତ ହୋଇଥିଲା । ଗୁରୁଜୀ ପୁଂଜିଙ୍କ ସଂଗରେ ପ୍ରାୟ ୧୦୦ ଜଣ ଜାପାନୀ ଭିକ୍ଷୁ ଓ ଭିକ୍ଷୁଣୀ ଜାପାନରୁ ଆସିଥିଲେ । ଓଡ଼ିଶାର ତତ୍‌କାଳୀନ ମୁଖ୍ୟମଂତ୍ରୀ ନୀଳମଣି ରାଉତରାୟ, ସମାଜ ସଂପାଦକ ରାଧାନାଥ ରଥ, କଟକ ଜିଲ୍ଲାପାଳ ଓ ମ୍ୟୁନିସିପାଲିଟି ଚେୟାରମ୍ୟାନ ବିନୋଦ ଝା (I.A.S.) ଏବଂ ୟୁନିଭର୍ସର ସଂପାଦକ ଗିରିଜାଭୂଷଣ ପଟ୍ଟନାୟକ ପ୍ରମୁଖ ଏହି ଉତ୍ସବରେ ଯୋଗଦେଇଥିଲେ ଏବଂ ଭାଷଣ ଦେଇଥିଲେ ।

**ଗୁରୁଜୀ ପୁଂଜିଂକ ଭାଷଣ :**

ମହାମାନ୍ୟ ଗୁରୁଜୀ ପୁଂଜି ତାଂକ ଭାଷଣରେ କହିଥିଲେ ଯେ – ''ମାନବ ସେବା ଓ ହୃଦୟର ଜୟ ହିଁ ପ୍ରକୃତ ଜୟ'' । ପୃଥିବୀବାସୀ ଜଡ଼ବିଜ୍ଞାନ ପ୍ରତି ଆକୃଷ୍ଟହୋଇ ଆଧ୍ୟାତ୍ମିକ ମାର୍ଗରୁ ଓହରିଯିବା ଫଳରେ ସାରା ପୃଥିବୀରେ ହିସାଂକାଂଡ ଓ ଯୁଦ୍ଧ ଲାଗି ବହୁ ଧନଜୀବନ କ୍ଷୟଘଟୁଛି । ଅଶୋକ ହିଂସା ଓ ତରବାରି ସାହାଯ୍ୟରେ ସାରା ପୃଥିବୀ ଜୟ କରିବାକୁ ଇଚ୍ଛା କରିଥିଲେ । ମାତ୍ର କଳିଂଗ ଯୁଦ୍ଧର ହତ୍ୟାବିଭୀଷିକା ଓ ରକ୍ତନଦୀ ଦେଖି ତାଂକ ମନରେ ହଠାତ୍ ପରିବର୍ତ୍ତନ ଆସିଲା ଏବଂ ସେ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହେଲେ । କଳିଂଗ ଯୁଦ୍ଧରୁ ହିଁ ଅଶୋକ ଅହିଂସା, ସତ୍ୟ, ମାନବସେବା ଓ ହୃଦୟ ଜୟ ହିଁ ପ୍ରକୃତ ଜୟ ବୋଲି ବିଶ୍ୱାସ କରି ସାରା ବିଶ୍ୱରେ ବୌଦ୍ଧ ଧର୍ମର ପ୍ରଚାରକଲେ । ସେ ପୁଣି କହିଥିଲେ, ଅଶୋକଂକ ପରେ ମହାତ୍ମା ଗାଂଧି ହେଉଛଂତି ଦ୍ୱିତୀୟ ମହାପୁରୁଷ ଯେ କି ଭାରତବାସୀଂକୁ ଅହିଂସାତ୍ମକ ଆନ୍ଦୋଳନରେ ପରିଚାଳିତକରି ଭାରତକୁ ସ୍ୱାଧୀନ କରିଥିଲେ ଏବଂ ସାରା ବିଶ୍ୱକୁ ଏ ଦିଗରେ ଅନୁପ୍ରାଣିତ ହେବାକୁ ନିବେଦନ କରିଥିଲେ । ଗୁରୁଜୀ ପୃଥିବୀର ବିଭିନ୍ନ ଦେଶରେ ଧଉଳି ଭଳି ଶାଂତିସ୍ତୂପମାନ ସ୍ଥାପନ କରିଛନ୍ତି ବୋଲି ପ୍ରକାଶକରିଥିଲେ । ମସ୍କୋରେ ମଧ୍ୟ ଶାଂତିସ୍ତୂପ ପ୍ରତିଷ୍ଠା ପାଇଁ ସୋଭିଏତ୍ କର୍ତ୍ତୃପକ୍ଷ ଇଚ୍ଛା ପ୍ରକାଶ କରିଛଂତି ବୋଲି ଗୁରୁଜୀ କହିଥିଲେ ।

ପୂଜ୍ୟ ଗୁରୁଜୀ ପୁଂଜିଂକ ଜାପାନୀ ଭାଷାରେ ପ୍ରଦତ୍ତ ଭାଷଣକୁ ତାଂକର ଜଣେ ଶିଷ୍ୟା ଓ ବୌଦ୍ଧ ଭିକ୍ଷୁଣୀ ଇଂରାଜୀରେ ଅନୁବାଦ କରି ଶୁଣାଇଥିଲେ । ମୁଖ୍ୟମଂତ୍ରୀ

ନୀଳମଣି ରାଉତରାୟ କହିଥିଲେ ଯେ ୨୫୦୦ ବର୍ଷ ପୂର୍ବେ ଯେଉଁ ଦ୍ରୁମ ତଳେ ବୁଦ୍ଧଦେବ ଦିବ୍ୟଜ୍ଞାନ ଲାଭକରି ସାରା ପୃଥିବୀକୁ ନୂତନ ଆଦର୍ଶରେ ଅନୁପ୍ରାଣିତ କରିଥିଲେ ସେହି ଦ୍ରୁମର ଚାରା ଆଜି ଏଠାରେ ସ୍ଥାପିତହେଉଛି ।

**ପ୍ରାରଂଭ ଭାଷଣ :**

ମୁଁ ଉତ୍ସବର ପ୍ରାରଂଭରେ ଭାଷଣ ଦେଇ କହିଥିଲି ଯେ – ଏହି ବୋଧିଦ୍ରୁମ ଚାରା ବୋଧଗୟା ମଂଦିର କର୍ତ୍ତୃପକ୍ଷ ମୋତେ ଦେଇଥିବାରୁ ମୁଁ ସେମାନଂକଠାରେ ଅତିଶୟ କୃତଜ୍ଞ । ଏହି ଚାରା କଟକ ମ୍ୟୁନିସିପାଲଟି ବାରବାଟୀ କିଲ୍ଲାରେ ରୋପଣକରି କଟକବାସୀ ଓ ଓଡ଼ିଶାବାସୀଂକର ଧନ୍ୟବାଦର ପାତ୍ର ହୋଇଛଂତି । ମୁଁ ଏହି ବୃକ୍ଷର ସଂକ୍ଷିପ୍ତ ଇତିହାସ ବର୍ଣ୍ଣନାକରିଥିଲି । ମୁଁ କହିଥିଲି ଯେ – କଟକ ମ୍ୟୁନିସିପାଲଟି ଏହି ସ୍ଥାନରେ ଏକ ପ୍ରାର୍ଥନାଗୃହ ଓ ପୁସ୍ତକାଗାର ଏବଂ ତାହା ଉପରେ ଏକ ଶାଂତିସ୍ତୂପ ଶୀଘ୍ର ନିର୍ମାଣ କରିବା ଦରକାର । ତାହାହେଲେ କଟକବାସୀ ବିଶେଷ ଉପକୃତ ହେବେ । ବୋଧିଦ୍ରୁମ ଚାରା ରୋପିତ ହେଲା ପରେ ଭାରତର ବିଭିନ୍ନ ସ୍ଥାନରୁ ଏବଂ ସିଂହଳ, ବର୍ମା ଏବଂ ଥାଇଲାଂଡରୁ କେତେକ ବୌଦ୍ଧଭିକ୍ଷୁ, ଭିକ୍ଷୁଣୀ ଏବଂ ସାଧାରଣ ନାଗରିକ ଏଠାକୁ ଆସି ବୃକ୍ଷର ପୂଜା କରିଯାଇଛଂତି ବୋଲି କିଲ୍ଲା ମଇଦାନରେ ରହୁଥିବା ଜଗୁଆଳି ମୋତେ କହିଥିଲେ ।

**ଲୁହାବାଡ଼ ଘେରରେ ଅବହେଳିତ ବୋଧିଦ୍ରୁମ :**

ମାତ୍ର କେତେବର୍ଷ ପରେ ସେ ପ୍ରଧାନ ଫାଟକଟି ବଂଦକରିଦିଆଗଲା, ଏବଂ ବୃକ୍ଷର ଚାରିଆଡ଼େ ଲୁହା ଅଂକୁଶର ବାଡ଼ ଦିଆଗଲା । ବୃକ୍ଷ ଲାଗିଥିବା ମଂଡପ ସମ୍ମୁଖରେ ଇଂଡୋର ଷ୍ଟାଡିୟମ୍ ନିର୍ମିତ ହେବା ପରେ ବୃକ୍ଷକୁ ଏପରି ଘେରାଇଦିଆଗଲା ଯେ ଏହା ଫଳରେ ସର୍ବସାଧାରଣ ବୃକ୍ଷ ନିକଟକୁ ଯିବାକୁ ସଂକୋଚ ବୋଧ କରୁଛଂତି । ଯିବା ବାଟରେ ମଧ୍ୟ ଖାଇଢିପ ବଡ଼ ବଡ଼ ଘାସ ଭରିରହିଛି । ବର୍ତ୍ତମାନ ପ୍ରତିବର୍ଷ ଅଗଷ୍ଟ ୬ ତାରିଖ ଦିନ ସକାଳେ ଏଠାରେ ହିରୋସୀମା ଦିବସ ସମାରୋହରେ ପାଳିତହୁଏ ଏବଂ ଧଳା କପୋତମାନଂକୁ ଆକାଶରେ ଉଡ଼ାଇଦିଆଯାଏ । ଏକ ଶୋଭାଯାତ୍ରା ଏଠାରୁ ବାହାରି ନଗର ପରିକ୍ରମା କରେ । ଏହା ଡକ୍ଟର ଜି.ପି. ମହାଂତି ଏଫ୍.ଆର୍.ସି.ଏସ୍‌ଙ୍କ ଉଦ୍ୟମରେ ବହୁବର୍ଷ ହେଲା ଅନୁଷ୍ଠିତ ହୋଇଆସୁଛି । ଏଥିରେ କଟକର ବହୁ ବିଶିଷ୍ଟ ବ୍ୟକ୍ତି ଯୋଗଦେଇଥାଂତି ଏବଂ ଭାଷଣ ଦେଇଥାଂତି । ଏହାଛଡ଼ା ବୌଦ୍ଧପୂର୍ଣ୍ଣିମା ସଂଧ୍ୟାରେ (ବୈଶାଖ ପୂର୍ଣ୍ଣିମା) ଏଠାରେ ଆଲୋଚନାସଭା ପ୍ରଭୃତି ହୋଇଥାଏ । [୧୯୫୫ ମସିହାରେ ଜାପାନରେ ମୋର ହିରୋସିମା ଓ ନାଗାସାକି ପରିଦର୍ଶନ ଅନୁଭୂତି ଯେପରି ଭୟଂକର ସେପରି ଲୋମହର୍ଷକ । ସେ ବିବରଣୀ ପରିଶିଷ୍ଟରେ ଦ୍ରଷ୍ଟବ୍ୟ ।]

ମାତ୍ର ଦୁଃଖର ବିଷୟ, କଟକ ମ୍ୟୁନିସିପାଲ କର୍‌ପୋରେସନ ବା ପୌରପରିଷଦକୁ ବହୁ ଲେଖାଲେଖି କରିବାପରେ ମଧ୍ୟ ଏ ସ୍ଥାନର ଉନ୍ନୟନ ପାଇଁ ଏବଂ ପ୍ରସ୍ତାବିତ ପ୍ରକଳ୍ପ

ଗୁଡ଼ିକୁ କାର୍ଯକାରୀ କରିବାପାଇଁ କଟକ ମ୍ୟୁନିସିପାଲଟି କୌଣସି ପଦକ୍ଷେପ ନେଇନାହାଁତି, ଫଳରେ ଏ ମହତ୍ତ୍ୱପୂର୍ଣ ସ୍ଥାନଟି ଅପଂତରା ଭୂଇଁ ପରି ପଡ଼ିରହିଛି । ଏହା କଟକସହରର ଦୁର୍ଭାଗ୍ୟ ।

ଓଡ଼ିଶା ସରକାରଂକ ନଗର ଉନ୍ନୟନ ବିଭାଗର ତତ୍‌କାଳୀନ ରାଷ୍ଟ୍ରମଂତ୍ରୀ ବଟକୃଷ୍ଣ ଜେନା ୧୯୮୯ ମସିହା ଅଗଷ୍ଟ ମାସ ଦ୍ୱିତୀୟ ସପ୍ତାହରେ ଏହି ସ୍ଥାନଟିକୁ ପରିଦର୍ଶନକରି ସମସ୍ତ ପ୍ରକାର ଉନ୍ନୟନ ସାଧନ କରିବେ ବୋଲି ପ୍ରତିଶ୍ରୁତି ଦେଇଯାଇଥିଲେ । ମାତ୍ର ଦୁଃଖର କଥା ଏ ପର୍ଯଂତ କିଛି ହେଲେ ବ୍ୟବସ୍ଥା କରାଯାଇନାହିଁ । କଟକର ବହୁ ବିଶିଷ୍ଟ ବ୍ୟକ୍ତି, ଯଥା – ଅବସରପ୍ରାପ୍ତ ଡି.ଜି. ଶ୍ୟାମସୁଂଦର ପାଢ଼ୀ, ଅବସରପ୍ରାପ୍ତ ଡି.ଜି. ଗୋବିଂଦଚଂଦ୍ର ସେନାପତି, ଡଃ ଗୁରୁପ୍ରସାଦ ମହାଂତି ଏଫ୍.ଆର୍.ସି.ଏସ୍, ପ୍ରଫେସର୍ ସଦାନଂଦ ମିଶ୍ର ଓ ମୁଁ ତାଂକୁ ଏକ ଡେପୁଟେସନ୍‌ରେ ଭେଟି ଏ ଦିଗରେ ପଦକ୍ଷେପ ନେବାପାଇଁ ଅନୁରୋଧ କରିଥିଲୁ, ମାତ୍ର କିଛି ଫଳ ହେଲା ନାହିଁ ।

ପ୍ରକାଶଥାଉକି, ବର୍ମାର ପ୍ରଧାନମଂତ୍ରୀ ଉନୁ ସନ୍ନ୍ୟାସ ଗ୍ରହଣ କରିବା ପରେ ଶ୍ରୀଲଂକା ଯାଇଥିଲେ, ସେଠାରେ ଥିବା ମହାବୋଧିଦ୍ରୁମ ଚାରାର କେତୋଟି ଚାରା ଆଣିଥିଲେ । ପୂର୍ବରୁ କୁହାଯାଇଛି ମୂଳ ବୋଧିଦ୍ରୁମର ପ୍ରଥମ ଚାରାଟି ଅଶୋକ ତାଂକ କନ୍ୟା ସଂଘମିତ୍ରାଂକ ହାତରେ ସିଂହଳ ପଠାଇଥିଲେ ଏବଂ ତାହା ଅନୁରାଧାପୁରଠାରେ ରୋପିତ ହୋଇଥିଲା । ଉନୁ ଗୋଟିଏ ଚାରା ଭୁବନେଶ୍ୱରର ବୋଇତାଳ ଦେଉଳ ନିକଟରେ ରୋପଣ କରିଥିଲେ । ଏହା ପ୍ରାୟ ୩୦-୩୫ ବର୍ଷ ତଳର କଥା । ଏଥି ମଧ୍ୟରେ ଭୁବନେଶ୍ୱରରେ ସିଂହଳରୁ ଆନୀତ ସେହି ଚାରା ବୃଦ୍ଧିପାଇ ବିରାଟ ବୃକ୍ଷରେ ପରିଣତହେଲାଣି । ଏହି ବୃକ୍ଷ ନିକଟରେ ଏକ ବିରାଟ ବୌଦ୍ଧବିହାର ଗଢ଼ିଉଠିଲାଣି । କୋଟି କୋଟି ଟଂକା ବ୍ୟୟରେ ଅଟ୍ଟାଳିକାମାନ ଗଢ଼ିଉଠିଛି ।

ମାତ୍ର ଘୋର ଦୁଃଖ ଓ ଲଜ୍ଜାର କଥା ଯେ ଆମ କଟକରେ ମୂଳ ବୋଧିଦ୍ରୁମର ଚାରା, ଯାହା ମୁଁ ଗୟାରୁ ଆଣିଥିଲି ଏବଂ ଯାହାକୁ ମହାମାନ୍ୟ ଗୁରୁଜୀ ପୁଂଜି ବାରବାଟୀ କିଲ୍ଲାରେ ୧୯୭୮ ମସିହାରେ ରୋପଣ କରିଥିଲେ, ତାହାର କୌଣସି ଉନ୍ନୟନ ସାଧିତ ହୋଇପାରିଲାନାହିଁ ।

# ଚତୁଶ୍ଚତ୍ୱାରିଂଶ ଉଲ୍ଲାସ

## ରୁଷରେ ତିନି ସପ୍ତାହ : ପୁଷ୍କିନ୍ ସେମିନାର ଉତ୍ସବରେ କବିତା ପାଠ

**ରୁଷ ଯାତ୍ରା :**

୧୯୭୯ ମସିହା ଜୁନ୍ ୩ ତାରିଖରେ ରୁଷିଆରେ ହେଉଥିବା ପୁଷ୍କିନ୍ ଉତ୍ସବରେ ଯୋଗଦେବାପାଇଁ ଭାରତସରକାର ଓ ସୋଭିଏତ୍ ରୁଷ୍ ଲେଖକ ସଂଘ ଉଭୟଙ୍କ ମିଳିତ କାର୍ଯକ୍ରମ ଅନୁଯାୟୀ ମୁଁ ସୋଭିଏତ୍ ରୁଷ୍ ଯିବା ପାଇଁ ଆମନ୍ତ୍ରଂଣ ପାଇଲି । ସୋଭିଏତ୍ ରୁଷ୍ ଯିବାପାଇଁ ଏବଂ ସେଠାରେ ସାଂସ୍କୃତିକ କାର୍ଯକ୍ରମରେ ପ୍ରତ୍ୟକ୍ଷଭାବରେ ଯୋଗଦେବାପାଇଁ ମୋର ତରୁଣ ବୟସରୁ ଭୀଷଣ ଆଗ୍ରହ ଥିଲା । ତେଣୁ ରୁଷ୍‌ରେ ପ୍ରାୟ ତିନିସପ୍ତାହ ରହି ମହାକବି ପୁଷ୍କିନ୍‌ଙ୍କର ଜନ୍ମବାର୍ଷିକୀରେ ଯୋଗଦେବା ମୋ ପକ୍ଷରେ ଏକ ଅମୂଲ୍ୟ ସୁଯୋଗ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ରୁଷ୍ କାର୍ଯକ୍ରମ ପରେ ପୋଲାଂଡ ଏବଂ ଚେକୋସ୍ଲୋଭାକିଆରେ ଦୁଇସପ୍ତାହ ଲେଖାଏଁ ବକ୍ତୃତା ଗସ୍ତ କରିବା ପାଇଁ ମୋତେ ସଂପୃକ୍ତ ସରକାରମାନେ ଭାରତସରକାରଂକ ଜରିଆରେ ଆମଂତ୍ରଣ କରିଥିଲେ । ମୋର ବକ୍ତୃତାର ବିଷୟବସ୍ତୁ ଥିଲା ଭାରତର ପ୍ରାଚୀନ ଚିତ୍ରକଳା ଓ ସଂସ୍କୃତି । ଏହି ଦୁଇ ଦେଶର ବିଭିନ୍ନ ବିଶ୍ୱବିଦ୍ୟାଳୟ, ମୈତ୍ରୀସଂଘ ଏବଂ ସାଂସ୍କୃତିକ ଅନୁଷ୍ଠାନମାନଂକରେ ଭାଷଣ ଦେବା ଏବଂ ତା ସହିତ ଓଡ଼ିଶାର ପ୍ରାଚୀନ ପୋଥିଚିତ୍ର ଓ ପଟଚିତ୍ର ଆଦିର ସ୍ଲାଇଡ୍ ଶୋ ଏବଂ ପ୍ରଦର୍ଶନୀମାନ କରିବା ମୋ କାର୍ଯକ୍ରମର ଅଂଗୀଭୂତ ଥିଲା । ମୋ ପାଖରେ ଓଡ଼ିଶାର ପୋଥିଚିତ୍ର ଓ ପଟଚିତ୍ର ଆଦିର ପ୍ରାୟ ୩୦୦ coloured slides ମହଜୁତ ଥିଲା । ଏସବୁ coloured ଟ୍ରାନ୍ସପାରାନ୍ସି ମୁଁ କରାଇଥିବା କଥା ପୂର୍ବରୁ କହିଛି । ଏହି କାର୍ଯକ୍ରମ ସାରିବା ପରେ ଲଂଡନରେ ବ୍ରିଟିଶ୍ କାଉନ୍‌ସିଲଂକ ଆନୁକୂଲ୍ୟରେ ଏକ ମାସ ସମୟ କେତେକ ସାଂସ୍କୃତିକ କାର୍ଯକ୍ରମରେ ଯୋଗଦେବାପାଇଁ ମଧ ମୁଁ ଆମଂତ୍ରିତ ହୋଇଥିଲି । ଭାରତ ସରକାରଂକ Indian Council for Cultural Relations. ନୂଆଦିଲ୍ଲୀ, ମୋର ଅଫିସିଆଲ୍ ପାସ୍‌ପୋର୍ଟ ଏବଂ ଭିସା ଇତ୍ୟାଦି ପ୍ରସ୍ତୁତ କରିଥିଲେ ।

୧୭୯୯ ମସିହା ଜୁନ୍ ମାସ ୨୭ ତାରିଖରେ ପୁଷ୍କିନ୍ ମସ୍କୋରେ ଜନ୍ମଗ୍ରହଣ କରିଥିଲେ । ତାଂକର ଜନ୍ମସ୍ଥାନ ଗ୍ରାମର ନାମ ଥିଲା ମିଖାଇଲ୍ ଲୋଭସ୍କାୟା । ସେ ତାଂକର ପ୍ରତିଦ୍ୱଂଦ୍ୱୀ (ଯେ କି ତାଂକ ଶାଳୀର ସ୍ୱାମୀ ଥିଲେ) ଜଣେ ଫରାସୀଯୁବକ ଦାଂତେସ୍‌ଙ୍କ ସଂଗେ ଦ୍ୱଂଦ୍ୱ ଯୁଦ୍ଧରେ (duel) ଅବତୀର୍ଣ ହୋଇ ତାଂକ ପିସ୍ତଲ ଗୁଳିରେ ଲେନିନ୍‌ଗ୍ରାଦ୍ ଉପକଂଠରେ ନୀଭା ନଦୀ କୂଳରେ ଏକ ସ୍ଥାନରେ ଆହତ ହୋଇଥିଲେ ।

ସେ ଦିନଟି ଥିଲା ଜାନୁଆରୀ ୨୭ ତାରିଖ ୧୮୩୭ ମସିହା । ଏହାର ଦୁଇଦିନ ପରେ ତାଂକର ଦେହାଂତ ହୋଇଥିଲା । ମୃତ୍ୟୁବେଳକୁ ତାଂକୁ ମାତ୍ର ୩୮ ବର୍ଷ ହୋଇଥିଲା ।

**ପୁଷ୍କିନ୍ ମେଳା :**

ପୁଷ୍କିନ୍ ଫେସ୍‌ଟିଭାଲ୍ ବା ପୁଷ୍କିନ୍ ମେଳା ପ୍ରତିବର୍ଷ ପୁଷ୍କିନଂକର ପ୍ରିୟ ଜନ୍ମଗ୍ରାମରେ ଜୁନ୍ ୩ ତାରିଖ ଦିନ ଅନୁଷ୍ଠିତ ହୋଇଆସୁଛି । ସେଥିରେ ସମଗ୍ର ରୁଷର ବିଭିନ୍ନ ସ୍ଥାନରୁ ଆସିଥିବା ବହୁ କବିଂକ ସହିତ ପୃଥିବୀର ବିଭିନ୍ନ ଦେଶର କବିମାନେ ସ୍ୱରଚିତ କବିତାମାନ ପାଠକରିବାର କର୍ମସୂଚୀ ରହିଥାଏ ।

ମୁଁ ଦିଲ୍ଲୀସ୍ଥିତ ଭାରତ ସରକାରଂକ Indian Council for Cultural Relationsଙ୍କର ଚୂଡାଂତ କାର୍ଯସୂଚୀ ଅନୁଯାୟୀ ମଇ ମାସ ୨୩ ତାରିଖ ଅପରାହ୍ନରେ ଭୁବନେଶ୍ୱର ବିମାନଘାଟିରୁ ନୂଆଦିଲ୍ଲୀ ବାହାରିଲି । ଭୁବନେଶ୍ୱର ଏୟାର୍ ପୋର୍ଟରେ ମୋ ସ୍ତ୍ରୀ ଭୂଦେବୀ ଏବଂ ପୁଅ ଶ୍ରୀହର୍ଷ ମୋତେ ବିଦାୟଦେଇଥିଲେ । ଓଡ଼ିଶା ସାହିତ୍ୟ ଏକାଡେମୀର ସେକ୍ରେଟାରୀ ମଧ୍ୟ ଏୟାର୍‌ପୋର୍ଟକୁ ଆସିଥିଲେ । ୨୩.୫.୧୯୭୯ ତାରିଖ ଅପରାହ୍ନରେ ଦିଲ୍ଲୀ ପାଲାମ୍ ଏୟାର୍ ପୋର୍ଟରେ ପହଂଚିଲି । ୨୫ ତାରିଖ ସକାଳେ ଦିଲ୍ଲୀ ପାଲାମ୍ ବିମାନଘାଟିରୁ ଇଂଡିଆନ୍ ଏୟାର୍ ଲାଇନସ୍ ବିମାନ ଯୋଗେ ମୋର ମସ୍କୋ ଯାତ୍ରା କରିବା ସ୍ଥିରହୋଇଥାଏ । ମଇ ୨୪ ତାରିଖରେ ମୁଁ ଭାରତ ସରକାରଂକ Indian Council for Cultural Relationsଙ୍କ ଅଫିସକୁ ଯାଇ ସେଠାରୁ ଡିପ୍ଲୋମାଟିକ୍ ପାସ୍‌ପୋର୍ଟ, ଭିସା ଇତ୍ୟାଦି ସଂଗ୍ରହ କଲି । ୨୫ ତାରିଖ ସକାଳ ୮ଟାରେ ଆମ ପ୍ଲେନ୍‌ଟି ପାଲାମ୍ ଏୟାର୍ ପୋର୍ଟ ଛାଡ଼ି ମସ୍କୋ ଅଭିମୁଖେ ଯାତ୍ରାକଲା ।

ପ୍ଲେନ୍‌ଟି ବାଟରେ ତାସ୍‌କେଂଟଠାରେ କିଛି ସମୟ ରହିଲା । ଆମେ ବିମାନରୁ ଓହ୍ଲାଇ ତାସକେଂଟ ବିମାନଘାଟିରେ ଥିବା ଦୋକାନପତ୍ର ବୁଲି ଦେଖିଲୁ । ତାସକେଂଟରେ କେତେକ ବର୍ଷ ପୂର୍ବରୁ ଭାରତର ପ୍ରଧାନମଂତ୍ରୀ ଲାଲ୍ ବାହାଦୁର ଶାସ୍ତ୍ରୀଂକର ହୃଦ୍‌ଯଂତ୍ର ବଂଦ ହୋଇଯିବା ଫଳରେ ଅକାଳ ମୃତ୍ୟୁ ଘଟିଥିଲା । ସେ ପାକ୍-ଭାରତ ଯୁଦ୍ଧ ପରେ ପାକିସ୍ଥାନର ପ୍ରଧାନମଂତ୍ରୀ ଆୟୁବ ଖାଁଙ୍କ ସଂଗେ ଶାଂତି ଓ ସମାଧାନ ସଂବଂଧରେ ଆଲୋଚନା କରିବା ପାଇଁ ତାସ୍‌କେଂଟ ଯାଇଥିଲେ । ଏଥିରେ ମଧ୍ୟସ୍ଥତା କରିଥିଲେ ରୁଷ ପ୍ରଧାନମଂତ୍ରୀ ବ୍ରେଜ୍‌ନେଭ । ମୃତ୍ୟୁର ଦିନକ ପୂର୍ବରୁ ସେ ଏକ ପ୍ରସଂଗରେ କହିଥିଲେ, "ତାସକେଂଟର ପ୍ରାକୃତିକ ପରିବେଶ, ଏହାର ଗଛପତ୍ର, ପାହାଡ଼, ନଈ, ସବୁ ଭାରତ ପରି ଲାଗେ । ତେଣୁ ମୁଁ ତାସକେଂଟରେ ଥିଲାବେଳେ ଭାରତରେ ଅଛି ବୋଲି ମନେହୁଏ" । ତାସକେଂଟକୁ ଭାରତ ଭଳି ଦେଖି ଶାସ୍ତ୍ରିଜୀ ବୋଧହୁଏ ସେହିଠାରେ ଶେଷନିଃଶ୍ୱାସ ତ୍ୟାଗକଲେ । ମସ୍କୋ ବିମାନ ବନ୍ଦରରେ ପହଂଚି ନୀତିନିୟମ ଅନୁଯାୟୀ କାମ କରିବାକୁ ପଡ଼ିଲା । ନିଜ ଜିନିଷପତ୍ର ନେଇ କଷ୍ଟମ୍‌ସ ଓ ସିକ୍ୟୁରିଟି କ୍ଲିଅରାନସ୍

କରିବାକୁ ପଡ଼ିଲା । ସେଠାରେ ସବୁଠାରୁ ବଡ଼ ସମସ୍ୟା ଥିଲା ଭାଷା । ରୁଷୀୟ ଭାଷା ନ ଜାଣିଲେ କଥାବାର୍ତ୍ତା କିଂବା ଭାବର ବିନିମୟ ଅସଂଭବ । ମୁଁ ବହୁ କଷ୍ଟରେ କେବଳ ହାତ ଓ ମୁହଁର ଇଂଗିତରେ ସେଠାର ଲୋକମାନଂକୁ କିଛି କିଛି ବୁଝାଇବାକୁ ଚେଷ୍ଟାକରିଥିଲି । ସେମାନେ ମଧ୍ୟ ଇଂଗିତରେ ଯେତେଟା ପାରଂତି ବୁଝାଇବାକୁ ଚେଷ୍ଟାକରିଥିଲେ । ଇଂରାଜୀ ଭାଷା ସେଠାରେ ଖୁବ୍ କମ୍ ଲୋକ ଜାଣଂତି, ତାହା ବେଶୀ କିଛି କାମ ଦିଏଂନି ।

ସେ ଯାହାହେଉ, ଏୟାରପୋର୍ଟ ବାହାରକୁ ଆସିବାମାତ୍ରେ ଜଣେ ତରୁଣୀ ମୋତେ ଭାରତୀୟ ଭଂଗୀରେ ନମସ୍କାର କଲେ । ତାପରେ ଇଂରାଜୀରେ ପଚାରିଲେ 'ଆପଣ ଡଃ ରାଉତରାୟ ? ଭାରତରୁ ଆସିଛଂତି ?' ମୁଁ ହଁଭରିଲି । ତା ପରେ ସେ ହସି ମୋ ସଙ୍ଗେ କରମର୍ଦ୍ଦନ କରି କହିଲେ – ମୋ' ନାମ ଟାନିଆ । ମୁଁ ଆପଣଂକର ଦ୍ୱିଭାଷୀ (ଇଂଟରପ୍ରିଟର) । ତା ପରେ ମୋ ଜିନିଷପତ୍ର ଗାଡ଼ିରେ ରଖିବାକୁ ଡ୍ରାଇଭରକୁ କହି ମୋ ସଙ୍ଗେ ଗାଡ଼ିରେ ବସିଲେ । ଗାଡ଼ି ଚାଲିଲା । ଟାନିଆ କହିଲା – ଆପଣ Ostankino ହୋଟେଲ୍‌ରେ ରହିବେ । ଏହି ହୋଟେଲଟି ଏୟାରପୋର୍ଟଠାରୁ ପ୍ରାୟ ୨୫ କିଲୋମିଟର ଦୂର, ଏବେ ଏହା ନିର୍ମିତ ହୋଇଛି । ଏହା ଏକ ଅତି ଆଧୁନିକ ବିରାଟ ହୋଟେଲ୍ । ସେ ମୋ ରୁମ୍ ନଂବର ୨୧୯୫କୁ ମୋତେ ନେଇଗଲା ।

ଗାଡ଼ିରେ ହୋଟେଲକୁ ଆସିଲାବେଳେ ଦେଖିଲି ଚାରିଆଡ଼େ ସୁଂଦର ସବୁଜ ଗଛପତ୍ର । ତା ଭିତରେ ଆପେଲ୍ ଗଛ ଏବଂ ଆଉ କେତୋଟି ବଡ଼ ବଡ଼ ଗଛ, ଯଥା – ଇଉକ୍ଲିପଟାସ ଓ ବାର୍ଚ୍ଚ ଗଛ ରହିଛି । ରୁଷ୍ ଏକ ଶୀତପ୍ରଧାନ ଦେଶ । ଏଠାରେ ଏହି ବର୍ଷ ଶୀତଦିନେ ତାପମାତ୍ରା ବିଯୁକ୍ତ ୪୫ ଡିଗ୍ରୀ ଥିଲା । ଚାରିଆଡ଼େ ପ୍ରାୟ ଅଂଟାଏ ଉଚ୍ଚରେ ବରଫ ପଡ଼ିଥିଲା । ଏବେ ମଇ ମାସ ଶେଷରେ ମଧ୍ୟ ଠାଏ ଠାଏ ବରଫ ଜମିଥିବାର ଦେଖିଲି । ସେହି ବରଫ ଉପରେ ଚାଲିବାକୁ ହୁଏ । ଗାଡ଼ି ମଧ୍ୟ ତାରି ଉପରେ ଚାଲେ । ଗାଡ଼ିର ଚାରିଚକରେ ଶିକୁଳି ବଂଧା ହୋଇଥାଏ, ଯେପରି ବରଫରେ ଖସଡ଼ିନଯିବ । ଏଠାରେ ଅନ୍ୟ ଇଉରୋପୀୟ ଦେଶମାନଙ୍କ ପରି ଗାଡ଼ି ଡାହାଣପଟେ ଚାଲେ, ଭାରତ ପରି ବାମପଟରେ ନୁହେଁ । ମସ୍କୋର ଶୀତାର୍ତ୍ତ ପରିବେଶ ଭିତରେ ମୁଁ ଓ ଟାନିଆ ଗାଡ଼ିଭିତରେ ନୀରବ ହୋଇ ବସିଥିଲୁ ।

ହୋଟେଲରେ ପହଁଚି ମୁଁ ମୋର ନିତ୍ୟକର୍ମ ଶେଷକଲି । ଟାନିଆ ତା ଘରକୁ ଚାଲିଗଲା । କହିଗଲା ସକାଳ ୧୦.୩୦ବେଳକୁ ଆସିବ । ମୋତେ ରୁମ୍‌ର ଟେଲିଫୋନ ଇତ୍ୟାଦି ଦେଖେଇଦେଇଗଲା । ହୋଟେଲର ପ୍ରତି ମହଲାରେ ଅଭ୍ୟର୍ଥନା ବା ରିସିପ୍‌ସନ କୋଠରିମାନ ଥାଏ । ତଳମହଲାରେ କେଂଦ୍ରୀୟ ଅଭ୍ୟର୍ଥନା ଅଫିସ ଥାଏ । ତାହା ଖୁବ୍ ବଡ଼ ଏବଂ ସବୁ ଶାଖା ଅଫିସ୍ ସହିତ ସଂଯୁକ୍ତ । ହୋଟେଲ୍‌ର ପ୍ରତି ମହଲାରେ କେତେଗୁଡ଼ିଏ ସ୍ୱୟଂଚାଳିତ ଲିଫଟ୍ ଥାଏ । ସେହି ଲିଫଟ୍‌ଗୁଡ଼ିକ ହିଁ ଥିଲା ବଡ଼ ଭରସା ।

**ମସ୍କୋରେ ଭାରତୀୟ ଲେଖିକା ସମ୍ମିଳନୀ :**

୨୬-୫-୧୯୭୯ ମସିହା ଅପରାହ୍ଣରେ ମସ୍କୋସ୍ଥିତ ଭାରତୀୟ ଦୂତାବାସରେ ପଂଜାବ ଓ ଉତ୍ତର ପ୍ରଦେଶରୁ ଆସିଥିବା ଲେଖିକାସଂଘକୁ ଏକ ସଂବର୍ଧନା ଦିଆଯାଉଥାଏ । ସେଠାକୁ ମୁଁ ନିମଂତ୍ରିତ ହୋଇଥିଲି । ସେତେବେଳେ ମସ୍କୋରେ ଭାରତୀୟ ରାଷ୍ଟ୍ରଦୂତ ଥାଂତି ଇଂଦ୍ର କୁମାର ଗୁଜୁରାଲ୍ । ନିମଂତ୍ରଣ ପତ୍ରଟି ତାଂକରି ଦସ୍ତଖତରେ ମୋ ହୋଟେଲକୁ ଦୂତାବାସ ପଠାଇଥିଲେ ।

କବିସମ୍ମିଳନୀରେ କେତେକ ଲେଖିକା ସ୍ୱରଚିତ କବିତା ପାଠକରିଥିଲେ । ଶ୍ରୀମତୀ ଓ ଶ୍ରୀ ଗୁଜରାଲ୍ ମଧ ତାଂକ କବିତା ପାଠକରିଥିଲେ । ମୁଁ ମୋ ସଂଗରେ କିଛି କବିତା ନେଇନଥିଲି । ମାତ୍ର ବାଜିରାଉତ ପୁସ୍ତକର ଇଂରାଜୀ ଅନୁବାଦ ଯାହା ହରିଂଦ୍ରନାଥ ଚଟ୍ଟୋପାଧ୍ୟାୟଂକଦ୍ୱାରା ଇଂରାଜୀରେ ଅନୂଦିତ ହୋଇଥିଲା, ଏବଂ ଯାହା "The Boat Man Boy & Fourty Poems" ନାମରେ କଲିକତାର ମଡର୍ଣ ରିଭ୍ୟୁ ପତ୍ରିକାଦ୍ୱାରା ପୁସ୍ତକାକାରରେ ୧୯୫୫ ମସିହାରେ ପ୍ରକାଶପାଇଥିଲା, ସେଥିରୁ ପ୍ରଥମ କେତେକ କବିତା ମୋର ମୁଖସ୍ଥ ଥିଲା । ମୁଁ ସେଥିରୁ ପ୍ରାୟ ଗୋଟିଏ ପୃଷ୍ଠା ଆବୃତ୍ତି କରିଥିଲି । ତାହା ଶ୍ରୋତା ମଂଡଳୀଦ୍ୱାରା ଉଚ୍ଚପ୍ରଶଂସିତ ହୋଇଥିଲା । ଗୁଜୁରାଲ ଦଂପତି ମୋ କବିତାର ତାରିଫ୍ କରିଥିଲେ । ପରେ ଜାଣିଲି ସେ ବହି ଦୂତାବାସ ଲାଇବ୍ରେରିରେ ଥିଲା । ସେ ବହି ସହିତ ମୋ କବିତାବଳୀର ଏକ ମୂଲ୍ୟାୟନ "Sachi Rout Roy A Poet of the People" ମଧ ଥିଲା । ଏ ପୁସ୍ତକର ପ୍ରକାଶକ କଲିକତାର ମଡର୍ଣ ରିଭ୍ୟୁ ପ୍ରେସ୍ ଥିଲା । ଅଧ୍ୟାପକ ଗୋପାଳଚନ୍ଦ୍ର ମିଶ୍ର ସେ କବିତା ଆସରରେ ଉପସ୍ଥିତଥିଲେ, ମାତ୍ର ତାଂକୁ କବିତା ପଢ଼ିବାକୁ ସୁଯୋଗ ମିଳିନଥିଲା ।

ଦୂତାବାସରେ ଜଣେ ଓଡ଼ିଆ ଯୁବକ ମଣିଲାଲ୍ ତ୍ରିପାଠୀ ଆଇ.ଏଫ୍.ଏସ୍. ଉଚ୍ଚ କର୍ମଚାରୀ ରୂପେ ନିଯୁକ୍ତଥିଲେ ଏବଂ ତାଂକ ସ୍ତ୍ରୀ ମଧ ଜଣେ ଆଇ.ଏଫ୍.ଏସ୍. ଥିଲେ । ଦୁହେଁ ଭାରତୀୟ ଦୂତାବାସରେ କର୍ମଚାରୀ ଥିଲେ । ତ୍ରିପାଠୀଂକ ଘର ଓଡ଼ିଶାର ଝାରସୁଗୁଡ଼ାରେ । ଦୂତାବାସର ପ୍ରଥମ ସେକ୍ରେଟାରୀ ଥିଲେ ମିଃ ଗାଂଧୀ । ସେମାନଂକ ସହିତ ଆଳାପ ଓ ପରିଚୟ ହେବାରୁ ମୁଁ ଖୁସିହେଲି । କଲିକତା ନିକଟବର୍ତ୍ତୀ ଶ୍ରୀରାମପୁରନିବାସୀ ଜଣେ ଅଂଧ ଗବେଷକ ଅଭୟ କୁମାର କୁଂଡୁ ଦୂତାବାସକୁ ଆସିଥିଲେ; ଏବଂ କବିସମ୍ମିଳନୀରେ ଯୋଗଦେଇଥିଲେ । ତାଂକ ସଂଗେ ମଧ ପରିଚୟହେଲା । କୁଂଡୁ ରୁଷ୍ ସାହିତ୍ୟ ଏବଂ ଭାରତୀୟ ସାହିତ୍ୟର ତୁଳନାତ୍ମକ ଅଧ୍ୟୟନ କରୁଥିଲେ । ମସ୍କୋ ରେଡ଼ିଓର ହିଂଦୀ ବିଭାଗର ଜଣେ ଅଧିକାରୀ ଏହି କବିସମ୍ମିଳନୀ ପରିଚାଳନା କରିଥିଲେ । ଶ୍ରୀ ଗୁଜରାଲ ଦଂପତି ନିମଂତ୍ରିତ ବ୍ୟକ୍ତିମାନଂକର ତର୍ଚ୍ଚାକରିଥିଲେ । ସମସ୍ତଂକୁ ଚା' ଓ ଜଳଯୋଗରେ ଆପ୍ୟାୟିତ କରିଥିଲେ । ମସ୍କୋସ୍ଥିତ ଭାରତୀୟ ଦୂତାବାସ ଏକ ପ୍ରକାଂଡ ଅଟ୍ଟାଳିକାରେ ଅବସ୍ଥିତ । ଏହାର ପ୍ରକୋଷ୍ଠମାନଂକରେ ଭାରତୀୟ ଚିତ୍ରକଳା ଏବଂ ଭାସ୍କର୍ଯର ବହୁ ସୁଂଦର ନମୁନାମାନ ରହିଛି । ଅନେକ ଭାରତୀୟ ଫୁଲଗଛ, ଲତା ମଧ ଏଠାରେ ରହିଛି ।

**ପୁଷ୍କିନ୍ ପାର୍କ :**

ମସ୍କୋରେ ଥିଲାବେଳେ ମୁଁ ସେଠାରେ ପୁଷ୍କିନ୍ ପାର୍କ ଏବଂ ପୁଷ୍କିନଂକ ବାସଗୃହ ପରିଦର୍ଶନ କରିଥିଲି । ଅଧ୍ୟାପକ ଡଃ ଗୋପାଳଚଂଦ୍ର ମିଶ୍ର ମଧ୍ୟ ମୋ ସହିତ ଥିଲେ । *ପୁଷ୍କିନ ପାର୍କରେ କବିଂକର ଏକ ବଡ଼ ବ୍ରୋଂଜ ମୂର୍ତ୍ତି ରହିଛି । ଏହି ମୂର୍ତ୍ତିର ଶିଳ୍ପୀ ଥିଲେ ଆଲେକ୍‌ଜାଂଡାର ଓନେ କୁଶିନ୍ । ଏହି ମୂର୍ତ୍ତିଟିର ସମସ୍ତ ବ୍ୟୟଭାର ଜନସାଧାରଣ ବହନ କରିଥିଲେ । ସେହି ବିଶାଳ ମୂର୍ତ୍ତିର ଚତୁର୍ଦ୍ଦିଗରେ ପୁଷ୍କିନଂକର ଅମରକାବ୍ୟ କବିତାର ସ୍ମରଣୀୟ ପଦ୍‌କ୍ତିମାନ ଖୋଦିତହୋଇଛି । ମସ୍କୋରେ ପୁଷ୍କିନଂକର ବାସଗୃହ ବୁଲି ଦେଖିଥିଲି । ତାହା ଏକ ଦୁଇମହଲା ଘର । ସେଠାରେ ତାଂକ ଶୟନାଗାର ପ୍ରଭୃତି ଦେଖିଥିଲି । ରୁଷର ସେହି ବିପ୍ଲବୀ କବିଂକ ବହୁ ସ୍ମୃତି ଏହି ପାର୍କ ମାଧ୍ୟମରେ ଜୀବଂତ ହୋଇଉଠିଛି ।

ପୁଷ୍କିନଂକ କବିତାରେ ଆମେ ଶୁଣିବାକୁପାଉ ଏକ ଗଣବିପ୍ଳବର ଆହ୍ୱାନ । ତାଂକର "Ode to Liberty" କବିତାରେ ସ୍ୱୈରାଚାରୀ ଜାର୍ ଶାସନ ବିରୋଧରେ ସେ ସ୍ୱର ଉତ୍ତୋଳନ କରିଥିଲେ । ଏହି କବିତାଟି ଲେଖିବା ପରେ ତାଂକୁ ୧୮୨୦ ମସିହାରେ ବାଇସବ୍ରିଆକୁ ନିର୍ବାସନ କରାଯାଇଥିଲା । ସେ ବାଇସବ୍ରିଆରେ କୃଷକମାନଂକ ସହିତ ମିଳାମିଶା କରି ବହୁ ଅନୁଭୂତି ହାସଲକରିଥିଲେ । ସେ କକେସସ୍ ପର୍ବତମାଳାରେ ବଂଦୀଥିବା ବିପ୍ଲବୀମାନଂକ ସହିତ ଚିଠିପତ୍ର ଦ୍ୱାରା ଗୋପନ ସଂପର୍କ ରଖିଥିଲେ । ପୁଷ୍କିନଂକର କବିତା ତାଂକର ୧୫ ବର୍ଷ ବୟସରେ ପ୍ରକାଶପାଇ ସର୍ବତ୍ର ଆଦୃତ ହୋଇଥିଲା । ସେ ୧୮୧୭ ଖ୍ରୀଷ୍ଟାବ୍ଦରେ ସିଭିଲ୍ ସର୍ଭିସ୍‌ରେ ପ୍ରବେଶକରିଥିଲେ । ୧୮୨୦ ମସିହାରେ ପ୍ରକାଶିତ ତାଂକର Ruslan and Ludmilla ତାଂକୁ ବିପୁଳ ଖ୍ୟାତି ଆଣି ଦେଇଥିଲା । ତାଂକ ପଛରେ ଗୁପ୍ତଚର ମୁତୟନ କରାଯାଇଥିଲା ଏବଂ ତାଂକୁ ଗୃହବଂଦୀ ରୂପେ କେତେକାଳ ରଖାଯାଇଥିଲା । ତଂକ ବୈପ୍ଳବିକ ଲେଖାମାନ ପଢ଼ି ରୁଷର ଏକଚ୍ଛତ୍ରବାଦୀ ସମ୍ରାଟ ଜାର୍ ଅତ୍ୟଂତ ବିଚଳିତ ହୋଇପଡ଼ିଥିଲେ । ସେ ପୁଷ୍କିନଂକ କବିତା ସଂବଂଧରେ କହିଥିଲେ – "He has flooded Russia with scandalous verse, all the young men know them by heart"

ତାଂକର ଗୋଟିଏ କବିତା ତଳେ ଦିଆଗଲା ।

"With Freedom's Seed"

"Behold, a sower went forth to sow"
With freedom's seed the desert sowing.

---

* ପ୍ରକାଶଥାଉକି ଅଧ୍ୟାପକ ଗୋପାଳଚନ୍ଦ୍ର ମିଶ୍ର ଓ ମୋର ବହୁ କାର୍ଯ୍ୟକ୍ରମର ଏକତ୍ର ଥିଲା । ତେଣୁ ଆମ ଦୁହିଁଙ୍କର ଅନୁଭୂତି ଓ ବିବରଣୀ ଏକ ପ୍ରକାରର ଥିଲା । ତାଂକ ପୁସ୍ତକ ରୁଷ୍ ଅନୁଭୂତିର କେତେକ ବିବରଣୀ ମୋ ବହିରେ ଯଥାସ୍ଥାନରେ ପ୍ରାପ୍ତିସ୍ୱୀକାର କରି ଗ୍ରହଣକରାଯାଇଛି ।

I walked before the morning star;
from pure and guiltless fingers throwing
where slavish plows had left a scar
the fecund seed, the procreator,
Oh, vain and sad disseminator,
I learned the what lost labors are...
Graze if you will, you peaceful nations;
who never rouse an honor's horn !
Should flocks need freedom's invocations ?
Their part is to, be slain or shorn,
Their dower the yoke their sires have worn.
Through snug, and sheep like generations.

ତାଂକର କବିତାଗୁଡ଼ିକ ଦେଶାତ୍ମବୋଧ ଏବଂ ବୈପ୍ଳବିକ ଭାବାବେଗରେ ମର୍ମସ୍ପର୍ଶୀ । ତାଂକର କାବ୍ୟ ବା ଦୀର୍ଘକବିତାଗୁଡ଼ିକ ଯେଉଁପରି ସରଳ ସେହିପରି ଭାବୋଦ୍ଦୀପକ । ସେଥିମଧ୍ୟରେ Poltava (from canto III) "The Bronze Horseman", "Eugene Onegin" ବିଶେଷ ଉଲ୍ଲେଖଯୋଗ୍ୟ । "Eugene Onegin" କାବ୍ୟଗ୍ରଂଥରେ ତାଂକ ଜୀବନର ଆଲେଖ୍ୟ ପ୍ରତିଫଳିତ ହୋଇଛି । ତାଂକ କାବ୍ୟ କବିତା ରୁଷ୍ ପାଠକ-ପାଠିକାମାନଂକୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା ।

ପୁଷିନ ଡିସେଂବର ବିପ୍ଳବୀମାନଂକ ସଂପର୍କରେ ଆସିଥିଲେ । ମାତ୍ର ଡିସେଂବର ବିପ୍ଳବ ସମୟରେ ସେ ପିଟର୍ସବର୍ଗରେ (ପରେ ଯାହା ଲେନିନ୍‌ଗ୍ରାଦ୍ ନାମରେ ନାମିତ ହେଲା) ନଥିବାରୁ ଗିରଫ ହୋଇନଥିଲେ । ସେ ଏହି ପିଟର୍ସବର୍ଗ ନଗରୀରେ ଥିଲେ ବିପ୍ଳବୀମାନଂକ ସହିତ ଯୋଗଦେଇଥାଂତେ ଏବଂ ନିଶ୍ଚୟ ଫାଶୀପାଇଥାଂତେ । ସେ ଡିସେଂବରିଷ୍ଟମାନଂକର ଫାଶିକାଠରେ ଝୁଲୁଥିବା କେତୋଟି ଛବି ଆଂକିଛଂତି, ଯାହା ତାଂକ କବିତା ବହିରେ ଚିତ୍ରିତହୋଇଛି । ଯେଉଁ ପାଞ୍ଚଜଣ ଡିସେଂବରିଷ୍ଟ ନେତା ଫାଶୀ ପାଇଥିଲେ ସେମାନଂକର ନାମ ହେଲା – (୧) ରେଲିଭ, (୨) ପେଷ୍ଟେଲ୍, (୩) କାଖୋଭସ୍କି, (୪) ବେଷ୍ଟ ଉଜେଭ୍ ରୁମିନ୍ (୫) ମୁରାଭିଦ୍ ଆପଷ୍ଟଲ । ଜଣେ ଡିସେଂବରିଷ୍ଟ ବିଦ୍ରୋହୀ ନେତାଂକ ସ୍ତ୍ରୀ ତାଂକ ସ୍ୱାମୀଂକୁ ସାକ୍ଷାତ କରିବାକୁ ଯାଉଥିଲେ । ପୁଷିନ୍ ତାଂକ ହାତରେ ନିର୍ବାସିତ ବିପ୍ଳବୀ ନେତାଂକୁ ଖଂଡିଏ ଚିଠି ଦେଇଥିଲେ । ପୁଷିନ୍ ସେହି ବଂଧୁପତ୍ନୀଂକ ହାତରେ ବିପ୍ଳବୀ ନେତାଂକୁ ଏକ କବିତା ଲେଖି ପଠାଇଥିଲେ । କବିତାରେ ବିପ୍ଳବୀବଂଧୁମାନଂକୁ ପୁଷିନ ଅଭିନଂଦନ ଜଣାଇବା ଅବସରରେ ନିଜର ସହଯୋଗ ଜଣାଇଥିଲେ ।

ପୁଷିନଂକ ଗ୍ରାମ ମିଖାଇଲୋଭସ୍କୋୟା ତରୁଲତାପୂର୍ଣ ଏବଂ ଶସ୍ୟକ୍ଷେତ୍ରଭରା । ସେଠାରେ ଏକ ବଡ଼ ପଡ଼ିଆରେ ପ୍ରତିବର୍ଷ ପୁଷିନ୍ ମେଳା ଅନୁଷ୍ଠିତ ହୁଏ । ଗାଡ଼ି, ମଟର, ଏବଂ ନୌକାରେ ଗ୍ରାମଟି ଉଛୁଳି ଉଠେ । ପ୍ରାୟ ୫ ଲକ୍ଷ ଲୋକଂକର ସମାବେଶ

ହୋଇଥାଏ । ଏହି ମେଳାରେ ବହୁ ଦେଶରୁ ଆସିଥିବା କବିମାନେ ସ୍ୱରଚିତ କବିତାମାନ ପାଠକରଂତି । ପୁଷ୍କିନ କାବ୍ୟକବିତା ଲେଖିବା ବ୍ୟତୀତ ଜଣେ ଚିତ୍ରକର ଥିଲେ । ସେ ଫାଶିକାଠରେ ଝୁଲୁଥିବା ବଂଧୁମାନଂକ ଛବି ଆଂକିଥିଲେ – ଏହାପୂର୍ବରୁ ସୂଚନା ଦେଇଛି । ପୁଷ୍କିନ ସେହି ଛବି ତଳେ ଲେଖିଥିଲେ "I too could have been there" । ଏହି ସବୁ ଦୃଷ୍ଟାଂତରୁ ଜଣାଯିବ ଯେ ପୁଷ୍କିନ ଅତ୍ୟାଚାରୀ ନିରକୁଂଶ ଜାର୍ ଶାସନ ଲୋପ କରିବା ପାଇଁ ସମସ୍ତ ପ୍ରକାର ସହଯୋଗ କରିବା ପାଇଁ ପ୍ରସ୍ତୁତ ଥିଲେ । ସାମ୍ରାଜ୍ୟବାଦୀ ଶାସନ ଲୋପକରି ଗଣତାଂତ୍ରିକ ଶାସନ ପ୍ରତିଷ୍ଠା କରିବା ପାଇଁ ସେ ସବୁବେଳେ ଉନ୍ମୁଖ ଥିଲେ । ସେ ବିପ୍ଳବୀମାନଂକୁ ଅଭିନଂଦନ ଜଣାଇ ଲେଖିଥିଲେ – ''ଏ ଉଦ୍ୟମ ହେବ ନାହିଁ କଦାପି ବିଫଳ / ସ୍ଫୁଲିଂଗରୁ ହୁତୁ ହୁତୁ ହୋଇ ଜଳିବ ଅନଳ ।''

**ବିରୋଧାଭାସ :**

ପୁଷ୍କିନ୍ ଥିଲେ ଏକାଧାରରେ ଜଣେ ବିପ୍ଳବୀ କବି ଏବଂ ରୋମାଂଟିକ୍ କାବ୍ୟସ୍ରଷ୍ଟା । ତାଂକ ଜୀବନରେ ବହୁ ସୁଂଦରୀ ତରୁଣୀ ପ୍ରେମିକା ରୂପେ ଦେଖାଦେଇଛଂତି ଏବଂ ତାଂକ କାବ୍ୟକବିତାରେ ଅଦ୍‌ଭୁତ ପ୍ରେରଣା ଯୋଗାଇଛଂତି । ଏହାଛଡ଼ା ସେ ଜଣେ କୁଖ୍ୟାତ ଜୁଆଡ଼ୀ ଭାବେ ପୁଲିସ୍ ତାଲିକାରେ ଅଗ୍ରସ୍ଥାନ ଅଧିକାରକରିଥିଲେ । ଅତିରିକ୍ତ ମଦ୍ୟପାନ, ନୃତ୍ୟଗୀତ ଏବଂ ଜୁଆଖେଳିବାରେ ସେ ଅଭ୍ୟସ୍ତ ଥିଲେ । ତାଂକର କେତେକ ରୋମାଂଟିକ୍ କବିତା ବିଶ୍ୱସାହିତ୍ୟରେ ମୁଦ୍ରାଂକ ରଖିଯାଇଛି । ଏଠାରେ ତାଂକର କେତୋଟି ପ୍ରେମ କବିତାର ପଦ୍‌କ୍ତି ଓଡ଼ିଆ ଭାଷାଂତରରେ ପ୍ରକାଶକରାଗଲା ।

''ଆନତ ଆକାଶ ପରି ନୀଳିମାରେ
        ଚମକାଇ ଆୟତ ନୟନ
ପାହାଡ଼ର ଆର ପାରେ ଯେଉଁଠାରେ
        ଘୁମଂତ ସରୋବର,
ତୁମେହିଁ ପଡ଼ିଅଛ ଶୋଇ,
        ସତେ ଅବା ଅତଳ ସମାଧି ତଳେ
ଲୁଚି ଅଛି ସେହି ଅଫୁରଂତ ରୂପ
        ଅବ୍ୟକ୍ତ ବେଦନା ଭାର
ମନେଅଛି ସେହି ବିଦାୟ ଚୁଂବନ''

(''ରୁଷ୍ ଅନୁଭୂତି'' – ଡଃ ଗୋପାଳଚନ୍ଦ୍ର ମିଶ୍ର)

ତାଂକ ପ୍ରଣୀତ ପ୍ରେମକବିତାଗୁଡ଼ିକ ଅତ୍ୟଂତ ଦେହ-ତାପ-ତପ୍ତ ଓ କବିଂକର ନାରୀ ରୂପ ତୃଷ୍ଣାର ପ୍ରବଳ ଆକର୍ଷଣ ପରି ମନେହୁଅଂତି । ତାଂକର ଜୀବନ ଉଦ୍ଦାମ, ଉଚ୍ଛୃଙ୍ଖଳ ଏବଂ ଲଗାମ୍‌ହୀନ ହୋଇଉଠିଥିଲା । ତାଂକ ଜୀବନରେ ବହୁ ନାରୀ ଆସିଛଂତି । ତାଂକର ଏକାଧାରରେ ବହୁ ପ୍ରଣୟିନୀ ଥିବାର ପ୍ରମାଣମିଳେ । ସେ ଯାହାହେଉ ପୁଷ୍କିନଂକ

କାବ୍ୟକୃତି ତାଂକୁ ବିଶ୍ୱସାହିତ୍ୟରେ ଅମରକରିରଖିଛି ଏବଂ ରଖିଥିବ। ତାଂକ ଜନ୍ମବାର୍ଷିକୀରେ ଲକ୍ଷ ଲକ୍ଷ ଲୋକଂକର ସମାଗମ ଏବଂ ପୃଥିବୀର ବିଭିନ୍ନ ଦେଶରୁ ସମାଗତ ବନ୍ଧୁ କବି ଓ ସାହିତ୍ୟିଂକର ଶ୍ରଦ୍ଧାଂଜଳି ଜ୍ଞାପନ ସ୍ପଷ୍ଟ ପ୍ରମାଣ କରେ ଯେ ପୁଷ୍କିନ୍ ଜଣେ ମହାନ୍ କବି ଏବଂ ରସସ୍ରଷ୍ଟା ଥିଲେ।

**ବଂଶପରିଚୟ :**

ପୁଷ୍କିନଂକର ପିତାମହ ଇବ୍ରାହିମ୍ ହାନିବାଲ୍ ଆଫ୍ରିକାସ୍ଥିତ ଇଥୋପିଆର ରାଜବଂଶରେ ଜନ୍ମିଥିଲେ। ତେଣୁ ତାଂକ ଦେହରେ ନିଗ୍ରୋ ରକ୍ତ ଥିଲା। ସେ ରୁଷର ସମ୍ରାଟ ପ୍ରଥମ ପିଟରଂକ ପ୍ରିୟପାତ୍ର ହୋଇପାରିଥିଲେ। ସେ ଜାର୍‌ଂକର ଧର୍ମପୁତ୍ରଥିଲେ। ଜାର୍‌ଂକ ଚେଷ୍ଟାରେ ତାଂକର ରୁଷର ଏକ ସଂଭ୍ରାଂତ ବଂଶରେ ବିବାହହୋଇଥିଲା। ପୁଷ୍କିନଂକ ପିତା ଜଣେ ଦୁର୍ଦ୍ଧର୍ଷ ବ୍ୟକ୍ତିତ୍ୱ ଏବଂ ଦକ୍ଷ ଅଫିସର୍ ଥିଲେ। ତାଂକର ଏକ ତୈଳଚିତ୍ର ପୁଷ୍କିନଂକ ଜନ୍ମକକ୍ଷରେ ରହିଛି। ପୁଷ୍କିନଂକର ଜନ୍ମ ଅଂଚଳ ପାସ୍‌କୋଭ ଏବଂ ତହିଁର ଅଂତର୍ଗତ ମିଖାଇଲୋଭସ୍କାୟା ପ୍ରଭୃତିକୁ ପୁଷ୍କିନଂକ ମାତା ଉତ୍ତରାଧିକାରୀସୂତ୍ରରେ ପାଇଥିଲେ। ନିର୍ବାସନ ଏବଂ ଗୃହବଂନ୍ଦୀ କାଳରେ ପୁଷ୍କିନ୍ ବହୁଦିନ ଏଠାରେ କଟାଇଥିଲେ ଏବଂ ସ୍ଥାନୀୟ ଅଧିବାସୀମାନଂକର ପ୍ରିୟଭାଜନ ହୋଇପାରିଥିଲେ। ମିଖାଇଲୋଭସ୍କାୟାସ୍ଥିତ ପୁଷ୍କିନଂକ ପୈତୃକ ଘରେ ଆମେ ତାଂକ ଧାଈମାଂକ କୋଠରିଟି ଦେଖିଥିଲୁ। ସେ ପୁଷ୍କିନଂକୁ ପିଲାଦିନେ ଲାଳନପାଳନ କରିଥିଲେ। ପୁଷ୍କିନ ବାରବର୍ଷ ବୟସରେ ପିଟର୍ସବର୍ଗ ବା ପେଟ୍ରୋଗାଡ୍ (ପରେ ଲେନିନ୍‌ଗ୍ରାଡ୍) ସ୍କୁଲରେ ଭର୍ତ୍ତିହୋଇଥିଲେ। ୧୮୧୭ ମସିହାରେ ସେ ଲିସ୍ (Lycee) ସେକେଂଡାରୀ ଶିକ୍ଷା ପାସ୍ କରିବା ପରେ ବୈଦେଶିକ ବିଭାଗରେ ନିଯୁକ୍ତି ପାଇଥିଲେ। ଏହି ସମୟରେ ରୁଷର ଏକଚ୍ଛତ୍ର ସମ୍ରାଟଂକ ଅତ୍ୟାଚାରୀ ଶାସନ ବିରୋଧରେ ପ୍ରବଳ ଆନ୍ଦୋଳନ ଦେଖାଦେଇଥିଲା। ପୁଷ୍କିନ କେତେକ ବୈପ୍ଳବିକ କବିତା ଲେଖି କର୍ତ୍ତୃପକ୍ଷଂକ କୋପଦୃଷ୍ଟିରେ ପଡ଼ିଥିଲେ। ତାଂକୁ ନିର୍ବାସନ ଦଂଡ ଭୋଗିବାକୁ ପଡ଼ିଥିଲା।

**ବିବାହ ବିପର୍ଯ୍ୟୟ :**

ପୁଷ୍କିନ ୧୮୨୮ ମସିହା ଶୀତ ସଂଧ୍ୟାରେ ଜଣେ ରୂପସୀ ନାରୀ ନାତାଲିୟା ଗନଚାରଭାଂକ ସଂଗେ ଏକ ବଲ୍‌ନାଚ୍ ଅବସରରେ ପରିଚିତ ହୋଇଥିଲେ। ନାତାଲିୟା ପୁଷ୍କିନଂକ ମାତାଂକ ଜମିଦାରୀରେ ଜନ୍ମଗ୍ରହଣକରିଥିଲେ। ନାରୀରୂପଲୋଲୁପ ପୁଷ୍କିନ ତାଂକୁ ବିବାହ ପ୍ରସ୍ତାବ ଦେଇଥିଲେ, ମାତ୍ର ନାତାଲିୟା ତାହା ପ୍ରତ୍ୟାଖାନ କରିଥିଲେ। ପୁଷ୍କିନ୍ ମନଦୁଃଖରେ ସୁଦୂର କକେସସ୍ ଅଂଚଳକୁ ପଳାୟନକରିଥିଲେ। ଏହା ୧୮୨୯ ମଇ ମାସର କଥା। ସେତେବେଳେ ତୁର୍କୀ ସହିତ ରୁଷିଆର ଯୁଦ୍ଧ ଚାଲିଥାଏ। ପୁଷ୍କିନ ଯୁଦ୍ଧରେ ଯୋଗଦେଲେ। ଏହା ପରେ ଅସ୍ଥିରମନା ପୁଷ୍କିନ ମସ୍କୋ ପ୍ରତ୍ୟାବର୍ତ୍ତନ କରଂତି। ଏହିଠାରେ ପୁଷ୍କିନଂକ ସହିତ ନାତାଲିୟାଂକ ବିବାହ ପ୍ରସ୍ତାବ ଚୂଡ଼ାଂତ ହୁଏ।

୧୮୩୧ ଫେବୃୟାରୀ ୧୮ ତାରିଖରେ ତାଂକର ବିବାହସଂପନ୍ନ ହେଲା । ('ରୁଷ୍ ଅନୁଭୂତି' ଦ୍ରଷ୍ଟବ୍ୟ)

ବିବାହ ପରେ ପୁଷିନଂକ ଦାଂପତ୍ୟଜୀବନ ସୁଖମୟ ନ ଥିଲା । ନାତାଲିୟା ଥିଲେ ଜଣେ ବିଳାସିନୀ, ନାଚଗୀତପ୍ରିୟ ରମଣୀ । କାବ୍ୟଚର୍ଚ୍ଚା କିଂବା ସାହିତ୍ୟ ପ୍ରତି ତାଂକର ଆଗ୍ରହ ନଥିଲା । ପୁଷିନ ବାଧ୍ୟହୋଇ ତାଂକ ସହିତ ଏହିସବୁ ଆମୋଦପ୍ରମୋଦ ସ୍ଥାନକୁ ଯାଉଥିଲେ । ରୂପସୀ ନାତାଲିୟାଂକ ଉପରେ ସମ୍ରାଟ ନିକୋଲାସଂକ ଲୋଲୁପ ଦୃଷ୍ଟି ପଡ଼ିଲା । ଜାର୍ ନିକୋଲାସ୍ ଅଯାଚିତ ଭାବରେ ପୁଷିନ ଓ ନାତାଲିୟାଙ୍କ ପ୍ରତି ବହୁ ଅନୁଗ୍ରହ ଦେଖାଉଥିଲେ । ନାତାଲିୟା ଜାର୍‌ଂକ ଅନୁଗ୍ରହରେ ଗର୍ବ ଅନୁଭବ କରୁଥିଲେ । ବିବାହ ପୂର୍ବରୁ ଜାର୍ ନିକୋଲାସ ପୁଷିନଂକ ପ୍ରତି ଘୋର ବିମୁଖ ଥିଲେ । ପୁଷିନ୍‌କୁ ନିର୍ବାସନ ଓ ଗୃହବଂଦୀ ଦଂଡରେ ଦଂଡିତ କରାଯାଇଥିଲା । ତାଂକ ଗତିବିଧି ଜାଣିବା ପାଇଁ ଗୁପ୍ତଚର ମୁତୟନ କରାଯାଇଥିଲା ।

କଥିତ ଅଛି ଥରେ ଜାର୍ ନିକୋଲାସ୍ ପୁଷିନଂକୁ ଡକାଇ ତାଂକୁ ରାଜତଂତ୍ର ବିରୋଧୀ କବିତା ଆଦି ଲେଖିବାରୁ ନିବୃତ୍ତ ହେବାପାଇଁ କହିଥିଲେ । ଜାର ନିକୋଲାସ୍ ପଚାରିଲେ – ରାଜଦ୍ରୋହ ଅପରାଧରେ ଯେଉଁ ବିଦ୍ରୋହୀମାନେ ପ୍ରାଣଦଂଡ ପାଇଲେ କିଂବା ସାଇବେରିଆକୁ ନିର୍ବାସିତ ହେଲେ, ସେମାନଂକ ସହିତ ତୁମର ସଂପର୍କ କ'ଣ ? ପୁଷିନ୍ ଉତ୍ତରଦେଲେ – ''କାହିଁକି, ସେମାନଂକ ମଧ୍ୟରୁ ଅଧିକାଂଶ ମୋର ବଂଧୁ ଏବଂ ସେମାନଂକ ପ୍ରତି ମୋର ଗଭୀର ଭକ୍ତି ଏବଂ ଶ୍ରଦ୍ଧା ଅଛି । ପିଟର୍ସବର୍ଗରେ ଥିଲେ ମୁଁ ସେମାନଂକୁ ପରିତ୍ୟାଗ କରିପାରି ନ ଥା'ନ୍ତି ।'' ସମ୍ରାଟ ପୁଣି ପଚାରିଲେ, ''ତୁମର ଆଉ କ'ଣ ଲେଖାଲେଖି ଚାଲିଛି ।'' ପୁଷିନ୍ ଅଭିଯୋଗକଲେ, ''ସରକାରଂକ କଟକଣା ଏବଂ ଯାଂଚ୍ ଯୋଗୁ କିଛି ଲେଖିବା ଅସମ୍ଭବ ।'' ଏହାପରେ ସମ୍ରାଟଂକର ପ୍ରଶ୍ନ ହେଲା ''ତୁମେ ଏପରି କାହିଁକି ଲେଖିବ ଯାହାକି ସରକାର ପ୍ରକାଶନ ଲାଗି ଅନୁମତି ଦେଇପାରିବେ ନାହିଁ ?'' ପୁଷିନ୍‌ଙ୍କ ଉତ୍ତର ହେଲା, ''ନିହାତି ନିର୍ଦ୍ଦୋଷ ଲେଖାକୁ ମଧ୍ୟ ଆପତ୍ତି କରାଯାଉଛି''। ସମ୍ରାଟ ଭାବିଥିଲେ ତାଂକର ଧମକରେ କବି ପୁଷିନ୍ ଶଙ୍କିତହୋଇଯିବେ । ସେଦିନ ରାତ୍ରିଭୋଜନ ସମୟରେ ସମ୍ରାଟ ଫରାସୀ ରାଷ୍ଟ୍ରଦୂତଂକୁ କହିଥିବାର ଜଣାଗଲା – "I had a long talk today with the most intelligent man in Russia, Pushkin. He is a new Pushkin". (ତଦ୍ରୈବ)

କିନ୍ତୁ ପୁଷିନ୍ ଥିଲେ ଜଣେ ଆପୋଷହୀନ ବିପ୍ଳବୀ କବି । ସ୍ୱେଚ୍ଛାଚାରୀ ରାଜତଂତ୍ର ବିରୋଧରେ ତାଂକର ଲେଖନୀ ବହୁ ଦେଶାତ୍ମବୋଧ କବିତା ରଚନା କରୁଥିଲା । ରୁଷର ଜନସାଧାରଣ ତାଂକୁ ଜଣେ ଦେଶପ୍ରେମୀ ଓ ସାହସୀ କବି ବୋଲି ଶ୍ରଦ୍ଧା ଓ ସମ୍ମାନ କରୁଥିଲେ ।

ବିବାହପରେ ଜାର୍ ନାତାଲିୟାଂକ ରୂପଲାବଣ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ । ସେ ପୁଷିନ୍‌ଂକୁ Histrographer ରୂପେ ନିଯୁକ୍ତ କରିଥିଲେ । ପୁଷିନ୍ ଏହି ସମୟରେ

ପୁଗାଚେଭ୍‌ମାନଂକ ବିଦ୍ରୋହର କାହାଣୀ ଲେଖିଥିଲେ ଏବଂ ୧୮୩୩ ମସିହାରେ ଏକ ଛୋଟ ଉପନ୍ୟାସ Captain's Daughter ରଚନା କରିଥିଲେ । ଏହା ପୁଷିନଂକର ସାମୟିକ ଆନୁଗତ୍ୟର ଦୃଷ୍ଟାଂତ ବହନକରେ । ମାତ୍ର ପୁଷିନଂକୁ ରୁଷ୍ ଜନସାଧାରଣ ବାସ୍ତବରେ ଜଣେ ରାଜତଂତ୍ରବିରୋଧୀ ଦେଶପ୍ରେମୀ କବି ବୋଲି ଜାଣନ୍ତି ।

**ଚରମ ପର୍ଯ୍ୟାୟ :**

ଜାର୍ ନିକୋଲାସ ପୁଷିନ ଦଂପତିଂକୁ ରାଜପ୍ରାସାଦ ପରିସରରେ ରହିବା ପାଇଁ ଏକ ବାସଗୃହ ଦେଇଥିଲେ । ପୁଷିନଂକର ଦାଂପତ୍ୟଜୀବନ କ୍ରମେ ଅଶାଂତି ଓ ଦୁଶ୍ଚିଂତାରେ କଂଟକିତ ହୋଇଉଠୁଥିଲା । ଜଣେ କାମୁକ ଫରାସୀ ଯୁବକ ଦାନ୍ଥେସ୍ ନାତାଲିୟାଂକ ପଛରେ ପଡ଼ିଥିଲେ । ସେ ନାତାଲିୟାଂକ ସାନଭଉଣୀଂକୁ ବିବାହକରିଥିଲେ, ତଥାପି ସେ ନାତାଲିୟାଂକ ପିଛା ଛାଡୁନଥିଲେ । ଏଥିରେ ପୁଷିନ୍ ବିଚଳିତ ହୋଇପଡ଼ିଥିଲେ । ଦାନ୍ଥେସ୍ ଓ ନାତାଲିୟାଂକ ମିଳାମିଶା ଓ ଗୋପନ ସଂପର୍କ କ୍ରମେ ଜନସାଧାରଣଂକ ମଧ୍ୟରେ ନାନା ଗୁଜବ ସୃଷ୍ଟି କରିଥିଲା । ବହୁ ବେନାମୀ ପତ୍ର ଓ ଥଟ୍ଟାଳିଆ ଲେଖା ପୁଷିନ୍‌ଙ୍କ ହସ୍ତଗତ ହେଲା । ପୁଷିନ୍ ଏଥିରେ ସଂପୂର୍ଣ ରୂପେ ଭାଂଗିପଡ଼ିଲେ । ଦାନ୍ଥେସଂକ ସହିତ ତାଂକର ସଂପର୍କ ତିକ୍ତ ହୋଇ ଉଠିଲା । ଶେଷରେ ଦାନ୍ଥେସ୍ ତାଂକୁ ଏକ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ଆହ୍ୱାନ କରିଥିଲେ । ୧୮୩୭ ମସିହା ଜାନୁୟାରୀ ମାସ ୨୭ ତାରିଖରେ ପିଟର୍ସବର୍ଗ ସହରର ପ୍ରାଂତଭାଗରେ ଏହି ଦ୍ୱନ୍ଦ୍ୱ ଯୁଦ୍ଧ ହୋଇଥିଲା । ଦାନ୍ଥେସଂକ ଗୁଳିରେ ପୁଷିନ୍ ଗୁରୁତର ଭାବରେ ଆହତ ହୋଇଥିଲେ । ଦୁଇଦିନ ଚିକିତ୍ସିତ ହେବା ପରେ ସେ ପ୍ରାଣହରାଇଥିଲେ – ଏକଥା ଆଗରୁ କୁହାଯାଇଛି ।

ଏହା ପଛରେ ଏକ ଷଡଯଂତ୍ର ଥିଲାବୋଲି ଏବଂ ଜାର୍‌ଂକର ପ୍ରଚ୍ଛନ୍ନ ହାତ ନିହିତ ଥିଲା ବୋଲି କୁହାଯାଇଥାଏ । ପୁଷିନଂକୁ ଜାର୍‌ଂକ ଆଦେଶରେ ଏକ ଛୋଟ ଗ୍ରାମ୍ୟ ଚର୍ଚ୍ଚରେ କବର ଦିଆଯାଇଥିଲା । ସେଠାରେ ସମ୍ରାଟଙ୍କର ଅଳ୍ପ କେତେଜଣ ବିଶ୍ୱସ୍ତ କର୍ମଚାରୀ ଉପସ୍ଥିତ ଥିଲେ । ମାତ୍ର ବାହାରେ ହଜାର ହଜାର ଜନତା ତାଂକର ପ୍ରିୟ କବି ପୁଷିନଂକ ମୃତ୍ୟୁରେ ଶୋକାଶ୍ରୁ ବର୍ଷଣ କରୁଥିଲେ । ସମ୍ରାଟ ନିକୋଲାସ ବିଦ୍ରୋହର ଆଶଂକା ଏଡ଼ାଇବା ଉଦ୍ଦେଶ୍ୟରେ ପୁଷିନଂକୁ ଏପରି ଲୋକଲୋଚନ ଅଗୋଚରରେ କବ୍‌ର ଦେଇଥିଲେ ବୋଲି ଲୋକଂକର ବିଶ୍ୱାସ ଥିଲା ।

**କ୍ରେମ୍‌ଲିନ୍‌ରେ ଲେନିନ୍ :**

ମସ୍କୋରେ ଥିଲାବେଳେ ମୁଁ ୨୬-୫-୧୯୭୯ ତାରିଖରେ କ୍ରେମ୍‌ଲିନ୍ ଏବଂ ରେଡ୍ ସ୍କୋୟାର୍ ପ୍ରଭୃତି ବୁଲି ଦେଖିଥିଲି । ରୁଷିଆର ରାଜପ୍ରାସାଦ କ୍ରେମଲିନ୍ ବହୁ ଇତିହାସର ରଂଗମଂଚ । ଏହାର ସୁଉଚ୍ଚ ଚୂଡ଼ା ବହୁ ପଥିକଂକୁ ଦୂରରୁ ଆକର୍ଷଣ କରେ । ଜାର୍ ଶାସନର ଅବସାନ ପରେ କ୍ରେମ୍‌ଲିନ୍‌ରେ ଲେନିନ୍ ଏବଂ ତାଂକ ପତ୍ନୀ ନାଦେଜ୍‌ଦା କ୍ରୁପସ୍କାୟା ରହୁଥିଲେ । ଅନ୍ୟ ଏକ କୋଠରିରେ ରହୁଥିଲେ ଲେନିନ୍‌ଙ୍କ ଭଉଣୀ ମାରିଆ

ଭିଲ୍ଲକା ଢୋଭା । ଅକ୍ଟୋବର ବିପ୍ଳବ ପରେ ଲେନିନ୍ ମୃତ୍ୟୁପର୍ଯ୍ୟଂତ ପାଂଚବର୍ଷକାଳ ଏହି ପ୍ରାସାଦରେ କଟାଇଥିଲେ । ତାଂକ ନିତ୍ୟବ୍ୟବହୃତ ଜିନିଷପତ୍ର, ଯଥା – ବସିବା ଚୌକି, ପଢ଼ିବା ଲ୍ୟାଂପ୍, ଟେବୁଲ, ତାଂକ ବ୍ୟବହୃତ କଲମ, ପୁସ୍ତକ, ଆଲମାରି, ଟେଲିଫୋନ, ମାନଚିତ୍ର, ମହମବତି ଓ ଏକ ଆରାମ୍ ଚୌକି ପ୍ରଭୃତି ସୁସଜ୍ଜିତ ଭାବେ ରଖାଯାଇଛି । ଏହା ଦର୍ଶକମାନଂକୁ ଦେଖାଇଦିଆଯାଇଥାଏ । ଲେଲିନ୍‌ଙ୍କ ଅଧ୍ୟୟନ ପ୍ରକୋଷ୍ଟଟି ତିନିତାଲାରେ ଅବସ୍ଥିତ । ଏହାର କ୍ଷେତ୍ରଫଳ ୩୬ ବର୍ଗମିଟର । ଲେନିନ୍ ଏହି ପ୍ରକୋଷ୍ଟରେ ବସି ତାଂକର ବହୁ ବିଶ୍ୱବିଶ୍ରୁତ ଗ୍ରଂଥ ରଚନାକରିଥିଲେ । ସାମ୍ୟବାଦୀ ରୁଷିଆର ବହୁ ପରିକଳ୍ପନା ଓ ପ୍ରକଳ୍ପକୁ ସେ ଏହି କୋଠରିରେ ବସି ସଫଳ ରୂପ ଦେଇଥିଲେ । ବିଶ୍ୱର ପ୍ରଥମ ସାମ୍ୟବାଦୀ ରାଷ୍ଟ୍ରର ଅଗ୍ରଗତି ଓ ସୁପରିଚାଳନା ଏହି କକ୍ଷରୁ ହିଁ ଲେନିନ୍ ନିୟନ୍ତ୍ରଂଣ କରୁଥିଲେ ।

ଲେନିନ୍‌ଙ୍କ ପତ୍ନୀ ନାଦେଜ୍‌ଦା କ୍ରୁପସ୍କାୟା ତାଂକର ଥିଲେ ପ୍ରକୃତ ସହଧର୍ମିଣୀ । ସେ ଲେନିନ୍‌ଙ୍କ ବହୁ ପୁସ୍ତକ ସଂପାଦନା କରିଛଂତି ଏବଂ ତାଂକ ଜୀବନଚରିତ ଲେଖିଛଂତି । ସେ ନିଜେ ମଧ୍ୟ କେତେକ ପତ୍ରପତ୍ରିକା ସଂପାଦନା କରିଥିଲେ ।

ଲେନିନ୍‌ଙ୍କ ପ୍ରକୃତ ନାମ ଥିଲା ଭ୍ଲାଡିମିର୍ ଇଲିଚ୍ । ସେ 'ଲେନିନ୍' ଛଦ୍ମ ନାମଟି ଗ୍ରହଣକରିଥିଲେ । ସେ ସମଗ୍ର ବିଶ୍ୱରେ ଏହି ନାମରେ ପରିଚିତ । ଲେନିନ୍ ୧୮୭୦ ଖ୍ରୀଷ୍ଟାବ୍ଦରେ ଭଲଗାନଦୀ କୂଳରେ ଥିବା ସିମରଦିରସ୍କ ସହରରେ ଜନ୍ମଗ୍ରହଣ କରିଥିଲେ । ତାଂକ ପିତାଂକ ନାମ ଥିଲା ଇଲିଆ କାଜାନ୍ । ସେ ବିଶ୍ୱବିଦ୍ୟାଳୟରୁ ପାସ୍ କରି ସ୍କୁଲ୍ ଇନ୍‌ସ୍ପେକଟର ରୂପେ କାର୍ଯ୍ୟ କରୁଥିଲେ । ପରବର୍ତ୍ତୀକାଳରେ କାଜାନ ସିମରଦିରସ୍କ ପ୍ରଦେଶର ସ୍କୁଲ୍ ନିର୍ଦ୍ଦେଶକ ହୋଇପାରିଥିଲେ । ତାଂକର ଏହି ପଦନ୍ନୋତିର ମୂଳ କାରଣ ଥିଲା କାର୍ଯ୍ୟଦକ୍ଷତା ଓ ନିଷ୍ଠାପର କର୍ତ୍ତବ୍ୟ ପାଳନ । ୧୮୮୬ ଖ୍ରୀଷ୍ଟାବ୍ଦରେ ଲେନିନ୍‌ଂକ ପିତା ମର ଶରୀର ତ୍ୟାଗକରଂତି ।

ଲେନିନ୍‌ଙ୍କ ବଡ଼ଭାଇ ଆଲେକ୍‌ଜାଂଡାର ଅନ୍ୟ ଚାରିଜଣ ଛାତ୍ରଂକ ସହିତ ମିଶି ସମ୍ରାଟ ତୃତୀୟ ଆଲେକ୍‌ଜାଂଡାରଂକୁ ବୋମାପକାଇ ହତ୍ୟା କରିବାକୁ ଉଦ୍ୟମ କରି ଗିରଫ୍ ହୋଇଥିଲେ । ବିଚାରରେ ତାଂକୁ ଫାଶିଦଂଡ ଦିଆଯାଇଥିଲା । ବଡ଼ଭାଇଂକର ଶୋଚନୀୟ ମୃତ୍ୟୁରେ ଲେନିନ୍ ମର୍ମାହତ ହୋଇଥିଲେ । ମାତ୍ର ତାଂକ ଜାତକରେ ହତୋସାହ ଶବ୍ଦଟି ନଥିଲା । ସେ ବିଶ୍ୱବିଦ୍ୟାଳୟର ଛାତ୍ର ଆଂଦୋଳନର ନେତୃତ୍ୱ ନେଇ ଦେଶରେ ଜାର୍ ଶାସନ ପରିବର୍ତ୍ତେ ସମାଜବାଦୀ ଜନରାଷ୍ଟ୍ର ଗଠନ ଦିଗରେ ସକ୍ରିୟ ଭୂମିକା ନେଇଥିଲେ । ଫଳରେ ସେ ବିଶ୍ୱବିଦ୍ୟାଳୟରୁ ବିତାଡ଼ିତ ହୋଇଥିଲେ । ତଥାପି ଲେନିନ୍ ଆଇନ୍ ପଢ଼ା ଅବ୍ୟାହତ ରଖିଥିଲେ । ସେ ଘରୋଇ ଭାବରେ ଆଇନ୍ ପଢ଼ି ପରୀକ୍ଷାରେ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହୋଇଥିଲେ ।

ମାତ୍ର ସେ ଆଇନ୍ ବ୍ୟବସାୟ ନକରି ରୁଷିଆରେ ରାଜତଂତ୍ର ଶାସନ ଲୋପ କରି ଶୋଷଣହୀନ, ଶ୍ରେଣୀହୀନ ଓ ସମାଜବାଦୀ ଲୋକତଂତ୍ର ଶାସନ ପ୍ରତିଷ୍ଠା ପାଇଁ ଜନ

ଆଂଦୋଳନର ନେତୃ ଭୂମିକା ନେଇଥିଲେ । ଲେନିନ୍ ସମଗ୍ର ବିଶ୍ୱରେ ଶାଂତି ପ୍ରତିଷ୍ଠା ପାଇଁ ଏବଂ ଶୋଷଣହୀନ ସମାଜବାଦୀ ରାଷ୍ଟ୍ର ଗଠନ ପାଇଁ ରୁଷ୍‌ବାସୀଂକୁ ଆହ୍ୱାନ ଜଣାଇଥିଲେ । ସେ ତାଂକର ବୈପ୍ଳବିକ କାର୍ଯକଳାପ ପାଇଁ ୧୮୯୫ ଖ୍ରୀଷ୍ଟାବ୍ଦରେ ସାଇବେରିଆକୁ ତିନିବର୍ଷ ପାଇଁ ନିର୍ବାସିତ ହୋଇଥିଲେ ।

**ପୂର୍ବଇତିହାସ :**

୧୯୧୪ ମସିହାରେ ପ୍ରଥମ ବିଶ୍ୱମହାଯୁଦ୍ଧ ଆରଂଭହୁଏ । ରୁଷ ଅନିଚ୍ଛାସତ୍ତ୍ୱେ ଜର୍ମାନୀ ବିରୋଧରେ ଯୁଦ୍ଧଘୋଷଣାକରେ । ମାତ୍ର ରୁଷ୍ ବିନା ପ୍ରସ୍ତୁତିରେ ଯୁଦ୍ଧଘୋଷଣା କରି ବାରଂବାର ପରାଭବ ସ୍ୱୀକାରକଲା । ରୁଷ୍‌ର ନଥିଲା ସୈନ୍ୟବଳ କିଂବା ଯଥେଷ୍ଟ ଖାଦ୍ୟଶସ୍ୟ । ଜର୍ମାନୀ ରୁଷିଆ ଅଂତର୍ଗତ ପୋଲାଂଡରୁ କେତେକ ଅଂଶ ଅଧିକାର କରିନେଲା । ରୁଷିଆର ସମ୍ରାଟ ନିକୋଲାସ୍ ଯୁଦ୍ଧକ୍ଷେତ୍ରକୁ ଯାଇ ସୈନ୍ୟବାହିନୀର ପରିଚାଳନା ଦାୟିତ୍ୱ ଗ୍ରହଣକଲେ । ଜାର୍‌ଂକ ଅନୁପସ୍ଥିତିରେ ସାମ୍ରାଜ୍ଞୀ ଆଲେକ୍‌ଜାଂଡ୍ରା ଦେଶର ଶାସନକର୍ତ୍ତ୍ରୀ ହେଲେ । ସେ ଥିଲେ ଜର୍ମାନୀ ସମ୍ରାଟ କାଇଜରଙ୍କ କନ୍ୟା । ସେ ନାନା ସ୍ୱେଚ୍ଛାଚାରୀ ଓ ମନୋମୁଖୀ ବ୍ୟବସ୍ଥା ପ୍ରଚଳନକଲେ । ତାଂକ କୁଶାସନରେ ଲୋକେ ଅତିଷ୍ଠ ହୋଇଉଠିଲେ । ଏହି ସମୟରେ ସେ ରାସପୁଟିନ୍ ନାମକ ଜଣେ କୁଚକ୍ରୀ ବ୍ୟକ୍ତିର ପ୍ରଭାବରେ ଚାଳିତହେଉଥିଲେ । ରାସପୁଟିନ୍ ଥିଲେ ଜଣେ ରାଜକର୍ମଚାରୀ ଏବଂ ସ୍ୱେଚ୍ଛାଚାରୀ ଖଳନାୟକ । ସେ ଯୁବରାଜଙ୍କୁ ସମ୍ମୋହନ ବିଦ୍ୟାବଳରେ ରୋଗମୁକ୍ତ କରିଥିଲେ । ସେହିଦିନୁ ସାମ୍ରାଜ୍ଞୀଙ୍କ ଉପରେ ତାଂକର ପ୍ରଭାବ ବିସ୍ତାର ଲାଭ କରିବାକୁ ଲାଗିଲା । ସେ ଥିଲେ ଜଣେ ନୀତିହୀନ, ଚରିତ୍ରହୀନ ବ୍ୟକ୍ତି । ସେ କହୁଥିଲେ ବହୁନାରୀ ରମଣ କରିବା ପାପ ନୁହେଁ । କ୍ରମେ ସାମ୍ରାଜ୍ଞୀଙ୍କ ବ୍ୟକ୍ତିଗତ ପରିସରକୁ ସେ କଳୁଷିତ କଲେ । ସାମ୍ରାଜ୍ଞୀଙ୍କ ସହିତ ତାଂକ ପାପପ୍ରଣୟରେ ସମଗ୍ର ରୁଷବାସୀ କ୍ରୁଦ୍ଧ ହେଲେ । ସମସ୍ତେ ଏହି ଗର୍ହିତ କାର୍ଯର ଏକବାକ୍ୟରେ ନିଂଦା କରିବାକୁ ଲାଗିଲେ । ଦିନେ ରାସପୁଟିନ୍ ରାଜପ୍ରାସାଦର ପରିଜନମାନଂକଦ୍ୱାରା ନିହତ ହେଲେ ।

ପରିସ୍ଥିତି କ୍ରମେ ଶୋଚନୀୟ ହୋଇଥିଲା । ତେଣେ ଯୁଦ୍ଧକ୍ଷେତ୍ରରେ ରୁଷ୍ ପରାଜୟ ପରେ ପରାଜୟ ବରଣ କରୁଥିଲା । ଜାର୍ ନିକୋଲାସ ଦେଶର ଅବସ୍ଥା ସମ୍ଭାଳିବାକୁ ସଂପୂର୍ଣ ଅସମର୍ଥ ହେଲେ । ବିଦ୍ରୋହୀ ଜନତା ପିଟର୍ସବର୍ଗ (ପରେ ଲେନିନ୍‌ଗ୍ରାଡ୍) ଉପରେ ଆକ୍ରମଣ କରି ତାହା ଦଖଲ କରିନେଲେ । ରୁଷିଆର ଗଣବିପ୍ଳବ ଜୟଯୁକ୍ତ ହେଲା । ଦେଶରେ ଏକ ଅସ୍ଥାୟୀ ଗଣତାନ୍ତ୍ରିଂକ ସରକାର ପ୍ରତିଷ୍ଠିତହେଲା । ଏହାର ନେତୃତ୍ୱ ନେଇଥିଲେ କରେନ୍‌ସ୍କି । ସେ ଲେନିନ୍‌ଂକର ଗ୍ରାମବାସୀ ଥିଲେ । କରେନ୍‌ସ୍କି ଜର୍ମାନୀ ସହିତ ଯୁଦ୍ଧରେ ରୁଷିଆର ପରାଜୟର ପ୍ରତିଶୋଧ ନେବା ପାଇଁ ଦେଶବାସୀଂକୁ ଆହ୍ୱାନ କରିଥିଲେ । ଜର୍ମାନୀଠାରୁ ଅଧିକୃତ ରୁଷୀୟ ଅଂଚଳ ଛଡ଼ାଇ ଆଣିବାକୁ ସେ ରୁଷୀୟ ଜନତାକୁ ଉଦ୍‌ବୋଧନ ଦେଇଥିଲେ । ଲେନିନ୍ ସେହି ସମୟରେ ସୁଇଜରଲ୍ୟାଂଡରେ ନିର୍ବାସିତ ହୋଇ ରହିଥିଲେ । ଜର୍ମାନୀ ସମ୍ରାଟ ତାଂକୁ ଏକ ଆବଦ୍ଧ

ଟ୍ରେନ୍‌ରେ ପିଟର୍ସବର୍ଗ ପଠାଇଦେଲେ । ସେ ଭାବିଥିଲେ ଲେନିନ୍ ଯାଇ ଦେଶରେ ପ୍ରଚାର ପାଇଁ ଆନ୍ଦୋଳନ କଲେ କରେନ୍‌ସ୍କିଂକ ଜର୍ମାନୀ ବିରୋଧୀ ଯୁଦ୍ଧ ପ୍ରସ୍ତୁତି ଦୁର୍ବଳ ହୋଇଯିବ । ଲେନିନ୍ ରୁଷିଆକୁ ଫେରି ପ୍ରଥମେ ଯୁଦ୍ଧକୁ ସାମ୍ରାଜ୍ୟବାଦୀ ଯୁଦ୍ଧ ବୋଲି କହି ସେଥିରେ କୌଣସି ପ୍ରକାର ସାହାଯ୍ୟ ନକରିବାକୁ ଲୋକମାନଂକୁ ବୁଝାଇଥିଲେ । ସେ କହିଥିଲେ ଏହି ଯୁଦ୍ଧରେ ଶେଷଫଳ କେବଳ ଲୋକକ୍ଷୟ ଏବଂ ଧନଜୀବନ ନଷ୍ଟ । ଏଥିରେ ରୁଷ୍‌ର ଶୋଷିତ ଜନସାଧାରଣ କୌଣସି ପ୍ରକାରେ ଲାଭବାନ୍ ହେବେନାହିଁ । ତାଂକର ଏହି ପ୍ରଚାର ଫଳରେ ରୁଷବାସୀ ବିକ୍ଷୁବ୍ଧ ଓ ଉତ୍ୟକ୍ତ ହୋଇଉଠିଲେ । ମାତ୍ର ପରେ ସେ ଜନସାଧାରଣଂକ ସମର୍ଥନ ଲାଭକରିଥିଲେ । ସେ କହିଥିଲେ ଯେ ଆଂତର୍ଜାତିକ ସର୍ବହରା ସମାଜ ଗଠନ କରାଯିବା ଉଚିତ, ଏଥିରେ ରୁଷ୍‌ର ଜାତୀୟତାର ପ୍ରଶ୍ନ ଉଠି ନ ପାରେ । ଶାଂତି ପ୍ରତିଷ୍ଠିତ ହେଲେ ରୁଷିଆ ତାର ଅପହୃତ ଅଂଚଳ ସହଜରେ ଫେରାଇଆଣିବ ।

ଲେନିନ୍‌ଙ୍କ ନେତୃତ୍ୱରେ ଯେପରି ଏକ ଯାଦୁକରୀ ଶକ୍ତି ଥିଲା । ଲେନିନ୍‌ଙ୍କର ଏହି ଚରମ ବିପ୍ଳବର ଆହ୍ୱାନ ଫଳରେ ଦୁଇଦଳଂକ ମଧ୍ୟରେ ନେତୃତ୍ୱ ପାଇଁ ସଂଘର୍ଷ ଆରଂଭ ହୋଇଥିଲା । ଏକପକ୍ଷରେ କରେନ୍‌ସ୍କି ପରିଚାଳିତ ସମାଜବାଦୀଦଳ, ଅନ୍ୟପକ୍ଷରେ ଲେନିନ୍ ଓ ଟ୍ରଟସ୍କିଂକ ପରିଚାଳିତ ବଲ୍‌ସେଭିକ୍ ଦଳ । ୧୯୧୩ ମସିହା ନଭେମ୍ବରମାସ ସାତ ତାରିଖ ଦିନ ବଲ୍‌ସେଭିକ୍ ଦଳ ପେଟ୍ରୋଗାଡ୍‌ର ଶୀତପ୍ରାସାଦ ଅଧିକାରକଲେ । ଏହି ଘଟଣା ଇତିହାସରେ ମହାନ୍ ଅକ୍ଟୋବର ବିପ୍ଳବ ନାମରେ ପରିଚିତ ।

ଏହି ଅକ୍ଟୋବର ବିପ୍ଳବ ପରେ ରୁଷ୍‌ରୁ ସାମଂତତଂତ୍ରୀ ଓ ସ୍ୱେଚ୍ଛାଚାରୀ ଜାର୍ ଶାସନ ଲୋପପାଇଲା । ଏକ ଶୋଷଣହୀନ ସମାଜବାଦୀ ଲୋକତଂତ୍ର ପ୍ରତିଷ୍ଠିତ ହେଲା । ଲେନିନ୍ ରୁଷିଆର ସର୍ବହରା ସମାଜର ଅଧିନାୟକ ରୂପେ ଶାସନ ଚଳାଇଲେ । ଜମିଦାରି ଓ ପୁଂଜିପତି ସଂସ୍ଥା ଦେଶରୁ ଅପସାରିତ ହେଲା । ବଲସେଭିକ୍ ନେତୃମଂଡଳୀର ସାହସ, ଧୈର୍ଯ ଏବଂ ସଂକଳ୍ପ ଯୋଗୁଁ ରୁଷିଆରେ ଇତିହାସର ଧାରା ପରିବର୍ତ୍ତିତ ହେଲା ଏବଂ ଏକ ନୂତନ ସମାଜବାଦୀ ରାଷ୍ଟ୍ର ବିଶ୍ୱ ଇତିହାସରେ ଆତ୍ମପ୍ରକାଶକଲା । ଲେନିନ୍ ଆଜି ଏକ ପ୍ରବାଦ ପୁରୁଷରେ ପରିଣତ ହୋଇଛଂତି ।

**ଲେନିନ୍‌ଙ୍କର ଶବାଧାର :**

ମସ୍କୋରେ ଥିଲାବେଳେ ମୁଁ ଲେନିନଂଙ୍କ ଶବାଧାର ଦେଖିଥିଲି । ଏହି ଶବାଧାରରେ ମହାନ୍ ଲେନିନ୍‌ଙ୍କର ମୃତଦେହକୁ ରାସାୟନିକ ପ୍ରକ୍ରିୟାରେ ସଂରକ୍ଷିତ କରାଯାଇଛି । ଦର୍ଶକମାନଂକ ନିମଂତେ ଏହି ଶବାଧାର ବା ମୁସୋଲିୟମ୍ ନିର୍ଦ୍ଦିଷ୍ଟ ସମୟରେ ଉନ୍ମୁକ୍ତ ଥାଏ । ଦେଶବିଦେଶରୁ ହଜାର ହଜାର ପରିଦର୍ଶକ ନରନାରୀ ପ୍ରତିଦିନ ମହାନ୍ ସର୍ବହରା ନେତାଂକୁ ଦର୍ଶନ କରିବାକୁ ଆସଂତି । ଲେନିନ୍ ଜୀବିତ ଅବସ୍ଥାରେ ଥିଲାବେଳେ ଯେପରି ଦେଖାଯାଉଥିଲେ ଆଜି ବି ଠିକ୍ ସେହିପରି ଦେଖାଯାଂତି । ଅନ୍ୟକୌଣସି ଦେଶରେ ଲେନିନ୍‌ଙ୍କ ପରି ଜାତୀୟ ନେତାଂକ ଶବକୁ ଏପରି ସୁରକ୍ଷିତ କରାଯାଇନାହିଁ ।

ଲେନିନ୍‌ଙ୍କ ସଂବଧରେ ମୁଁ ୧୯୫୯ ମସିହାରେ ମୁଁ ଯେଉଁ କବିତା ଲେଖିଥିଲି ତହିଁର ପ୍ରଥମ ଦୁଇଧାଡ଼ି ଉଲ୍ଲେଖ ନ କରି ରହିପାରୁନାହିଁ । ତାହା ହେଲା....

''ଲେନିନ୍ ଲେନିନ୍ ଡାକେ 'ମୋ' ଲେଖନୀ
ଯେତେବେଳେ ଯେତେ ଥର
ତୃପ୍ତି ଆସେନା, ପୁଣି ଡାକିବାକୁ ଇଚ୍ଛାହୁଏ ବାରବାର ।
('ଏସିଆର ସ୍ୱପ୍ନ') (୧୯୫୯)

**ଲେନିନ୍‌ଗ୍ରାଦ୍ ଯାତ୍ରା :**

୨୭-୫-୧୯୭୯ ତାରିଖ ରାତି ଟ୍ରେନ୍‌ରେ ମୁଁ ପୁଷ୍କିନ ଉତ୍ସବରେ ଯୋଗ ଦେବା ପାଇଁ ଟ୍ରେନ୍‌ରେ ଲେନିନ୍‌ଗ୍ରାଦ୍ ଚାଲିଲି । ଲେନିନ୍‌ଗ୍ରାଦ୍ ମସ୍କୋଠାରୁ ଏକହଜାର କିଲୋମିଟର ଦୂର । ମୋ ସଂଗେ ମୋର ଦ୍ୱିଭାଷୀ ଟାନିଆ ମଧ୍ୟ ଯାଇଥିଲା । ପୂର୍ବରୁ କହିଛି ରୁଷ୍‌ରେ ଖୁବ୍ କମ୍ ଲୋକ ଇଂରାଜୀ ଜାଣଂତି, ତେଣୁ ଦ୍ୱିଭାଷୀ ନହେଲେ ନ ଚଳେ । କେବଳ ମୁଖଭଂଗୀ ଓ ଠରାଠରିରେ ଯେତିକି ଭାବବିନିମୟ କରାଯାଇପାରେ ସେତିକି ଯଥେଷ୍ଟ ହୁଏ ନାହିଁ । ଟ୍ରେନ୍‌ରେ ପ୍ରଥମ ଶ୍ରେଣୀ ଯାତ୍ରୀମାନଂକ ପାଇଁ ପ୍ରଚୁର ସୁବିଧା କରାଯାଇଥାଏ । କେୟାରଟେକର୍ ଜଣେ ସୁଂଦରୀ ତରୁଣୀ ମଝିରେ ମଝିରେ ଆସି ମୋର ସୁବିଧା ଅସୁବିଧା ବୁଝିଯାଉଥାଂତି । ଯାତ୍ରୀମାନଂକୁ ଗଦି, ତକିଆ, କମ୍ବଳ ଆଦି ଯୋଗାଇଦିଆଯାଇଥାଏ । ଚା' ଓ କଫି ମଧ୍ୟ ଦିଆଯାଇଥାଏ । ଟ୍ରେନ୍‌ରେ ଉଠି ନିଜ କଂପାର୍ଟମେଂଟରେ ବସିବା ପରେ ପୁଷ୍କିନ ଉତ୍ସବର କର୍ମକର୍ତ୍ତାମାନେ ଏବଂ ସୋଭିଏତ୍ ଲେଖକ ସଂଘର ସଂପାଦକ ପ୍ରଭୃତି ଆସି ମୋତେ ସମ୍ବର୍ଦ୍ଧନା ଜଣାଇଲେ । ସେମାନେ କହିଲେ – ଏଥର ପ୍ରଥମ ଥର ପାଇଁ ସେମାନେ ଭାରତରୁ ଜଣେ ଲେଖକଂକୁ ଏହି ଉତ୍ସବରେ ଭାଗ ନେବା ପାଇଁ ଡାକିଛଂତି । ଭାରତ ଛଡ଼ା କ୍ୟୁବା, ସିରିଆ, ଟ୍ୟୁନିସ୍, ଆରବ ଓ ସ୍ପେନର କେତେକ ଲେଖକଲେଖିକା ଏହି ଉତ୍ସବରେ ଭାଗନେବାପାଇଁ ଆମଂତ୍ରିତ ହୋଇଥିଲେ । ଏହାଛଡ଼ା ସୋଭିଏତ୍ ରୁଷର ପଂଦରଟିଯାକ ଅଂଗ ରାଷ୍ଟ୍ରର ପ୍ରତିନିଧିସ୍ଥାନୀୟ ଲେଖକଲେଖିକାମାନେ ଏଥିରେ ଯୋଗ ଦେଇଥିଲେ । ବିଦେଶରୁ ଆସିଥିବା ଲେଖକଲେଖିକାମାନେ ସେହି ଟ୍ରେନ୍‌ରେ ଲେନିନ୍‌ଗ୍ରାଦ୍ ଯାଉଥାଂତି । ଏହାଛଡ଼ା ସୋଭିଏତ୍ ଲେଖକ ୟୁନିୟନର ଜଣେ ତୁଂଗ କର୍ମକର୍ତ୍ତା ଏବଂ ପ୍ରସିଦ୍ଧ ନାରୀକବି ମାଡାମ୍ କାଜାକୋଭା ମଧ୍ୟ ସେହି ଟ୍ରେନ୍‌ରେ ଯାଉଥାଂତି । ସେ ଅଭ୍ୟର୍ଥନାକାରୀ-ମାନଂକ ସଂଗେ ଆସି ମୋତେ ସ୍ୱାଗତ ଜଣାଇ ଯାଇଥିଲେ ।

ପୁଷ୍କିନ୍ ଉତ୍ସବ ସାଧାରଣତଃ ଲେନିନ୍‌ଗ୍ରାଦ୍‌ରେ ମେ ମାସ ୨୮ ତାରିଖରେ ଆରଂଭ ହୋଇଥାଏ । ଏହାପରେ ପୁଷ୍କିନଂକ ଗ୍ରାମ ମିଖାଇଲ୍ ଲୋଭସ୍କାୟାରେ ଜୁନ୍ ଦୁଇ ତିନି ତାରିଖ ପୁଷ୍କିନମେଳା ଚୂଡ଼ାଂତ ପର୍ଯ୍ୟାୟରେ ପହଂଚେ । ଏହାର ଦିନକପରେ ମସ୍କୋଠାରେ ଉଦ୍‌ଯାପିତ ହୁଏ । ମେ ମାସ ୨୮ ତାରିଖ ସକାଳେ ମସ୍କୋରୁ ଯାଇ ଲେନିନ୍‌ଗ୍ରାଦ୍

''ରୁଷ ଅନୁଭୂତି'' – ଡଃ ଗୋପାଳଚନ୍ଦ୍ର ମିଶ୍ର, ଦ୍ରଷ୍ଟବ୍ୟ ।

ପହଁଚିଥାଉ । ସେତେବେଳକୁ ସୂର୍ଯୋଦୟ ହୋଇସାରିଥାଏ । ଆମ ସଂଗେ ବହୁ ବିଦେଶାଗତ ଏବଂ ରୁଷୀୟ ଲେଖକଲେଖିକା, ସାଂବାଦିକ ଏବଂ ଫଟୋଗ୍ରାଫର ଥାଂତି ।

ଆମ ଜିନିଷପତ୍ର ସବୁ ଆସି ଗୋଟାଏ ଜାଗାରେ ଠୁଳହେଲା । ତାପରେ କୁଲିମାନେ ସେସବୁକୁ ଟ୍ରଲିରେ ନେଇ ଅପେକ୍ଷାରତ ବସ୍‌ମାନଂକରେ ରଖିଦେଲେ । ଲେନିନ୍‌ଗ୍ରାଦ୍‌ରେ ପହଁଚିବା ପରେ ଆମକୁ ଏକ ବଡ଼ ହୋଟେଲକୁ ନିଆଗଲା । ହୋଟେଲଟିର ନାମ "OKTYABRSKAYA" । ଏଥିରେ ଶତାଧିକ କୋଠରି ରହିଛି । ଏହି ହୋଟେଲଟି ଅତି ଆଧୁନିକ ସାଜସଜ୍ଜାରେ ପରିପୂର୍ଣ । ଆମ ପାସପୋର୍ଟ କେଂଦ୍ରୀୟ ଅଭ୍ୟର୍ଥନା ଅଫିସ ନେଇ ହିପାଜତ୍‌ରେ ରଖିଲେ । ଆମକୁ ଦର୍ଶନୀୟ ସ୍ଥାନ ବୁଲି ଦେଖାଇବା ଏବଂ ପୁଷ୍କିନ ଜୟଂତୀ ଉତ୍ସବକୁ ନେବା ଆଣିବା ଭାର ଏବଂ ହୋଟେଲରେ ଆମ ତତ୍ତ୍ୱାବଧାନ ଦାୟିତ୍ୱ ଲେନିନ୍‌ଗ୍ରାଦ୍‌ସ୍ଥିତ ପୁଷ୍କିନ୍ ଜୟଂତୀ କମିଟି ଉପରେ ନ୍ୟସ୍ତ କରାଯାଇଥିଲା । ସେହି କମିଟି ସୋଭିଏତ୍ ଲେଖକ ୟୁନିୟନ୍‌ର ଏକ ଅଂଗ । ଏହାର ଅଧିକର୍ତ୍ତା ଥାଂତି ଆଲୋକ୍‌ଜାଂଡାର ବ୍ରାନସ୍କି । ସେ ଜଣେ ଅତି ଉଚ୍ଚକୋଟୀର ବୁଦ୍ଧିଜୀବୀ । ସେ କିଛିକାଳ ପୂର୍ବେ ଭାରତ ଆସି ରାଞ୍ଚିଠାରେ କେତେମାସ ଅବସ୍ଥାନ କରିଥିଲେ ଜଣେ ଦ୍ୱିଭାଷୀ ରୂପେ ।

**ପୁଷ୍କିନ୍ ସଂଗ୍ରହାଳୟ :**

୨୮ ତାରିଖରେ ଆମେ ପୁଷ୍କିନ୍ ମିୟୁଜିୟମ୍ ଦେଖିବାକୁ ଯାଇଥିଲୁ । କେତୋଟି ଡିଲକ୍ସ ବସ୍‌ରେ ହୋଟେଲ୍‌ରୁ ଯାଇ ଆମେ ଗଛବୃକ୍ଷପୂର୍ଣ ପୁଷ୍କିନ ସଂଗ୍ରହାଳୟରେ ପହଁଚିଲୁ । ପୁଷ୍କିନ ମିଉଜିୟମ୍ ଏକ ବିରାଟ ଅଟ୍ଟାଳିକାରେ ଅବସ୍ଥିତ । କବି ପୁଷ୍କିନ୍ ସେହି ଅଂଚଳରେ ତାଂକ ଜୀବନର କେତେକ ବର୍ଷ ଅତିବାହିତ କରିଥିଲେ । ପୁଷ୍କିନଂକର ପତ୍ରାବଳୀ, ବୈଠକଖାନା ଏବଂ ତାଂକର ଅଧ୍ୟୟନକକ୍ଷ ବିଶେଷ ଉଲ୍ଲେଖଯୋଗ୍ୟ ।

ଆଲୋକଜାଂଡାର ପୁଷ୍କିନ୍ ରୁଷ ସାହିତ୍ୟରେ ଏକ ପ୍ରଚଂଡ ପ୍ରତିଭା ଥିଲେ । ତେଣୁ ତାଂକ ସ୍ମାରକୀରୂପେ ଏହି ସଂଗ୍ରହାଳୟଟି ବିଶେଷ ଗୁରୁତ୍ୱପୂର୍ଣ । ଫରାସୀ ସାହିତ୍ୟରେ ଭଲଟାୟାର୍, ଜର୍ମାନୀ ସାହିତ୍ୟରେ ଗେଟେ ଏବଂ ଇଟାଲୀୟ ସାହିତ୍ୟରେ ଦାଂତେ ଯେଉଁ ତୁଂଗ ଆସନ ଅଧିକାର କରିଛଂତି, ଊନବିଂଶ ଶତକ ପ୍ରଥମଭାଗର ରୁଷ ସାହିତ୍ୟରେ ପୁଷ୍କିନ୍ ସେମାନଂକର ସମକକ୍ଷ ସାହିତ୍ୟସ୍ରଷ୍ଟା ରୂପେ ସର୍ବସ୍ୱୀକୃତି ଲାଭକରିଛଂତି । ସେ ରୁଷ ଭାଷାର ଅନ୍ତର୍ନିହିତ ଶକ୍ତିକୁ ତାଂକ କାବ୍ୟକବିତାରେ ଉଦ୍‌ବୋଧିତ କରିଯାଇଛଂତି । ତାଂକର ତରୁଣ ବୟସରେ ରଚିତ ଦୀର୍ଘ କାବ୍ୟ ''ରୁଷ୍‌ଲାନା ଓ ଲୁଡ୍‌ମିଲା'' ତାଂକର ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ବହନ କରିଥିଲା । ସେ ପୈତୃକ ଜମିଦାରିରେ ଅବସ୍ଥାନ କରିବା ସମୟରେ ବହୁ ରସୋତ୍ତୀର୍ଣ କାବ୍ୟକବିତା ପ୍ରଣୟନ କରିଥିଲେ । ତାଂକର କାବ୍ୟିକଶକ୍ତି ଦେଖି ତାଂକର ଅଧ୍ୟାପକମାନଂକ ସମେତ ବିଦଗ୍ଧ ପାଠକମଂଡଳୀ ଚମତ୍କୃତ ହୋଇଯାଇଥିଲେ । ସେହି କାବ୍ୟକବିତାଗୁଡ଼ିକ ହେଲା 'କକେସସ୍‌ର ବଂଦୀ, ବାକଛି ସରାଇର ପାଂଥଶାଳା, କାହାଣୀ କାବ୍ୟ 'ଇଉଗିନ୍

ଅନେଗିନ୍' ଏବଂ ଜିପ୍‌ସି ପ୍ରଭୃତି । ତାଂକର ଅମର ସାହିତ୍ୟକୃତି ଆଜି ମଧ୍ୟ ରୁଷ୍‌ବାସୀ ଭୁଲିନାହାଂତି । ତାଂକ ପ୍ରଣୀତ କାବ୍ୟ 'ଇଉଗିନ୍ ଅନେଗିନ୍' ତାଂକ ଜନ୍ମ ଗ୍ରାମ ମିଖାଇଲୋଭସ୍କୟାରେ ରଚିତ ହୋଇଥିଲା । ତାହାର ପ୍ରଥମ ପରିଚ୍ଛେଦ ସରକାରୀ କର୍ମଚାରୀଙ୍କ ଦ୍ୱାରା ଯାଂଚ୍ ହେବା ପରେ ୧୮୨୫ ମସିହା ଫେବୃୟାରୀରେ ପ୍ରକାଶ ଲାଭ କଲା । ଏହା ତାଂକ କାବ୍ୟିକ ବ୍ୟକ୍ତିତ୍ୱକୁ ଅଧିକ ଯଶଶ୍ରୀମଂଡିତ କରିଥିଲା । ନିଜ ପରିବାରର ଲୋକଂକ ସହିତ ତାଂକର ମନର ମେଳ ନ ଥିଲା । ମାତ୍ର ସାଧାରଣ ଗ୍ରାମବାସୀ କୃଷକ ଓ ମଜଦୁରମାନଂକ ସହିତ ସେ ବେଶ୍ ମନ ଖୋଲି ମିଶିପାରୁଥିଲେ ବୋଲି ଜଣେ ଲେଖକ ଲେଖିଛଂତି । ତାଂକ ଐତିହାସିକ ନାଟକ 'ବୋରିସ୍ ଗୁଡ଼ଉର' ଲେଖା ୧୮୨୫ ସାଲରେ ଶେଷହୋଇଥିଲା ।

୨୮ ତାରିଖଟି ଆମେ ପୁଷ୍କିନଂକ ସ୍ମୃତି ସଂଗ୍ରହାଳୟ ଦେଖିବାରେ କଟାଇଥିଲୁ । TASS ସଂବାଦ ଏଜେନ୍‌ସିର ଜଣେ ପତ୍ରକାର ମୋ ସହିତ ଚୀନ୍ – ରୁଷିଆ ସଂପର୍କ ସଂବଧରେ ଏକ ସାକ୍ଷାତ୍‌କାର ନେଇଥିଲେ । ମୁଁ ଚୀନ ସହିତ ରୁଷିଆର ସଂପର୍କ କ୍ରମେ ଭଲ ହେବ ବୋଲି ଆଶା ପ୍ରକାଶ କରିଥିଲି । ଭାରତ ପ୍ରତି ରୁଷିଆର ସାହାଯ୍ୟ ସହାନୁଭୂତି ବିଶ୍ୱରାଜନୀତିରେ ଭାରସାମ୍ୟ ରକ୍ଷାକରିଛି ବୋଲି ମୁଁ କହିଥିଲି । ଏହି ସାକ୍ଷାତ୍‌କାର 'ପ୍ରାଭାଡ଼ା'ରେ ପ୍ରକାଶ ପାଇଥିଲା ।

**ମଧ୍ୟରାତ୍ରିର ସୂର୍ଯ୍ୟ :**

ଲେନିନ୍‌ଗ୍ରାଦ୍‌ରେ ଯେଉଁ କେତେଦିନ ଥିଲି ତାହା ଶ୍ୱେତରାତ୍ରିର ବିସ୍ମୟ କଟାଇ ମୋତେ ସୋଭିଏତ୍ ରୁଷ୍‌ର ପ୍ରାଣକେଂଦ୍ର ନେଭା ନଦୀ କୂଳରେ ଅବସ୍ଥିତ ଏହି ବିରାଟ ନଗରୀ ପ୍ରତି ଅଧିକ ଆକୃଷ୍ଟ କରିଥିଲା । ଲେନିନ୍‌ଗ୍ରାଦ୍‌ର ରାତି ଜୀବନରେ ଭୁଲି ହେବ ନାହିଁ । ମଧ୍ୟରାତ୍ରିର ସୂର୍ଯ୍ୟ ଗୋଧୂଳି ରଂଗର ଆଲୋକ ବିଛାଇ ଦିଏ । ତେଣୁ ଏଠାରେ ଦିନ କେତେବେଳେ ଆରଂଭ ହୁଏ ଏବଂ ରାତି କେତେବେଳେ ଶେଷ ହୁଏ ତାହା ଜାଣିବା କଷ୍ଟକର । ମୁଁ ମଧ୍ୟ ରାତ୍ରିର ସୂର୍ଯ୍ୟ ଆଲୋକରେ ନେଭା ନଦୀକୂଳରେ ବୁଲିବାକୁ ଭଲପାଉଥିଲି ।

**ପୁଷ୍କିନ୍ ଥିଏଟର :**

ସେହିଦିନ ସଂଜବେଳେ ପୁଷ୍କିନ ଥିଏଟର ପ୍ରେକ୍ଷାଳୟରେ ପୁଷ୍କିନଂକ ଜୀବନ ଉପରେ ଆଧାରିତ ନାଟକ ଦେଖିଥିଲି । ପେସାଦାର ନାଟ୍ୟଶିଳ୍ପୀମାନଂକର ଅଭିନୟ ଉଚ୍ଚକୋଟୀର ହୋଇଥିଲା । ପୁଷ୍କିନ୍ ଏକ ଭ୍ରମଣ ଯଷ୍ଟି ଧରି ମଂଚ ଉପରକୁ ଆସିଥିଲେ । ତାଂକର ପ୍ରଥମ ସ୍ୱଗତୋକ୍ତିଟି ଥିଲା "I am going to be married" । ପୁଷ୍କିନ ଭ୍ରମଣ ଯଷ୍ଟି ଧରି ଚାଲବୁଲ କରିବାକୁ ଭଲପାଉଥିଲେ । ପୁଷ୍କିନ ଥିଏଟର ଏକ ସୁଂଦର ଆଡ଼ମ୍ବରପୂର୍ଣ୍ଣ ଅଟ୍ଟାଳିକାରେ ଅବସ୍ଥିତ । ଏହାର ଆଧୁନିକ ପରିପାଟୀପୂର୍ଂଣ ରଂଗମଂଚ ଏବଂ ଦୃଶ୍ୟପଟ ଶ୍ରେଷ୍ଠ ସୋଭିଏତ୍ ଥିଏଟର ମଧ୍ୟରେ ଅନ୍ୟତମ । ଯେଉଁ କଳାକାର

ପୁଷ୍କିନ ଭୂମିକାରେ ଅଭିନୟ କରିଥିଲେ; ସେ ଦେଖିବାକୁ ଠିକ୍ ପୁଷ୍କିନ୍‌ଙ୍କ ପରି । ପୁଷ୍କିନ୍‌ଙ୍କ ଶାଶୁ ଗଂଚାରଭା ଏବଂ ପ୍ରଣୟିନୀ ଓ ପତ୍ନୀ ନାତାଲିୟାଂକ ଅଭିନୟ ଆଜି ବି ମୋର ମନେଅଛି । ସୁଂଦରୀ ନାତାଲିଆଂକର ସଂଳାପ ଜୀବଂତ ଏବଂ ଅତ୍ୟଂତ ସ୍ୱାଭାବିକ ମନେହେଉଥିଲା । ନାଟକର ଦ୍ୱିତୀୟଭାଗରେ ପୁଷ୍କିନଂକୁ ଛାଡ଼ି ତାଂକର କାବ୍ୟ 'ଇଉଗିନ୍ ଅନେଗିନ୍'ର ଅନୁରୂପ ଅଂଶଟି ଅଭିନୀତ ହୋଇଥିଲା । କାବ୍ୟନାୟିକା କୃଷକକନ୍ୟା ତାର ପ୍ରଣୟୀ ସହିତ ପଳାଇଯିବା ପରେ ଶେଷ ଯବନିକା ପଡ଼ିଲା । ଜାର୍ ନିକୋଲାସଂକର ଏକ ଆବକ୍ଷ ପ୍ରତିମୂର୍ତ୍ତି ରଂଗମଂଚ କଣରେ ଏକ ଟେବୁଲ ଉପରେ ରଖାଯାଇଥିଲା, ତାହା ବେଳେ ବେଳେ କଂପିଉଠୁଥିଲା ।

ନାଟକ ଦେଖିସାରି ଆମେ ମଧରାତ୍ରିର ସୂର୍ଯଆଲୁଅରେ ହୋଟେଲକୁ ଫେରିଥିଲୁ । ମଝିରେ ମଝିରେ ରାସ୍ତାକଡ଼ରେ ଥିବା କଲଭର୍ଟ ଉପରେ ବସିପଡ଼ି ଦମ୍ ନେଉଥିଲୁ । ଲେନିନ୍‌ଗ୍ରାଦ୍‌ରେ ରାତି ପାହି ସକାଳ ହେଲାବେଳକୁ ୮ଟା ବାଜିଥାଏ । ଲେନିନ୍‌ଗ୍ରାଦ୍‌ରେ ସେତେବେଳେ ଥିଲା ଗ୍ରୀଷ୍ମଋତୁ । ଜୁନ୍ ମାସରେ ଆମ ଭାରତବର୍ଷରେ ପ୍ରଚଂଡ ଖରା । ଲେନିନ୍‌ଗ୍ରାଦ୍‌ରେ ଗ୍ରୀଷ୍ମଋତୁ ହେଲେ ମଧ ଆମ ଦେଶର ପୌଷମାସ ପରି ଥଂଡାପଡ଼େ । ଦେହରେ ମୋଟା ଶୀତବସ୍ତ୍ର ଘୋଡ଼ାଇ ହେବାକୁ ପଡ଼େ ।

୨୯ ତାରିଖ ମଂଗଳବାର ଆମେ ସକାଳୁ ଉଠି ନିତ୍ୟକର୍ମ ସାରି ହୋଟେଲ୍‌ରେ ପ୍ରାତଃଭୋଜନ କଲୁ । ଏହି ହୋଟେଲ୍‌ରେ ଖାଇବାପିଇବା ବ୍ୟବସ୍ଥା ବେଶ୍ ଭଲ । ମସ୍କୋ ଏବଂ ଲେନିନ୍‌ଗ୍ରାଦ୍‌ରେ, ବୋଧହୁଏ ସମଗ୍ର ରୁଷ୍ ଦେଶରେ, ହୋଟେଲ୍ ଓ ରେସ୍ତୋରାଁ ମାନଂକରେ ଖାଇବାପିଇବା ଅର୍ଡର ଦେଲେ ତାହା ଆସିବାକୁ ବହୁତ ସମୟ ଲାଗେ । ଜଣେ ରୁଷୀୟ ବଂଧୁ ଥରେ ଥଟ୍ଟା କରି କହିଥିଲେ – ଖାଇବା ଅର୍ଡର ଦେଲେ ଆସିବାକୁ ଯେତେ ସମୟ ଲାଗେ ସେହି ସମୟରେ ଜଣେ ଲୋକ ଟଲଷ୍ଟୟଂକ "War and Peace"ପଢ଼ି ଦେଇପାରିବ । ସମସ୍ତେ ଜାଣଂତି "War and Peace" ଏକ ପ୍ରକାଂଡ ବଡ଼ ଉପନ୍ୟାସ । ବ୍ରେକ୍‌ଫାଷ୍ଟ ବା ପ୍ରାତଃଭୋଜନ ସାରି ଆମେ ପୁଷ୍କିନା ଦେଖିବାକୁ ଯାଇଥିଲୁ । ପୁଷ୍କିନା ଲେନିନ୍‌ଗ୍ରାଦ୍‌ର ବଡ଼ ମ୍ୟୁଜିୟମ୍ । ସଂପ୍ରତି ଏହାର ନାମ ପୁଷ୍କିନା ରଖାଯାଇଛି, ତାହାର କାରଣ ଅଳ୍ପଦିନ ହେଲା ଏହି ପରିସର ପୁଷ୍କିନଂକୁ ଉତ୍ସର୍ଗ କରାଯାଇଛି । ପୂର୍ବେ ଏଠାରେ ଜାର୍‌ଙ୍କର Museum of Cine Arts and Painting ପ୍ରତିଷ୍ଠିତ ଥିଲା ।

ଏଠାରେ ଏକ ସ୍କୁଲରେ ପୁଷ୍କିନ୍ ପିଲାଦିନେ ଛଅବର୍ଷ କାଳ ପଢ଼ିଥିଲେ । ଏହି ସ୍କୁଲଟି ସମ୍ଭ୍ରାଂତବଂଶୀୟ ସତାଂନମାନଂକ ଶିକ୍ଷାଦୀକ୍ଷା ଉଦ୍ଦେଶ୍ୟରେ ଜାର୍ ପ୍ରତିଷ୍ଠା କରିଥିଲେ । ଏହି ସ୍କୁଲରେ ପୁଷ୍କିନଂକ ପଢ଼ିବା ସମୟର ବହୁ କାଗଜପତ୍ର, ବେଂଚ, ଡେସ୍କ ଓ କ୍ଲାସରୁମ୍, ପୁଷ୍କିନ୍ ପଢ଼ିଥିବା ବହି, ପରୀକ୍ଷା ଖାତା, ମାର୍କ ରେଜିଷ୍ଟର, ହଷ୍ଟେଲ ରୁମ୍, କାଳିଦୁଆତ, କଲମ ପ୍ରଭୃତି ସଜ୍ଜିତ ରଖାଯାଇଛି । ପୁଷ୍କିନ୍ ଗଣିତରେ ଅତି ଦୁର୍ବଳ ଥିଲେ ବୋଲି ମାର୍କ ରେଜିଷ୍ଟରରୁ ଜଣାଯାଏ । ୧୯୧୯ ଖ୍ରୀଷ୍ଟାବ୍ଦରେ ରୁଷ୍‌ର ସମାଜବାଦୀ

ସରକାର ପୁଷ୍କିନ୍‌ଙ୍କର ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ଏହାର ପୁନର୍ଗଠନ କରିଥିଲେ। ଲେନିନ୍‌ଗ୍ରାଦ୍‌ଠାରୁ ପୁଷ୍କିନା ଅଳ୍ପ ଦୂରରେ ଅବସ୍ଥିତ। (ରୁଷ ଅନୁଭୂତି)

ଏହି ସଂଗ୍ରହାଳୟରେ ଚାଇନିଜ୍ ଢାଂଚାରେ ନିର୍ମିତ କେତେକ ମୂଲ୍ୟବାନ୍ ସ୍ଥାପତ୍ୟ ରଖାଯାଇଛି; ଏହି ଅଟ୍ଟାଳିକାଟି ଜାର୍ ନିର୍ମାଣ କରାଇଥିଲେ, ତେଣୁ ଏଥିରେ ବହୁ ଆଡଂବର ପୂର୍ଣ ଭିତ୍ତିଚିତ୍ର କରାଯାଇଛି। ଛାତରେ ଓ କାଂଥମାନଂକରେ ସୁନାପାଣିରେ ନାନା ଅଙ୍କନ କରାଯାଇଛି। ଶୁଣାଯାଏ ଏଥିରେ ଏକହଜାର କିଲୋ ସୁନା ଲାଗିଥିଲା। ଏହାର ଆସବାବପତ୍ର ଓ ଭିତ୍ତିସଜ୍ଜା ସାଂମତଯୁଗୀୟ ଆଡଂବର ଓ ବିଳାସିତାର ଚିହ୍ନ ଧାରଣ କରିଛି। କାଂଥରେ ଚାଇନିଜ୍ ସିଲ୍‌କ କାମ ଅତି ଚମତ୍କାର ଦେଖାଯାଏ। ଅଟ୍ଟାଳିକାର ସ୍ତମ୍ଭମାନ ସ୍ୱର୍ଣଖଚିତ। ପଶୁପକ୍ଷୀମାନଂକର ଚିତ୍ର ଏହାର ଶୋଭା ବର୍ଦ୍ଧନ କରେ। ଆକ୍ରମଣକାରୀମାନେ ଏହି ସ୍ଥାନ ଉପରେ ବାରଂବାର ଚଢ଼ାଉକରିଛଂତି। ନେପୋଲିୟନଂକ ସୈନ୍ୟମାନେ ପଦଯାତ୍ରା କଲାବେଳେ ଏହି ସ୍ମୃତିପୀଠରେ ବହୁ କ୍ଷତିସାଧନ କରିଛଂତି। ବିଗତ ମହାଯୁଦ୍ଧ ସମୟରେ ଫାସୀଷ୍ଟ ଜର୍ମାନୀ ସୈନ୍ୟମାନେ ଏହାକୁ ଦୀର୍ଘଦିନ ଧରି ଅବରୋଧ କରି ରଖିଥିଲେ। ସେମାନଂକ ବୋମାମାଡର ଚିହ୍ନ ବହୁସ୍ଥାନରେ ସ୍ପଷ୍ଟ ରହିଛି। (ତତ୍ରୈବ)

ପୁଷ୍କିନା ପରିଦର୍ଶନ ପରେ ଏକ ଲେଖକସଭାରେ ରୁଷୀୟ ଓ ବିଦେଶାଗତ ଲେଖକମାନେ ମିଳିତ ହୋଇଥିଲେ। ପରସ୍ପର ମଧ୍ୟରେ ଭାବର ଆଦାନପ୍ରଦାନ ହୋଇଥିଲା। ପ୍ରତ୍ୟେକ ଲେଖକ ସଂଗରେ ଦ୍ୱିଭାଷିକମାନେ ଥିଲେ। ବିଭିନ୍ନ ଭାଷାର ଲେଖକମାନେ ନିଜ ନିଜ ଭାଷାରେ ବକ୍ତବ୍ୟ ପ୍ରକାଶକରୁଥିଲେ। ଦ୍ୱିଭାଷୀମାନେ ତାହାକୁ ରୁଷ୍ ଭାଷାରେ ଅନୁବାଦ କରି ଶ୍ରୋତାମାନଂକୁ ଶୁଣାଇଦେଉଥିଲେ। ମୋ ସଂଗରେ ମୋର ଦ୍ୱିଭାଷୀ ତାନିୟା ରହିଥିଲା। ସେ ମୋତେ ସବୁ କଥାରେ ସାହାଯ୍ୟ କରୁଥିଲା। ସେଦିନ ଅପରାହ୍ନରେ ନିଭା ନଦୀ କୂଳରେ ଏକ ବିରାଟ ଅଟ୍ଟାଳିକାରେ ଲେନିନ୍‌ଗ୍ରାଦ୍‌ର Writers Union ପକ୍ଷରୁ ଏକ ସମ୍ବର୍ଦ୍ଧନା ସଭା ଆୟୋଜିତ ହୋଇଥିଲା। ଏହିଠାରୁ ପୁଷ୍କିନ ଉତ୍ସବର ଆରଂଭ। ରୁଷର ବିଭିନ୍ନ ଅଂଗ ରାଷ୍ଟ୍ର ଏବଂ ବିଦେଶରୁ ଆସିଥିବା ସମସ୍ତ ଲେଖକଲେଖିକା ଏଥିରେ ଯୋଗ ଦେଇଥିଲେ। ମୁଁ ଏ ସଭାରେ ମୋର ପରିଚୟ ଇଂରାଜୀ ଭାଷାରେ ଦେଇଥିଲି। ତାନିୟା ତାହା ରୁଷଭାଷାରେ ଅନୁବାଦ କରି ସମସ୍ତଂକୁ ଶୁଣାଇଦେଇଥିଲା। ତତ୍‌ପରେ ମୁଁ ସୋଭିଏତ୍ ରୁଷ୍ ଓ ଭାରତ ମଧ୍ୟରେ ମୈତ୍ରୀବଂଧନ ସୁଦୃଢ଼ ହେବା ଉଚିତ ବୋଲି କହିଥିଲି। ଏହା ବିଶ୍ୱରେ ଏକ ରାଜନୈତିକ ଭାରସାମ୍ୟ ରକ୍ଷାକରିବା ସଂଗେ ସଂଗେ ଏକ ସାଂସ୍କୃତିକ ଆଦାନ ପ୍ରଦାନର ସ୍ୱର୍ଣସେତୁ ରଚନା କରିବ। ପୁଷ୍କିନଂକ କାବ୍ୟକବିତା ସଂବଂଧରେ ମୁଁ କହିଥିଲି ଯେ ଏହା ଜାତୀୟ ବୈପ୍ଳବିକ ଚେତନାକୁ ଉଦ୍‌ବୁଦ୍ଧ କରିବା ସଂଗେ ସଂଗେ ସାମଂତବାଦୀ ରାଜତଂତ୍ର ବିରୋଧରେ ସ୍ୱର ଉଠାଇଛି। ତାଂକ କାବ୍ୟକବିତା ମାନବିକତାର ଉଦ୍‌ବୋଧନ। ଏହା ସମଗ୍ର ବିଶ୍ୱକୁ ନୂତନ ମାର୍ଗ ଦର୍ଶନ ଦେଇଛି। ପୁଷ୍କିନଂକର ବ୍ୟକ୍ତିଗତ ଚରିତ୍ର ଏବଂ ବହୁନାରୀ ପ୍ରେମକୁ

ଲକ୍ଷ୍ୟ କରି ମୁଁ କହିଥିଲି "He king was in love with many she queens" ମୋର ଶେଷବାକ୍ୟରେ ଶ୍ରୋତାମଂଡଳୀ ମୁରୁକି ମୁରୁକି ହସୁଥାଂତି । ଜଣାଯାଉଥାଏ ଯେପରି ସମସ୍ତ ଅର୍ଥ ବୁଝିପାରୁନାହାଁତି । ମାତ୍ର ତାନିୟା ଯେତେବେଳେ ତାକୁ ରୁଷ୍ ଭାଷାରେ ଅନୁବାଦ କରି କହିଦେଲା ସେତେବେଳେ ସମସ୍ତ ଶ୍ରୋତା ପ୍ରାୟ ୧୫ ମିନିଟ୍ କାଳ ଠୋ ଠୋ ହସିବାକୁ ଲାଗିଲେ । ସମସ୍ତେ ଉଚ୍ଚପାଟିରେ ଏଭଳି ହାସ୍ୟରୋଳ କଲେ ଯେ ମୋ ଜୀବନରେ ଏପରି କେବେ ଏଥିପୂର୍ବରୁ ଘଟିନଥିଲା ।

ଏହି ସବଂର୍ଦ୍ଧନା ସଭାରେ ବିଶେଷଧରଣର ଭୋଜନ ଓ ପାନୀୟ ବ୍ୟବସ୍ଥା ହୋଇଥିଲା ।

୩୦-୫-୧୯୭୯ ବୁଧବାର । ଆଜି ଲେନିନ୍‌ଗ୍ରାଦ୍‌ରେ ଥିବା ଉଇଂଟର ପ୍ୟାଲେସ ବା ଶୀତପ୍ରାସାଦ ଦେଖିବାକୁ ଯାଇଥିଲୁ । ଏହା ୧୭୫୪-୧୭୬୪ ମଧ୍ୟରେ ଜାର୍ ପିଟର୍ ଦି ଗ୍ରେଟ୍ ତାଂକ କନ୍ୟା କ୍ୟାଥରିନ୍ ଲାଗି ଏହି ପ୍ରକାଂଡ ପ୍ରାସାଦଟି ନିର୍ମାଣ କରାଇଥିଲେ । ଇଟାଲୀରୁ ମାର୍ବଲ୍ ପଥର ଅଣାଯାଇ ଏହି ବୃହତ୍ ପ୍ରାସାଦ ନିର୍ମିତ ହୋଇଥିଲା । ଏହି ପ୍ରାସାଦ ନିର୍ମାଣରେ ସେତେବେଳେ ଅର୍ଦ୍ଧମିଲିୟନ୍ ରୁବଲ୍ ବ୍ୟୟିତ ହୋଇଥିଲା । ଏହାର ଗଠନବିନ୍ୟାସ ରୁଷୀୟ ବରାକ୍ ଶୈଳୀରେ ଶିଳ୍ପୀ ଫ୍ରାନ୍‌ସେସୋକେ ବର୍ତ୍ତିଲୋମେ ରାଷ୍ଟ୍ରେଲିଂକ ଦ୍ୱାରା (୧୭୬୦-୧୭୭୧) ପରିକଳ୍ପିତ ହୋଇଥିଲା । ଏହା ନିଭା ନଦୀକୂଳରେ ଅବସ୍ଥିତ । ଏହାର ଛାଇ ନିଭା ନଦୀ ଜଳରେ ପ୍ରତିବିଂବିତ ହୋଇ ନିଶୀଥ ସୂର୍ଯାଲୋକରେ ଯାଦୁକରି ପ୍ରଭାବ ବିସ୍ତାର କରିଥାଏ । ଏହାର ବିରାଟ ବିରାଟ ସ୍ତଂଭ ସୂକ୍ଷ୍ମ କାରୁକାର୍ଯରେ ମଂଡିତ । ବିଶାଳ ବାତାୟନଶ୍ରେଣୀ ସୂକ୍ଷ୍ମ ବରାକ୍ ସ୍ଥାପତ୍ୟର ପରାକାଷ୍ଠା ପ୍ରଦର୍ଶନ କରେ । ସ୍ତରେ ସ୍ତରେ ସୁନାର କାରୁକାର୍ଯ ଦର୍ଶକକୁ ଅଭିଭୂତ କରେ । ଏକ ପ୍ରକାଂଡ ପ୍ରକୋଷ୍ଠ ମଧ୍ୟରେ ବହୁ ଦର୍ଶନୀୟ ପ୍ରତ୍ନସାମଗ୍ରୀ ସଂରକ୍ଷିତ ହୋଇ ରହିଛି ।

ପ୍ରଥମେ ଏହାର ବିଶାଳ ଶିଢ଼ି ଦର୍ଶକର ଦୃଷ୍ଟି ଆକର୍ଷଣ କରେ । ଏହାର ସୁଦୀର୍ଘ ଓ ବିସ୍ତୃତ ଆୟତନ ଆଲୋକିତ ହୋଇ ସୂକ୍ଷ୍ମ ଚାରୁକଳାର ଭଂଡାର ମନେହୁଏ । କାଂଥଗୁଡ଼ିକର ବାତାୟନଶ୍ରେଣୀରେ ଅପୂର୍ବ ରମ୍ୟକଳାର ଶୃଙ୍ଖଳା ଓ ପରିପାଟୀ ସ୍ତରେ ସ୍ତରେ ଫୁଟି ଉଠିଛି । ପ୍ରତ୍ୟେକ ପ୍ରକୋଷ୍ଠର ଗୋଲାକାର ଛାତ ମଧ୍ୟ ଚିତ୍ରାଂକିତ । ପ୍ରଥମେ ପ୍ରାଚୀନ ରୋମ୍‌ର ସଂସ୍କୃତି ଏବଂ କଳା, ତା ପରେ ପ୍ରାଚୀନ ଗ୍ରୀସ୍‌ର ସଂସ୍କୃତି ଏବଂ କଳା, ଇଟାଲୀର ରୋମୀୟ ପ୍ରାଚୀନ କଳା, ତାପରେ ସୋଭିଏତ୍ ରାଜ୍ୟ, ମଧ୍ୟ-ଏସିଆ ଓ ଇରାନ୍ କଳା, ରୁଷୀୟ ପ୍ରାଚୀନ ଇତିହାସର ସୂଚନା, ଜର୍ମାନ୍ ଦେଶର କଳା ସ୍ଥାପତ୍ୟ ଯୁଗାନୁକ୍ରମେ ବିଭିନ୍ନ ବିଭାଗରେ ପ୍ରଦର୍ଶିତ ହୋଇଛି । (ତତ୍ରୈବ)

୧୮୩୭ ମସିହାର ଏକ ଶୀତାର୍ତ୍ତ ରାତ୍ରିରେ ଆକସ୍ମିକ ଭାବରେ ନିଆଁ ଲାଗି ପ୍ୟାଲେସ୍‌ର ବହୁ ମୂଲ୍ୟବାନ୍ ଦ୍ରବ୍ୟ ପୋଡ଼ି ପାଉଁଶ ହୋଇଯାଇଥିଲା । ମୂଳ ପ୍ରାସାଦଟି ମଧ୍ୟ ଅଗ୍ନିଦଗ୍ଧ ହୋଇଥିଲା । ସେହି ଦୁର୍ଘଟଣା ପରେ ପ୍ରାୟ ଆଠହଜାର ଶିଳ୍ପୀଂକ

ସହାୟତାରେ ପ୍ୟାଲେସ୍‌ର ପୁନର୍ବିନ୍ୟାସ କାର୍ଯ ଆରଂଭ ହେଲା । ଶିଳ୍ପୀ ଷ୍ଟାଷୋଭଂକ ଉପରେ ଏହି ପୁନର୍ନିର୍ମାଣ କାର୍ଯ ନ୍ୟସ୍ତ କରାଯାଇଥିଲା ।

ଷ୍ଟାସୋଭ ଏହି ପ୍ରାସାଦର ମୂଳ ଗଠନ କଳା ପ୍ରତି ଦୃଷ୍ଟି ରଖି ଆବଶ୍ୟକୀୟ ସଂସ୍କାର କରିଥିଲେ । Staircase ରଙ୍ଗ ବ୍ୟତୀତ ସେଥିରେ Granite ବ୍ୟବହାର କରିଥିଲେ । ଶିଳ୍ପୀ ରାଷ୍ଟ୍ରେଲଂକ ସମୟରେ ଏହା Ambassadorial Staircase ନାମରେ ପରିଚିତ ଥିଲା । ପରବର୍ତ୍ତୀ କାଳରେ ଏହାକୁ Jordan Staircase କୁହାଯାଇଥିଲା । ସେହି Staircase ବାଟେ ସମ୍ରାଟଂକ ପରିବାର ପାଇଁ ନେଭା ନଦୀକୁ ଯାତାୟାତ କରିବାର ପଥ ମୁକ୍ତ ଥିଲା । Staircaseର ଉପରକୁ ଉଠିଗଲେ ସେଠାରେ Field Marshalଙ୍କ ପ୍ରକୋଷ୍ଠ ଆଖି ଆଗରେ ପଡ଼ିଥାଏ । ସେଥିରେ ଷୋଡ଼ଶ ଏବଂ ଅଷ୍ଟାଦଶ ଶତାବ୍ଦୀର ଇଉରୋପୀୟ କଳାକାରମାନଂକର ଅମୂଲ୍ୟ କଳାକୃତି ପ୍ରଦର୍ଶିତ ହୋଇଛି । ନେଭା ନଦୀ କୂଳକୁ ଲାଗି ଏକ ସେଲୁନ୍ ନିର୍ମିତ ହୋଇଥିଲା । ତାହା କଳାକାର ଷ୍ଟାପୋଭଂକ ଦ୍ୱାରା ପରିକଳ୍ପିତ । (ତତ୍ରୈବ)

**ସଂଗ୍ରହାଳୟ :**

ସେହି ବିରାଟ ଅଟ୍ଟାଳିକାର ପରିସର ମଧ୍ୟରେ Old Hermitage ଓ New Hermitage ପ୍ରତିଷ୍ଠିତ । ଏହି Hermitage ୧୭୬୪ରେ ସ୍ଥାପିତ ହୋଇଥିଲା । ଏହାପରେ ୧୭୭୧-୮୭ରେ Old Hermitage ଏବଂ ପରେ New Hermitage ନିର୍ମିତ ହୋଇ ପ୍ରାସାଦର ଶ୍ରୀବୃଦ୍ଧି ସାଧନ କରାଯାଇଥିଲା । ଜୀବଜଂତୁ, ପୁଷ୍ପଲତା ଏବଂ ବିଭିନ୍ନ କାଚର ସୂକ୍ଷ୍ମ କଳାକୃତି ସୁସଜ୍ଜିତ କରି ରଖାଯାଇଥିଲା ।

"ସଂଗ୍ରହାଳୟର ପ୍ରକୋଷ୍ଠଗୁଡ଼ିକର ଆଲୋକ ରଶ୍ମିରେ ଉଜ୍ଜ୍ୱଳ । Fountain of tearsରୁ ସୁସଜ୍ଜିତ ଜଳବିଂଦୁର ପତନ ଦୃଶ୍ୟ ଅବିସ୍ମରଣୀୟ ।" Pavilion ନିକଟରେ ନିର୍ମିତ ଦୋଳାୟମାନ ଉଦ୍ୟାନ (Hanging Garden) ମଧ୍ୟ ଏକ ଦର୍ଶନୀୟ ବସ୍ତୁ । ସଂଗ୍ରହାଳୟର ମାର୍ବଲ ନିର୍ମିତ ଗଠନକଳା ସହିତ ପ୍ରତିଦ୍ୱନ୍ଦ୍ୱିତା କରି ଦୋଳାୟମାନ ଉଦ୍ୟାନ ଯେପରି ଅନବଦ୍ୟ ପ୍ରକୃତିର ଏକ ସଚେତନ ଅଂଶ ରୂପେ ପ୍ରତିକ୍ଷଣ ରୂପାଲୋକରେ ଝଲସିତ ହେଉଛି । (ତତ୍ରୈବ)

କୃତ୍ରିମ ଝରଣାର ଶୋଭନୀୟ ତରଳ ଦୃଶ୍ୟ କଳା ଓ ସ୍ଥାପତ୍ୟର ଆଉ ଏକ ମନୋଜ୍ଞ ପ୍ରତିଫଳନ । ଶୀତ ଓ ଗ୍ରୀଷ୍ମଋତୁରେ ଏହି ବିରାଟ ପ୍ରାଚୀନ ସଂଗ୍ରହାଳୟର ଉଭୟ ଆଭ୍ୟଂତରୀଣ ଏବଂ ବହିର୍ଦୃଶ୍ୟ ମଧ୍ୟ ଭିନ୍ନ ଭିନ୍ନ ରୂପ ଧାରଣ କରିଥାଏ । ଶୀତଦିନେ ଦୋଳାୟମାନ ଉଦ୍ୟାନର ବୃକ୍ଷଲତା ବରଫରେ ଆବୃତ ହୁଅଂତି । ଗ୍ରୀଷ୍ମଦିନେ ଏହି ବରଫ ତରଳିବାକୁ ଆରଂଭକରେ । ଏହି ଉଭୟ ଦୃଶ୍ୟ ଅତି ମନୋରମ ।

ପିଟର ଦି ଗ୍ରେଟ୍‌ଙ୍କ ନାମରେ ଉତ୍ସର୍ଗୀତ "ପିଟର ଦି ଗ୍ରେଟ୍ ଗ୍ୟାଲେରୀ" ବହୁ ଇଉରୋପୀୟ କଳାକୃତିରେ ଋଦ୍ଧିମଂତ । ସେହିପରି 'ରୋମାନଭ' ଗ୍ୟାଲେରୀ ମଧ୍ୟ ରୋମୀୟ କଳାସଂପଦରେ ପୂର୍ଣ୍ଣ । ଅଷ୍ଟାଦଶ ଶତାବ୍ଦୀର ୧୭୬୪ ମସିହାରେ ତତ୍ ଏବଂ

ଫ୍ଲେମିସ୍ ସ୍କୁଲର ବହୁ ମୂଲ୍ୟବାନ୍ ଛବି ଏହି ସଂଗ୍ରହାଳୟକୁ ଅଣାଯାଇଥିଲା । ବର୍ଲିନ୍‌ର Gotzhowski ନାମରେ ଜଣୈକ ବ୍ୟବସାୟୀଂକଠାରୁ ଏହି ଚିତ୍ରସମୂହ କ୍ରୟକରାଯାଇଥିଲା । ଏହି କ୍ରୟ ଏବଂ ସଂଗ୍ରହ ହିଁ ସଂଗ୍ରହାଳୟର ଅଭିବୃଦ୍ଧି ଦିଗରେ ପ୍ରଥମ ବଳିଷ୍ଠ ପଦକ୍ଷେପ ଥିଲା । ପରବର୍ତ୍ତୀ କାଳରେ ବିଭିନ୍ନ ବ୍ୟକ୍ତିଂକ ସଂଗ୍ରହ ଏହି ମିଉଜିୟମକୁ ଅଣାଯାଇଥିଲା, ଯଥା – କାଉଂଟ କୋବେନଟରି (୧୭୬୮), କାଉଂଟ ବ୍ରୁହି (୧୭୬୯), ପାୟରେ କ୍ରୋଜାଲ (୧୭୭୨), ସାର୍ ରବର୍ଟ ୱାଲପୋଲ୍ (୧୭୭୯), କାଉଂଟ ବୋଡଲିନ୍ (୧୭୮୧) । ପୂର୍ବେ ଏହି ସବୁ ସଂଗୃହୀତ ଦର୍ଶନୀୟ ପଦାର୍ଥ କେବଳ ସମ୍ରାଟଂକ ପରିବାରବର୍ଗଂକ ଦର୍ଶନ ପାଇଁ ସଂରକ୍ଷିତ ଥିଲା । ଯେଉଁ ଭବନରେ ଏହି ଦର୍ଶନୀୟ ପଦାର୍ଥସମୂହ ସଂରକ୍ଷିତ ହେଉଥିଲା ତାହାର ନାମ 'ହରମିଟେଜ୍' ରଖାଯାଇଥିଲା – ଏହାହିଁ ଥିଲା ମିଉଜିୟମ୍ । ଏବକାଳରେ ମଧ୍ୟ ଏହାର ନାମ 'ହରିମିଟେଜ୍' ଏବଂ ପ୍ରତିବର୍ଷ ତିନି ମିଲିୟନ୍ ପର୍ଯଟକ ଏହା ପରିଦର୍ଶନ କରିଥାଂତି । (ତତ୍ରୈବ)

**ମୟୂର ଘଂଟା :**

ପାଭିଲିୟାନ୍ ପ୍ରକୋଷ୍ଠରେ ଏକ ମୟୂର ଘଂଟା (Peacock Clock) ସଂରକ୍ଷିତ । ଏହା ଅଷ୍ଟାଦଶ ଶତାବ୍ଦୀର ଜେମସ୍ କୋକସଂକ ଦ୍ୱାରା ନିର୍ମାୟିତ ହୋଇଥିଲା । ଟଉରିଡାର ପ୍ରିନସ୍ ପୋଟେସ୍ କିନ୍ ୧୭୮୦ ମସିହାରେ ଏହାକୁ କ୍ରୟ କରି କ୍ୟାଥେରିନ୍ ଦି ଗ୍ରେଟ୍‌କୁ ଉପହାର ଦେଇଥିଲେ । ମୟୂର ଘଂଟା ନିର୍ମାଣକୌଶଳ ଉଲ୍ଲେଖଯୋଗ୍ୟ । କାଠି ମଧ୍ୟରେ ଏକ ଓକ୍ ବୃକ୍ଷ ଦେହରେ ପକ୍ଷୀ ଏବଂ ଏକ ଗୁଂଡୁଚି ମୂଷାର ଚିତ୍ର, ମଧ୍ୟଭାଗରେ ଉଡ୍ଡୀୟମାନ ଅବସ୍ଥାରେ ଏକ ଘୂର୍ଣନଶୀଳ ମୟୂର ଏବଂ ସମୟ ସହିତ ଛଂଦ ସୃଷ୍ଟି କରି ଏହା ଘଂଟା ମିନିଟ୍ ନିର୍ଦ୍ଦେଶ କରିଥାଏ । ଏହି ଘଂଟାର ନିର୍ମାଣକୌଶଳ ବଡ଼ ଚମତ୍କାର । ଘଂଟା ବାଜିବା ସମୟରେ ସେଥି ମଧ୍ୟରେ ଥିବା ପକ୍ଷୀ ଏବଂ cockର ସହଯୋଗ ମଧ୍ୟ ଦେଖିବାର କଥା । (ତତ୍ରୈବ)

Hermitageରେ ଅନ୍ୟ ଏକ Staricase ରହିଛି । ତାହାର ନାମ Councillors Staircase । ଏହି ବାଟ ଦେଇ ପାରିଷଦବର୍ଗ ସମ୍ରାଟଂକ ମଂତ୍ରଣା ବୈଠକରେ ଉପସ୍ଥିତ ହେଉଥିଲେ । ଏହାର ଅପରପାର୍ଶ୍ୱରେ ପୁରୁଣା ହରମିଟେଜ୍‌ର ଆଉ ଏକ ଅଂଶ – ସେଥିରେ ଇଟାଲୀୟ ଚିତ୍ରକଳା ପ୍ରଦର୍ଶିତ । ଏହି ଷ୍ଟେୟାର କେଶ୍‌ରେ ଅନ୍ୟ ଏକ ଚିତ୍ର ପ୍ରଦର୍ଶିତ, ତାହା ହେଉଛି ରୁଷୀୟ ଯୁବଶକ୍ତିର ଅସୀମ ଉତ୍ସାହ ଏବଂ ଉଚ୍ଛ୍ୱାସର ପ୍ରତୀକ । ଏହା ଗ୍ରାବିଏଲ୍ ଫ୍ରାନ୍‌ସିସ୍ ଡଏନ ନାମକ ଜଣୈକ ଫରାସୀ ଚିତ୍ରକରଂକ କଳାକୃତି । ଏହି Staircaseରେ ଆଉ ଏକ ସ୍ତରରେ ଏକ ପ୍ରକାଂଡ Malachite vase ରଖାଯାଇଛି । ଏହା ୧୮୪୩ ମସିହାରେ ଏକ ପରିନ୍‌ବର୍ଗ କାରଖାନାରେ ନିର୍ମିତ ହୋଇଥିଲା । ଏହା ସ୍ୱତଂତ୍ର ରୁଷୀୟ ମୋଜଇକ୍ ପ୍ରଣାଳୀରେ ନିର୍ମିତ । ଏହି କାରଖାନା ପିଟର ଦି ଗ୍ରେଟଂକ ସମୟରେ ନିର୍ମିତ ହୋଇଥିଲା । "Hall of Twenty Columns"ରେ ଇଟାଲୀୟ vase

ସହିତ । ସେହି Hallର ଆଭ୍ୟଂତରୀଣ ସାଜସଜ୍ଜା ଏବଂ ଅଳଙ୍କରଣ କେବଳ ମୂଲ୍ୟବାନ୍ ଗ୍ରାନାଇଟ୍ ପଥର ସାହାଯ୍ୟରେ କରାଯାଇଛି । ଏହାଛଡ଼ା ବିଖ୍ୟାତ Kohvan vase ବା କୁଂଡଟି – ଏହା ରୁଷରେ ମିଳୁଥିବା ସୁଂଦର ସୁଂଦର ପଥରଦ୍ୱାରା ଗଢ଼ାଯାଇଛି । ଏହି ଶିଳାଖଂଡ ଯେଉଁଠାରେ ଆବିଷ୍କୃତ ହୋଇଥିଲା ସେହିଠାରେ ରୁଷୀୟ ପଥରଶିଳ୍ପୀମାନେ ତିନିବର୍ଷ କାଳ ତାର ଗଠନ କାର୍ଯରେ ଲାଗିରହିଥିଲେ । ତେତିଶ ମାଇଲ୍ ଦୂରବର୍ତ୍ତୀ କାରଖାନାକୁ ନେବା ଲାଗି ସହସ୍ରାଧିକ ଶ୍ରମିକ ନିଯୁକ୍ତ ହୋଇଥିଲେ । ଶିଳ୍ପୀମାନେ ବାରବର୍ଷ ଧରି ତା ଉପରେ କାର୍ଯ କରିଥିଲେ । ତାକୁ ପିଟର୍ସବର୍ଗକୁ ଆଣିବା ଲାଗି ଏକଶତ ଷାଠିଏ ଅଶ୍ୱ ନିୟୋଜିତ ହୋଇଥିଲେ । ରୁଷ୍ ଦେଶର ପାଷାଣ ଶିଳ୍ପର ଏହା ଉତ୍କୃଷ୍ଟ ନିଦର୍ଶନ । (ତତ୍ରୈବ) ।

ଲେନିନ୍‌ଗ୍ରାଦ୍ ଶୀତପ୍ରାସାଦ ଓ Hermitage ସଂଗ୍ରହାଳୟ କେବଳ ରୁଷ୍ ନୁହେଁ ଆଂତର୍ଜାତିକ ଚିତ୍ରଶାଳା ରୂପେ ବିଶ୍ୱରେ ପ୍ରସିଦ୍ଧ । ଏଥିରେ ପ୍ରାଚୀନ ସଭ୍ୟତାର ବହୁ କାଳଜୟୀ କଳାକୃତି ସୁରକ୍ଷିତ ହୋଇ ରହିଛି । ସେସବୁ ମଧ୍ୟରୁ କେତୋଟି ଉଲ୍ଲେଖଯୋଗ୍ୟ ହେଲା, ଯଥା – Statue of Jupiter (ରୋମାନ୍ ରାଷ୍ଟ୍ରରକ୍ଷକ ଏବଂ ଦେବତାମାନଙ୍କର ନେତା, Venus (ପ୍ରେମ ଓ ସୌଂଦର୍ଯର ଦେବତା), ଗ୍ରୀକ୍ ସ୍ଥାପତ୍ୟର Statue of Athena, ତାଛଡ଼ା ଇଟାଲୀୟ କଳାର ନିଦର୍ଶନ, Madona with flower, Judith ।

ଆସିରିୟାନ୍ ସୈନ୍ୟବାହିନୀ Judithଙ୍କ ରାଜ୍ୟ ଜେରୁଜଲମ୍ ଆକ୍ରମଣ କଲାବେଳେ Judith ତାଂକ ସେନାପତିଂକ ଶିବିରକୁ ଯାଇ ତାଂକୁ ନିଜ ସୌଂଦର୍ଯରେ ବଶୀଭୂତ କରିଥିଲେ, ପରେ ତାଂକୁ ହତ୍ୟାକରିଥିଲେ । ଅନ୍ୟ ଏକ ଚିତ୍ର ହେଉଛି Titian Danne । ଏହିପରି ବହୁ ପ୍ରାଚୀନ ଚିତ୍ରକଳା Hermitageର ଶୋଭା ଓ ଗୌରବ ବୃଦ୍ଧି କରିଛି ।

ଆଧୁନିକ ଚିତ୍ରଶିଳ୍ପୀମାନଂକର ବହୁ ଚିତ୍ର ମଧ୍ୟ Hermitageରେ ସଂଗୃହୀତ ହୋଇରହିଛି । ସେମାନଂକ ମଧ୍ୟରେ ପିକାଶୋ, ହେନେରୀ ପ୍ରଭୃତି ଉଲ୍ଲେଖଯୋଗ୍ୟ ।

Winter palace ଓ Hermitage ପ୍ରଭୃତି ପରିଦର୍ଶନ କଲାବେଳେ ଓଡ଼ିଶାର ଅଧ୍ୟାପକ ଡଃ ଗୋପାଳ ଚଂଦ୍ର ମିଶ୍ର ଏବଂ ଅନ୍ୟାନ୍ୟ ଦେଶର କେତେକ ଲେଖକ ମୋ ସଂଗରେ ଥିଲେ । ଏହି ବହିର ଅନେକ ବିବରଣୀ ଡଃ ମିଶ୍ରଂକ ପୁସ୍ତକ ''ରୁଷ୍ ଅନୁଭୂତି''ରୁ ଗୃହୀତ ।

**ଡିସେଂବରିଷ୍ଟ ବିପ୍ଳବ :**

ଡିସେଂବରିଷ୍ଟ ବିପ୍ଳବ ବିଷୟରେ ପୂର୍ବରୁ ଟିକିଏ ସୂଚନା ଦିଆଯାଇଛି । ଏହି ବିପ୍ଳବର ନିଆଁ ୧୪-୧୨-୧୮୨୫ ତାରିଖରେ ଜଳିଉଠିଥିଲା । ସେଦିନ ରୁଷ୍‌ର ବିପ୍ଳବୀ ଜନତା ଗଣତଂତ୍ର ପ୍ରତିଷ୍ଠା ପାଇଁ ଅଭିଯାନ କରିଥିଲେ । ଲେନିନ୍‌ଗ୍ରାଦ୍‌ର ସଶସ୍ତ୍ର ଜନତାର ଏକ ଅଂଶ ରାଜତଂତ୍ରର ପୀଠସ୍ଥଳୀ ଶୀତପ୍ରାସାଦ ଆକ୍ରମଣ କରିଥିଲେ । ଡିସେବଂର ମାସରେ ଏହା ସଂଗଠିତ ହୋଇଥିବାରୁ ଏହାକୁ 'ଡିସେଂବର ବିପ୍ଳବ' କୁହାଯାଇଥାଏ । ସେଦିନ ଜାର୍ ନିକୋଲାସ୍ (ପ୍ରଥମ) ଦେଶର ଶାସନଭାର ଦାୟିତ୍ୱ

ଗ୍ରହଣ କରିଥାଂତି । ସେ ଦୃଢ଼ହସ୍ତରେ ଏହି ବିଦ୍ରୋହ ଦମନ କରିଥିଲେ । ଅନେକ ବିଦ୍ରୋହୀ ଗୁଳିମାଡ଼ରେ ନିହତ ହୋଇଥିଲେ । ପାଂଚଜଣ ବିଦ୍ରୋହୀ ନେତାଂକୁ ଫାଶୀଦିଆଯାଇଥିଲା ।

**ଲେନିନ୍‌ଗ୍ରାଦ୍ ଅବରୋଧ :**

ଲେନିନ୍‌ଗ୍ରାଦ୍ ସ୍ମାରକୀପୀଠ ଏବଂ ତତ୍‌ସଲଂଗ୍ନ ସଂଗ୍ରହଶାଳା ଦେଖିଲାବେଳେ ଆମ ମନରେ ଏକ କରୁଣ ଏବଂ ଭୟାବହ ଦୃଶ୍ୟ ଉଂକିମାରୁଥିଲା । ନାଜୀ ଜର୍ମାନବାହିନୀ ଏହି ଲେନିନ୍‌ଗ୍ରାଦ୍ ନଗରୀକୁ ପ୍ରାୟ ୯୦୦ ଦିନ ଅବରୋଧ କରି ରଖିଥିଲେ । ଲେନିନ୍‌ଗ୍ରାଦ୍ ରୁଷ୍ ଦେଶରୁ ସଂପୂର୍ଣ ବିଛିନ୍ନ ହୋଇଯାଇଥିଲା । ଖାଦ୍ୟପେୟ ବାହାରୁ ଆସିବା ସଂପୂର୍ଣ ବଂଦହୋଇଯାଇଥିଲା । ଲୋକେ ଖାଇବାକୁ ନପାଇ ଜୋତାର ଶୁକ୍‌ତାଲା ସିଝାଇ ଖାଇଥିଲେ । ପ୍ରତିଦିନ କୁଢ଼ କୁଢ଼ ଦେଶପ୍ରେମୀଂକର ମୃତଦେହରେ ସମଗ୍ର ସହର ଭରିଯାଇଥିଲା । ମାତୃଭୂମିର ସୁରକ୍ଷା ପାଇଁ ରୁଷ୍‌ର ଜନତା କିପରି ନୀରବରେ ପ୍ରାଣବଳି ଦେଇପାରେ ଏହା ତହିଁର ଏକ ମହନୀୟ ଦୃଷ୍ଟାଂତ । ରୁଷ୍ ଏବଂ ସମଗ୍ର ବିଶ୍ୱର ଶାଂତିକାମୀ ଜନତାର ଏହି ସ୍ମାରକୀ ପୀଠ ଆଜି ଏକ ଆତ୍ମଉତ୍ସର୍ଗର ତୀର୍ଥଭୂମି ରୂପେ ପରିଗଣିତ ।

ସେଦିନର ୧୨ ବର୍ଷର ଝିଅ ତାନିଆ ନିଜ ଆତ୍ମଲିପିରେ ଏହି ବର୍ବର ଆକ୍ରମଣର ଲୋମହର୍ଷଣକାରୀ କାହାଣୀ ଲିପିବଦ୍ଧ କରିଯାଇଥିଲା । ଶେଷରେ ତାନିଆ ମଧ ଅନାହାରରେ ଏବଂ ପ୍ରଚଂଡ ଶୀତ ଓ ବରଫର କରାଳ ଆବେଷ୍ଟନୀ ମଧରେ ଆତ୍ମବଳି ଦେଇଥିଲା । ତାନିଆର ଡାଏରିଟି ତାର ଭଉଣୀ ନୀନାସାଭିଚେଭା ଆବିଷ୍କାର କରିଥିଲା । ନୀନା ଦୂରରେ ଏକ କାରଖାନାରେ କାମକରୁଥିଲା । ତେଣୁ ସେ ନାଜୀ ସୈନ୍ୟମାନଂକ ଆକ୍ରମଣରୁ ରକ୍ଷାପାଇଯାଇଥିଲା । ସେ ଲେନିନ୍‌ଗ୍ରାଦ୍ ଅବରୋଧ ଶେଷ ହେବା ପରେ ନିଜ ଘରକୁ ଫେରି ଦେଖିଲା ତାଂକ ପରିବାର କେହି ଜୀବିତ ନାହାଂତି । ସେ ତାର ପ୍ରାଣପ୍ରିୟ ଭଉଣୀ ତାନିଆର ଡାଏରିଟି ଆବିଷ୍କାରକରିଥିଲା । ସେଥିରୁ ବିଶ୍ୱ ଜାଣିଲା କିପରି ଏକ ୧୨ ବର୍ଷର ଛୋଟଝିଅ ଅଭାବ ଓ ଅନାହାର ଏବଂ ପଶୁବଳର ଶିକାର ହୋଇ ତିଳେ ତିଳେ ପ୍ରାଣବଳି ଦେଇପାରେ । ତାନିଆ ଡାଏରିରୁ କେତେକାଂଶ ତଳେ ଦିଆଗଲା । ''ମୋତେ ଭୟଲାଗୁଛି । ଚତୁର୍ଦ୍ଦିଗରେ ବୋମାବର୍ଷଣ ଚାଲିଛି । ୧୯୪୧ ମସିହା ଡିସେଂବର ମାସ ୨୮ ତାରିଖ ମଧାହ୍ନ ୧୨.୩୦ ମିନିଟ୍‌ରେ ଝିନିଆ ଚାଲିଗଲା । ଜେଜେ ମା' ଜାନୁୟାରୀ ମାସ ୨୫ ତାରିଖ ୩ଟା ସମୟରେ ଚାଲିଗଲେ । ୧୯୪୨ ମାର୍ଚ୍ଚ ୧୭ ତାରିଖ ବଡ଼ିଭୋର ସମୟରେ ଲିଓକାରର ବିଦାୟ । ଏହାପରେ ଏପ୍ରିଲ ମାସ ୧୩ ତାରିଖ ଦୁଇଟା ସମୟରେ ଭାଷିଆଦାଦିଂକର ମୃତ୍ୟୁ । ମଇ ମାସ ୧୦ ତାରିଖ ଅପରାହ୍ନ ୪ଟା ସମୟରେ ଲିଓସା ଦାଦି ଆଖିବୁଜିଥିଲେ । ଆଉ ସେହି ମଇ ମାସ ୧୩ ତାରିଖ ସକାଳ ୭.୩୦ ମିନିଟ୍‌ରେ ମୋର ଜନ୍ମଦାତ୍ରୀ ଜନନୀଂକର ବିଦାୟ ।'' (ତତ୍ରୈବ)

ତାନିଆର ଏହି ଆତ୍ମଲିପି ଏକ ନିରୀହ ବାଳିକାର ଲୁହ ଆଉ ଲହୁରେ ଲେଖା ଜୀବନ ଆଉ ମୃତ୍ୟୁ ମଧ୍ୟରେ ଦୋଳାୟମାନ ଏକ ମହାନ୍ ପ୍ରାଣର ଶେଷଉଚ୍ଚାରଣ । ସତେଯେପରି ଏହି ଡାଏରିର ଶେଷ ନାହିଁ । ଏହି ଡାଏରିର ଶେଷ ଅଂଶରେ ଲେଖାଥିଲା – "ସାଭିଚେଭମାନେ ମରିଗଲେ । ଗ୍ରାମବାସୀ ସାଇପଡ଼ିଶା ସମସ୍ତେ ମରିଗଲେ । କେବଳ ରହିଗଲା ତାନିଆ ।" ତାନିଆ ମଧ୍ୟ ଶେଷରେ ମରିଯାଇଥିଲା । ତାର ମୃତ୍ୟୁ ଲଗ୍ନ ଲେଖିବା ପାଇଁ ସେଠାରେ କେହି ବଂଚିନଥିଲେ । (ତତ୍ରୈବ)

୧୯୪୫ ମସିହା ଏପ୍ରିଲ ୨୦ ତାରିଖରେ ମୁଁ ମୋର ବର୍ଲିନ୍ କବିତାରେ ତାନିଆ ବିଷୟରେ ଯାହା ଲେଖିଥିଲି, ତାହା ମୋର ପାଂଡୁଲିପି ପୁସ୍ତକରୁ ଉଦ୍ଧାରକରୁଛି ।

"ଶ୍ମଶାନର ପୁଷ୍ପ ପରି ଜୀବନର ସେ ଯେ ରକ୍ତ-ଶିଖା
ତାହାରି ସପନ ଦିନେ ରୁଷିଆର ଗରିଲା ବାଳିକା
ଦେଖିଥିଲା ଅମାବାସ୍ୟା ତୀରେ,
ଲୋହିତ ସକାଳ
ଦେଖିଯାଏ ପୃଥିବୀର ରଣକ୍ଷତ,
କରୁଣ କଂକାଳ
ଦେଖିଯାଏ ଚିରତଂନ ପ୍ରାଣ
ନାଜିର ଜହ୍ଲାଦ ହାତେ ହୋଇ
ନାହିଁ ଯାହାର ନିର୍ବାଣ ।
ଜୟର ମୁକୁଟ ସେ ଯେ ଢାଳିଥିଲା 'ତାନିଆ'ର ଶିରେ
ମୃତ୍ୟୁ ନାଇଁ ମୃତ୍ୟୁ ତାର ନାଇଁ,
ତାହାରି ସପନ ଦିନେ ଦେଖିଥିଲା ସାଥୀ ପାଣିଗ୍ରାହୀ"....

ନାଜୀବାହିନୀ ଲେନିନ୍‌ଗ୍ରାଡ୍ ନଗରୀ ଉପରେ ୧୭,୦୦୦ ବୋମା, ୨୫,୦୦୦ ସେଲ୍ ନିକ୍ଷେପ କରିଥିଲେ । ୧୫୦୦ ଟ୍ୟାଂକ, ୧୨୦୦ ଏୟାର୍ କ୍ରାଫଟ ଏହାକୁ ଦୋହଲାଇ ପାରିନଥିଲା । ଏହି ଅବରୋଧ ଫଳରେ ପ୍ରାୟ ୮ ଲକ୍ଷ ଲୋକ ମରିଥିବାର ଜଣାଯାଏ । ଲୋକେ ଖାଦ୍ୟ ଅଭାବରୁ ଜୋତାର ଚମଡ଼ା ମଧ୍ୟ ସିଝାଇ ଖାଇ ଶତ୍ରୁ ବିରୋଧରେ ୯୦୦ ଦିନ ଧରି ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇଥିଲେ । ୧୯୪୧ ସାଲ୍ ଜୁନ୍ ମାସ ୨୬ ତାରିଖ ହିଟଲର୍ ଶାଂତିପ୍ରୟାସୀ ନଗରବାସୀଂକ ଉପରେ ଅବିଶ୍ରାଂତ ବୋମାବର୍ଷଣ ଆରଂଭ କରିଦେଲା । ନାଜୀବାହିନୀର ଏକ ଅଂଶ ଲେନିନ୍‌ଗ୍ରାଡ୍ ପ୍ରାଚୀର ନିକଟରେ ଅସ୍ତ୍ରଶସ୍ତ୍ର ଧରି ଉପସ୍ଥିତ ହେଲେ । ସେହିଦିନଠାରୁ ସେମାନେ ଲେନିନ୍‌ଗ୍ରାଡ୍ ଉପରେ ବର୍ବର ଆକ୍ରମଣ ଚଳାଇଲେ । ସେହିବର୍ଷ ସେପ୍‌ଟେଂବର ମାସ ୮ ତାରିଖରୁ ଲେନିନ୍‌ଗ୍ରାଡ୍ ନଗରୀ ହେଲା ବଂଦୀ । ଲେନିନ୍‌ଗ୍ରାଡ୍ ସହିତ ସୋଭିଏତ୍ ରୁଷର ସମସ୍ତ ଅଂଚଳ ବିଛିନ୍ନ ହୋଇଗଲା । ବାହାରୁ ଖାଦ୍ୟଦ୍ରବ୍ୟ ଆସିବା ବଂଦହୋଇଗଲା, ତଥାପି ସେମାନେ ଶତ୍ରୁ ଆଗରେ ମୁଂଡ ନୁଆଁଇନଥିଲେ । ଅଭାବ ଅନଟନ ଓ ଖାଦ୍ୟ ଅଭାବରେ

ସେମାନେ ବିଚଳିତ ହେବା ଦୂରେ ଥାଉ ବରଂ ଅଧିକ ବିକ୍ରମରେ ଜନ୍ମଭୂମିକୁ ଶତ୍ରୁବାହିନୀ ହାତରୁ ରକ୍ଷା କରିବା ପାଇଁ ଦଳକୁ ଦଳ ପ୍ରାଣବଳି ଦେଇଥିଲେ। ସେମାନେ ଦେଶମାତୃକାର ମୁକ୍ତି ପାଇଁ ସଂଗଠିତ ହେବାକୁ ଲାଗିଲେ। ଅନାହାର ଓ ଗୁଳିଗୋଳାର ଅଭାବ ସତ୍ତ୍ୱେ ସେମାନଂକର ମନୋବଳ ଓ ସାହସ ଅତୁଟ ଥିଲା। 'କର' ବା 'ମର' ଥିଲା ସେମାଂନକର ମୂଳମଂତ୍ର। ଏଣେ ଜର୍ମାନୀ ନାଜୀସୈନ୍ୟମାନଂକ ସହିତ ଆଉ ଦଳେ ନାଜୀ ସୈନ୍ୟ ଆସି ଯୋଗ ଦେଲେ। ଫିନ୍‌ଲ୍ୟାଂଡରୁ ମଧ ଲେନିନ୍‌ଗ୍ରାଦ୍ ଉପରେ ଗୁଳିବର୍ଷଣ ହେଲା। ହିଟଲର୍ ଲେନିନ୍‌ଗ୍ରାଦ୍‌ର ପତନ ଶୀଘ୍ର ଘଟିବ ଏବଂ ତା ଫଳରେ ସୋଭିଏତ୍ ରୁଷ୍‌ର ମେରୁଦଂଡ ଭାଂଗିଯିବ ବୋଲି ଏକପ୍ରକାର ନିଶ୍ଚିତ ଥିଲା। ସେ ବିଜୟ ଉତ୍ସବ ପାଳନ ପାଇଁ ଅଷ୍ଟୋରିଆ ହୋଟେଲରେ ଏକ ଭୋଜିସଭାର ଆୟୋଜନ ମଧ କରିଥିଲା। ଅତିଥିମାନଂକୁ ନିମଂତ୍ରଣପତ୍ର ମଧ ପଠାଯାଇଥିଲା। ମାତ୍ର ଭୋଜି ହୋଇପାରିଲା ନାହିଁ, ଅତିଥିମାନେ ଆସିପାରିଲେ ନାହିଁ। ତଥାପି ଲେନିନ୍‌ଗ୍ରାଦ୍ ଅବରୋଧ ଚାଲିଥିଲା। ନାଜୀ ସୈନ୍ୟଂକର ଗୁଳିଗୁଳା ଓ ବୋମାମାଡ଼ ଅବ୍ୟାହତ ଥିଲା, ଏବଂ ଆକାଶରୁ ଗୁଳିଗୋଳା ବର୍ଷଣ ଓ ବୋମାମାଡ଼ ଲାଗିରହିଥିଲା। ସୋଭିଏତ୍ ରୁଷିଆ ଏହି ଘନୀଭୂତ ବିପଦ ମଧ୍ୟରେ ନିଜର ସଂଗଠନ ଦୃଢ଼ କରିବାକୁ ଲାଗିଥିଲା। ସେମାନେ ଲେନିନ୍‌ଗ୍ରାଦ୍ ମୁକ୍ତିକୁ ଜାତୀୟ ମୁକ୍ତି ବୋଲି ଧରିନେଇଥିଲେ। ଲେନିନ୍‌ଗ୍ରାଦ୍‌ର ସୈନ୍ୟବାହିନୀ ଏକତ୍ର ମିଳିତ ହେବାର ଯୋଜନା ଓ ପ୍ରସ୍ତୁତି ଆଗେଇ ଚାଲିଲା। ସେମାନଂକ ମଧ୍ୟରେ ଯୋଗାଯୋଗ ସ୍ଥାପିତ ହେଲା। ଏହାଫଳରେ ଲାଗୋଦା ହ୍ରଦରେ ଅବସ୍ଥାପିତ ଶତ୍ରୁବାହିନୀ ଛତ୍ରଭଂଗ କରିବେ ବୋଲି ସେମାନଂକର ଦୃଢ଼ଧାରଣା ଥିଲା, କାର୍ଯରେ ତାହାହିଁ ହେଲା। ୧୯୪୩ ମସିହା ଜାନୁୟାରୀ ମାସ ୧୨ ତାରିଖରେ ସୋଭିଏତ୍‌ବାହିନୀ ସୁଚିଂତିତ ଭାବରେ ଶତ୍ରୁବାହିନୀ ଉପରେ ଚଢ଼ାଉ ଆରଂଭ କରିଦେଲେ। ସୋଭିଏତ୍ ସୈନ୍ୟର ପ୍ରଚଂଡ ଆକ୍ରମଣରେ ନାଜୀସୈନ୍ୟ ଛତ୍ରଭଂଗଦେଲେ। ସେମାନଂକର ଲେନିନ୍‌ଗ୍ରାଦ୍ ଅଧିକାର କରିବାର ଆଶା ଆକାଂକ୍ଷା ଚୂର୍‌ମାର୍ ହୋଇଗଲା। ସୋଭିଏତ୍ ରୁଷ୍ ବିଜୟ ହାସଲ କଲା। ସୋଭିଏତ୍ ରୁଷ୍‌ର ଏହି ବଳିଦାନର ବିଜୟ ସମଗ୍ର ମଣିଷ ଜାତି ପକ୍ଷରେ ଦେଶପ୍ରୀତିର ବିଜୟ ବୋଲି ପରିଗଣିତ ହେଲା। (ତତ୍ରୈବ)

**ଷ୍ଟାଲିନ୍‌ଗ୍ରାଦ୍ ଘେରାଉ :**

ଜର୍ମାନ ନାଜୀବାହିନୀ ମସ୍କୋ ଛାଡ଼ି ଷ୍ଟାଲିନ୍‌ଗ୍ରାଦ୍ ଆଡ଼କୁ ଚାଲିଲେ, ତାର କାରଣ କକେସସ୍‌ର ତୈଳସଂପଦ ଦଖଲ କରିବା ସେମାନଂକ ପକ୍ଷେ ଅଧିକ ଜରୁରି ଥିଲା। ସେମାନଂକ ଷ୍ଟାଲିନ୍‌ଗ୍ରାଦ୍ ଅଭିଯାନ ୧୯୪୨ ମସିହା ବସଂତଋତୁରେ ଆରଂଭ ହୋଇଥିଲା। ଏହି ନଗରୀ ରୁଷର ତୃତୀୟ ବୃହତ୍ତମ ଶିଳ୍ପକେଂଦ୍ର, ଏହାକୁ ଦଖଲକଲେ ଭଲ୍‌ଗା ନଦୀ ଉପରେ ମଧ ସେମାନେ କର୍ତ୍ତୃତ୍ୱ ହାସଲ କରିପାରିବେ। ଭଲଗା ନଦୀରେ ରୁଷ୍‌ର ବହୁ ଯୁଦ୍ଧ ସରଂଜାମ ଓ ତୈଳ ପରିବହନ କରାଯାଉଥିଲା। ନାଜୀମାନେ ଷ୍ଟାଲିନ୍‌ଗ୍ରାଦ୍‌ର ଉପକଂଠ ଘେରାଉ କରି ରଖିଥିଲେ। ଅନେକ ସମୟରେ ସହରର

ଗଳିମାନଂକରେ ରୁଷ୍ ଓ ଜର୍ମାନ୍ ସୈନ୍ୟମାନଂକ ମଧ୍ୟରେ ହାତାହାତି ଲଢ଼େଇ ଚାଲିଥିଲା । ଏ ସହର ପ୍ରାଚୀର ବେଷ୍ଟିତ ନଥିଲା । ରୁଷ୍ ପ୍ରତିରୋଧ ଯଥେଷ୍ଟ ଟାଣୁଆ ଥିଲା । ଲାଲ୍‌ସେନା ୧୯୪୨ ଜୁଲାଇ ମାସ ଶେଷ ସୁଦ୍ଧା ଡନ୍ ନଦୀକୂଳରେ ପହଁଚିଯାଇଥିଲେ । ସେପ୍‌ଟେଂବର ୨୩ରେ ରୁଷ୍‌ବାହିନୀର ଏକ ଅଂଶ ନାଜୀବାହିନୀ ଉପରେ ପ୍ରଚଂଡ ଚାପ ସୃଷ୍ଟିକରିଥିଲା । ରୁଷ ସେନାନାୟକ ମାର୍ଶାଲ୍ ଜୁଖଭଂକ (Zhukov) ପରିଚାଳନାରେ ରୁଷବାହିନୀ ପ୍ରତିଆକ୍ରମଣ କରି ନାଜୀ ସୈନ୍ୟଂକ ଅଗ୍ରଗତି ରୋକିଦେଇଥିଲେ । ମିତ୍ରଶକ୍ତିର ନେତା ଚର୍ଚ୍ଚିଲ୍ ୧୯୪୨ ଅଗଷ୍ଟ ମାସରେ ରୁଷ୍ ଆସିଥିଲାବେଳେ ଷ୍ଟାଲିନ୍ ତାଂକୁ ଯୁଦ୍ଧର ପରିସ୍ଥିତି ବୁଝାଇଥିଲେ । ତୃତୀୟ ସାମ୍ମୁଖ୍ୟ ଖୋଲିବା ପାଇଁ ମିତ୍ରଶକ୍ତିଂକ ଉପରେ ଜୋର୍‌ଦିଆଯାଇଥିଲା । ମାର୍ଶାଲ୍ ଜୁଖଭ (Zhukov) ନଭେଂବର ୧୯ ତାରିଖରେ ଦଳେ ସୈନ୍ୟ ନେଇ ସିରାଫିମୋଭିସ୍‌ରୁ ଯାତ୍ରାକରି କାଲାଚ ଦଖଲ କରିଥିଲେ । କର୍ଣ୍ଣେଲ ଭାଟୁଟିନଙ୍କ ସୈନ୍ୟମାନେ ଷ୍ଟାଲିନ୍‌ଗ୍ରାଡ଼୍‌ର ଦକ୍ଷିଣ ପଶ୍ଚିମ ସୀମାରେ ଅବସ୍ଥିତ ଆବ୍‌ଗାନ୍ ଏରୋଭି ଦଖଲକରିନେଲେ । ଏହିସବୁ ଆକ୍ରମଣ ଫଳରେ ଦୁଇଟି ରେଲୱେ ଲାଇନ୍ ରୁଷ୍‌ସୈନ୍ୟଂକ ହାତରେ ପଡ଼ିଲା । ଏହି ରେଲ୍ ଲାଇନ୍ ଦ୍ୱାରା ଜର୍ମାନ୍ ସୈନ୍ୟମାନେ ଯାତାୟାତ କରୁଥିଲେ । ନାଜୀ ଜେନେରାଲ୍ ରୁଡ୍‌ମ୍ ଷ୍ଟାଲିନ୍‌ଗ୍ରାଡ୍ ଦଖଲ ପ୍ରତ୍ୟାହାର କରିବାକୁ ବାଧହେଲେ । ଜାନୁଆରୀ ୩୧ରୁ ଫେବୃୟାରୀ ୨ ମଧ୍ୟରେ ୨୪ ଜଣ ଜର୍ମାନ ସେନାଦକ୍ଷ ବଂଦୀହେଲେ । ୧୯୫,୦୦୦ ଜର୍ମାନ୍ ସୈନ୍ୟ ବଂଦୀହେଲେ ବା ମୃତ୍ୟୁବରଣ କଲେ । ୧୯୪୨ ମସିହା ନଭେବଂର ମାସ ୨୩ ତାରିଖରେ ନାଜୀ ସୈନ୍ୟବାହିନୀର ସଂଖ୍ୟା ତିନିଲକ୍ଷ ତିରିଶହଜାର ଥିଲା ।

ଷ୍ଟାଲିନ୍‌ଗ୍ରାଡ଼୍‌ର ବୀରତ୍ୱପୂର୍ଣ୍ଣ ପ୍ରତିରୋଧ ରୁଷରେ ତୃତୀୟ ମହାଯୁଦ୍ଧର ମୋଡ଼ ଫେରାଇଦେଲା । ଶେଷରେ ରୁଷ୍‌ର ଲାଲ୍‌ବାହିନୀ ଚରମ ବିଜୟ ହାସଲକଲେ ଷ୍ଟାଲିନ୍‌ଗ୍ରାଡ୍ ଯୁଦ୍ଧରେ ରୁଷର ବହୁ ତରୁଣତରୁଣୀ ଓ ନାଗରିକ ଦେଶର ମର୍ଯାଦା ଓ ସ୍ୱାଧୀନତା ରକ୍ଷା କରିବା ପାଇଁ ପ୍ରାଣବଳି ଦେଇଥିଲେ । ସେମାନଂକର ବୀରତ୍ୱଗାଥା ଲୋକମୁଖରେ ସଂଜୀବିତ ରହିଛି ।

**ସ୍କଭ୍‌ଯାତ୍ରା :**

୩୦.୫.୧୯୭୯ ତାରିଖ ଅପରାହ୍ଣ ୩.୩୦ରେ ଲେନିନ୍‌ଗ୍ରାଡ୍‌ରୁ ସ୍କଭ ପଥେ ଯାତ୍ରା କଲୁ । ଦୁଇଟି ଉତ୍ତମ ବସ୍‌ରେ ବିଦେଶରୁ ଆସିଥିବା ସମସ୍ତ ଲେଖକ ଲେଖିକା ଓ ସେମାନଂକର ଦ୍ୱିଭାଷୀମାନେ ସ୍କଭ ପଥରେ ଆଗେଇଚାଲିଥାଂତି । ପଛରେ ପଡ଼ିରହିଲା ଲେନିନ୍‌ଗ୍ରାଡ୍ ଯାହାର ଅଭୁଲା ସ୍ମୃତି କଦାପି ପାସୋରି ଯିବ ନାହିଁ ।

ସ୍କଭ ରିଜନ୍ ଲେନିନ୍‌ଗ୍ରାଡ୍‌ଠାରୁ ଶହେକିଲୋମିଟର ଦୂର । ସ୍କଭ ରିଜନ୍‌ରୁ ସ୍କଭ ଯିବା ରାସ୍ତାର ଦୁଇପଟରେ ଶ୍ୟାମଳ ଅରଣ୍ୟାନୀ ଓ କ୍ଷେତବାଡ଼ି । ରୁଷର ଆରଣ୍ୟକ ପ୍ରକୃତି ସହିତ ପ୍ରତ୍ୟକ୍ଷ ସଂପର୍କରେ ଆସି ଆମେ ସମସ୍ତେ ଖୁସିହେଲୁ । ସ୍କଭ୍ ରିଜିନ୍‌ର ସୀମା ଆରଂଭରେ ପଡ଼ିଲା 'ଜପଲୁସେଯେ' ଗ୍ରାମ । କବି ପୁଷ୍କିନ୍‌ଂକ ଜନ୍ମମାଟିକୁ

ଯାଉଥିବା ବିଦେଶାଗତ ଲେଖକ, ଲେଖିକା, କବି, ନାଟ୍ୟକାର ପ୍ରଭୃତିଂକୁ ଦେଖିବା ପାଇଁ ଏବଂ ସେମାନଂକୁ ଅଭ୍ୟର୍ଥନା କରିବା ପାଇଁ ଗ୍ରାମବାସୀମାନେ ପୂର୍ବରୁ ଖବର ପାଇ ପ୍ରସ୍ତୁତ ହୋଇ ରହିଥିଲେ । ଆମ ବସ୍ ପହଂଚିବା ମାତ୍ରେ ସେମାନେ ଆମକୁ ଭବ୍ୟ ସଂବର୍ଦ୍ଧନା ଜଣାଇଲେ । ଆମକୁ ଫୁଲତୋଡ଼ାମାନ ଉପହାର ଦେଲେ । ଫଟୋଗ୍ରାଫର୍‌ମାନେ ଆମର ଫଟୋ ନେଲେ । ସମସ୍ତଂକ ମୁହଁରେ ଆନଂଦ ଉଲ୍ଲାସ ଫୁଟିଉଠୁଥାଏ । ବହୁ ତରୁଣ ଓ ତରୁଣୀ ଓ ଗ୍ରାମବାସୀ ଦଳ ଦଳ ହୋଇ ଛୁଟିଆସୁଥାଂତି । ସେମାନଂକ ସହିତ ପିଲାମାନେ ମଧ୍ୟ ଆସି ଆମ ଚାରିପଟେ ରୁଂଡ଼ହୋଇଥାଂତି । ଗ୍ରାମବାସୀମାନଂକ ମଧ୍ୟରେ ସବୁ ବୟସର ଲୋକ ଥିଲେ । କେତେକ ଲୋକପ୍ରତିନିଧି ଓ ଗ୍ରାମ୍ୟସଭା ସଭ୍ୟ ମଧ୍ୟ ଥିଲେ । ବହୁ କଲେଜ ଛାତ୍ରଛାତ୍ରୀ ମଧ୍ୟ ଆସିଥାଂତି । ଜଣେ ସୁନ୍ଦରୀ ତରୁଣୀ ତାଂକ କୋଳରୁ ପିଲାଟିକୁ ମୋତେ ବଢ଼ାଇଦେଲେ । ମୁଁ ପିଲାଟିକୁ ଧରି ଗେଲ କରିବାକୁ ଲାଗିଲି । ତରୁଣୀ ଅତିଥି ସେବାରେ ବ୍ୟସ୍ତ ରହିଲେ । ଗ୍ରାମବାସୀମାନେ ଆମକୁ ଆଇସ୍‌କ୍ରିମ୍, ନାନାରକମର କେକ୍ ଏବଂ ଫଳ ଖାଇବାକୁ ଦେଲେ, ତା' ସଂଗେ ଚା' କଫି ଏବଂ ମୃଦୁପାନୀୟ ପରିବେଷଣ କରିଥିଲେ । ଆମର ଫେରିଯିବା ବେଳ ହେବାରୁ ତରୁଣୀ ଆସି ମୋଠାରୁ ପିଲାଟିକୁ ନେଇଗଲେ । ତାଂକ ମୁହଁରେ ବଂଧୁତ୍ୱର ନିର୍ମଳ ହସ । ଇପ୍ଲୁସେଙ୍କେ ଗ୍ରାମରେ କେତୋଟି ଶିଳ୍ପ ଉଦ୍ୟୋଗ ଗଢ଼ିଉଠିଛି । ଶିକ୍ଷାଦାନକ୍ଷେତ୍ରରେ ବହୁ ଉନ୍ନତି କରାଯାଇଛି । (ତତ୍ରୈବ)

ସ୍କଭ୍‌ରେ ୩୦.୫.୧୯୭୯ ସଂଧ୍ୟାରେ ପହଁଚିଲୁ ଏବଂ ୩୧.୫.୧୯୭୯ ଏବଂ ୧.୬.୧୯୭୯ ଏହି ଦୁଇଦିନ ସ୍କଭ୍‌ରେ ରହିଥିଲୁ । ସ୍କଭ୍ ଏକ ଛୋଟ ସହର ନୁହେଁ । ଏଠାରେ ବହୁ ଶିଳ୍ପକାରଖାନା ଏବଂ ଐତିହାସିକ ସ୍ଥାନ ରହିଛି । ଏଠାରେ ଯେଉଁ ହୋଟେଲରେ ରହିବା ପାଇଁ ଆମର ସ୍ଥାନ ନିର୍ଦ୍ଦିଷ୍ଟ କରାଯାଇଥିଲା ତାହା ଏକ ରମଣୀୟ ହୋଟେଲ । ଏହା ମସ୍କୋ ଓ ଲେନିନ୍‌ଗ୍ରାଡ୍‌ର ହୋଟେଲମାନଂକ ପରି ଖୁବ୍ ବଡ଼ ନ ହେଲେ ମଧ୍ୟ ସେମାନଂକ ଭଳି ଆଧୁନିକ ସାଜସଜ୍ଜାରେ ସଜ୍ଜିତ । ଆମର ରହିବା ରୁମ୍‌ଗୁଡ଼ିକ ପୂର୍ବରୁ ନିର୍ଦ୍ଦିଷ୍ଟ କରାଯାଇଥିଲା । ଆମେ ହୋଟେଲ୍‌ରେ ପହଞ୍ଚିବାମାତ୍ରେ ରୁମ୍‌ର ଚାବି ଆମ ହାତକୁ ଅଭ୍ୟର୍ଥନାକାରିଣୀମାନେ ବଢ଼ାଇଦେଲେ । ଆମେ ରୁମ୍‌ରେ ପହଞ୍ଚିଲାବେଳକୁ ଆମ ଜିନିଷପତ୍ର ପହଁଚିଯାଇଥିଲା । ସେସବୁକୁ ସଜାଡ଼ି ଟିକେ ଫ୍ରେସ୍‌ହୋଇ ରାତ୍ରିଭୋଜନ ପାଇଁ ଡାଇନିଂହଲ୍‌କୁ ଗଲୁ । ରୁଷିଆର ହୋଟେଲ୍‌ମାନଂକରେ ଭାତ ମିଳେ, ମାତ୍ର ସେଥିପାଇଁ ପୂର୍ବରୁ ଅର୍ଡ଼ର ଦେବାକୁ ହୋଇଥାଏ । ଏଠାରେ ଭାତକୁ 'ରିସ୍' କହଂତି । ମୁଁ ଏବଂ ଆମ ଭିତରୁ କେତେକ ଅତିଥି ଆସଂତା କାଲି ରିସ୍ (ଭାତ) ଖାଇବୁ ବୋଲି ଅର୍ଡ଼ର ଦେଲୁ । ଆଜି ରାତ୍ରିରେ ଯାହା ମିଳିଲା ରୁଟି, ତରକାରି ଇତ୍ୟାଦି ଖାଇଲୁ । ରୁଷର୍ ହୋଟେଲ୍‌ମାନଂକରେ ଖାଇବା ଅର୍ଡର ଦବା ଜଟିଳ ବ୍ୟାପାର । ଆମେ ତାଂକ ଭାଷା ବୁଝୁନା, ସେମାନେ ମଧ୍ୟ ଆମ ଭାଷା ବୁଝଂତିନାହିଁ । ମେନୁ କାର୍ଡ଼ରେ ସବୁ ଆଇଟମ୍ ରୁଷ୍ ଭାଷାରେ ଲେଖାହୋଇଥାଏ । ଦ୍ୱିଭାଷୀ ମଧ୍ୟ ସବୁବେଳେ

ଆମସଂଗରେ ଖାଇଲାବେଳେ ଉପସ୍ଥିତ ନଥାଂତି, ଫଳରେ ଆମେ କ'ଣ ଖାଇବାକୁ ଚାହୁଁଛୁ ତାହା ବୁଝାଇବା କଷ୍ଟକରହୁଏ ।

ମୁଁ କେତୋଟି ରୁଷ୍ ଶବ୍ଦ ଏହା ଭିତରେ ଶିଖିଯାଇଥିଲି । ସେଗୁଡ଼ିକ ହେଲା –

Thank You – ପାଶିବା, Good Morning – ଦାସ୍ତବିଚେ, Excuse me – ପ୍ରାୟଶ୍ଚିଚେ, Maid Servant – ବୁବୁସ୍କା, Bread – ଫ୍ଲେପ୍, Patato – କାରତୋଷ, Fish – ରିବା, Chicken – ପୁରିଶା, Mutton – ବାରାନିନା, Egg – ଆଇରି, Amlet – ଅମ୍ଲେଟ୍, Milk – ମଲାକୋ, Water – ଓଦ୍ ।

ରାତ୍ରିଭୋଜନ ପରେ କେତେକ ବଂଧୁ ଗୀତ ନାଚ ଓ ଭଦକାପାନ ଇତ୍ୟାଦିରେ କଟାଇଲେ । କ୍ୟୁବାର ଲେଖିକା ନାନ୍‌ସୀ ଖୁବ୍ ନାଚପ୍ରିୟ ଥିଲେ । ସେ ତାଂକ ସଂଗେ ନାଚିବାକୁ କାହାକୁ କାହାକୁ ଡାକୁଥିଲେ । ମୁଁ ଅଳ୍ପ ସମୟ ପରେ ମୋ ନିଜ ରୁମ୍‌କୁ ଫେରି ଆସି ବିଶ୍ରାମକଲି ।

ତା'ପର ଦିନ ସକାଳେ ୩୧.୫.୭୯ ତାରିଖ ଆମେ ସ୍ଥାନୀୟ କାର୍ଯସୂଚୀ ଅନୁଯାୟୀ ଯାତ୍ରା କଲୁ । ଟାନିଆ ଠିକ୍ ସମୟରେ ଆସି ପହଂଚିଯାଇଥିଲା । ଆମେ ଦୁଇଟି ବସ୍‌ରେ ସ୍କଭ ସହର ପରିଭ୍ରମଣକରି ସ୍କଭଠାରୁ ୫୦ କିଲୋମିଟର ଦୂରବର୍ତ୍ତୀ ଏକ ଐତିହାସିକ ଦୁର୍ଗ ଦେଖିବାକୁ ଗଲୁ । ବାଟରେ ବହୁ ଛୋଟ ନଦୀ ଓ ଅରଣ୍ୟ, ଶସ୍ୟକ୍ଷେତ୍ର ପ୍ରଭୃତି ଅତିକ୍ରମ କରି ଯିବାକୁ ହୁଏ । ସେସବୁର ଦୃଶ୍ୟ ଅତି ଚମତ୍କାର । ଏହି ପ୍ରାଚୀନ ଦୁର୍ଗର ନାମ ଇଜ୍ବରସ୍କାୟା । ଏହା ସହିତ ବହୁ ସାମରିକ ଓ ଧର୍ମୀୟ ସ୍ମୃତି ବି ଜଡ଼ିତ । ଏଠାରେ ଏକ ଉଚ୍ଚ ପର୍ବତ ଉପରେ ଏହି ପ୍ରାଚୀନ ଦୁର୍ଗଟି ରହିଛି । ପାହାଡ଼ ଚାରିପଟେ ଜଳାଧାର ଘେରିରହିଛି । ଦୂରରେ ଫସଲ କ୍ଷେତ ଓ କେତେକ ଲାଲ୍‌ରଙ୍ଗର ଗାଈ ଚରୁଥିବାର ଦେଖାଗଲା । ଶସ୍ୟକ୍ଷେତ୍ରରେ କୃଷକମାନେ କାମକରୁଥିଲେ । କେତେକ ବିଲରେ ଟ୍ରାକ୍‌ଟର ମଧ୍ୟ ଚାଲିଥିଲା ।

ଏହି ଦୁର୍ଗରେ ଜର୍ମାନମାନେ ପରାସ୍ତ ହୋଇଥିଲେ ଏବଂ ଛତ୍ରଭଂଗ ଦେଇଥିଲେ । ଏହାର ଐତିହାସିକ ଗୁରୁତ୍ୱ ଖୁବ୍ ବେଶି । ଦୁର୍ଗ ନିକଟରେ କାଠରେ ନିର୍ମିତ ଏକ ଚର୍ଚ୍ଚ ରହିଛି । ଆମେ ଚର୍ଚ୍ଚରେ ପହଁଚିବାବେଳକୁ ବେଶ୍ ଲୋକଗହଳି ଥିଲା । 'ଇଜ୍ବରସ୍କାୟା' ଦେଖିସାରି ଆମେ ତୋସୋର ଗଲୁ । ଏଠାରେ ଏକ ପ୍ରାଚୀନ ଚର୍ଚ୍ଚ ରହିଛି । ଖବର ନେଇ ଜାଣିଲି ଜାର୍ ପ୍ରଥମ ନିକୋଲାସ ଏହା ନିର୍ମାଣ କରାଇଥିଲେ । ଏହାର ନିର୍ମାଣକାଳ ଷୋଡ଼ଶ ଶତାବ୍ଦୀ ବୋଲି ଜଣାଯାଏ । ଚର୍ଚ୍ଚର ସ୍ଥାପତ୍ୟ ଉଚ୍ଚକୋଟୀର । ଚର୍ଚ୍ଚ ନିକଟରେ ଏକ ଝରଣା ଏ ସ୍ଥାନର ପ୍ରାକୃତିକ ସୌଂଦର୍ଯ ବୃଦ୍ଧିକରିଛି । ଆଖ ପାଖ ଗ୍ରାମର କେତେକ ନରନାରୀ ଘୋଡ଼ାରେ ଚଢ଼ି ଏଠାକୁ ଆସି ଉପାସନା କରିଥିଲେ ।

ଆଜି ୧.୬.୧୯୭୯ ତାରିଖରେ ଆମେ ସ୍କଭ୍ ସହରରେ ଅବସ୍ଥିତ ଲେନିନ୍ ସଂଗ୍ରହାଳୟ, କ୍ରେମଲିନ୍ ଦୁର୍ଗ, ଏକ ପ୍ରାଚୀନ ଚର୍ଚ୍ଚ, କଳା ସଂଗ୍ରହାଳୟ ପ୍ରଭୃତି ସ୍ଥାନ ବୁଲି ଦେଖିଥିଲୁ । ମହାନ୍ ଅକ୍ଟୋବର ବିପ୍ଳବର ମହାନାୟକ ପ୍ରବାଦପୁରୁଷ ଲେନିନ୍

ତାଂକ ଜୀବନର ଘଡ଼ିସଂଧି ବେଳେ ଏଠାରେ କେତେକ ଦିନ ଅବସ୍ଥାନ କରିଥିଲେ। ଏହି ଅଂଚଳ କବି ପୁଷ୍କିନଂକ ପୈତୃକଭୂମିର ଇଲାକା ଅତଂର୍ଗତ। (ତତ୍ରୈବ)

ସ୍କଭ ସହରରେ ଆଜି ସଂଧ୍ୟାରେ ସମାଗତ ଲେଖକମାନଂକୁ ଏକ ନାଗରିକ ସଂବର୍ଧନା ଦିଆଯାଇଥିଲା। ପୁଷ୍କିନଂକ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ଏଠାରେ ତାଂକର ଏକ ପୂର୍ଣାବୟବ ପ୍ରତିମୂର୍ତ୍ତିର ଶିଳାନ୍ୟାସ କରାଯାଇଥିଲା। ସଭା ପୂର୍ବରୁ ଶୁଭ୍ର ପରିଧାନ ପରିହିତା ନଗରୀର ସୁଂଦରୀ ନାରୀମାନଂକର ଏକ ଶୋଭାଯାତ୍ରା ଏବଂ ସମବେତ ସଂଗୀତର ଅପୂର୍ବ ମୂର୍ଚ୍ଛନା ସୃଷ୍ଟି କରିଥିଲା। ଉପସ୍ଥିତ ବୁଦ୍ଧିଜୀବୀମାନେ ସଭାରେ ଭାଷଣ ଦେଇଥିଲେ। ସେମାନଂକ ଉଦ୍‌ବୋଧନରେ ଶ୍ରୋତାମଂଡଳୀ ଉତ୍ସାହିତ ହୋଇ କରତାଳିଦ୍ୱାରା ସେମାନଂକର ଉତ୍ସାହ ଓ ସମର୍ଥନ ପ୍ରକାଶକରିଥିଲେ। ସ୍ଥାନୀୟ ରଂଗମଂଚରେ ସଭା ଅନୁଷ୍ଠିତ ହୋଇଥିଲା। ଯେଉଁ ସ୍ଥାନରେ ପୁଷ୍କିନଂକର ପ୍ରତିମୂର୍ତ୍ତି ସ୍ଥାପିତ ହେବ ସେଠାରେ ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହୋଇଥିଲା। ଏହି ସଭାରେ ରୁଷ୍ ଲେଖକ ୟୁନିୟନ୍‌ର ସଂପାଦିକା ଶ୍ରୀମତୀ କାଜାକୋଭା ଅଧ୍ୟକ୍ଷତା କରିଥିଲେ। ସମବେତ ଲେଖକଲେଖିକାମାନେ ପୁଷ୍କିନଂକ ସଂବଂଧରେ ନିଜ ନିଜ ମାତୃଭାଷାରେ ଶ୍ରଦ୍ଧାଂଜଳି ଜ୍ଞାପନ କରିଥିଲେ। ଦ୍ୱିଭାଷୀମାନେ ତହିଁର ରୁଷୀୟ ଅନୁବାଦ କରି ଶୁଣାଇଥିଲେ। ଏହି ସ୍କଭ୍ ସହରରେ ପୁଷ୍କିନ ପ୍ରପୌତ୍ର ଆଲେକଜାଂଡାର ଗ୍ରିଗୋରୀ ଓ ତାଂକ ସହଧର୍ମିଣୀଂକ ସଂଗେ ପରିଚୟ ହୋଇଥିଲା। ସେମାନେ ବଡ଼ ମେଳାପୀ ଏବଂ ମିଷ୍ଟଭାଷୀ ଥିଲେ। ସେମାନେ ମୋତେ ଆଇସ୍କ୍ରିମ୍ ଖାଇବାକୁ ଦେଇଥିଲେ। ସଂବର୍ଧନା ସଭା ପରେ ସ୍ଥାନୀୟ କଳାକାରମାନେ ନୃତ୍ୟଗୀତ ପ୍ରଦର୍ଶନ କରିଥିଲେ।

ଆଜି ମଧ୍ୟାହ୍ନଭୋଜନ ପରେ ଆମେ ପୁଷ୍କିନଂକର ଜନ୍ମଗ୍ରାମ ଅଭିମୁଖେ ଯାତ୍ରା କରିଥିଲୁ। ଏହା ଥିଲା ପୁଷ୍କିନଂକର ପିତାମହ ହାନିବାଲ୍‌ଙ୍କ ଜମିଦାରୀ ଇଲାକା। ପୁଷ୍କିନଂକ ମାତାଂକର ଜନ୍ମ ମଧ୍ୟ ସେହି ଅଂଚଳରେ। ପୁଷ୍କିନ୍ ବିଭିନ୍ନ ସମୟରେ ତାଂକ ଜୀବନର କେତେକ ବର୍ଷ ଏହି ଗ୍ରାମାଂଚଳରେ ଅତିବାହିତ କରିଥିଲେ।

ଆଜି ମଧ୍ୟାହ୍ନ ଭୋଜନ ଅଂତେ ସମସ୍ତେ ମିଖାଇଲୋଭସ୍କାୟା ଅଭିମୁଖରେ ଯାତ୍ରା କରିଥିଲୁ। ଆସଂତାକାଲି ସେଠାରେ ପୁଷ୍କିନମେଳା ସମାହିତ ହେବ। ସ୍କଭଠାରୁ ମିଖାଇଲୋଭସ୍କାୟା ପ୍ରାୟ ଶହେ କିଲୋମିଟର ଦୂରରେ ଅବସ୍ଥିତ। ଆସଂତାକାଲି ଜୁନ୍ ତିନି ତାରିଖରେ ସେଠାରେ ଅନୁଷ୍ଠିତ ହେବାକୁ ଥିବା ପୁଷ୍କିନ୍ ମେଳାରେ ମୋର କବିତାପାଠ କରିବାର କାର୍ଯସୂଚୀ ଥାଏ।

**କବୟିତ୍ରୀ ଭାଲେଂଟିନା :**

କବୟିତ୍ରୀ ଭାଲେଂଟିନା ସ୍କଭଠାରୁ ବରାବର ମୋ ସଂଗରେ ରହିଥିଲେ। ସେ ମୋର ଇଂରାଜୀ କବିତାର ରୁଷୀୟ ଅନୁବାଦ କରି, ମୁଁ କବିତା ପାଠ କରିବା ପରେ ତାହା ପାଠକରିବେ ବୋଲି ସ୍ଥିରହୋଇଥାଏ। ତେଣୁ ସେ ମୋ ସଂଗେ ସଂଗେ ରହି ମୋର କେଉଁ କବିତା ପାଠକରିବେ ଏବଂ କେତେକ ସ୍ଥାନରେ ତାହାର ଅର୍ଥ ପଚାରି

ବୁଝୁଥାଂତି । ଭାଲେଂଟିନା ୩୦-୩୨ ବର୍ଷର ଜଣେ ନାରୀକବି । ତାଂକର ମୁକ୍ତକେଶ ସବୁବେଳେ କଟି ସ୍ପର୍ଶକରିଥାଏ । ମୁଁ ତାଂକୁ ମୋର ଇଂରାଜୀ କବିତା ସଂକଳନ "The Boat Man Boy and Forty Poems" ବହିଟି ଦେଇଥାଏ । ସେ ତାହାକୁ ବାରଂବାର ପଢ଼ି ମୋର କେଉଁ କବିତା ଅନୁବାଦ କରିବେ ସେ ବିଷୟ ଭାବୁଥାଂତି ଏବଂ ମୋ ସହିତ ପରାମର୍ଶ କରୁଥାଂତି । ସ୍ୱଚ୍ଛାଡ଼ି ଆମ ବସ୍ ଆଗେଇଚାଲିଥାଏ । ସ୍ପଭର ତରୁଲତାଘେରା ବନ ପ୍ରକୃତି ମୋ ମନରେ ଗଭୀର ରେଖା କାଟିଥାଏ ।

**ମିଖାଇଲୋଭସ୍କାୟା :**

ଯଥା ସମୟରେ ଆମେ ମିଖାଇଲୋଭସ୍କାୟାରେ ପହଁଚିଗଲୁ । ଏହା ଏକ ଛୋଟ ସହର ହେଲେ ମଧ୍ୟ ଏହାର ତୃଣାକୀର୍ଣ ବିରାଟ ପ୍ରାଂତର ଓ ଘନ ବୃକ୍ଷଲତା ଏକ ଚମତ୍କାର ଚିତ୍ରପଟ ସୃଷ୍ଟି କରିଛି । ସଚୋରୀ ନଦୀ ଗ୍ରାମ ମଧ୍ୟରେ ପ୍ରବାହିତ । ଏହି ନଦୀ ଶୀତଦିନେ ବରଫାଚ୍ଛନ୍ନ ହୋଇଥାଏ । ଏଠାରେ କ୍ଲବ ହାଉସ୍, କଳକାରଖାନା ଏବଂ ବିରାଟ ହୋଟେଲ୍ ଅଛି । ଏଠାରେ ଗ୍ରାମ୍ୟ ପ୍ରକୃତି ରମଣୀୟ । ଆଧୁନିକ ସଭ୍ୟତାର ସମସ୍ତ ଉପଯୋଗ, ଯଥା ବିଜୁଳି ଇତ୍ୟାଦିର ଅଭାବ ନାହିଁ । ଆମେ ହୋଟେଲ୍‌ରେ ପହଁଚିବାମାତ୍ରେ ଏହି ଗ୍ରାମର ବହୁ ନରନାରୀ ଶିଶୁ ଓ ମୁଖ୍ୟବ୍ୟକ୍ତି ଆମ୍ଭମାନଂକୁ ହାର୍ଦ୍ଦିକ ସ୍ୱାଗତ ଜଣାଇଥିଲେ । ହୋଟେଲ୍‌ରେ ମଧ୍ୟାହ୍ନଭୋଜନ କରିଥିଲୁ । ଖାଦ୍ୟପେୟ ସୁରୁଚିପୂର୍ଣ ଥିଲା । ମଧ୍ୟାହ୍ନଭୋଜନ ପରେ ଆମେ ଏକ ପ୍ରାକୃତିକ ସୌଂଦର୍ଯରେ ଭରପୂର ସ୍ଥାନକୁ ଯାଇଥିଲୁ । ଏହି ଗ୍ରାମଟି ଥିଲା ପୁଷ୍କିନଂକ ମାତାଂକର ଗ୍ରାମ । ପୁଷ୍କିନଂକ ମାତା ଥିଲେ ଇବ୍ରାହିମ୍ ହାନିବାଲ୍‌ଙ୍କ ପ୍ରପୌତ୍ରୀ । ତେଣୁ ହାନିବାଲଂକର ପ୍ରାଚୀନ ବାସଗୃହ ଆଜି ଏକ ମନୋଜ୍ଞ ସଂଗ୍ରହାଳୟରେ ପରିଣତ ହୋଇଛି । ବହୁ ହ୍ରଦ ଓ ଜଂଗଲରେ ପରିପୂର୍ଣ ଏହି ଗ୍ରାମଟି ଏକ ଚିତ୍ରଶାଳା ପରି ଜଣାଯାଏ । ହାନିବାଲ୍ ଏହି ବାସଭବନରେ ଅବସ୍ଥାନ କରୁଥିଲେ । ସେ ସୈନ୍ୟବିଭାଗରେ ଜଣେ ଦକ୍ଷ ଅଫିସର ଥିଲେ । ତାଂକର ବିଶାଳ ପଟଚିତ୍ର, କେତେକ ପାରିବାରିକ ପଟଚିତ୍ର ସହ ଏକ କାଂଥରେ ଝୁଲାଯାଇଛି । ତାଂକ ପ୍ରତିକୃତିରୁ ଜଣାଯାଏ ସେ ସେନାବିଭାଗରେ ଜଣେ ଦୁର୍ଦ୍ଦାଂତ ଅଫିସର ଥିଲେ ।

ପୁଷ୍କିନ୍ ଏହି ବାସଭବନରେ ବହୁଦିନ ରହିଥିଲେ, ତେଣୁ ଏହାର ଗୁରୁତ୍ୱ ଆହୁରି ବଢ଼ିଯାଇଛି । ଏହି ମିଉଜିୟମଟି କେତେକ କର୍ମଚାରୀଂକ ଦାୟିତ୍ୱରେ ରହିଛି । ସେମାନେ ଦର୍ଶକମାନଂକୁ ବିଭିନ୍ନ କକ୍ଷରେ ସଂଗୃହୀତ ସାମଗ୍ରୀମାନ ଦେଖାଇଥାଂତି । ମିଉଜିୟମଟି ଦେଖିସାରି ଆମେ ଜଂଗଲ ଭିତରେ ଚାଲି ଚାଲି ପୁଷ୍କିନଂକ ମାତାଂକ ବାସଗୃହ ଦେଖିବାକୁ ଯାଇଥିଲୁ । ତାହା ଟାଇଲିଛପର ଏବଂ କୋଠାଘର ମିଶାମିଶି ଏକ ନିରାଡ଼ଂବର ବାସସ୍ଥାନ । ପୁଷ୍କିନଂକର ବାଲ୍ୟକାଳ ଏହିଠାରେ ହିଁ କଟିଥିଲା । ସେହିସବୁ ବିବରଣୀ ବିଭିନ୍ନ କକ୍ଷରେ ଲିପିବଦ୍ଧ ହୋଇ ରହିଛି । ଏହି ସ୍ଥାନଟି ବହୁ ହ୍ରଦ ଓ ଝରଣାରେ ପରିପୂର୍ଣ । ବହୁ ଝରଣା ଉପରେ ପୋଲ ତିଆରି ହୋଇଛି । ଗୋଟିଏ ଛୋଟ ନଦୀ

ମଧ୍ୟ ସ୍ଥାନଟିକୁ କଳଧ୍ୱନିରେ ମୁଖରିତ କରି ବହିଯାଉଛି । ଗ୍ରାମଟିର ଶାଂତସରଳ ପରିବେଶ ଦର୍ଶକମାନଂକୁ ମୁଗ୍ଧ କରେ । ଏଠାକୁ ଗଲେ ଆଧୁନିକ ସଭ୍ୟତାଠାରୁ ବହୁଦୂରରେ ଅବସ୍ଥିତ କୌଣସି ଏକ ନିର୍ଜନ ମାୟାପୁରୀକୁ ଗଲାଭଳି ଲାଗେ । ମନରେ ସ୍ୱତଃ ପ୍ରଶ୍ନ ଉଠେ – ପୁଷ୍କିନ କାହିଁକି ଶାଂତ ଶିଷ୍ଟ ପଲ୍ଲୀବଳୟ ଛାଡ଼ି ଯାଂତ୍ରିକ ସଭ୍ୟତାର କେଂଦ୍ରସ୍ଥଳୀ, ହିଂସାଦ୍ୱେଷ ପରିପୂର୍ଣ ନଗରୀ ମଧ୍ୟରେ ରହିଲେ, ଯାହାର କରୁଣ ପରିଣତି ତାଂକୁ ଜୀବନର ମୂଲ୍ୟ ଦେଇ କିଣିବାକୁ ପଡ଼ିଲା ।

ଏହାପରେ ଏଠାରୁ କେତେ କିଲୋମିଟର ଛାଡ଼ି ଆଉ ଏକ ସ୍ଥାନକୁ ଆମେ ଯାଇଥିଲୁ । ତାହା ହେଉଛି ପୁଷ୍କିନଂକର ପ୍ରେମିକା ଓ ପରେ ପତ୍ନୀ ନାତାଲିଆଂକ ଘର । ସେଠାରେ ଜଣେ ଗାଇଡ୍ ଆମକୁ ବୁଝାଇଥିଲେ ଯେ ପୁଷ୍କିନ ରୋଜ୍ ସଂଧ୍ୟାରେ ଏହି ବାଟେ ଯିବାଆସିବା କରୁଥିଲେ ଏବଂ ନାତାଲିଆଂକ ସଂଗେ ଏହି ଘରେ ଆଳାପ କରୁଥିଲେ । ଶେଷରେ ଆମେ ପହଞ୍ଚିଥିଲୁ ପୁଷ୍କିନଂକ ସମାଧିପୀଠରେ । ପୁଷ୍କିନ ଲେନିନ୍‌ଗ୍ରାଡ୍‌ରେ ଦ୍ୱନ୍ଦ ଯୁଦ୍ଧରେ ଦାଂତେସଂକ ପିସ୍ତଲଗୁଳିରେ ଆହତ ହୋଇ ଶେଷରେ ମୃତ୍ୟୁବରଣ କଲାପରେ ତାଂକୁ ସମ୍ରାଟ ନିକୋଲାସଂକ ନିର୍ଦ୍ଦେଶରେ ଏହି ନିଭୃତ ପଲ୍ଲୀ ଅଂଚଳରେ, ଅନାଡଂବର ଭାବରେ ଏକ ଛୋଟ ଗିର୍ଜା ବେଢ଼ାରେ ସମାଧି ଦିଆଯାଇଥିଲା । ଏହି ଛୋଟ ଗିର୍ଜାଟି ହେଉଛି Royal Stables Chapel, ଯାହା ପୁଷ୍କିନଂକ ସମାଧି ନିକଟରେ ଛିଡ଼ାହୋଇଛି । କବିଂକର ଏହି ଶେଷ ପରିଣତିରେ ସମଗ୍ର ରୁଷ୍‌ବାସୀ ଉତ୍‌କ୍ଷିପ୍ତ ହୋଇଉଠିଥିଲେ । ଜନସାଧାରଣଂକ ଉତ୍ତେଜନାକୁ ଏଡ଼ାଇବା ପାଇଁ ସମ୍ରାଟ ନିକୋଲାସଂକ ଲୋକମାନେ ରାତିର ଅଂଧକାର ମଧ୍ୟରେ ପୁଷ୍କିନଂକୁ ଏହିଠାରେ ସମାଧି ଦେଇଥିଲେ । ସମାଧି ଉପରେ କେତୋଟି ଫୁଲତୋଡ଼ା ଦେଖିବାକୁ ମିଳିଲା – ବୋଧହୁଏ କେତେକ ନବବିବାହିତ ଦଂପତି ବିବାହପରେ ଏଠାକୁ ଆସି ତାଂକର ଶ୍ରଦ୍ଧାଂଜଳି ଅର୍ପଣ କରିଯାଇଛଂତି । ରୁଷରେ ସବୁ ବଡ଼ ବଡ଼ କବି ଲେଖକମାନଂକ ସମାଧିପୀଠରେ ଏହିପରି ଫୁଲତୋଡ଼ାମାନ ରଖାଯାଇଥିବାର ମୁଁ ଦେଖିଛି । ଏହା ବୋଧହୁଏ ଏକ ସାମାଜିକ ପ୍ରଥାରେ ପରିଣତ ହେଲାଣି । ଆମେ ସମସ୍ତେ ସେହି ମହାନ୍ କବି ପୁଷ୍କିନଂକ ଉଦ୍ଦେଶ୍ୟରେ ନୀରବରେ ଭକ୍ତିପୂତ ଶ୍ରଦ୍ଧାଂଜଳି ଅର୍ପଣ କରିଥିଲୁ – କିନ୍ତୁ ପୁଷ୍ପଗୁଚ୍ଛ ଦ୍ୱାରା ନୁହେଁ, ହୃଦୟର ଉଚ୍ଛ୍ୱସିତ ଆବେଗ ଢାଳି ।

**ଚାବି ବିଭ୍ରାଟ :**

ସେଠାରୁ ହୋଟେଲକୁ ଫେରିବାବେଳକୁ ସଂଧ୍ୟା ହୋଇଯାଇଥିଲା । ରାତ୍ରିରେ ଡିନର୍ ଖାଇସାରି ଆମେ ନିଜ ନିଜ ରୁମ୍‌କୁ ଗଲୁ । ମୁଁ ରୁମ୍‌କୁ ଯାଇ ଜୋର୍‌ରେ କବାଟ ବଂଦକରିଦେଲେ । ପ୍ରତି ହୋଟେଲ୍‌ରେ ରୁମ୍‌ର କବାଟଗୁଡ଼ିକ ସ୍ୱୟଂକ୍ରୀୟ । ଭିତରୁ ସାବଧାନତାର ସହିତ ଦରଜା ବଂଦ ନକଲେ ତାହା ବାହାରୁ ବଂଦହୋଇଯାଏ, ବାହାରୁ ଚାବି ଦ୍ୱାରା ଖୋଲେ । ମୋ ପାଖରେ ଚାବି ରହିଥିଲା – ମାତ୍ର ମୁଁ ବାହାରକୁ ଯିବି କିପରି ? ଭିତରୁ ଚାବିରେ ଦରଜା ଖୋଲିବାକୁ ଚେଷ୍ଟାକଲି, ମାତ୍ର ଦରଜା ଖୋଲିଲାନାହିଁ ।

ମୋତେ ବଡ଼ ଅସୁବିଧା ଲାଗିଲା । ରାତି ସାରା ବଂଦ କୋଠରିରେ ରହିବା କିପରି ଅସ୍ୱସ୍ତିକର ମନେ ହେଲା । ମୁଁ ଖୁବ୍ ଜୋର୍‌ରେ ଭିତରୁ କବାଟ ବାଡ଼େଇଲି । ପାଖ ରୁମ୍‌ରୁ କେତେକ ବଂଧୁ ଆସି ଅବସ୍ଥା କ'ଣ ପଚାରିଲେ । ମୁଁ କହିଲି – ମୁଁ ବହୁ ଚେଷ୍ଟା କଲିଣି, ମାତ୍ର ଭିତରୁ ଦରଜା ଖୋଲୁନାହିଁ । ତାଂକ ସଂଗେ ଗୋପାଳ ଚଂଦ୍ର ମିଶ୍ର ଥିଲେ ।

ସେମାନେ ତଳେ ଅଫିସ୍‌କୁ ଖବର ଦେବାକୁ ଗଲେ, ମାତ୍ର ଅଫିସ୍‌ରେ କେହି ନଥିଲେ । ମୋ ଦ୍ୱିଭାଷୀ ଟାନିୟା ମଧ ତା ରୁମ୍‌ରେ ନଥିଲା । ବଂଧୁମାନେ ଆସି ମୋତେ ପରିସ୍ଥିତି ଜଣାଇଲେ । ଶେଷରେ ଗୋଟାଏ ବୁଦ୍ଧି ଦିଶିଗଲା । ମୁଁ କହିଲି – "You please, go down stairs and stand on the lawn just below my window. I shall throw the key down. You please pick it up and open the door from outside." ଅର୍ଥାତ୍ ତମେ ତଳକୁ ଯାଇ ମୋ ରୁମ୍‌ର ଝରକା ତଳେ ଲନ୍‌ରେ ଛିଡ଼ାହୁଅ, ମୁଁ ଉପରୁ ଚାବିଟା ଫିଂଗିଦେବି । ତମେ ଆଣି ବାହାରୁ କବାଟ ଖୋଲି ଦେବ । ସେମାନେ ହଁ ଭରିଲେ । ତାପରେ ତଳକୁ ଯାଇ ମୋ ରୁମ୍‌ର ଉତ୍ତରପଟ ଝରକା ତଳେ ଛିଡ଼ା ହୋଇ ଦୁଇ ତିନି ଥର ତାଳିମାରିଲେ । ମୁଁ ମଧ ଉପରୁ ଦୁଇ-ତିନିଥର ତାଳିମାରିଲି । ମୁଁ ତାଂକୁ ଶ୍ୱେତରାତ୍ରିର ଆଲୁଅରେ ସ୍ପଷ୍ଟ ଦେଖିପାରୁଥାଏ । ସେମାନେ ତଳେ ଲନ୍‌ରେ ଛିଡ଼ାହୋଇଥାଂତି । ମୁଁ ଦୁଇ-ତିନିଥର ତାଳି ମାରିମାରି ଚାବିଟାକୁ ତାଂକ ମୁଂଡକୁ ଲକ୍ଷ୍ୟ କରି ତଳକୁ ଫିଂଗିଦେଲି । ସେମାନେ କିଛିସମୟ ଅଡାଂଳି ଚାବିଟା ପାଇଲେ । ତାପରେ ଉପରକୁ ଆସି ମୋ ରୁମ୍‌ର ଦରଜା ବାହାରପଟୁ ଖୋଲିଦେଲେ । ଦରଜା ଖୋଲିଯିବାରୁ ମୁଁ ଟିକେ ସ୍ୱସ୍ତି ଅନୁଭବକଲି । ସମସ୍ତେ ରୁମ୍ ଭିତରକୁ ଆସିଲେ । ଆମେ ସମସ୍ତେ ଅନେକବେଳଯାଏ ଠୋ ଠୋ ହୋଇ ହସିଥିଲୁ । ଥରେ ଆମେରିକାର ହାର୍ଭାଡ଼ ବିଶ୍ୱବିଦ୍ୟାଳୟ ଲାଇବ୍ରେରିରେ ମୁଁ ହଜିଯାଇଥିଲି, ତଳୁ ଅଫିସରୁ କେତେକ ଲୋକ ଆସି ମୋତେ ଉଦ୍ଧାରକରିଥିଲେ । ରାତିଅଧରେ ଏହା ମୋ ଜୀବନରେ ଦ୍ୱିତୀୟ ଦୁର୍ଘଟଣା ।

**ପୁଷ୍କିନ୍ ମେଳା :**

ତାପରଦିନ ମଧ୍ୟାହ୍ନରେ ପୁଷ୍କିନଂକ ଗ୍ରାମ ମିଖାଇଲୋଭସ୍କାୟାଠାରେ ପୁଷ୍କିନ ମେଳା ଆରଂଭହେଲା । ଦେଶବିଦେଶର ବହୁ ଲେଖକଲେଖିକା ଓ କାବ୍ୟସ୍ରଷ୍ଟା ଏହି ମେଳାରେ ଯୋଗଦେଇଥିଲେ । ହଜାର ହଜାର ବସ୍, କାର୍ ଆସି ମେଳା ବସିଥିବା ପଡ଼ିଆରେ ଜମାହୋଇଥାଏ । 'ସଚୋରି' ନଦୀରେ ଯାତ୍ରୀବାହୀ ନୌକାସବୁ ଭାସି ଆସୁଥାଂତି । ଅଦୂରରେ ହ୍ରଦଜଳ ସୂର୍ଯ୍ୟ ଆଲୁଅରେ ଚିକ୍‌ଚିକ୍ କରୁଥାଏ । ରେଡ଼ିଓ, ଟେଲିଭିଜନ, ସାଂବାଦିକ ଓ ଫଟୋଗ୍ରାଫର୍‌ମାନେ ଆସି ମଂଚ ଚାରିପଟେ ଜମାହୋଇଥାଂତି । ପ୍ରାୟ ପାଂଚ ଛଅ ଲକ୍ଷ ଲୋକ ମେଳାରେ ଯୋଗଦେଇଥିଲେ । କିଛି କିଛି ଦୋକାନ ବଜାର ମଧ ଖୋଲିଥାଏ । ପୁଷ୍କିନଂକର ଏହି ଜନ୍ମଗ୍ରାମଟି ତାଂକ ମାତାଂକ ପୈତୃକ ଜମିଦାରିର ଅଂଶ ଥିଲା ।

ମେଳାରେ ଆଖପାଖ ଗ୍ରାମମାନଂକରୁ ହଜାର ହଜାର ନରନାରୀ, ଶିଶୁ, ବୃଦ୍ଧ ନାନାରଂଗର ପୋଷାକ ପରିଚ୍ଛଦ ପିଂଧି ସେମାନଂକ ଦେଶର ଶ୍ରେଷ୍ଠ କବିଂକ ଜନ୍ମତିଥିରେ ଦେଶବିଦେଶର ଲେଖକ ଓ କାବ୍ୟସ୍ରଷ୍ଟାମାନେ ଲେଖିଥିବା କବିତା ଶୁଣିବା ପାଇଁ ପ୍ରବଳ ଆଗ୍ରହରେ ଧାଇଁଆସିଥିଲେ । ସେମାନଂକ ପରିଧାନର ରଂଗ ଓ ବୈଚିତ୍ର୍ୟ ସୂର୍ଯ୍ୟ ଆଲୁଅରେ ଝଟକିଉଠୁଥିଲା ।

**ମୋର କବିତାପାଠ :**

ଏହି ବିଶାଳ ଜନସମାବେଶରେ ମୋର ପଠିତ ଦୁଇଟି କବିତା ହେଲା ବାଜି ରାଉତର ଇଂରାଜୀ ଅନୁବାଦ "The Boat Man Boy and Forty Poems"ର କିଛି ଅଂଶ ଯାହା ପ୍ରାୟ ଏକ ପୃଷ୍ଠା ହେବ, ଏବଂ ସେହି ବହିର ଅଂତର୍ଗତ ଅନ୍ୟ ଗୋଟିଏ କବିତା 'ସାହାଜାହାନ' । ଇଂରାଜୀ କବିତା ଦୁଇଟି ମୁଁ ନିଜେ ପାଠକରିଥିଲି । ଏହାର ରୁଷୀୟ ଭାଷାଂତର ପାଠକରିଥିଲେ ନାରୀକବି ଭାଲେନ୍ତିନା । ସେ ମଧ୍ୟ ଏହି କବିତା ଦୁଇଟି ବାଛି ରୁଷ୍‌ଭାଷାରେ ଅନୁବାଦ କରିଥିଲେ । ମୋ କବିତାପାଠ ପରେ କେତେକ ଶ୍ରୋତା ମଂଚ ଉପରକୁ ଉଠିଆସି ମୋତେ ପୁଷ୍ପଗୁଚ୍ଛ ଅର୍ପଣ କରିଥିଲେ । ଶ୍ରୋତାମାନେ ଘନଘନ କରତାଳି ଦ୍ୱାରା ସଭାସ୍ଥଳ କଂପାଇଦେଇଥିଲେ । ଅନ୍ୟକେତେକ ଦେଶର କବିଂକୁ ମଧ୍ୟ କେହି କେହି ଶ୍ରୋତା ପୁଷ୍ପଗୁଚ୍ଛ ଉପହାର ଦେଇଥିଲେ । ପୁଷ୍କିନ୍‌ଙ୍କର ଜନ୍ମ ହୋଇଥିଲା ୧୭୯୯ ମସିହା ମଇମାସ ୨୯ ତାରିଖରେ । ତାଂକର ମୃତ୍ୟୁ ହୁଏ ୧୮୩୬ ମସିହା ନଭେଂବର ୨୭ ତାରିଖରେ । ସେ ଜୀବନରେ ବହୁ କାବ୍ୟକବିତା ଲେଖି ସ୍ୱେଚ୍ଛାଚାରୀ ଜାର୍ ଶାସନର ଅବସାନ ଘଟାଇ ପ୍ରଜାତଂତ୍ର ପ୍ରତିଷ୍ଠା କରିବାପାଇଁ ଦେଶବାସୀଂକୁ ଆହ୍ୱାନ ଦେଇଥିଲେ । ଫଳରେ ତାଂକୁ ରାଜତଂତ୍ରର ଶରବ୍ୟ ହେବାକୁ ପଡ଼ିଥିଲା । ତାଂକୁ ନିର୍ବାସିତ ଓ ଗୃହବଂଦୀ କରାଯାଇଥିଲା । ଏହି ସଂକଟ ସମୟରେ ସେ ବହୁଦିନ ଏହି ଗ୍ରାମରେ ଅତିବାହିତ କରିଥିଲେ । ଏହି ଗ୍ରାମ୍ୟ ପ୍ରକୃତି ସଂଗେ ତାଂକର ଅଂତରଂଗ ଯୋଗସୂତ୍ର ବହୁ କବିତାରେ ପ୍ରତିଫଳିତହୋଇଛି । ଆଜି ପୁଷ୍କିନଂକର କ୍ଷୁଧିତ ଆତ୍ମା ସମଗ୍ର ଦେଶରେ ଏବଂ ତାଂକ ଜନ୍ମମାଟିରେ ତାଂକର ସ୍ମୃତିଚାରଣ ପାଇଁ ଏହି ଯେଉଁ ବିଶାଳ ଜନସମାଗମ ହୋଇଛି ତାହା ଦେଖି କିଞ୍ଚିତ୍ ଅଶ୍ୱାସନା ଲାଭକରୁଥିବ ।

ଦିନ ୩ଟା ବେଳକୁ ଆମେ ସମସ୍ତେ ହୋଟେଲକୁ ଫେରିଆସି ମଧ୍ୟାହ୍ନ ଭୋଜନ କରିଥିଲୁ । ଏହାପରେ ମିଖାଇଲୋଭସ୍କାୟା ଛାଡ଼ି ସ୍କଭ ପଥରେ ଆଗେଇଥିଲୁ । ମିଖାଇଲୋଭସ୍କାୟାର ସ୍ମୃତି ଚିରଦିନ ମନେରହିବ । ଏହି ଗ୍ରାମଟିର ଜଳବାୟୁ ଶୀତପ୍ରଧାନ । ଗ୍ରୀଷ୍ମଋତୁରେ ମଧ୍ୟ ଶୀତର ପ୍ରକୋପ ଅନୁଭୂତ ହୁଏ । ପୁଷ୍କିନଂକର ଏହା ଖାଲି ଜନ୍ମସ୍ଥଳୀ ନୁହେଁ, ଏହା ତାଂକର ସାହିତ୍ୟ ସାଧନାର ଆଦ୍ୟପୀଠ । ଏହି ଗ୍ରାମର ମହତ୍ତ୍ୱ ଓ ପ୍ରାକୃତିକ ଲାବଣ୍ୟ ଚିରଦିନ ସ୍ମୃତିପଟରେ ଉଜ୍ଜୀବିତ ରହିବ ।

ସଂଧ୍ୟାବେଳକୁ ସ୍କଭ୍‌ରେ ପହଂଚିଗଲୁ । ରାତି ୧୧ଟା ଟ୍ରେନ୍‌ରେ ମସ୍କୋ ଫେରିବା କଥା । ସ୍କଭ୍‌ରେ ପହଞ୍ଚିବା ପରେ ଆମର ପୂର୍ବ ହୋଟେଲ୍‌ରେ କିଛି ସମୟ ବିଶ୍ରାମନେଲୁ ।

ଏହାପରେ ସ୍ଥାନୀୟ ନାଗରିକମାନେ ଏକ ବିଦାୟ ସଂବର୍ଧନାର ଆୟୋଜନ କରିଥିଲେ । ଉକ୍ତ ପାର୍ଟିରେ ଖାଦ୍ୟପେୟର ସ୍ୱତଂତ୍ର ବ୍ୟବସ୍ଥା ହୋଇଥିଲା । ହୋଟେଲ୍‌ର ରିସିପ୍‌ସନ ହଲ୍‌ରେ ସ୍ଥାନୀୟ ବୁଦ୍ଧିଜୀବୀ, ପତ୍ରକାର, ଲେଖକ ଓ ଲୋକପ୍ରତିନିଧିମାନଂକ ସଂଗେ ଆମର କିଛି ସମୟ ଆଳାପ ହୋଇଥିଲା । ବହୁ ଫୁଲତୋଡ଼ା ଆମକୁ ଉପହାର ଦିଆଯାଇଥିଲା । ଅଗରବତିର ମହକରେ ହଲ୍‌ଟି ଜୀବଂତ ହୋଇଉଠିଥିଲା । ମାଡାମ କାଜାକୋଭା ଏହି ନୈଶଭୋଜନ ଅବସରରେ ଏକ ସଂକ୍ଷିପ୍ତ ଭାଷଣ ଦେଇଥିଲେ । ତାଂକ ଭାଷଣରେ ସେ ଏହି ଅଂଚଳର ଐତିହାସିକ ଓ ସାଂସ୍କୃତିକ ମହତ୍ତ୍ୱ ଓ ଅବଦାନ ବିଷୟରେ ସୂଚନା ଦେଇଥିଲେ । ରାତ୍ରିଭୋଜନ ପରେ ଆମେ ସମସ୍ତେ ନିକଟସ୍ଥ ସ୍କଭ ରେଳଷ୍ଟେସନକୁ ଯାଇଥିଲୁ । ସ୍କଭରୁ ମସ୍କୋର ଦୂରତ୍ୱ ପ୍ରାୟ ଏକ ହଜାର କିଲୋମିଟରରୁ ଅଧିକ । ଦ୍ରୁତଗ୍ରାମୀ ଟ୍ରେନ୍‌ରେ ସ୍କଭ୍‌ରୁ ମସ୍କୋ ଗଲାବେଳେ ବାଟରେ ଜ୍ୟୋସ୍ନାପ୍ଲାବିତ ଶସ୍ୟକ୍ଷେତ୍ର ଓ ବଣ ଜଂଗଲ ଏକ ସୁଂଦର ଚିତ୍ରପୁରୀ ପରି ମନେହେଉଥିଲା ।

**ମସ୍କୋ ପ୍ରତ୍ୟାବର୍ତ୍ତନ :**

ଆମେ ୪-୬-୭୯ ତାରିଖ ସକାଳ ୮ଟା ସମୟରେ ମସ୍କୋ ରେଳଷ୍ଟେସନରେ ପହଂଚିଲୁ । ଏଥର ଅମକୁ 'ରୁଷିଆ' ହୋଟେଲରେ ରଖାଯାଇଥିଲା । ରୁଷିଆ ହୋଟେଲ ମସ୍କୋର ବୃହତ୍ତମ ଆଂତର୍ଜାତିକ ହୋଟେଲ । ଏହା ଇଉରୋପରେ ସବୁଠାରୁ ବଡ଼ ହୋଟେଲ । ହୋଟେଲ୍‌ର ପ୍ରକୋଷ୍ଠ ସଂଖ୍ୟା ୩୨୦୦ । ପ୍ରତ୍ୟେକ କୋଠରି ବେଶ୍ ପ୍ରଶସ୍ତ ଏବଂ ସ୍ୱୟଂସଂପୂର୍ଣ୍ଣ । ରେଡ୍‌ସ୍କୋୟାରର ପଛପଟେ ଏବଂ କାଥେଡ୍ରାଲ୍ ବାମପାର୍ଶ୍ୱରେ ଏହି ବିରାଟ ହୋଟେଲଟି ଅବସ୍ଥିତ । ଏଥିରେ ସ୍ୱଂୟକ୍ରିୟ ଡାଇନ୍ କ୍ଲିଲିଂଗ୍ ଏବଂ ୫ଟି ବଡ଼ ବଡ଼ ରେସ୍ତୋରାଁ, ୨୭ଟି କାଫେ ଏବଂ ସ୍ନାକ୍ ବାର୍ ରହିଛି । ଏହି ହୋଟେଲର କ୍ଷେତ୍ରଫଳ ୯.୯ ଏକର ଜମି । ହୋଟେଲ ଉଦ୍ୟାନରେ ରଂଗମଂଚ ଅଛି । ଏହି ମର୍ଯ୍ୟାଦାପୂର୍ଣ୍ଣ ଏବଂ ସୁରୁଚି ସଂପନ୍ନ ହୋଟେଲରେ ଥିଲାବେଳେ ମୋର ଆମେରିକା ଓ ଲଂଡନର କେତୋଟି ବଡ଼ ବଡ଼ ହୋଟେଲ କଥା ମନେପଡୁଥିଲା । ହୋଟେଲ ମଧ୍ୟରେ ବଲ୍‌ନାଚ ହଲ୍ ଓ ବହୁ ସେଲୁନ୍ ପ୍ରଭୃତି ରହିଛି । ଏହି ହୋଟେଲର ଚାରିପଟେ ବହୁ ଦୋକାନ ବଜାର ଅଛି । ବେଳେବେଳେ ମନେହେଉଥିଲା ଏହା ଯେପରି ଏକ ହୋଟେଲ ନୁହେଁ, ଏକ ସହର । ଯେଉଁ ଦୋକାନକୁ ଗଲେ ସେମାନେ ପଚାରୁଥିଲେ – ଡଲାର୍ ଅଛି ? ଗ୍ରାହକମାନେ ଡଲାର୍‌ରେ ଜିନିଷପତ୍ର କିଣିବାକୁ ସେମାନେ ଖୁବ୍ ପସଂଦକରଂତି ।

# ପଂଚଚତ୍ୱାରିଂଶ ଉଲ୍ଲାସ

## ମସ୍କୋ ବିଶ୍ୱବିଦ୍ୟାଳୟରେ ଓଡ଼ିଶୀ ପଟଚିତ୍ର ଓ ପୋଥିଚିତ୍ର ପ୍ରଦର୍ଶନୀ

**ଟଲଷ୍ଟୟଂକ ବାସଗୃହରେ ଦିନେ :**

ମୁଁ ମୋ ରୁମ୍‌ରେ ପହଁଚିବା ପରେ ଅଭ୍ୟର୍ଥନା ଅଫିସ୍ ମୋ ନାମରେ ଆସିଥିବା ଖଂଡେ ଚିଠି ପଠାଇଦେଲା । ମୁଁ ଚିଠିଟି ଖୋଲି ଦେଖିଲି – ଏହା ଲେଖିଛଂତି ମାଡାମ୍ ଗୁସେଭା । ମାଡାମ୍ ଗୁସେଭା ଜଣେ ଭାରତବିଦ୍ୟାବିତ୍ ବା ଇଂଡୋଲୋଜିଷ୍ଟ । ତାଂକ ସ୍ୱାମୀ ସେନେଟର ଡଃ ଗୁସେଭା ମଧ ଜଣେ ଖ୍ୟାତନାମା ପ୍ରଫେସର । ସେ ମସ୍କୋ ବିଶ୍ୱବିଦ୍ୟାଳୟରେ ଭାରତବିଦ୍ୟା ପଢ଼ାଂତି । ମାଡାମ୍ ଗୁସେଭା ଲେଖିଥିଲେ – "ଆଜି ୪-୬-୭୯ ଦୁଇଟାରେ ମସ୍କୋ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗରେ ଓଡ଼ିଶା ପୋଥିଚିତ୍ର ଓ ପଟଚିତ୍ରର ଏକ ପ୍ରଦର୍ଶନୀ ସେ ଆୟୋଜନ କରିଛଂତି । ମୁଁ ସେଠାରେ ଠିକ୍‌ସମୟରେ ପହଁଚିବାକୁ ସେ ଅନୁରୋଧ କରିଥିଲେ । ମୁଁ ଲେନିନ୍‌ଗ୍ରାଡ୍ ଯିବା ପୂର୍ବରୁ ମାଡ଼ାମ୍ ଗୁସେଭାଂକୁ କେତେକ ପଟଚିତ୍ର ଓ ପୋଥିଚିତ୍ର ଦେଇଯାଇଥିଲି । ଏକ ପ୍ରଦର୍ଶନୀ କରିବା ପାଇଁ ମଧ ଅନୁରୋଧ କରିଥିଲେ । ସେ ଆଜି ତାହାର ଆୟୋଜନ କରିବେ ବୋଲି ମୁଁ ଜାଣିନଥିଲି । ତେଣୁ ମୁଁ ଟିକେ ଥତମତ ଖାଇଗଲି । ମୁଁ ସଂଗେ ସଂଗେ ଦ୍ୱିଭାଷୀ ଟାନିଆ ରୁମ୍‌କୁ ଫୋନ୍‌କଲି । ସେ କହିଲା – ଠିକ୍ ଗୋଟାଏ ବେଳେ ଗାଡ଼ି ନେଇ ପହଁଚିବ । ମୁଁ ପ୍ରସ୍ତୁତ ହୋଇଥିବି, ସେ ମୋତେ ନେଇ ମସ୍କୋ ବିଶ୍ୱବିଦ୍ୟାଳୟକୁ ଯିବ । ମୁଁ ଠିକ୍ ଗୋଟାଏ ବେଳେ ଟାନିଆ ସହ ମସ୍କୋ ବିଶ୍ୱବିଦ୍ୟାଳୟକୁ ଗଲି । ସେଠାରେ ପହଁଚି ମନସ୍ତତ୍ତ୍ୱ ବିଭାଗ କେଉଁଠି ବୋଲି ପଚାରିଲୁ, ମାତ୍ର କେହି ଠିକ୍ କିଛି କହି ପାରିଲେ ନାହିଁ । ଜଣେ ଅଧ୍ୟାପକ ଟାନିଆକୁ କହିଲେ ଯେ ମନସ୍ତତ୍ତ୍ୱ ବିଭାଗ ବିଶ୍ୱବିଦ୍ୟାଳୟ ପରିସର ଭିତରେ ନାହିଁ, ଏହା ବାହାରେ ଏକ ବଜାରରେ ଅବସ୍ଥିତ । ଟାନିଆ ଡ୍ରାଇଭରକୁ ସେହି ବଜାରକୁ ଗାଡ଼ି ନେବାକୁ କହିଲା । ସେଠି ପହଁଚି ବହୁଲୋକଂକୁ ପଚରାପଚରି କରିବା ପରେ ଶେଷରେ ଯାଇ ମନସ୍ତତ୍ତ୍ୱ ବିଭାଗ ଚାଲିଥିବା ଅଟ୍ଟାଳିକାରେ ପହଁଚିଲୁ । ଆମେ ସଭାସ୍ଥଳରେ ପହଁଚିବାବେଳକୁ ୩ଟା ବାଜିଯାଇଥିଲା । ଆମର ବିଳଂବ ଦେଖି ମାଡାମ୍ ଗୁସେଭା ସଭା ଆରଂଭକରିଦେଇଥିଲେ । ସଭା ହେଉଥିବା ପ୍ରକୋଷ୍ଠରେ ଆମେ ପହଁଚିଲୁ । ଦେଖିଲୁ ମାଡାମ୍ ଗୁସେଭା ଭାଷଣ ଦେଉଛଂତି । ଆମେ ତାଂକ ପାଖ ଚୌକିରେ ବସିଲୁ । ସେହି ସଭାରେ ଟେଲିଭିଜନ, ରେଡ଼ିଓ, ସାଂବାଦିକ, ଫଟୋଗ୍ରାଫର ଏବଂ ବହୁ ଅଧ୍ୟାପକ ଅଧ୍ୟାପିକା ଛାତ୍ରଛାତ୍ରୀ ଯୋଗଦେଇଥିଲେ । ମାଡାମ୍ ଗୁସେଭାଂକ ଅବଶିଷ୍ଟ ଭାଷଣ ଟାନିଆ ଇଂରାଜୀରେ

ଅନୁବାଦ କରି ଆମକୁ ଧୀରସ୍ୱରରେ ବୁଝାଉଥିଲେ । ସେ ଭାରତୀୟ ଚିତ୍ରକଳା, ଭାସ୍କର୍ଯ୍ୟ ଇତ୍ୟାଦି ଉପରେ କହୁଥିଲେ । ତାଂକ ସ୍ୱାମୀ ସେନେଟର ଡଃ ଗୁସେଭା କେତେକ ଭାରତବିଷୟକ ସ୍ଲାଇଡ୍ ଦେଖାଉଥିଲେ । ମାଡାମ୍ ଗୁସେଭାଂକ ପରେ ମୁଁ କିଛି ସମୟ ଓଡ଼ିଶାର ଚିତ୍ରକଳା, ବିଶେଷକରି ଏହାର ପଟଚିତ୍ର ଓ ପୋଥିଚିତ୍ର ସଂବଧରେ କହିଥିଲି । ଯେତେବେଳେ କାଗଜ ଆବିଷ୍କୃତ ହୋଇନଥିଲା ସେତେବେଳେ ଚିତ୍ରଶିଳ୍ପୀମାନେ କିପରି ତାଳପତ୍ର ଓ କାନ୍‌ଭାସ୍ ଉପରେ ମନୋଜ୍ଞ ଚିତ୍ର ଆଂକୁଥିଲେ ସେ ବିଷୟରେ ମୁଁ କିଛି ସୂଚନା ଦେଇଥିଲି । ପାଶ୍ଚାତ୍ୟ କଳାସମାଲୋଚକମାନେ ଭାରତର ଅନବଦ୍ୟ ସ୍ଥାପତ୍ୟ ଓ ଚିତ୍ରକଳାକୁ କିପରି ହେୟଜ୍ଞାନ କରୁଥିଲେ ତାହା ମୁଁ କେତେକ ଉଦ୍ଧୃତି ଦେଇ ପ୍ରକାଶକରିଥିଲି । ମୋ ଇଂରାଜୀ ଭାଷଣକୁ ଟାନିଆ ରୁଷଭାଷାରେ ଅନୁବାଦ କରି ଶୁଣାଉଥିଲା । ସଭା ପରେ ପାଖ ପ୍ରକୋଷ୍ଠରେ ମୁଁ ମାଡାମ୍ ଗୁସେଭାଂକୁ ଦେଇଥିବା ପୋଥିଚିତ୍ର ଓ ପଟଚିତ୍ରମାନ ସୁସଜ୍ଜିତ ଭାବେ ରଖାଯାଇଥିଲା । ଦର୍ଶକମାନେ ସେସବୁ ବୁଲି ଦେଖିଥିଲେ ଏବଂ ମୋତେ କେତେକ ପ୍ରଶ୍ନ କରିଥିଲେ । ମୁଁ ସେମାନଂକୁ ଟାନିଆ ମାଧ୍ୟମରେ ଯଥାସାଧ୍ୟ ବୁଝାଇଥିଲି ।

ପ୍ରଖ୍ୟାତ ଓଡ଼ିଆ ଚିତ୍ରଶିଳ୍ପୀ ବିଭୂତି କାନୁନ୍‌ଗୋଂକ ଦ୍ୱାରା ସଂକଳିତ ଓ ପ୍ରକାଶିତ 'ରାମାୟଣ' ପଟଚିତ୍ର ପୁସ୍ତକର କେତେକ ଖୋଲା ଫର୍ମା ପ୍ରଦର୍ଶନୀରେ ରଖିବା ପାଇଁ ମାଡାମ୍ ଗୁସେଭାଂକୁ ପୂର୍ବରୁ ଦେଇଥିଲି, ସେ ସେହିପରି କରିଥିଲେ । ପ୍ରଦର୍ଶିତ ସମସ୍ତ ପୋଥିଚିତ୍ର ଓ ପଟଚିତ୍ର ଦେଖି ଦର୍ଶକମାନେ ବିଶେଷ ପ୍ରୀତ ହୋଇଥିଲେ । ସେମାନେ ସେଗୁଡ଼ିକର ଉଚ୍ଚ ପ୍ରଶଂସା କରିଥିଲେ ।

ପ୍ରଦର୍ଶନୀ ଦେଖିସାରିବା ପରେ ମାଡାମ୍ ଗୁସେଭା ସମସ୍ତଂକୁ ସଭାସ୍ଥଳକୁ ଆସି ଭାରତନୃତ୍ୟ ଦେଖିବା ପାଇଁ ଘୋଷଣା କରିଥିଲେ । ମସ୍କୋର ଜଣେ କଲେଜଛାତ୍ରୀ ଶାଢ଼ି ପିଂଧି ଟେପ୍ ରେକର୍ଡ଼ ସାହାଯ୍ୟରେ ଭାରତନାଟ୍ୟମ୍ ପ୍ରଦର୍ଶନ କରିଥିଲା । ତାହା ଦେଖି ସମସ୍ତେ ଉଚ୍ଚ ପ୍ରଶଂସା କରିଥିଲେ ।

**ଓଡ଼ିଶା ସରକାରଂକ ଉଦାସୀନତା :**

ମୁଁ ରୁଷ୍ ଓ ପୂର୍ବଇଉରୋପୀୟ ଦେଶକୁ ଯିବା ପୂର୍ବରୁ ସେଠାରେ ଓଡ଼ିଶୀ ପଟଚିତ୍ର ଓ ପୋଥିଚିତ୍ରର ପ୍ରଦର୍ଶନୀ କରିବା ପାଇଁ ମନେ ମନେ ଭାବିଥିଲି । ସେଥିପାଇଁ ସଂଗରେ କିଛି ପଟଚିତ୍ରର ଛାପାଫର୍ମା ('ରାମାୟଣ') ସଂଗରେ ନେଇଯାଇଥିଲି । କେତେକ ପୋଥିଚିତ୍ର ଓ ତହିଁର ସ୍ଲାଇଡ୍ ମଧ୍ୟ ନେଇଥିଲି । ମସ୍କୋରେ ମାଡାମ୍ ଗୁସେଭାଂକ ସହିତ ପରାମର୍ଶ କରିବା ପରେ ସେ ପ୍ରସ୍ତାବିତ ପ୍ରଦର୍ଶନୀର ଆୟୋଜନ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ତେଣୁ ତାଂକୁ ମୁଁ ସେଗୁଡ଼ିକ ବୁଝାଇଦେଇ ଲେନିନ୍‌ଗ୍ରାଡ୍ ଚାଲିଯାଇଥିଲି । ଓଡ଼ିଶା ଛାଡ଼ିବା ପୂର୍ବରୁ ମୁଁ ଓଡ଼ିଶାର ମୁଖ୍ୟମଂତ୍ରୀ ନୀଳମଣି ରାଉତରାୟ ଏବଂ ସଂସ୍କୃତି ମଂତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚଂଦନଂକୁ ମୋତେ କିଛି ଅନୁଦାନ ଦେବାକୁ ଅନୁରୋଧ କରିଥିଲି । କାରଣ ମୋତେ ରୁଷ୍, ଚେକୋସ୍ଲୋଭାକିଆ ଏବଂ ପୋଲାଂଡର

ଯେଉଁ ଅନୁଷ୍ଠାନମାନେ ବିଭିନ୍ନ ସାଂସ୍କୃତିକ କାର୍ଯକ୍ରମରେ ଅଂଶ ନେବା ପାଇଁ ଡାକିଥିଲେ ସେମାନେ କେବଳ ମୋର ସ୍ଥାନୀୟ ଆତିଥ୍ୟ ବାବଦ ଖର୍ଚ୍ଚ ଏବଂ କିଛି ପକେଟ୍ ଖର୍ଚ୍ଚ ଦେବାପାଇଁ ଜଣାଇଥିଲେ । ଏଥିରେ କଳା ପ୍ରଦର୍ଶନୀ ବା ଅନ୍ୟ କୌଣସି ପ୍ରକଳ୍ପ କାର୍ଯକାରୀ କରିବା ସଂଭବ ନଥିଲା । ଏସବୁ କରିବାକୁ ହେଲେ ବହୁତ ଅର୍ଥ ଦରକାର । ନିମଂତ୍ରଣ ପତ୍ର ଛାପିବା ଏବଂ ସେସବୁକୁ ଡାକରେ ପଠାଇବା ବ୍ୟୟସାପେକ୍ଷ । ତାଛଡ଼ା ଉଦ୍‌ଘାଟନ ଦିନର ପାର୍ଟି ପାଇଁ ଏବଂ ପ୍ରେସ୍ କନ୍‌ଫରେନସ୍ ଇତ୍ୟାଦି ପାଇଁ ବହୁତ ଅର୍ଥ ଦରକାର । ସେଥିପାଇଁ ଓଡ଼ିଶା ସରକାର ଆର୍ଥିକ ସାହାଯ୍ୟ ନ କଲେ ମୁଁ ବ୍ୟକ୍ତିଗତ ଭାବେ ଏସବୁ ଖର୍ଚ୍ଚ ବହନ କରିବା ସଂପୂର୍ଣ୍ଣ ଅସଂଭବ ଥିଲା । ମୋର ସୀମିତ ସଂବଳ ଦ୍ୱାରା ଏସବୁ କାର୍ଯ କରିବା କିପରି ବା ସଂଭବ ହୁଅଂତା ?

ମୋର ବିଦେଶ ଯାତ୍ରାର ତିନି-ଚାରିଦିନ ପୂର୍ବରୁ ସଂସ୍କୃତି ମଂତ୍ରୀ ବିଶ୍ୱଭୂଷଣ ହରିଚଂଦନ ମୋତେ ଜଣାଇଥିଲେ ଯେ ମୁଖ୍ୟମଂତ୍ରୀ ଏ ଟଂକା ମଂଜୁର୍ କରିଦେଇଛଂତି । ତେଣୁ ମୁଁ ଆଶ୍ୱସ୍ତ ହେଲି । ମୁଁ ଓଡ଼ିଶା ଛାଡ଼ିବା ଦୁଇଦିନ ଆଗରୁ ତାଂକୁ ଫୋନ୍ କରିଥିଲି । ସେ କହିଲେ ଯେ ଜଣେ ବିଭାଗୀୟ ଆଇ.ଏ.ଏସ୍. ଅଫିସର ମୁଖ୍ୟମଂତ୍ରୀକୁ କହିଛଂତି ରାଉତ୍‌ରାୟଂକୁ ବିଦେଶର ଯେଉଁ ପ୍ରତିଷ୍ଠାନମାନେ ଡାକିଛଂତି ସେମାନେ ଏସବୁ ଟଂକା ଦେବେ, ଓଡ଼ିଶା ସରକାର ଏଥିପାଇଁ ଆର୍ଥିକ ସାହାଯ୍ୟ ଦେବା ଦରକାର ନାହିଁ । ମୁଖ୍ୟମଂତ୍ରୀ ତାଂକ କଥା ଶୁଣି ସେ ଫାଇଲ୍ ଫେରସ୍ତ ଆଣି ଅର୍ଥ ବିଭାଗକୁ ପଠାଇ-ଦେଇଛଂତି । ଏହାର ଅର୍ଥ ଫାଇନାନ୍‌ସ୍ ବିଭାଗରେ ଏସବୁ ପ୍ରସେସିଂଗ ଇତ୍ୟାଦି ହେବାକୁ ମାସ ମାସ ସମୟ ଲାଗିବ ।

ତେଣୁ ମୁଁ ଦୁଇଦିନ ପରେ ବିଦେଶଯାତ୍ରା ପୂର୍ବରୁ ଏହି ଟଂକା ପାଇବାର ଆଦୌ ସଂଭାବନା ନଥିଲା । ତେଣୁ ମୁଁ ସଂପୂର୍ଣ ନିରାଶହେଲି । ମସ୍କୋରେ ପ୍ରଦର୍ଶନୀ କରିବାର ଦୁଇ-ତିନିଦିନ ପରେ ମସ୍କୋସ୍ଥିତ ଭାରତୀୟ ଦୂତାବାସର ପ୍ରଥମ ସେକ୍ରେଟାରୀ ମିଃ ଗାଂଧୀଂକ ସଂଗେ ଦେଖାହେଲା । ସେ ମୋତେ ପଚାରିଲେ – ଆପଣ ପ୍ରଦର୍ଶନୀ କଲେ, କିନ୍ତୁ ଆମ ଦୂତାବାସର କାହାକୁ ନିମଂତ୍ରଣ କଲେ ନାହିଁ । ମୁଁ କହିଲି ନିମଂତ୍ରଣପତ୍ର ଛପା ହୋଇନଥିଲା । ମାଡାମ୍ ଗୁସେଭା କେତେକ ବଂଧୁ ଓ ଇଂଡୋଲୋଜିଷ୍ଟମାନଂକୁ ଟେଲିଫୋନ ଯୋଗେ ପ୍ରଦର୍ଶନୀକୁ ଆସିବାକୁ ନିମଂତ୍ରଣ କରିଥିଲେ । ମୁଁ ମସ୍କୋରେ ନଥିଲି । ସେ ଟିକେ ମୁରୁକି ହସିଲେ, ଆଉ କିଛି କହିଲେ ନାହିଁ । ଏହା ହେଉଛି ମୋର ବିଦେଶରେ ଓଡ଼ିଶୀ ଓ ଭାରତର କଳା ଓ ସଂସ୍କୃତି ପ୍ରଚାର କରିବାର ପରିଣତି ।

**ଡକ୍ଟର ଗୋପାଳଚଂଦ୍ର ମିଶ୍ରଂକ ପୁସ୍ତକ :**

ମୁଁ ରୁଷରେ ଯେଉଁ କେତେଦିନ ଥିଲି ମୋ ସଂଗରେ ସଂବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ପ୍ରଫେସର ଡଃ ଗୋପାଳ ଚଂଦ୍ର ମିଶ୍ର ଥିଲେ । ମୁଁ ଯେଉଁସବୁ ଅନୁଷ୍ଠାନରେ ଭାଗନେବାପାଇଁ ଆମଂତ୍ରିତ ହୋଇଥିଲି ସେଠାରେ ମୋର ଭୂମିକା ମୁଁ ସୁଚାରୁରୂପେ ପାଳନକରିଥିଲି । ପୁଷ୍କିନ୍ ମେଳାରେ ମୁଁ କବିତା ପାଠକରିଥିଲି । ସେଠାରେ ବଂଧୁ ଡଃ

ମିଶ୍ର ଉପସ୍ଥିତ ଥିଲେ । ମାତ୍ର ଦୁର୍ଭାଗ୍ୟର ବିଷୟ ଯେ ୧୯୮୧ ମସିହାରେ ''ରୁଷ୍ ଅନୁଭୂତି'' ନାମକ ଯେଉଁ ପୁସ୍ତକଟି ପ୍ରକାଶକରିଛଂତି ସେଥିରେ ସେ ମଧ୍ୟାହ୍ନ ମେଳାରେ ମୁଁ କବିତା ପଢ଼ିଥିବା କିଂବା ଉପସ୍ଥିତ ଥିବା କଥା ଆଦୌ ଉଲ୍ଲେଖ କରିନାହାଂତି, ଯଦିଚ ଏହା ମୋର ମୁଖ୍ୟ କାର୍ଯକ୍ରମ ଥିଲା । ତାପରେ ମସ୍କୋ ବିଶ୍ୱବିଦ୍ୟାଳୟରେ ମୁଁ ଓ ମାଡାମ୍ ଗୁସେଭା ଓଡ଼ିଶାର ଯେଉଁ ପୋଥିଚିତ୍ର ଓ ପଟଚିତ୍ର ପ୍ରଦର୍ଶନୀ ୪-୬-୭୯ ତାରିଖରେ କରିଥିଲୁ ସେଠାକୁ ମଧ ମୁଁ ତାଂକୁ ସଂଗରେ ନେଇଥିଲି । ମାତ୍ର ସେ ତାଂକ ପୁସ୍ତକରେ ଏହା ଆଦୌ ଉଲ୍ଲେଖ କରିନାହାଂତି । ସେହିପରି ଟଲଷ୍ଟୟଂକ ବାସସ୍ଥାନ ଦର୍ଶନ ସମୟରେ ମୁଁ ସେଠାରେ ଉପସ୍ଥିତ ଥିବା କଥା ସେ ଆଦୌ ତାଂକ ପୁସ୍ତକରେ ସୂଚନା ଦେଇନାହାଁତି, ଅଥଚ ଏହା ମୋର ରୁଷ୍ ପରିକ୍ରମାର ଏକ ଗୁରୁତ୍ୱପୂର୍ଣ କାର୍ଯ ଥିଲା । ଏପରି କରିବାର କାରଣ କ'ଣ ମୁଁ ବୁଝିପାରିଲିନାହିଁ । ସେ ଯାହାହେଉ ତାଂକର ଉପରୋକ୍ତ ଭ୍ରମଣକାହାଣୀରୁ ମୁଁ କେତେକ ଦରଭୁଲା ତଥ୍ୟ ଯଥାସ୍ଥାନରେ ପ୍ରାପ୍ତି ସ୍ୱୀକାର କରି ମୋ ପୁସ୍ତକରେ ଉଦ୍ଧାର କରିଛି । ସେଥିପାଇଁ ମୁଁ ତାଂକ ନିକଟରେ କୃତଜ୍ଞ ।

**ମାୟାକୋଭସ୍କି ବାସଗୃହ ଦର୍ଶନ :**

ମୁଁ ମସ୍କୋରେ ଥିଲାବେଳେ ରୁଷ୍ର କବି ମାୟାକୋଭସ୍କିଂକ ବାସଗୃହ ଦେଖିଥିଲି । ଏଥିରେ ତାଂକର ବହୁ ଅପ୍ରକାଶିତ ଲେଖା, ଚିଠିପତ୍ର ଇତ୍ୟାଦି ସଯତ୍ନରେ ରଖାଯାଇଛି । ମୁଁ ୧୯୬୫ ମସିହାରେ ମାୟାକୋଭସ୍କିଂକ କବିତା ଓଡ଼ିଆରେ ଅନୁବାଦ କରିଥିଲି । ଏହା 'ମାୟାକୋଭସ୍କି କବିତା ସଂଗ୍ରହ' ନାମରେ ପ୍ରକାଶ ପାଇଥିଲା । ଏଥିପାଇଁ ମୋତେ ସୋଭିଏତ୍ ଲ୍ୟାଂଡ୍ ନେହରୁ ପୁରସ୍କାର ମିଳିଥିଲା ।

**ୟାସନାୟାପଲିୟାନାରେ ଟଲଷ୍ଟୟଂକ ସମାଧି ଦର୍ଶନ :**

ଆଜି ୯.୬.୭୯ ତାରିଖ ଶନିବାର । ମୁଁ ଟଲଷ୍ଟୟଂକ ବାସଗୃହ ଓ ଜନ୍ମସ୍ଥାନ 'ୟାସନାୟାପଲିୟାନା' ଦେଖିବାକୁ ଯାଇଥିଲି । ମୋ ସହିତ ଢାକା ବିଶ୍ୱବିଦ୍ୟାଳୟର ଇଂରାଜୀ ପ୍ରଫେସର କବୀର ଚୌଧୁରୀ ଏବଂ ସଂବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ପ୍ରଫେସର ଗୋପାଳ ଚଂଦ୍ର ମିଶ୍ର ଯାଇଥିଲେ । ପ୍ରଫେସର ଚୌଧୁରୀ ଆଫ୍ରୋ-ଏସିଆନ୍ ଲେଖକ ସମ୍ମିଳନୀରେ ଯୋଗ ଦେବା ନିମଂତେ ମସ୍କୋ ଆସିଥିଲେ । ଆମର ଦ୍ୱିଭାଷୀ ନାଟାସା ଅନ୍ୟ ଏକ ଗାଡ଼ିରେ ଯାଇଥିଲେ ।

'ୟାସନାୟା ପଲିୟାନାର' ଅର୍ଥ 'ଉଜ୍ଜ୍ୱଳ ଉପତ୍ୟକା' । ଏହା ମସ୍କୋଠାରୁ ୨୦୦ କି.ମି. ଦୂରରେ ଅବସ୍ଥିତ । ସେଦିନ ସକାଳୁ ଝିପିଝିପି ବର୍ଷା ଓ କୋହଲା ପାଗ ଲାଗିରହିଥାଏ । ଆମେ ଆମର ଗଂତବ୍ୟ ପଥରେ ଆଗେଇଚାଲିଥାଉ । 'ୟାସନା-ୟାପଲିୟାନା'ରେ ପହଁଚି ଦେଖିଲୁ ଶୀତଦିନିଆ ଖରା ବେଶ୍ ଆରାମ୍ ଲାଗୁଛି । ଟଲଷ୍ଟୟଂକର ଏହି ବାସସ୍ଥାନ ଓ ଜନ୍ମସ୍ଥଳୀ ବିଶ୍ୱସାହିତ୍ୟର ମାନଚିତ୍ରରେ ବାସ୍ତବରେ ଏକ ଉଜ୍ଜ୍ୱଳ ଉପତ୍ୟକା ।

ଟଲଷ୍ଟୟ ବିଶ୍ୱସାହିତ୍ୟରେ ଜଣେ ଯୁଗସ୍ରଷ୍ଟା କଥାଶିଳ୍ପୀ । ସେ ସାହିତ୍ୟରେ ନୋବେଲ୍ ପୁରସ୍କାର ପାଇନଥିଲେ ସୁଦ୍ଧା ତାଂକ ପରି ମହାନ୍ ଦିଗଦ୍ରଷ୍ଟା ସାହିତ୍ୟିକ ସମଗ୍ର ବିଶ୍ୱରେ ବିରଳ । ତାଂକୁ ନୋବେଲ୍ ପୁରସ୍କାର ନଦେଇ ସ୍ୱେଡିସ୍ ଏକାଡେମୀ ବିଶ୍ୱରେ ସମାଲୋଚିତ ହୋଇଛଂତି । ମୁଁ ତାଂକର ଉପନ୍ୟାସ War and Peace, Annakaranina ଏବଂ Resurection ପ୍ରଭୃତି ପଢ଼ି ଅତିମାତ୍ରାରେ ପ୍ରଭାବିତ ହୋଇଥିଲି । ସେ ଥିଲେ ପ୍ରକୃତିର ଉପାସକ । ସେ ଚାହୁଁଥିଲେ ମଣିଷ ପ୍ରକୃତି ସହିତ ଗଭୀର ସଂପର୍କ ରଖୁ । ମଣିଷ ନିଜର କାମଦାମ କରୁ । ଧନୀ ଦରିଦ୍ର ମଧ୍ୟରେ ଥିବା ବୈଷମ୍ୟ ଦୂରହେଉ ।

କାଉଂଟ ଲିଓ ଟଲଷ୍ଟୟ ମହାତ୍ମା ଗାଂଧୀଂକୁ ଅତ୍ୟଂତ ପ୍ରଭାବିତ କରିଥିଲେ । ଗାଂଧୀଜୀ ଏକଥା ନିଜେ ତାଂକର କେତେକ ପୁସ୍ତକରେ ଲେଖିଯାଇଛଂତି । ଟଲଷ୍ଟୟଂକ ଜନ୍ମ ରୁଷର ଏକ ଅଭିଜାତ ପରିବାରରେ ହୋଇଥିଲା । ତାଙ୍କର Estate ଦେଖିଲେ ବୁଝାଯିବ ଯେ ସେ ଏକ ସଂଭ୍ରାଂତ ଜମିଦାର ପରିବାରରେ ଜନ୍ମନେଇଥିଲେ । ତାଂକ ଇଷ୍ଟେଟ ହତା ଭିତରେ ଘୋଡ଼ାଗାଡ଼ି ରହିବା ଘର ଦି' ତିନି ବଖରା ଦେଖିଲି । ସେଥିରୁ ଗୋଟାକରେ ଭଂଗା ଘୋଡ଼ାଗାଡ଼ି ପଡ଼ିଥିଲା । ପ୍ରବେଶ ଦ୍ୱାରର ଅଳ୍ପ ଦୂରରେ ଗୋଟାଏ ମସ୍ତବଡ଼ ପୋଖରୀ ଅଛି । ସେହି ପୋଖରୀ କୂଳରେ ଏକ ଘଂଚ ଗଛମୂଳରେ ବସି ଟଲଷ୍ଟୟ ବନ୍ସି ଖାଡ଼ି ପକାଇ ମାଛଧରୁଥିଲେ । ଟଲଷ୍ଟୟଂକ ଧାଈମା ରହୁଥିବା ଘର ଦେଖିଲି, ସେ ଟଲଷ୍ଟୟଂକୁ ଶିଶୁ ଅବସ୍ଥାରେ ନିଜ ସ୍ତନରୁ କ୍ଷୀର ପାନକରାଉଥିଲେ ।

ଶେଷରେ ଦେଖିଲି ଟଲଷ୍ଟୟଂକ ସମାଧି । ସମାଧି ଉପରେ ବହୁତ ଫୁଲତୋଡ଼ା ରହିଛି । କେତେକ ନବବିବାହିତ ଦମ୍ପତି ଆମ ଆଗରେ ସମାଧି ଉପରେ ଫୁଲତୋଡ଼ା ରଖି ସଂଭ୍ରମ ଜଣାଇ ଚାଲିଗଲେ । ଟଲଷ୍ଟୟଂକର ସାମଧି ଦେଖି ତାଂକର ସେହି ଗଳ୍ପଟି "How Much Land a Man Needs" ଗଳ୍ପଟି ମନେପଡ଼ିଲା । ଶେଷରେ ମଣିଷର ମାତ୍ର ୮ ଫୁଟ ଜମି ଦରକାର, ଅଥଚ ମଣିଷ ଝାଳନାଳ ହୋଇ ଜୀବନସାରା ଏକର ଏକର ଜମି ହାସଲ କରିବାରେ ଲାଗିଛି । ମାତ୍ର ଜମି କ'ଣ ସଂଗରେ ଯିବ ।

୧୮୨୮ ମସିହା ଅଗଷ୍ଟ ୨୮ ତାରିଖରେ Leonikolae Vichରେ ଟଲଷ୍ଟୟଂକ ଜନ୍ମ । ତାଂକର ମୃତ୍ୟୁ ହୁଏ ୧୯୧୦ ମସିହାରେ । ସେ ୯ ବର୍ଷର ବାଳକ ଥିଲାବେଳେ ପିତାମାତାଂକୁ ହରାଇଥିଲେ । ସେ ଏବଂ ତାଂକ ଭାଇଭଉଣୀମାନେ ଆତ୍ମୀୟସ୍ୱଜନମାନଂକ ଦ୍ୱାରା ଲାଳିତପାଳିତ ହୋଇଥିଲେ । ସେ ଯୁବକ ଅବସ୍ଥାରେ ଉଚ୍ଛୃଙ୍ଖଳ ଜୀବନ ଯାପନ କରିଥିଲେ । ବହୁ ନାରୀଂକୁ ପ୍ରେମକରିବା ସଂଗେ ସଂଗେ ଜୁଆଖେଳରେ ମାତିଥିଲେ । ସେ ୧୮୫୧ ମସିହାରେ କକେସସ୍ ଯାଇ ସୈନ୍ୟବାହିନୀରେ ଯୋଗଦେଇଥିଲେ । ସେହି ସମୟରେ ସେ ତାଂକର ପ୍ରଥମ ଗଳ୍ପ ''କୋସାକ୍'' ଲେଖିଥିଲେ । ଏହା ୧୮୬୩ ମସିହାରେ ପ୍ରକାଶପାଇଥିଲା । ତାଂକର ପ୍ରଥମ ପ୍ରକାଶିତ ବହିର ନାମ "Childhood" । ଏହା ପ୍ରକାଶ ପାଇବା ପରେ ତାଂକର ପ୍ରତିଭା ସର୍ବତ୍ର ପ୍ରଶଂସିତ ହୋଇଥିଲା । ଏହାପରେ ତାଂକର "Boyhood" ବହିଟି ପ୍ରକାଶ ପାଇଲା । ଏହି ପୁସ୍ତକ ଦୁଇଟିରେ

ସେ କ୍ରିମିଆ ଯୁଦ୍ଧର ଅଭିଜ୍ଞତା ବର୍ଣନା କରିଥିଲେ । ପରବର୍ତ୍ତୀ କାଳରେ ତାଂକର ବିଶ୍ୱବିଖ୍ୟାତ ଉପନ୍ୟାସ War and Peaceର ମୂଳଦୂଆ ଏହି ଗଳ୍ପରେ ନିହିତ ଥିବା ଲକ୍ଷ୍ୟକରାଯାଇପାରେ । ସେ କିଛିଦିନ ବିଦେଶ ଭ୍ରମଣରେ ଯାଇଥିଲେ । ସେଠାରୁ ଫେରି ନିଜ ଜମିଦାରିରେ ଜଣେ ମାଜିଷ୍ଟ୍ରେଟ ଭାବରେ କାଳାତିପାତ କରିଥିଲେ । ସେ ‘‘ୟାସ୍‌ନାୟାପଲିୟାନା’’ରେ କୃଷକମାନଂକ ପିଲାଂକପାଇଁ ଏକ ସ୍କୁଲ୍ ସ୍ଥାପନ କରିଥିଲେ । ସେ ଶିକ୍ଷା ବିଷୟକ ଏକ ପତ୍ରିକା ପ୍ରକାଶକରିଥିଲେ । ସେ ୧୮୬୨ ଖ୍ରୀଷ୍ଟାବ୍ଦରେ ବିବାହକରଂତି । ଏହା ପରେ ତାଂକ ଜୀବନର ଗତି ପରିବର୍ତ୍ତିତ ହୁଏ । ସେ ଚାଷୀମାନଂକ କଲ୍ୟାଣ ପାଇଁ ବହୁତ କାମ କରଂତି । ତାଂକର ଅଂତର୍ଦୃଷ୍ଟିର ବିକାଶ ତାଂକ ଲେଖାମାନଂକରେ ପ୍ରତିଫଳିତ ହୋଇଛି । ତାଂକର ଏହି ସମୟର ଲେଖାମାନଂକରେ ଏକ ଶକ୍ତିଶାଳୀ ଧର୍ମୀୟ ପୁରୋଦୃଷ୍ଟି ଏବଂ ମାନବିକତାବାଦ ଲକ୍ଷ୍ୟ କରାଯାଇପାରେ । ସେ ବିଭିନ୍ନ ସାମାଜିକ ସମସ୍ୟା ଉପରେ ଗଳ୍ପ, ଉପନ୍ୟାସ ରଚନା କରିଛଂତି । ସେ ଧନୀ ଓ ଦରିଦ୍ରମାନଂକ ମଧ୍ୟରେ ପାର୍ଥକ୍ୟ ଓ ଭେଦଭାବ ଦୂରକରିବା ପାଇଁ ଲେଖନୀ ଚାଳନା କରିଥିଲେ । ଜୀବନର ଶେଷପର୍ଯ୍ୟାୟରେ ସେ ଜଣେ ନୀତିବାଦୀ ଏବଂ ଧର୍ମଶିକ୍ଷକ ରୂପେ ମାନବଜାତିର ଶ୍ରଦ୍ଧାଭାଜନ ହୁଅଂତି । ତାଂକର ଅନ୍ତର୍ଚେତନା କ୍ରମେ ତାଂକୁ ଯିଶୁଖ୍ରୀଷ୍ଟଂକ ମହତ୍‌ବାଣୀ ପ୍ରଚାରରେ ନିଯୁକ୍ତକରେ । ତାଂକର ବିଶ୍ୱାସ ଥିଲା ମଣିଷ ଭିତରେ ହିଁ ଭଗବାନଂକ ରାଜ୍ୟ ବିରାଜମାନ ଅଛି । ତାଂକର ନୀତିବାକ୍ୟ ଥିଲା – "God is love, and the meaning of life is the conformity to the principle of love".

ଟଲଷ୍ଟୟଙ୍କ ସମାଧି ଉପରେ ମୁଁ ଗୋଟିଏ କବିତା ଲେଖିଛି ତାହା ତଳେ ଦିଆଗଲା ।

**ଟଲଷ୍ଟୟଂକ ସମାଧି ନିକଟରେ :**

ମଣିଷର ଲୋଡ଼ା ମାତ୍ର ଆଠ ଫୁଟ ଜାଗା
ସେତିକି ନେଇଛ ତୁମେ, ଇଂଚେ ବେଶୀ ନୁହେଁ ।
(ତମର ଗଳ୍ପଟା ପଡ଼େ ବାର ବାର ମନେ)
ବାକି ସବୁ ବଳକା ଇଲାକା,
 ଏକର ଏକର ବାସଭୂଇଁ
ତୁମର ରହିବା ଘର ପୁରୁଣା ପ୍ରାସାଦ
ଅନାବାଦୀ ଜମି ପରି ପଡ଼ିଛି ସେଠାରେ,
ତୁମ ଘୋଡ଼ାଶାଳ ଏବଂ ଘୋଡ଼ାଗାଡ଼ି
ତୁମର ଏଂତୁଡ଼ିଶାଳ, ଧାଈମା’ର ଘର
 ସବୁ ଆଜି ପର୍ଯ୍ୟଟକ ସ୍ଥାନ
ତୁମର କବର ଉପରେ ପଡ଼ିଅଛି ଏକ ଫୁଲମାଳ
ନବ ବିବାହିତ କେଉଁ ଦଂପତିଂକ
 ପ୍ରୀତି ଉପହାର ।

ତୁମର ଗଳ୍ପଟି ମୋ'ର ପଡ଼ିଯାଏ ମନେ
କାହିଁ ପାଇଁ ଏତେ ଧାଁଦୌଡ଼
ସକାଳରୁ ସୂର୍ଯ ଅସ୍ତ ଯାଏ
କାହିଁକି ଏ ରାଜଧାନୀ ଜମି, କୋଠା ମାଳ ମାଳ,
କିଛି ତ ଯିବନି ସଂଗେ
ରହିଯିବ ମୁଠାଏ ପାଉଁଶ,
ତାହାହିଁ ତ ଜୀବନର ସକଳ ସାରାଂଶ ।
ତୁମରି ସେ ବଡ଼ ପୋଖରୀଟା
ଯେଉଁଠାରେ ଧରୁଥାଅ ମାଛ
ବଡ଼ ବଡ଼ ଗଛର ଛାୟାରେ
ବନ୍‌ଶୀ ଖାଡ଼ି ଫେଇ
ଚାହେଁ ମୋତେ କଟମଟ କରି ।
ଏଠାରେ ପଡ଼ିଛି ଇତିହାସ,
ବୋନାପାର୍ଟ ବାହୁଡ଼ା ଯାତ୍ରାର,
ଏବଂ ଆନାକାରାନିଆର ଅଂତିମ ନିଶ୍ୱାସ ।
ବିରାଟ ହତାଟା କରେ ଖାଁ ଖାଁ
ମାଗୁଛି ମେଲାଣି,
ଟଲଷ୍ଟୟ । ତୁମକୁ ମୁଁ କରେ ନମସ୍କାର ।

ତା ୧.୯.୯୦
ମିଶନ୍‌ରୋଡ଼ – କଟକ-୧

**ରଷିଆନ୍ ସର୍କସ୍ :**

ମୁଁ କଲିକତାରେ ଥରେ ରଷିଆନ୍ ସର୍କସ ଦେଖିଥିଲି । ଏହା ଏକ ଉଚ୍ଚକୋଟୀର ସର୍କସ ଥିଲା । ସର୍କସର ନଟନଟୀମାନଂକର କାୟାଚାଳନା ବିସ୍ମୟକର ଥିଲା । ମସ୍କୋରେ ଥିଲାବେଳେ ମୁଁ ମସ୍କୋ ସର୍କସ ଦେଖିବାକୁ ଯାଇଥିଲି । ରଷିଆନ୍ ବ୍ୟାଲେ ଭଳି ରଷିଆନ୍ ସର୍କସ ଏକ ପରମ୍ପରାପୂର୍ଣ ଜାତୀୟ ଅନୁଷ୍ଠାନ । ଏହାକୁ ନେଇ ରୁଷ୍‌ବାସୀ ଗର୍ବ ଓ ଗୌରବ ଅନୁଭବ କରିଥାଂତି । ତେଣୁ ୭.୬.୭୯ ରାତିରେ ମୁଁ ମସ୍କୋ ସର୍କସ ଦେଖିବାକୁ ଯାଇଥିଲି । ଆଗରୁ ଟିକେଟ୍ ନ କିଣିଲେ ମସ୍କୋରେ ସର୍କସ ବା ଥିଏଟର ଦେଖିବା କଷ୍ଟକର ହୁଏ । ଦ୍ୱିଭାଷୀ ନାଟାସା ପୂର୍ବରୁ ରଷିଆ ହୋଟେଲ କାଉଂଟରରୁ ଟିକେଟ୍ କିଣି ରଖିଥିଲା । ଟାନିଆ କିଛିଦିନ ଛୁଟି ନେଇଥିବାରୁ ନାଟାସା ତା ସ୍ଥାନରେ ଦ୍ୱିଭାଷୀ କାର୍ଯ କରୁଥିଲା । ପୂର୍ବରୁ ରୁଷିଆ ହୋଟେଲ କାଉଂଟରରୁ ଟିକେଟ କିଣି ରଖିଥିଲା ।

ମସ୍କୋ ସର୍କସର ତମ୍ବୁ ଏକ ବିସ୍ତୀର୍ଣ ଅଂଚଳରେ ଅବସ୍ଥିତ । ଏହାର ଖେଳାଳିମାନେ କି ସ୍ତ୍ରୀ, କି ପୁରୁଷ ଦେଖିବାକୁ ବେଶ୍ ସୁଂଦର । ନାନାପ୍ରକାର ଖେଳ ପ୍ରଦର୍ଶିତ

ହୋଇଥିଲା । ଶୂନ୍ୟରେ ଦୋଳିଖେଳ, ତାର ଉପରେ ଛତା ଧରି ଚାଲିବା, ସାଇକେଲ୍ ଏବଂ ସ୍କୁଟର ଚାଳନା ଅତି ଚମତ୍କାର ଥିଲା । ଏହାଛଡ଼ା ବାଘ, ସିଂହ, ହାତୀ, ଘୋଡ଼ା, କୁକୁର ଓ ଚଢ଼େଇମାନଂକର ଖେଳ ଉତ୍କୃଷ୍ଟଧରଣର ଥିଲା ।

**ମସ୍କୋର ବଲସେଭିକ୍ ଥିଏଟର :**

ମସ୍କୋର ବଲସେଭିକ୍ ଥିଏଟର ସମଗ୍ର ବିଶ୍ୱରେ ଏକ ଖ୍ୟାତିସଂପନ୍ନ ଥିଏଟର । ଏହି ଥିଏଟର ମାଧ୍ୟମରେ ରୁଷିଆରେ ନବ ନାଟ୍ୟ ଆନ୍ଦୋଳନ ଦ୍ରୁତ ପ୍ରସାର ଲାଭ କରିଛି । ରୁଷିଆନ୍ ଥିଏଟରର ଅୟମାରଂଭ ହୁଏ ୧୭୭୬ ଖ୍ରୀଷ୍ଟାବ୍ଦରେ, ଅବଶ୍ୟ ଭିନ୍ନ ନାମରେ । ରୁଷ୍‌ର କଳାପ୍ରେମୀ ଯୁବରାଜ ପିଟର ଉରୁସୋଭ ଜଣେ ଇଂରେଜ ବ୍ୟବସାୟୀ ମାଇକେଲ୍ ମେଡୋକ୍‌ସଂକ ସାହାଯ୍ୟରେ ଏକ ସ୍ଥାୟୀ ଥିଏଟର ଦଳ ଗଠନକରିଥିଲେ । ଏହି ଥିଏଟର ଦଳର କୌଣସି ରଂଗମଂଚ ନ ଥିଲା । ସେହି ସମୟରେ ଏହା ମସ୍କୋରେ ଝାମେଂକା ଷ୍ଟ୍ରୀଟ୍‌ରେ ଏକ ଘର ଭଡ଼ା ନେଇ ଥିଏଟର ଅଭିନୟ କରୁଥିଲେ । ଯେଉଁ ଘରେ ଏହା ଅଭିନୀତ ହେଉଥିଲା ତାହାର ନାମ ଥିଲା ଭେରୋଂତଶୋଭ୍ । ଏହି ଥିଏଟର ଦଳ ଉପରେ ଜାର୍ ସରକାର ରୁଷ୍‌ରେ ସମସ୍ତ ପ୍ରଚଳିତ ଓ ପ୍ରତିଷ୍ଠିତ ଥିଏଟରଗୁଡ଼ିକର ଦାୟିତ୍ୱ ଦେଇଥିଲେ । ଏହି ଥିଏଟର ଦଳରେ ବହୁ ଅଭିଜ୍ଞ ଅଭିନେତା ଥିଲେ । ୧୭୮୦ ମସିହାରେ ଏହି ଥିଏଟର ଦଳକୁ ଏକ ସ୍ୱତଂତ୍ର ଭାବରେ ନିର୍ମିତ ପଥରଘର ଯୋଗାଇଦିଆଯାଇଥିଲା । ସେତେବେଳେ ତାହାର ନାମ ଥିଲା ପେଟ୍ରୋଭସ୍କି ଥିଏଟର, କାରଣ ଯେଉଁ ରାସ୍ତାରେ ସେ ଘର ଅବସ୍ଥିତ ଥିଲା, ସେହି ରାସ୍ତାର ନାମ ପେଟ୍ରୋଭସ୍କି ଥିଲା । ମସ୍କୋର ଏହି ପ୍ରଥମ ପେସାଦାର ଥିଏଟରରେ ବ୍ୟାଲେ, ନାଟକ, ଅପେରା, ସଂଗୀତ, ଅଭିନୀତ ହେଉଥିଲା । ସେହି ଯୁଗରେ ଅଭିନେତାମାନଂକର ଅଭିନୟ ଏବଂ ନୃତ୍ୟଗୀତ ପରିବେଷଣ କଳାପୂର୍ଣ୍ଣ ଥିଲା ଓ ଅତି ଉଚ୍ଚକୋଟୀର ଥିଲା । ତେଣୁ ଏହାକୁ ଲୋକେ ଅପେରା ହାଉସ୍ ବୋଲି କହୁଥିଲେ । ସେହି ନାଟ୍ୟାନୁଷ୍ଠାନ ଉଭୟ ନାଟକ ଓ ଅପେରା ପରିବେଷଣ କରୁଥିଲା । ଲୋକେ ସେମାନଂକ ସଂଗୀତ ନୈପୁଣ୍ୟରେ ମୁଗଧ ହେଉଥିଲେ । ୧୮୦୫ ମସିହାରେ ଏହି ପ୍ରେକ୍ଷାଳୟଟି ନିଆଁ ଲାଗି ଭସ୍ମୀଭୂତ ହୋଇଯାଇଥିଲା । ପେଟ୍ରୋଭସ୍କି ଥିଏଟର ଅଭିନେତାମାନେ ଥିଏଟରର ପରାମର୍ଶଦାତା କମିଟିରେ ସଭ୍ୟ ଥିଲେ । ସେମାନେ କେଉଁ ନାଟକ ଅଭିନୀତ ହେବ ତାହା ସ୍ଥିରକରୁଥିଲେ ଏବଂ ପରିଚାଳନାର ଦାୟିତ୍ୱ ନେଉଥିଲେ । ସେମାନେ ବର୍ତ୍ତମାନ ମହାଅସୁବିଧାରେ ପଡ଼ିଲେ ।

କେତେକ ଅଭିନେତା ଅନ୍ୟାନ୍ୟ ରଂଗମଂଚରେ ଯାଇ ଯୋଗଦେଲେ । ମାତ୍ର ସେଠାରେ ଏସବୁ ଅଧିକାର ମିଳୁ ନଥିଲା । ୧୮୦୬ ଖ୍ରୀଷ୍ଟାବ୍ଦରେ ଥିଏଟର ରାଷ୍ଟ୍ରାୟତ୍ତ ହେଲା । ସେତେବେଳେ ମସ୍କୋ ଇମ୍ପେରିୟାଲ୍ ଥିଏଟର କାର୍ଯ୍ୟାଳୟରେ ଏହା ଅଭିନୀତ ହେଉଥିଲା । ୧୮୨୪ ଖ୍ରୀଷ୍ଟାବ୍ଦରେ ଏହି ନାଟ୍ୟଶାଳାଟି ପ୍ରଖ୍ୟାତ ସ୍ଥପତି ରସିତାବୋଭେଂକଦ୍ୱାରା ପୁନଃ ନିର୍ମିତ ହେଲା । ଏହି ନବନିର୍ମିତ ମଂଚର ନାମ ରଖାଗଲା

ବଲ୍‌ଶୋଇ ପେଡ୍ରୋଭସ୍କି । ଏଥିରେ ଅପେରା ଅଭିନୀତ ହେଉଥିଲା । ଏହି ଅପେରାଗୁଡ଼ିକ ସଂଗୀତପ୍ରଧାନ ଥିଲା । ସେତେବେଳର ଏକ ଜନପ୍ରିୟ ଅପେରା ଥିଲା ''ଆସ୍‌କୋଲଡଂକ କବର'' ଏହାର ରଚୟିତା ଥିଲେ ଡେଷ୍ଟୋଭସ୍କି । (ରୁଷ୍ ଅନୁଭୂତି ଦ୍ରଷ୍ଟବ୍ୟ)

ଅନ୍ୟାନ୍ୟ ଅପେରା ମଧ୍ୟରେ ଉଲଫ୍ ଗ୍ୟାଂଗ, ମୋଜାର୍ଟ ଗିଓ ଆଚିନୋ ରୋସିନୀ, ଦାନିଏଲ୍ ଅଉବର ଉଲ୍ଲେଖଯୋଗ୍ୟ ।

ବଲଶୋଭ ଥିଏଟର କେତେକ ଆଂତର୍ଜାତିକ ଖ୍ୟାତିସଂପନ୍ନ ଅପେରା ପରିବେଷଣ କରିଥିଲା । ଏ ଦିଗରେ ରୁଷୀୟ ଶାସ୍ତ୍ର ସଂଗୀତର ଜଣେ ପ୍ରଧାନ ସାଧକ ମିଖାଇଲ୍ ଗ୍ଲିଂକାଂକ ଅବଦାନ ଚିରସ୍ମରଣୀୟ । ମହାନ୍ ଅକ୍ଟୋବର ବିପ୍ଳବ ପରେ ୨୭.୧୦.୧୯୧୭ରେ ବଲଶୋଇ ଥିଏଟରର ଆଭିମୁଖ୍ୟ ସଂପୂର୍ଣ୍ଣ ବଦଳିଗଲା । ୧୯୧୯ ମସିହାରେ ଏକ ଆଦେଶନାମା ବଳରେ ଦେଶର ଥିଏଟରଗୁଡ଼ିକ ରାଷ୍ଟ୍ରାୟତ୍ତ ହେଲା । ଥିଏଟର ହେଉଛି ଦେଶର ସାମାଜିକ ଚେତନାର ଅଭିବ୍ୟକ୍ତି । ଏଥିରେ ଦେଶର କଳାତ୍ମକ ବିକାଶ ହୋଇଥାଏ । ସାମାଜିକ ତଥା ସାଂସ୍କୃତିକ ବିପ୍ଳବର ଦିଗ୍‌ଦର୍ଶନ ନାଟକରୁ ମିଳିଥାଏ । Socialstic Realism ବା ସମାଜବାଦୀ ବାସ୍ତବତା ରୁଷୀୟ ଥିଏଟର ପ୍ରଧାନ ଆଭିମୁଖ୍ୟ ହେଲା । ବଲ୍‌ଶୋଇ ଥିଏଟରରେ କେତେକ ଯୁଗାଂତକାରୀ ଉପନ୍ୟାସର ନାଟ୍ୟରୂପ ଅଭିନୀତ ହୋଇଛି । ସେସବୁ ମଧ୍ୟରେ ସୋଲୋକୋଫଂକ ଉପନ୍ୟାସ ''ଆଣ୍ଡ କ୍ୱାଏଟ୍‌ଫ୍ଲୋଜ ଦି ଡନ୍'' ଏବଂ ''ଭାର୍ଜିନ୍ ସଏଲ୍ ଅପଟର୍ଣ୍ଣଡ୍'' ଏବଂ ଟଲଷ୍ଟୟଂକ "War and Peace" ଓ ''ଆନାକାରାନିନା'' ପ୍ରଭୃତି ଅନ୍ୟତମ ।

ମୁଁ ମସ୍କୋରେ ବଲ୍‌ଶୋଇ ଥିଏଟରରେ ଟଲଷ୍ଟୟଂକ ''ଆନାକାରାନିଆ'' ଅଭିନୟ ଦେଖିଥିଲି । ଏଥି ପୂର୍ବରୁ ମୁଁ ଫିଲ୍ମରେ ଆନାକାରାନିନା ଭୂମିକାରେ ଗ୍ରେଟାଗାର୍‌ବୋଂକ ଅଭିନୟ ଦେଖି ମୁଗଧ୍ ହୋଇଥିଲି । ବଲଶୋଇ ଥିଏଟରର ନାୟିକାଂକ ଅଭିନୟ ସେଭଳି ପ୍ରଭାବଶାଳୀ ନହେଲେ ମଧ୍ୟ ଏହାର ମାନ ଉଚ୍ଚକୋଟୀର ଥିଲା ।

**ମସ୍କୋ ରେଡ଼ିଓରେ ଭାଷଣ ଓ କବିତାପାଠ :**

ମସ୍କୋ ରେଡ଼ିଓର ଆମନ୍ତ୍ରଂଣକ୍ରମେ ମୁଁ ମସ୍କୋ ରେଡ଼ିଓରେ ଥରେ ମୋର ରୁଷ୍ ଅଭିଜ୍ଞତା ସଂପର୍କରେ ଭାଷଣ ଦେଇଥିଲି । ଅନ୍ୟ ଏକ ଦିନ ମୁଁ ଏକ ଓଡ଼ିଆ କବିତା ପାଠ କରିଥିଲି । ମୋ ଭାଷଣରେ ମୁଁ କହିଥିଲି ଯେ ରୁଷ୍ ଓ ଭାରତର ମୈତ୍ରୀବଂଧନ ବିଶ୍ୱ ରାଜନୀତିରେ ଭାରସାମ୍ୟ ବଜାୟ ରଖିବାରେ ବିଶେଷ ସହାୟକ ହୋଇଛି । ରୁଷର ଅକୃତ୍ରିମ ବଂଧୁତ୍ୱ ଭାରତପକ୍ଷରେ ଅତୀବ ମୂଲ୍ୟବାନ୍ । ଦୁଇଦେଶ ମଧ୍ୟରେ ସାଂସ୍କୃତିକ ସଂପର୍କ କ୍ରମେ ବୃଦ୍ଧିପାଉଥିବା ଏକ ଶୁଭଲକ୍ଷଣ । ବିଶ୍ୱଶାଂତି ବଜାୟ ରଖିବା ଦିଗରେ ଦ୍ୱିପାକ୍ଷିକ ବୁଝାମଣା ଓ ସଦ୍‌ଭାବନା ଏକାଂତ ଆବଶ୍ୟକ ।

**କାର୍ଲ ପୁଷିନଂକ ସହ ଦେଖା ହେଲା ନାହିଁ :**

କାର୍ଲ ପୁଷିନ୍ ମୋର ବହୁ ଓଡ଼ିଆ କବିତା ଓ ଗଳ୍ପ ରୁଷୀୟ ଭାଷାରେ ଅନୁବାଦ କରିଥିଲେ । ସେସବୁ ବିଭିନ୍ନ ସମୟରେ ରୁଷ୍ ପତ୍ରପତ୍ରିକାମାନଂକରେ ପ୍ରକାଶ ପାଇଥିଲା ।

ମୁଁ ରୁଷିଆ ଯିବା ପୂର୍ବରୁ ତାଂକୁ ଖଂଡେ ଚିଠି ଲେଖିଥିଲି । ସେଥିରେ ମୋର ରୁଷ୍ କାର୍ଯକ୍ରମ ବିଷୟରେ ସୂଚନା ଦେଇଥିଲି । ମୋ ସହିତ ମସ୍କୋରେ ଦେଖା କରିବା ପାଇଁ ଅନୁରୋଧ କରିଥିଲି । ମସ୍କୋରେ ମୁଁ କେଉଁଠି କେତେଦିନ ରହିବି ତାହା ସୋଭିଏତ୍ ଲେଖକ ସଂଘ ଅଫିସକୁ ଟେଲିଫୋନ୍ କଲେ ଜାଣିପାରିବେ ବୋଲି ଲେଖିଥିଲି । ମୁଁ ଭାରତ ଛାଡ଼ିବା ପୂର୍ବରୁ ତାଂକଠାରୁ କୌଣସି ଉତ୍ତର ପାଇନଥିଲି । ମସ୍କୋରେ ପହଁଚି ମୁଁ ସୋଭିଏତ୍ ଲେଖକ ସଂଘର ଜଣେ ଅଧିକାରୀ ମିସେସ୍ ସାଂଗିଲା ଓ ମୋ ଦ୍ୱିଭାଷୀ ଟାନିଆକୁ କାର୍ଲପୁଷ୍ପିନଂକୁ ମୋର ମସ୍କୋ ରହଣି ସଂବଧରେ ଜଣାଇ ଦେବାକୁ ଅନୁରୋଧ କରିଥିଲି । ସେମାନେ ମଧ ତାଂକୁ ମୋର କାର୍ଯକ୍ରମ ଏବଂ ହୋଟେଲ ଠିକଣା ଓ ଫୋନ୍ ନଂବର ଆଦି ଜଣାଇଦେଇଥିଲେ ଏବଂ ମୋ ସହିତ ଯୋଗାଯୋଗ କରିବାକୁ ମୋର ଅନୁରୋଧ ଜଣାଇଦେଇଥିଲେ । ମାତ୍ର ସେ ମୋ ସହିତ ଯୋଗାଯୋଗ ସ୍ଥାପନକରିନଥିଲେ । ଏଥିରେ ମୁଁ ଟିକେ ବିସ୍ମିତ ହୋଇଥିଲି । ସାଧାରଣତଃ ଅନୁବାଦକାରୀମାନେ ମୂଳ ଲେଖକ ସହିତ ପ୍ରତ୍ୟକ୍ଷ ସଂପର୍କ ରଖିବାକୁ ଆଗ୍ରହୀ ହୋଇଥାଂତି, ମାତ୍ର ତାଂକ କ୍ଷେତ୍ରରେ ଏପରି ବ୍ୟତିକ୍ରମ ଦେଖି ମୁଁ ଦୁଃଖିତ ହୋଇଥିଲି । ମସ୍କୋ ରେଡ଼ିଓରେ କାମକରୁଥିବା ଦୁଇଜଣ ତରୁଣୀ କାର୍ଲ ପୁଷ୍ପିନଂକୁ ମୁଁ ତାଂକ ସଂଗେ ଦେଖାକରିବାକୁ ଚାହୁଁଛି ବୋଲି ଜଣାଇଥିଲେ । ମାତ୍ର ସେ ସେମାନଂକୁ କହିଥିଲେ ଯେ ରାଉତ୍‌ରାୟଂକୁ ସୋଭିଏତ୍ ଲେଖକ ସଂଘ ଆମନ୍ତ୍ରଂଣ କରି ଆଣିଛଂତି, ତେଣୁ ସେମାନେ ମୋତେ କହିଲେ ମୁଁ ତାଂକ ସହିତ ଦେଖାକରିବି । ତାଂକର ଏପରି ହାବଭାବ ଦେଖି ଆଉ ତାଂକ ସଂଗେ ସାକ୍ଷାତ୍ କରିବାକୁ ମୁଁ ଆଗ୍ରହ ପ୍ରକାଶ କଲିନାହିଁ । ବ୍ୟକ୍ତିଗତ ସାକ୍ଷାତ ପାଇଁ ଏପରି କଟକଣା ମୁଁ ପଂସନ୍ଦକରିପାରିଲିନାହିଁ ।

**ମସ୍କୋରେ ବୈଷ୍ଣବ ପରିଡ଼ାଂକ ଆତିଥ୍ୟ :**

ମସ୍କୋରେ ଥିଲାବେଳେ ବୈଷ୍ଣବ ପରିଡ଼ା ମୋ ସହିତ ଦୁଇ-ତିନିଥର ସାକ୍ଷାତ କରିଥିଲେ । ଦିନେ ସେ ମୋତେ ତାଂକ ଘରେ ରାତ୍ରିଭୋଜନ କରିବା ପାଇଁ ଡାକିଥିଲେ ଏବଂ ମୋତେ ଟାକ୍ସିରେ ନେଇଯାଇଥିଲେ । ସେ ମସ୍କୋରେ ପ୍ରୋଗେସ୍ ପବ୍ଲିକେସନ୍‌ରେ କାର୍ଯ୍ୟ କରୁଥାଂତି । ଭଲ ଭଲ ଭାରତୀୟ ପୁସ୍ତକ ଏବଂ ତା ମଧରେ ଓଡ଼ିଆ ପୁସ୍ତକମାନଂକର ରୁଷୀୟ ଭାଷାରେ ଅନୁବାଦ କରାଇ ପ୍ରକାଶ କରିବା ତାଂକ ସଂସ୍ଥାର କାର୍ଯଥିଲା । ତାଂକ ଘରେ ବହୁଦିନ ପରେ ଖାଂଟି ଓଡ଼ିଆ ଖାଦ୍ୟ ଖାଇ ମୁଁ ବଡ଼ ଆନଂଦିତ ହୋଇଥିଲି । ତାଂକ ସ୍ତ୍ରୀ ମସ୍କୋ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ କରିଥିଲେ । ଖିଆପିଆ ପରେ ବୈଷ୍ଣବବାବୁ ମୋତେ ଟାକ୍ସିରେ ଆଣି ହୋଟେଲ୍‌ରେ ଛାଡ଼ି ଦେଇ ଯାଇଥିଲେ । ରୁଷ୍‌ରେ ଅଧିକାଂଶ ଡ୍ରାଇଭର ତରୁଣୀ । ସେମାନେ ଅବାଧରେ ଏବଂ ନିର୍ଭୟରେ ରାତିଅଧରେ ମଧ ଟାକ୍ସି ଚଳାଉଥାଂତି । ଆମ ଭାରତରେ ଦିନବେଳେ ମଧ ନାରୀମାନେ ନିଜକୁ ସୁରକ୍ଷିତ ମନେ କରଂତି ନାହିଁ ।

**ସୋଭିଏଡ୍ ରୁଷ – ଏକ ବିହଂଗ ଦୃଷ୍ଟି :**

ସୋଭିଏତ୍ ରୁଷ୍ ଏକ ବିରାଟ ଭୂଖଂଡ । ଏହା ଏସିଆ ଏବଂ ୟୁରୋପ ଉଭୟ ମହାଦେଶରେ ପରିବ୍ୟାପ୍ତ । ଏହା ବଲଟିକ୍ ସାଗରରୁ ପ୍ରଶାନ୍ତ ମହାସାଗର ପର୍ଯଂତ ବିସ୍ତୃତ । ଏହାର ୟୁରୋପୀୟ ଅଂଚଳ ୨୧,୧୦,୦୦୦ ବର୍ଗ ମାଇଲ୍ ହୋଇଥିବାବେଳେ ପୂର୍ବପଟେ ଏସିଆ ମହାଦେଶରେ ଥିବା ଅଂଚଳର କ୍ଷେତ୍ରଫଳ ହେଉଛି ୬୫,୩୭,୧୭୨ ବର୍ଗମାଇଲ୍ । ସୋଭିଏତ୍ ୟୁନିୟନ୍ ୧୧ଟି ଅଂଶ ରାଷ୍ଟ୍ରର ସମଷ୍ଟି । ମସ୍କୋରୁ ଭ୍ଲାଡିଭଷ୍ଟକ ଯିବା ଲାଗି ଗୋଟାଏ ଦ୍ରୁତଗାମୀ ଟ୍ରେନ୍‌କୁ ସାତଦିନ ଲାଗେ । ମସ୍କୋର ଅଧିବାସୀମାନେ ମଧ୍ୟାହ୍ନ ଭୋଜନ କରୁଥିବାବେଳେ ପାସିଫିକ୍ ବା ପ୍ରଶାଂତ ମହାସାଗର ଉପକୂଳର ଲୋକେ ରାତ୍ରି ଭୋଜନ କରୁଥାଂତି । ଏହାର ସୀମା ୪୦.୦୦୦ ମାଇଲ୍ ଦୀର୍ଘ । ଏହାର ପଶ୍ଚିମପଟ ସୀମା ନରଓ୍ୱେ, ଫିନ୍‌ଲ୍ୟାଂଡ, ବଲ୍‌ଟିକ୍ସ, ପୋଲାଂଡ, ଚେକୋସ୍ଲୋଭାକିଆ, ହଂଗେରୀ, ରୋମାନିଆ ଦ୍ୱାରା ପରିବେଷ୍ଟିତ । ପୂର୍ବସୀମା ବିଅରିଂଗ୍ ସମୁଦ୍ର ଏବଂ ଜାପାନ୍ ସମୁଦ୍ର ଦ୍ୱାରା ଚିହ୍ନିତ । ଏହି ବିଶାଳ ଭୂଖଂଡରେ ବିରାଟ ବିରାଟ ପର୍ବତମାଳା, ନଦୀ, ହ୍ରଦ ଏବଂ ଅରଣ୍ୟ ସଂକୁଳ ଦିଗଂତରେଖା ଏହାର ଭୀମକାଂତ ରୂପ ପ୍ରକଟିତକରେ । ବର୍ଷର ଅଧିକାଂଶ ସମୟ ନଦୀଗୁଡ଼ିକ ବରଫାବୃତ ହୋଇ ରହେ । ଉତ୍ତର ସାଇବେରିଆରେ ଶୀତର ପ୍ରାବଲ୍ୟ ବେଶୀ । ସୋଭିଏତ୍ ୟୁନିୟନର ରାଜଧାନୀ ମସ୍କୋନଗରୀ ମସ୍କୋ ନଦୀ ଉପରେ ଅବସ୍ଥିତ । ସୋଭିଏତ୍ ରୁଷ୍‌ରେ ବହୁ ବଡ଼ ବଡ଼ ନଦୀ, ଯଥା ଭଲଗା, ଡନ୍ ପ୍ରଭୃତି ରହିଛି । ମସ୍କୋ ପୃଥିବୀର ପଂଚମ ବୃହତ୍ତମ ନଗର । ମସ୍କୋର ଲୋକସଂଖ୍ୟା ପ୍ରାୟ ୮୦ ମିଲିୟନ୍ ବା ୮ କୋଟି ।

**ନାରୀପ୍ରଗତି :**

ମହାନ୍ ଅକ୍ଟୋବର ବିପ୍ଳବ ପରେ ସୋଭିଏତ୍ ରୁଷ୍‌ରେ ନାରୀଶିକ୍ଷା ଦ୍ରୁତ ପ୍ରସାର ଲାଭ କରିଛି । ବିପ୍ଳବ ପୂର୍ବରୁ ଜାର୍ ଅମଳରେ ନାରୀମାନେ ବହୁ ସାମାଜିକ, ରାଜନୈତିକ ଏବଂ ଅର୍ଥନୈତିକ ଶୃଙ୍ଖଳର ଜାଲରେ ବଂଧା ହୋଇ ରହିଥିଲେ । ସେତେବେଳେ ଶିକ୍ଷିତ ନାରୀମାନଂକର ସଂଖ୍ୟା ଥିଲା ଶତକଡ଼ା ଷୋହଳ; ତାଜ୍‌କିସ୍ଥାନ ପ୍ରଭୃତିରେ ଏହା ଥିଲା ଏକହଜାରରେ ତିନି ଜଣ । ନାରୀମାନଂକୁ ବହୁ କଷ୍ଟସାଧ୍ୟ କାମ କରିବାକୁ ପଡୁଥିଲା । ସମାଜବାଦୀ ରାଷ୍ଟ୍ରର ପ୍ରତିଷ୍ଠା ପରେ, ଅର୍ଥାତ୍ ୧୯୧୭ ମସିହା ଅକ୍ଟୋବର ବିପ୍ଳବ ପରେ ସୋଭିଏତ୍ ସରକାର ନାରୀମାନଂକର କଲ୍ୟାଣ ଓ ଦ୍ରୁତ ଉନ୍ନତି ପାଇଁ ବହୁ ସଫଳ ପଦକ୍ଷେପ ଗ୍ରହଣକରଂତି । ଏହାଫଳରେ କି ଗ୍ରାମ କି ସହର ସବୁଠାରେ ନାରୀଶିକ୍ଷାର ପ୍ରବଳ ଅଗ୍ରଗତି ସଂଭବ ହୋଇଛି । ବର୍ତ୍ତମାନ ଶିକ୍ଷିତ ନାରୀଂକ ଅନୁପାତ ଶତକଡ଼ା ୫୯ ଜଣ । ସାମାଜିକ ଉତ୍ପାଦନ କ୍ଷେତ୍ରରେ ନାରୀର ଅଗ୍ରଗାମୀ ଭୂମିକାର କାରଣ ହେଉଛି ନାରୀ ଓ ପୁରୁଷର ସମାନ ଅଧିକାର । (ତତ୍ରୈବ) ସୋଭିଏତ୍ ରୁଷ୍‌ରେ ନାରୀ ଓ ଶିଶୁମାନଂକର କଲ୍ୟାଣ ପାଇଁ ବହୁବିଧ ପ୍ରଗତିଶୀଳ

ପଦକ୍ଷେପ ନିଆଯାଇଛି, ଯାହା ପୁଂଜିବାଦୀ ଦେଶମାନଂକରେ ବିରଳ । ଗତ ଦଶ ବର୍ଷ ମଧ୍ୟରେ ସୋଭିଏତ୍ ରୁଷ୍‌ରେ ଲୋକମାନଂକର ଜୀବନଧାରଣମାନ ବିଶେଷ ଭାବରେ ବୃଦ୍ଧିପାଇଛି । କଲେକ୍‌ଟିଭ୍ କୃଷିଫାର୍ମର ସଂଖ୍ୟା ଶତକଡ଼ା ୪୮ ଭାଗ । ସମଗ୍ର ରୁଷର ଶ୍ରମଜୀବୀ ଜନସଂଖ୍ୟା ଶତକଡ଼ା ୫୦% ଭାଗ । ସୋଭିଏତ୍ ରାଷ୍ଟ୍ରରେ ସମସ୍ତ ପରିବାରର ଏକଚତୁର୍ଥାଂଶ ପରିବାରର ପୋଷଣକାରୀ ହେଉଛଂତି ନାରୀ । ସୋଭିଏତ୍ ରାଷ୍ଟ୍ରରେ ବିଜ୍ଞାନରେ ପିଏଚ୍.ଡି. କରିଥିବା ନାରୀମାନଂକ ସଂଖ୍ୟା ୪୫୦୦ । ଦେଶରେ ସମସ୍ତ ଗବେଷକମାନଂକ ମଧ୍ୟରେ ସେମାନଂକ ସଂଖ୍ୟା ହେଉଛି ୪୦% ଭାଗ ।(ତତ୍ରୈବ)

ଉତ୍ପାଦନ ବୃଦ୍ଧି – ଶସ୍ୟ ଉତ୍ପାଦନ କ୍ଷେତ୍ରରେ ସୋଭିଏତ୍ ରୁଷ୍‌ରେ ଅସମ୍ଭବ ଅଗ୍ରଗତି ଘଟିଛି । ଏହା ପ୍ରାକ୍-ବିପ୍ଳବ ଯୁଗର ଉତ୍ପାଦନ ତୁଳନାରେ ପ୍ରାୟ ତିନି ଗୁଣ ବୃଦ୍ଧିପାଇଛି । କଲେକ୍‌ଟିଭ୍ ଫାର୍ମ ଓ ଷ୍ଟେଟ୍ ଫାର୍ମଗୁଡ଼ିକର ଉତ୍ପାଦନ ଯଥେଷ୍ଟ ବୃଦ୍ଧିପାଇଛି ।

ଶିଳ୍ପ ଉଦ୍ୟୋଗଗୁଡ଼ିକର ଉତ୍ପାଦନ ମଧ୍ୟ ପୂର୍ବାପେକ୍ଷା ବହୁଗୁଣ ବଢ଼ିଯାଇଛି । ସୋଭିଏତ୍ ରୁଷ୍‌ରେ ବେକାରୀ ବନ୍ଦ କରିବା ଉଦ୍ଦେଶ୍ୟରେ ବହୁତ ପ୍ରକାର ବ୍ୟବସ୍ଥା ଖଂଜାଯାଇଛି, ଫଳରେ ବୋକାରଂକ ସଂଖ୍ୟା ଖୁବ୍ କମ୍ । ଭିକ୍ଷାବୃତ୍ତି ନିଷିଦ୍ଧ କରାଯାଇଛି ।

**ଟେଲିଫୋନ୍ ଓ ମେଟ୍ରୋଟ୍ରେନ୍ ବ୍ୟବସ୍ଥା :**

ଟେଲିଫୋନ୍ ଓ ଯାତାୟାତ ବ୍ୟବସ୍ଥା ଯେପରି ବ୍ୟାପକ ସେହିପରି ସୁଲଭ । 'କଲ୍'ର ସମୟ ଉପରେ ବିଶେଷ କଟକଣା ନାହିଁ । ଟ୍ରଂକକଲ୍ ମଧ୍ୟ ଖୁବ୍ ସୁଲଭ । ଜଣେ ମସ୍କୋରୁ କକେସସ୍ ଟ୍ରଂକଫୋନ୍ କଲେ ମାତ୍ର ପଚାଶ କପେକ୍ ଦବାକୁ ପଡ଼େ । ରୁଷିଆରେ ଟ୍ୟାକ୍ସିର ମାଲିକ ରାଷ୍ଟ୍ର । ସହରମାନଂକରେ ଟ୍ରଲିବସ୍, ଟ୍ରାମ୍ ପ୍ରଭୃତି ଚଳାଚଳ ବିଶେଷ ଉଲ୍ଲେଖଯୋଗ୍ୟ । ମସ୍କୋରେ ଭୂଗର୍ଭ ଟ୍ରେନ୍ ପରିବହନ କ୍ଷେତ୍ରରେ ବିଶେଷ ସୁବିଧାଜନକ । ବର୍ତ୍ତମାନ ଦୈନିକ ଛଅ ମିଲିୟନ୍ ଯାତ୍ରୀ ମେଟ୍ରୋ ଟ୍ରେନ୍‌ରେ ଯିବାଆସିବା କରଂତି । ବର୍ତମାନ ମେଟ୍ରୋ ରେଲ୍ ଲାଇନ୍ ୧୬୪୦୫ କିଲୋମିଟର ବିସ୍ତୃତ । ମେଟ୍ରୋ ରେଲ୍‌ଭଡ଼ା ବହୁବର୍ଷ ଧରି ବୃଦ୍ଧି ପାଇ ନାହିଁ । ସହରର ଏକ ପ୍ରାଂତରୁ ଅନ୍ୟ ପ୍ରାଂତକୁ ଗଲେ ମାତ୍ର ୫ କପେକ୍ ଦେବାକୁପଡ଼େ ।

ବହୁତାଲାବିଶିଷ୍ଟ ବାସଗୃହ ସଂଖ୍ୟା ଦ୍ରୁତଗତିରେ ବୃଦ୍ଧି ପାଇବାରେ ଲାଗିଛି । ଯେଉଁ ଆଡ଼େ ଦେଖିବ ଆପାର୍ଟମେଂଟ ଗୃହମାନ ମୁଂଡ ଟେକି ଛିଡ଼ାହୋଇଛି । ବର୍ତ୍ତମାନ ପରିବାରର ଆୟ ଦ୍ୱିଗୁଣ ବୃଦ୍ଧି ପାଇଛି । ମୋଟଉପରେ ରୁଷ୍‌ର ସମାଜବାଦୀ ରାଷ୍ଟ୍ର ଏବଂ ଶୋଷଣହୀନ ଜନକଲ୍ୟାଣଭିତ୍ତିକ ସମାଜ ବ୍ୟବସ୍ଥା ଧନତାଂତ୍ରିକ ଦେଶମାନଂକ ପ୍ରତି ଏକ ଆହ୍ୱାନ । (ତତ୍ରୈବ)

# ଷଟ୍‌ଚତ୍ୱାରିଂଶ ଉଲ୍ଲାସ

## ଚେକୋସ୍ଲୋଭାକିଆ ଓ ପୋଲାଂଡରେ ଏକମାସ – ଫାସୀଜିମ୍‌ର ପୈଶାଚିକ ଗଣହତ୍ୟା – ପଚାଶ ଲକ୍ଷ ଜ୍ୟୁ ନିହତ

**ଚେକୋସ୍ଲୋଭାକିଆ ଯାତ୍ରା :**

ମୁଁ ମସ୍କୋରୁ ବିମାନ ଯୋଗେ ଯାଇ ଚେକୋସ୍ଲୋଭାକିଆ ରାଜଧାନୀ ପ୍ରାଗ୍‌ରେ ୧୧.୬.୭୯ରେ ପହଁଚିଲି । ମସ୍କୋ ଏୟାର୍‌ପୋର୍ଟରେ ମୋତେ ଛାଡ଼ିବା ପାଇଁ ତାନିଆ ଏବଂ ଡଃ ଗୋପାଳଚଂଦ୍ର ମିଶ୍ର ମଧ ଆସିଥିଲେ । ଡା ମିଶ୍ର ମସ୍କୋରେ ଆଉ ଦୁଇଦିନ ରହି କଟକ ଫେରିବା କଥା । ତାନିଆଠାରୁ ବିଦାୟନେଲାବେଳେ ଆମ ଦୁହିଁକ ଆଖି ଛଳ ଛଳ ହୋଇଆସିଥିଲା । ମୁଁ ପ୍ରାଗ୍ ବିମାନ ଘାଟିରେ ପହଁଚି ଜଣେ ଚେକ୍ ଦ୍ୱିଭାଷୀ ମାରିଆ ସହ ପ୍ରାଗ୍ ହୋଟେଲ୍‌ରେ ପହଁଚିଲି । ସେହିଠାରେ ହିଁ ମୋର ରହିବାର ବ୍ୟବସ୍ଥା କରାଯାଇଥିଲା । ମାରିଆ ଏକ ସୁଂଦରୀ ଝିଅ । ପ୍ରଥମ ମହାଯୁଦ୍ଧ ପରେ ଚେକୋସ୍ଲୋଭାକିଆ ଏକ ସାର୍ବଭୌମ ରାଷ୍ଟ୍ର ରୂପେ ଗଠିତ ହୋଇଥିଲା । ୧୯୧୮ ମସିହା ଅକ୍ଟୋବର ମାସ ୨୮ ତାରିଖରେ କେଂଦ୍ରୀୟ ଇଉରୋପରେ ଚେକୋସ୍ଲୋଭାକିଆ ଏକ ସ୍ୱାଧୀନ ପ୍ରଜାତଂତ୍ର ରୂପେ ଆତ୍ମପ୍ରକାଶ କରିଥିଲା । ଏହାର ନେତୃମଂଡଳୀ ଥିଲେ Prof. T.G.Masaryk. Gen. M.R. Stefanik ଓ Dr.E.Benes ପ୍ରମୁଖ । ଏହି ରାଷ୍ଟ୍ରୀୟ ଇଉନିୟନରେ ଚେକୋ ଓ ସ୍ଲୋଭାକ୍ ସାମିଲ୍ ଥିଲେ । ଏଥିରେ ବୋହେମିଆଁ, ମୋରାଭିଆ ପ୍ରଭୃତି ଅଂତର୍ଗତ ଥିଲା । ଏହାର ରାଜଧାନୀ ଥିଲା ପ୍ରାଗ୍ । ପ୍ରାଗ୍‌ର ଲୋକସଂଖ୍ୟା ୧୯୭୦ ବେଳକୁ ପ୍ରାୟ ୧୦ ଲକ୍ଷରେ ପହଁଚିଥିଲା ।

ନାଜି ଜର୍ମାନମାନେ ୧୯୩୯ ମସିହା ମାର୍ଚ୍ଚ ୧୫ରେ ଏହି ରାଷ୍ଟ୍ର ଅଧିକାର କରଂତି । ମାତ୍ର ଚେକୋସ୍ଲୋଭାକିଆର ଜନସାଧାରଣ ଜର୍ମାନ୍‌ମାନଂକର ଘୋର ବିରୋଧୀ ଥିଲେ । ଦେଶରେ କିଛିଦିନ ଭଂଗାରୁଜା ଓ ଖଂଡଯୁଦ୍ଧ ଲାଗିରହିଲା ।

**ପ୍ରାଗ୍‌ନଗରୀ :**

ମୁଁ ରହୁଥିବା ପ୍ରାଗ୍ ହୋଟେଲ ଏକ ଚମତ୍କାର ଅତ୍ୟାଧୁନିକ ହୋଟେଲ୍ । ଏହା Vitava ନଦୀ କୂଳରେ ଅବସ୍ଥିତ । ଏହି ନଗରୀର କେତେକ ଅଂଶ ପାହାଡ଼ ଉପରେ ଅବସ୍ଥିତ । ପାହାଡ଼ଗୁଡ଼ିକ ନଦୀଭିତରକୁ ପଶିଯାଇଛଂତି । ଏହା ଇଉରୋପର ସର୍ବାପେକ୍ଷା ସୁଂଦର ଓ ଶୋଭନ ନଗରୀମାନଂକ ମଧ୍ୟରୁ ଅନ୍ୟତମ । ଏହା ଆଠଟି ଜିଲ୍ଲାରେ ବିଭକ୍ତ ଥିଲା । ଜିଲ୍ଲାଗୁଡ଼ିକ ୧୧ ଟି ସେତୁ ଦ୍ୱାରା ପରସ୍ପର ସହିତ ସଂଯୁକ୍ତ । ସେହି ସେତୁଗୁଡ଼ିକ ମଧ୍ୟରେ ଚାର୍ଲସ ବ୍ରିଜ୍ ପ୍ରସିଦ୍ଧ । ଚାର୍ଲସ ବ୍ରିଜଟି ଦୁଇଟି ମନୋଜ୍ଞ ଟାଓ୍ୱାର ଏବଂ ୩୦ଟି

ବ୍ରାକ୍ ଶୈଳୀରେ ନିର୍ମିତ ମୂର୍ତ୍ତି ଦ୍ୱାରା ଶୋଭିତ । ଏହି ମୂର୍ତ୍ତିଗୁଡ଼ିକ ପିଟର ପାର୍ଲରଙ୍କଦ୍ୱାରା ନକ୍ସାଂକିତ ହୋଇଥିଲା ଏବଂ ୧୩୦୯-୧୫୦୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିର୍ମିତ ହୋଇଥିଲା । ଏହି ବ୍ରିଜ୍ ଉପରୁ ପ୍ରକାଂଡ ପ୍ରାଗ୍ ଚ୍ୟାପେଲ୍ ହ୍ରାଦ୍‌କାନି (Hradcany) ଏବଂ ଗଥିକ୍ ଶୈଳୀରେ ନିର୍ମିତ S.Vitus କ୍ୟାଥେଡ୍ରାଲ ଭଲ ଭାବରେ ପରିଦୃଷ୍ଟ ହୁଏ । ପ୍ରାଗ୍‌ନଗରୀ ପ୍ରଥମେ ଏକ ଛୋଟ ସହର ରୂପେ ୧୩୧୦ ଖ୍ରୀଷ୍ଟାବ୍ଦରେ ବୋହେମିଆର ରାଜା ଜନ୍‌ଙ୍କ ଦ୍ୱାରା ନିର୍ମାୟିତ ହୋଇଥିଲା । ଏହି ହ୍ରଦ୍‌କାନି ପରବର୍ତ୍ତୀ କାଳରେ ବୋହେମିଆ ରାଜାଂକ ପ୍ରାସାଦ ଏବଂ ଦରବାର ହଲ୍ ରୂପେ ବ୍ୟବହୃତ ହୋଇଥିଲା । ପ୍ରାଗ୍ ନଗରୀ ୧୪୦୦ ଖ୍ରୀଷ୍ଟାବ୍ଦରେ ପ୍ରସିଦ୍ଧ ସ୍ଥପତି Vitus ଏବଂ ତାଂକ ପରବର୍ତ୍ତୀ ଶିଳ୍ପୀଂକ ଦ୍ୱାରା ନିର୍ମିତ ହୋଇଥିଲା । ପ୍ରାଗ୍‌ର ନ୍ୟାସନାଲ୍ ଥିଏଟର ଦି ଉଇଲସନ୍ ଏବଂ ମସ୍‌ରିକ୍ ଷ୍ଟେସନ, ମିଉଜିୟମ୍ ଏବଂ ଆର୍ଟଗ୍ୟାଲେରୀ ପ୍ରଭୃତି ସୁରମ୍ୟ ଅଟ୍ଟାଳିକାରେ ସ୍ଥାପିତ । ଏହିସବୁ ଅଟ୍ଟାଳିକାର ଗଠନଶୈଳୀ ବିଶେଷ ଆକର୍ଷଣୀୟ ।

ନାଜିମାନେ ପ୍ରାଗ୍ ସହରର କେତୋଟି ପ୍ରାଚୀନ ଗିର୍ଜା ଓ ସ୍ମୃତିପୀଠ ବୋମାମାଡ଼ରେ ଧ୍ୱଂସକରିଦେଇଥିଲେ । ୧୯୪୮ ମସିହା ଫେବୃୟାରୀ ମାସରେ କମ୍ୟୁନିଷ୍ଟମାନେ ଚେକୋସ୍ଲୋଭାକିଆର ଶାସନଦାୟିତ୍ୱ ଏକ କୁପ୍ (Coup) ବା ସାମରିକ ବିଦ୍ରୋହଦ୍ୱାରା ଅଧିକାର କରିନେଇଥିଲେ ।

## ଚାର୍ଲସ ବିଶ୍ୱବିଦ୍ୟାଳୟରେ ଭାଷଣ :

ମୁଁ ପ୍ରାଗ୍‌ର ଚାର୍ଲସ ବିଶ୍ୱବିଦ୍ୟାଳୟକୁ ଦ୍ୱିଭାଷୀ ମାରିଆ ସହିତ ଯାଇଥିଲି । ସେଠାରେ ମୋର ଭାଷଣ ଦେବାର କେତେକ କାର୍ଯ୍ୟକ୍ରମ ସ୍ଥିରହୋଇଥିଲା । ଅଧ୍ୟାପକ ଓ ଅଧ୍ୟାପିକାଂକ ସହ ମୁଁ ସାକ୍ଷାତ ଓ ଆଲୋଚନା କରିଥିଲି । ଏହି ବିଶ୍ୱବିଦ୍ୟାଳୟ ଇଉରୋପର ଏକ ପ୍ରାଚୀନ ବିଶ୍ୱବିଦ୍ୟାଳୟ । ଏହା ଚାର୍ଲସ ଚତୁର୍ଥଂକଦ୍ୱାରା ୧୩୪୮ ଖ୍ରୀଷ୍ଟାବ୍ଦରେ ସ୍ଥାପିତ ହୋଇଥିଲା । ଏହି ବିଶ୍ୱବିଦ୍ୟାଳୟରେ ଭାରତୀୟ କଳା ଓ ସଂସ୍କୃତି ସଂବଂଧରେ ମୁଁ ଏକ ଭାଷଣ ଦେବା ପାଇଁ ପୂର୍ବରୁ ସ୍ଥିରହୋଇଥିଲା । ମୁଁ ଭାରତର ପ୍ରାଚୀନ ଚିତ୍ର ଏବଂ ଭାସ୍କର୍ଯ୍ୟ ସଂବଂଧରେ ଏକ ଭାଷଣ ଦେଇଥିଲି । ମୁଁ କହିଥିଲି ଯେ ଭାରତ ଏକ ବହୁଭାଷୀ ଏବଂ ବହୁଜାତିର ଲୋକଂକର ଦେଶ । ଏଠାରେ ବହୁ ସଂସ୍କୃତିର ସମନ୍ୱୟ ଦେଖାଯାଏ । ବିବିଧତା ମଧ୍ୟରେ ଐକ୍ୟ ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ । ଭାରତୀୟ ସାହିତ୍ୟ ବହୁଭାଷାରେ ଲିଖିତ ହୋଇଥିଲେ ମଧ୍ୟ ଏହାର ମୁଖ୍ୟ ସ୍ୱର ପ୍ରାୟ ଏକ ଏବଂ ଏଥିରେ ଗୋଟିଏ ଅଦୃଷ୍ଟର ଚେତନା ପ୍ରତିଫଳିତ ହୋଇଥାଏ ।

ଚାର୍ଲସ ବିଶ୍ୱବିଦ୍ୟାଳୟର ପ୍ରାଧ୍ୟାପକ Dr. Odolen Smekal ମୋ ସଂବଂଧରେ କିଛି ସୂଚନା ଦେଇଥିଲେ । ସେ ଏହି ବିଶ୍ୱବିଦ୍ୟାଳୟ ଏବଂ ମୋର ସାହିତ୍ୟ କୃତି ସଂବଂଧରେ ଆଲୋକପାତ କରିଥିଲେ । ଏହି ବିଶ୍ୱବିଦ୍ୟାଳୟରେ କେତେକ ସୁଦୃଶ୍ୟ ଟାୱାର ରହିଛି । ବିଶ୍ୱବିଦ୍ୟାଳୟଟି କେତେକ କଲେଜ ଓ ଚାପେଲ୍‌ର ସମଷ୍ଟି ।

ଲାଇବ୍ରେରି ଅଫ୍ ଚେକୋସ୍ଲୋଭାକିଆ ସୋସିଆଲିଷ୍ଟ ରିପବ୍ଲିକ୍‌ର ନିର୍ଦ୍ଦେଶକ ଡଃ ଅର୍ବାନ୍ କୋଭା ମୋତେ ତାଂକ ଲାଇବ୍ରେରିକୁ ଆମଂତ୍ରଣ କରିଥିଲେ । ସେ ମୋତେ ସମଗ୍ର ଲାଇବ୍ରେରିଟି ବୁଲାଇ ଦେଖାଇଥିଲେ । ଏହି ଲାଇବ୍ରେରିଟି ଏକ ବିରାଟ ଅଟ୍ଟାଳିକାରେ ଅବସ୍ଥିତ ।

ଚାଇନିଜ୍ ଆର୍ଟର ତତ୍ତ୍ୱାବଧାରକ ଇ.ରିବ୍‌ଟୋରଭା, ଆଫ୍ରିକାନ୍ ଆର୍ଟର ବିଶାରଦ ଡଃ ଇରିବ୍‌ହେରୋଲ୍‌ଡ, ଜାପାନ ଆର୍ଟ ବିଶାରଦ ଡଃ ଏଲ୍, ବୋହାଟେକୋଭା, ଏସିଆନ୍ ଆର୍ଟ ସଂରକ୍ଷକ ଡଃ ହାନା କିଂଜକୋଭା ପ୍ରଭୃତିଂକ ସହ ମୋର ସଂପୃକ୍ତ ଆର୍ଟ ସଂବଂଧରେ ଆଲୋଚନା ହୋଇଥିଲା । ମୁଁ ଚିତ୍ରକଳା ସଂଗ୍ରହ ଦେଖିଥିଲି ।

**ନ୍ୟାସନାଲ ଆର୍ଟ ଗ୍ୟାଲେରୀ :**

ଜୁନ୍ ୧୪ ତାରିଖ ନ୍ୟାସନାଲ୍ ଆର୍ଟ ଗ୍ୟାଲେରୀରେ ସଂଗୃହୀତ ଚିତ୍ରାବଳୀ ଦେଖିଥିଲି । ଏଥିରେ ପିକାସୋ, ହେନେରୀ, ଡ୍ୟାଲୀ, କନେଷ୍ଟବଲ୍ ପ୍ରଭୃତି ବିଖ୍ୟାତ ଚିତ୍ରଶିଳ୍ପୀମାନଂକର ଚିତ୍ର ରହିଛି । ମୋ ସଂଗରେ ମୋର ଦ୍ୱିଭାଷୀ ମାରିଆ ଥିଲା । ହଲ୍‌ଗୁଡ଼ିକରେ ସେତେବେଳେ ଦର୍ଶକଂକ ଭିଡ଼ ନଥାଏ । ବେଳେବେଳେ ଜଣେ ଦୁଇଜଣ ଦର୍ଶକ ଦର୍ଶିକା ଆସି ଟିକିଏ ବୁଲି ଦେଖି ଚାଲିଯାଂତି । ଆମେ ବିଶ୍ରାମ ନେଉଥିବା ଅବସରରେ ମୁଁ ମାରିଆକୁ ପଚାରିଲି – ''ତମେ ଦେଖିବାକୁ ଖୁବ୍ ସୁଂଦର ଏବଂ ତୁମ କଂଠସ୍ୱର ଅତି ମଧୁର । ତୁମକୁ ଦେଖିଲେ ମନେହୁଏ ତୁମେ ନିଶ୍ଚୟ ଜଣେ କଳାକାର ।'' ମାରିଆ ଟିକେ ହସି କହିଲା – ''ହଁ, ମୁଁ ଜଣେ ସଂଗୀତଶିଳ୍ପୀ ଏବଂ ନୃତ୍ୟଶିଳ୍ପୀ । ମୁଁ ଏକ ଚେକ୍ ଅପେରା ପାର୍ଟିରେ କାମକରୁଥିଲି । ପ୍ରାୟ ଏକ ବର୍ଷ ମୁଁ ସଂଗୀତ ନୃତ୍ୟ ଆଦି କରିଛି । ସେହି ଅବସରରେ ମୁଁ ଆମ କଂପାନୀ ସହିତ ନିୟୁୟର୍କ ଯାଇଥିଲି । ସେଠାରେ ପ୍ରାୟ ଏକ ମାସ ନୃତ୍ୟଗୀତ ପ୍ରଦର୍ଶନ କରିଥିଲି । ମୁଁ ପଚାରିଲି – ତମର ପିତାମାତା ଓ ସ୍ୱାମୀ ତମକୁ ଏସବୁ କରିବାକୁ ଅନୁମତି ଦିଅଂତି ? ସେ ମୁଂଡ ହଲାଇ ହଁଭରିଲା । କହିଲା – ମୁଁ ଦିନେ ତମକୁ ଆମ ଘରକୁ ନେଇଯିବି, ସମସ୍ତଂକ ସଂଗେ ପରିଚୟ କରାଇଦେବି । ଏହାପରେ କିଛି ସମୟ ନୀରବ ରହିବା ପରେ ମୁଁ ପଚାରିଲି – ''ଆଚ୍ଛା ଚେକୋସ୍ଲୋଭାକିଆ ତ ଏକ କମ୍ୟୁନିଷ୍ଟ ଦେଶ, ତମେ ପିଲାଦିନୁ କମ୍ୟୁନିଷ୍ଟ ପରିବାରରେ ବଢ଼ିଛ ଏବଂ ଶିକ୍ଷାପାଇଛ । ତମେ ଭଗବାନ୍ ମାନ ? ସେ କହିଲା – ନାଁ, ଆମେ କେହି ଭଗବାନ୍‌ରେ ବିଶ୍ୱାସକରୁନା । ମୁଁ ପଚାରିଲି – ଆଚ୍ଛା, ଆପଦ ବିପଦରେ ପଡ଼ିଲେ ତମେ ଏକ ଅଦୃଶ୍ୟ ଶକ୍ତିର ସାହାଯ୍ୟ ଲୋଡ଼ୁନା ? ସେ କହିଲା – ନାଁ, ଆମେ ସେପରି କିଛି ଶକ୍ତିରେ ବିଶ୍ୱାସକରୁନା କିମ୍ବା ତାଂକ ସାହାଯ୍ୟ ଲୋଡୁନା । ତାପରେ ଟିକେ ଚୁପ୍‌ମାରି ରହିଲା । ତାପରେ ସେ କହିଲା – ତେବେ ମୋତେ ଚର୍ଚ୍ଚକୁ ଯିବାକୁ ଭଲଲାଗେ । ମୁଁ ଜେଜେବାବା ଓ ଜେଜେମାଙ୍କ ସଂଗେ ଅନେକ ଥର ଚର୍ଚ୍ଚକୁ ଯାଇଛି ।

ମାରିଆର କଥାବର୍ତ୍ତାରୁ ବୁଝିଲି କମ୍ୟୁନିଷ୍ଟ ସମାଜରେ ପିଲାମାନେ ଭିନ୍ନଧରଣରେ ଗଢ଼ା । ସେମାନେ ନିଜ ଉପରେ ଓ ରାଷ୍ଟ୍ର ଉପରେ ଅଧିକ ଭରସା ରଖଂତି । ଆମେ

କିଛି ସମୟ ହାତଧରାଧରି ହୋଇ ଚିତ୍ର ଗ୍ୟାଲେରୀ ଓ ମିଉଜିୟମ୍ ପ୍ରଭୃତି ଦେଖି ହୋଟେଲ୍‌କୁ ଫେରିଲୁ । ବାଟରେ ମୁଁ ତାକୁ ନିୟୁୟର୍କ କଥା ପଚାରିଲି – ଆମେରିକାରେ ତ ଖୋଲା ସମାଜ, ରାଷ୍ଟ୍ରୀୟ ନିୟଂତ୍ରଣ ନାହିଁ – ସେଠାର ସାମାଜିକ ଆବହାଓ୍ୱା ତମକୁ କିପରି ଲାଗିଲା ? ସେ କହିଲା – ମୋତେ ଆମେରିକା ଖୁବ୍ ଭଲଲାଗିଲା ।

ହୋଟେଲ୍‌ରେ ପହଁଚିବା ପରେ ସେ ସେଦିନ ପାଇଁ ବିଦାୟ ନେଇ ଚାଲିଗଲା । ଏହି ବିଷୟବସ୍ତୁ ଉପରେ ମୋର ଏକ ଗଳ୍ପ ''ଭିନ୍ନଦେଶୀ'' ଆଧାରିତ ହୋଇଛି । ତାହା ମୋର ଗଳ୍ପସଂକଳନ ''ମାଂକଡ଼ ଓ ଅନ୍ୟାନ୍ୟ ଗଳ୍ପ'' ପୁସ୍ତକରେ (୧୯୮୩) ସନ୍ନିବିଷ୍ଟ ହୋଇଛି ।

**ଟେକ୍‌ନିସିଆନ୍ ଅପେକ୍ଷାରେ :**

ପ୍ରାଗ୍‌ରେ ପହଁଚି ମୁଁ ହୋଟେଲର ଅଭ୍ୟର୍ଥନା ଅଫିସ୍‌ର ଜଣେ ଭଦ୍ରଲୋକଂକୁ କହିଲି – ''ମୋ ବେଲ୍ଟ ଢୁଗୁଳା ହୋଇଗଲାଣି, ସେଥିରେ ଆଉ ଗୋଟାଏ ଦି'ଟା କଣା କରିବାକୁ ହେବ । ତମେ ମୋତେ ଟିକେ ସାହାଯ୍ୟ କରିପାରିବ କି ?'' ସେ କହିଲେ – ନିଶ୍ଚୟ । ମୁଁ ସଂଗେ ସଂଗେ ଟେକ୍‌ନିସିଆନ୍‌ସଂକୁ ଖବରଦେଉଛି ।

ଟେକ୍‌ନିସିଆନ ଅର୍ଥ ମୋଚି । ସେମାନେ ଆମ ଭାରତପରି ରାସ୍ତାରେ ବସି ଜୋତା ମରାମତି କରଂତି ନାହିଁ – ସେମାନଂକର ଦୋକାନ ବା ଷ୍ଟଲ ଥାଏ ।

ମୁଁ ପ୍ରାୟ ଏକ ମାସ ହେଲା ଭାରତ ଛାଡ଼ିଲିଣି । ଭାରତୀୟ ଖାଦ୍ୟ ନଖାଇ ମୁଁ ବହୁତ ଝଡ଼ିଯାଇଥିଲି, ତେଣୁ ମୋ ବେଲ୍ଟ ଢିଲାହୋଇଯାଇଥିଲା । ପ୍ୟାଂଟ ଖସିପଡୁଥିଲା । ତେଣୁ ଅନେକ ସମୟରେ ପ୍ୟାଂଟକୁ ହାତରେ ଚାପି ଧରିବାକୁ ପଡୁଥିଲା । ମାତ୍ର ପ୍ରାୟ ଏକ ସପ୍ତାହ ବିତିଗଲା, ଟେକ୍‌ନିସିଆନ୍ ଆସିଲେ ନାହିଁ । ମୁଁ ଅଭ୍ୟର୍ଥନା ଅଫିସରେ ଦୁଇ ତିନିଥର ପଚାରିଲି । ସେହି ଗୋଟିଏ ପ୍ରକାର ଉତ୍ତର ପାଇଲି – ''ଆମେ ଖବରଦେଇଛୁ – ସେ ଶୀଘ୍ର ଆସିଯିବେ ।''

**ନାସିର୍ ଅହମ୍ମଦ୍ :**

ପ୍ରାଗ୍‌ରେ ଜଣେ ପାକିସ୍ତାନୀ ଲେଖକ ରହୁଥାଂତି, ତାଂକ ନା' ନାସିର ଅହମ୍ମଦ । ତାଂକ ବୟସ ୪୦-୪୫ ବର୍ଷ ହେବ । ସେ ସେଠାରେ ଏକ ଟୁରିଷ୍ଟ ଅଫିସ୍‌ରେ କାର୍ଯ୍ୟ କରୁଥାଂତି । ସେ କେତେକ ପାକିସ୍ତାନୀ ଲେଖକଂକ ଗଳ୍ପକୁ ଚେକ୍ ଭାଷାରେ ଅନୁବାଦ କରିଥାଂତି । ତାହା ଚେକୋସ୍ଲୋଭାକିଆରେ ପ୍ରକାଶ ପାଇଥିଲା । ସେ ମୋର କେତୋଟି ଗଳ୍ପ ଇଂରାଜୀରୁ ଚେକ୍ ଭାଷାରେ ଅନୁବାଦ କରିବେ ବୋଲି କହିଥିଲେ । ସେ ମୋର ଗଳ୍ପ ସଂଗ୍ରହର ଇଂରାଜୀ ଅନୁବାଦ "Short Stories of Sachi Rout Roy" ବହିଟି ନେଇଥିଲେ । ସେ ମୋର କେତୋଟି ଗଳ୍ପ ଚେକ୍ ଭାଷାରେ ଅନୁବାଦ କରିଥିଲେ । ତାହା ସେଠାରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶପାଇଥିବା କଥା ମୁଁ ଭାରତକୁ ଆସି ଖବରପାଇଥିଲି ।

ନାସିର୍ ଅହମ୍ମଦ ମୋତେ ଦିନେ ସଂଧ୍ୟାରେ ତାଂକ ବାସଭବନକୁ ରାତ୍ରିଭୋଜନ ପାଇଁ ନିମନ୍ତ୍ରଂଣ କରିଥିଲେ । ମୋ ହୋଟେଲଠାରୁ ତାଂକ ବାସଭବନ ପ୍ରାୟ

ଦୁଇକିଲୋମିଟର ଦୂର । ଆମେ ଚାଲି ଚାଲି ସେଠାକୁ ଗଲୁ । ସେଠାରେ ପହଁଚି ମୁଁ ତାଂକୁ ମୋ ବେଲ୍ଟ ସମସ୍ୟା କଥା କହିଲି । ସେ ତାଂକ ରୋଷେଇଘରକୁ ଯାଇ ଗୋଟାଏ ଲୁହା କଂଟା ନେଇଆସିଲେ । ତାକୁ ମୋ ବେଲ୍ଟରେ ଏକ ହାତୁଡ଼ିରେ ପିଟି ଦୁଇ-ଚାରିଟା କଣା କରିଦେଲେ । ଏଥର ଆଉ କୌଣସି ଭୟ ନାହିଁ । ପେଟ ଯେତେ ଶୁଖିଗଲେ ମଧ ବେଲ୍ଟ ସହଜରେ ପିଂଧି ହେବ । ତାଂକ ଘରେ ସେ ଭାତ, ତରକାରି ପ୍ରଭୃତି ବନାଇଥିଲେ । ବହୁଦିନ ପରେ ଭାରତୀୟ ଖାନା ଖାଇ ମୁଁ ଟିକେ ତାଜା ହୋଇଉଠିଲି । କିଛିସମୟ କଥାବାର୍ତ୍ତା ପରେ ସେ ମୋତେ ଆଣି ହୋଟେଲରେ ଛାଡ଼ିଦେଇଗଲେ । ଚାଲି ଚାଲି ଆସିବା ବେଳେ ବାଟରେ ଝଡ଼ତୋଫାନ ଓ ପ୍ରବଳ ବର୍ଷାର ସମ୍ମୁଖୀନ ହେଲୁ । ମୋ ଦେହରେ ଓଭରକୋଟ ଥିଲା । ମାତ୍ର ନାସିର୍ ଅହମ୍ମଦ୍ ଖାଲି କୋର୍ଟଟିଏ ଓ ପ୍ୟାଂଟ ପିଂଧିଥିଲେ । ଯାହାହେଉ ଆମେ ଆସି ହୋଟେଲ୍‌ରେ ପହଁଚିଲୁ ।

**ବ୍ରାଟିଶ୍ଲାଭାରେ ଚାରିଦିନ :**

ବ୍ରାଟିସ୍ଲାଭା ଚେକୋସ୍ଲୋଭାକିଆର ଏକ ଗୁରୁତ୍ୱପୂର୍ଣ୍ଣ ନଗରୀ । ଏହା ପୂର୍ବେ ହଂଗେରୀ ଅଧୀନରେ ଥିଲା । ଡାନ୍ୟୁବ ନଦୀ ଏ ଅଂଚଳର ପ୍ରଧାନ ନଦୀ । ପୂର୍ବେ ହଂଗେରୀର ରାଜାମାନଂକର ଅଭିଷେକ ବ୍ରାଟିସ୍‌ଲାଭାର ଗଥିକ କ୍ୟାଥେଡ୍ରାଲ୍ S. Martinରେ ୧୫୨୬ ଖ୍ରୀଷ୍ଟାବ୍ଦରୁ ଅନୁଷ୍ଠିତ ହୋଇ ଆସୁଥିଲା । ୧୮୪୮ ମସିହା ପର୍ଯ୍ୟଂତ Landhouseରେ ହଙ୍ଗାରିଆନ୍ ପାର୍ଲାମେଂଟ ବସୁଥିଲା । ୧୯୩୯ ମସିହା ମାର୍ଚ୍ଚ ୧୦ ତାରିଖରେ ଏଠାରେ ନାଜି ଜର୍ମାନମାନଂକଦ୍ୱାରା ପ୍ରୋତ୍ସାହିତ ଏକ ବିଦ୍ରୋହ ସଂଗଠିତ ହୋଇଥିଲା । ଏହାପରେ ଫାଦର ଟିସୋଂକ ନେତୃତ୍ୱରେ ସ୍ଲୋଭାକିଆ ପୂର୍ଣ୍ଣ ସ୍ୱାଧୀନତା ହାସଲକରିଥିଲା । ୧୯୪୫ ମସିହାରେ ରୁଷିଆର ଦ୍ୱିତୀୟ ଇଉକ୍ରେନିଆନ୍ ବାହିନୀର ସୈନ୍ୟମାନେ ଜର୍ମାନମାନଂକୁ ପରାସ୍ତକରି ବ୍ରାଟିଲାଭା ଦଖଲ କରିଥିଲେ । ଏହା ସ୍ଲାଭାକିଆ ରାଜ୍ୟର ରାଜଧାନୀ ରୂପେ ନିର୍ମିତ ହୋଇଥିଲା । ଚେକ୍ ସରକାର ଏହାକୁ ଏକ ସ୍ୱଂୟଶାସିତ ରାଜ୍ୟ ଘୋଷଣା କରିଥିଲେ । ବ୍ରାଟିସ୍‌ଲାଭା ଟାଉନ୍‌ହଲ୍‌ରେ ମ୍ୟୁନିସିପାଲ ମିଉଜିୟମ୍ ରହିଛି । ନିକଟରେ ଫ୍ରାନ୍‌ସିସ୍‌କାନ୍ ଚର୍ଚ୍ଚ ରହିଛି ଯାହା ୧୨୭୨ ମସିହାରେ ନିର୍ମିତ ହୋଇଥିଲା । ୧୯୧୯ ଖ୍ରୀଷ୍ଟାବ୍ଦରେ ଏଠାରେ ସ୍ଲୋଭାକିଆନ୍ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା । ବ୍ରାଟିସ୍‌ଲାଭାରେ ଭସ୍ମୀଭୂତ ରାଜପ୍ରାସାଦର ଅବଶିଷ୍ଟାଂଶ ଅବସ୍ଥିତ । କଳକାରଖାନା ବିଶେଷକରି ପେଟ୍ରୋଲିୟମ୍ ରିଫାଇନେରୀ ଏବଂ ଧୂଆଁପତ୍ର କାରଖାନା, ଚମଡ଼ାଶିଳ୍ପ ଆସବାବପତ୍ର ନିର୍ମାଣ ପ୍ରଧାନ । ଏହାର ଜନସଂଖ୍ୟା ୨୦ ଲକ୍ଷ ହେବ ।

**ସ୍ଲାଭାକିଆ ଲେଖକମାନଂକ ସଂବର୍ଦ୍ଧନା** – ସ୍ଲାଭାକିଆ ଲେଖକମଂଡଳୀ ମୋତେ ଏକ ମଧ୍ୟାହ୍ନଭୋଜନକୁ ଆମଂତ୍ରଣ କରିଥିଲେ । ସେଠାରେ ମୁଁ ଭାରତୀୟ ସାହିତ୍ୟ ବିଷୟରେ ଏକ ଭାଷଣ ଦେଇଥିଲି । କେତେକ ସ୍ଲାଭାକିଆନ୍ ଲେଖକ ତାଂକ ସାହିତ୍ୟ ବିଷୟରେ କହିଥିଲେ । ସାଂସ୍କୃତିକ ମଂତ୍ରାଳୟ ନିର୍ଦ୍ଦେଶକ ମିଃ ଭ୍ଲାଡିମିର୍ ଗ୍ରାଫ୍ ଉପସ୍ଥିତ ଲେଖକମାନଂକ ସହିତ ମୋର ପରିଚୟ କରାଇଦେଇଥିଲେ । ପ୍ରସିଦ୍ଧ ଲେଖିକା ଶ୍ରୀମତୀ

ଶୋଭରୋଭା ଏହି ସଭାରେ ଭାରତୀୟ ସାହିତ୍ୟ ଓ କଳା ସଂବଧରେ କିଛି ସୂଚନା ଦେଇଥିଲେ । ସେହି ସଭାରେ ମୋର ସାହିତ୍ୟକୃତି ସଂପର୍କରେ କିଛି କହିଥିଲେ । ଭାରତ ଓ ଚେକୋସ୍ଲୋଭାକିଆ ମଧ୍ୟରେ ସାଂସ୍କୃତିକ ମୈତ୍ରୀ ବଂଧନ କିପରି ବ୍ୟାପକ ଓ ଦୃଢ଼ତର ହେବ ମୁଁ ସେ ବିଷୟରେ କିଛି ସୂଚନା ଦେଇଥିଲି । ଭାରତର ପ୍ରାଚୀନ ଚିତ୍ରକଳା ଓ ଭାସ୍କର୍ଯ ଉପରେ ମୁଁ ଆଲୋକପାତ କରିଥିଲି ।

ଏହା ପରଦିନ ମୁଁ ଓ ମୋର ଦ୍ୱିଭାଷୀ ବ୍ରାତିସ୍ଲାଭାର ସଂସ୍କୃତିମଂତ୍ରୀ ଶ୍ରୀମତୀ କୋଉଟି କୋଭାଂକ ସହିତ ମଧ୍ୟାହ୍ନଭୋଜନରେ ମିଳିତ ହୋଇଥିଲୁ । ସେ ମୋ ସହିତ ଭାରତର କଳା ଓ ସଂସ୍କୃତି ସଂବଂଧରେ ଏବଂ ଓଡ଼ିଶାର କୋଣାର୍କ ମଂଦିର ସଂପର୍କରେ ଆଲୋଚନା କରିଥିଲେ । ସେ କୋଣାର୍କ ସଂବଂଧରେ ଖଣ୍ଡିଏ ବହି ପଢ଼ିଛଂତି ବୋଲି କହିଲେ । ଏଥର ଭାରତ ଗଲେ ସେ ନିଶ୍ଚୟ କୋଣାର୍କ ଯାଇ ପୃଥିବୀର ଅଷ୍ଟମ ଆଶ୍ଚର୍ଯ ରୂପେ ପରିଗଣିତ ଏହି ଶିଳ୍ପକଳା ପୀଠ ପରିଦର୍ଶନ କରିବେ ବୋଲି କହିଥିଲେ ।

## ମିଉଜିୟମ୍ ଓ ଚିତ୍ରଗ୍ୟାଲେରୀ ପରିଦର୍ଶନ :

ମୁଁ ବ୍ରାତିସ୍ଲାଭାର ମିଉଜିୟମ୍ ଓ ଚିତ୍ରଶାଳାର ବିଶିଷ୍ଟ ଚିତ୍ର ମୋର ଦ୍ୱିଭାଷୀ ସହ ବୁଲି ଦେଖିଥିଲି । ଏଠାରେ ମୋର ଦ୍ୱିଭାଷୀ ରୂପେ ଅନ୍ୟ ଜଣେ ଭଦ୍ରଲୋକ ଥିଲେ । ବ୍ରାତିସ୍ଲାଭାର ପ୍ରାକୃତିକ ସୌଂଦର୍ଯ ବିଶେଷ ଆକର୍ଷଣୀୟ । ବ୍ରାତିଶ୍ଲାଭାର ଶିଳ୍ପକଳା ମୁଖ୍ୟତଃ ଗଥିକ ଶୈଳୀରେ ରଚିତ । ଏହାଛଡ଼ା ମୁଁ ବ୍ରାତିସ୍ଲାଭାର Institute of Oriental Studies ଦେଖିଥିଲି । ଡଃ ଇଭାନ୍‌ଡୋଲିଜାଲ୍ ମୋତେ Institute କାର୍ଯକଳାପ ସବଂଧଂରେ ଅବହିତ କରିଥିଲେ । ସେ ମୋତେ ମଧ୍ୟାହ୍ନଭୋଜନକୁ ଆମଂତ୍ରଣ କରିଥିଲେ । ସେ ଆଉ ଦୁଇ ତିନି ଜଣ ଇଂଡୋଲୋଜିଷ୍ଟଂକୁ ମଧ ଡାକିଥିଲେ । ଭାରତବିଦ୍ୟା sectionର ଭାରପ୍ରାପ୍ତ ମୁଖ୍ୟ ସେଥିରୁ ଅନ୍ୟତମ । ତାଂକଠାରୁ ଇଂଡୋଲୋଜିଷ୍ଟ ବିଭାଗର କାର୍ଯକଳାପ ସଂବଂଧରେ କେତେକ ତଥ୍ୟ ଆହରଣ କରିଥିଲି ।

## ପ୍ରାଗ୍ ପ୍ରତ୍ୟାବର୍ତ୍ତନ :

ବ୍ରାତିସ୍ଲାଭାରେ ଚାରିଦିନ ରହି ମୁଁ ପ୍ରାଗ୍ ଫେରିଆସିଥିଲି । ପ୍ରାଗର ପୂର୍ବ ହୋଟେଲ୍‌ରେ ମୋ ପାଇଁ ଗୋଟିଏ ରୁମ୍ ସଂରକ୍ଷିତ ହୋଇଥିଲା । ମୁଁ ସେଠାରେ ଆଉ ତିନି ଚାରିଦିନ ରହି କେତେକ ସ୍ଥାନ ବୁଲି ଦେଖିଥିଲି । ତାହା ମଧ୍ୟରେ ପୁରାତନ କ୍ୟାଥେଡ୍ରାଲ୍ ବିଶେଷ ଉଲ୍ଲେଖଯୋଗ୍ୟ । ମୋର ପୂର୍ବ ଦ୍ୱିଭାଷୀ ମାରିଆ ମୋର ଦ୍ୱିଭାଷୀ ରୂପେ ମୋ ସହିତ ଥିଲା ।

## ପ୍ରାଗ୍ ଥିଏଟର :

ମାରିଆ ମୋତେ ଦିନେ ପ୍ରାଗର ବିଖ୍ୟାତ ଥିଏଟରକୁ ନେଇଯାଇଥିଲା । ସେଥିରେ ପାତ୍ରପାତ୍ରୀମାନଂକର ସଂଳାପ ସ୍ଲୋଭାକ୍ ଭାଷାରେ ଥିଲା । ମାତ୍ର ମଂଚ ଉପରେ ଲାଗିଥିବା ପର୍ଦାଗୁଡ଼ିକରେ ସ୍ଥାନୀୟ ଦୃଶ୍ୟ ସବୁ ଏକ ସୁଂଦର ପ୍ରାକୃତିକ ବାୟୁମଂଡଳକୁ

ପ୍ରତିବିଂବିତ କରୁଥିଲା । ଗଛ ବୃକ୍ଷର ପତ୍ର ଓ ଶାଖା ହଲୁଥିଲେ । ନଦୀଗୁଡ଼ିକ ଠିକ୍ ନଦୀ ପରି ତରଂଗ ସୃଷ୍ଟି କରି ବହିଯାଉଥିଲେ । ରଂଗମଂଚର ପାର୍ଶ୍ୱ ଓ ପଛପଟ ପର୍ଦାରେ ପ୍ରାକୃତିକ୍ ଦୃଶ୍ୟ ସବୁ ସିନେମା ସଦୃଶ ପ୍ରତିବିଂବିତ ହେଉଥିଲା । ଚଢ଼େଇ ସବୁ କିଚିରିମିଚିରି ଶବ୍ଦ କରି ଉଡୁଥିଲେ । ତେଣୁ ନାଟକ ସହିତ ସିନେମାର ସଂଯୋଗ ହୋଇଥିଲା । ଏହା ଏକ ସୁଂଦର ବାୟୁମଂଡଳ ସୃଷ୍ଟିକରିଥିଲା ।

ଥିଏଟର ଦେଖିସାରି ଆମେ ନିକଟସ୍ଥ ଏକ ରେସ୍ତୋରାଁକୁ ଯାଇ ଚା'ପାନ କରିଥିଲୁ । ମାରିଆ ସେଠାକୁ ତାର ପିତା ମାତା ଓ ସ୍ୱାମୀଂକୁ ଆସିବାକୁ କହିଥିଲା । ସେଠାରେ ସେମାନଂକ ସଂଗେ ମୋର କିଛି ସମୟ ଆଳାପ ଆଲୋଚନା ହୋଇଥିଲା । ମୁଁ ସେମାନଂକୁ ଭେଟି ଆନଂଦିତ ହୋଇଥିଲି ।

ଚେକୋସ୍ଲୋଭାକିଆରେ ଇଂରାଜୀ ଜାଣିଥିବା ଲୋକ ରୁଷ୍ ତୁଳନାରେ ଅଧିକ । ତେଣୁ ସବୁଠାରେ ଭାବର ଆଦାନ ପ୍ରଦାନ କରିବା ପାଇଁ ସୁବିଧାହୁଏ । ଏହା କେଂଦ୍ର ଇଉରୋପରେ ଅବସ୍ଥିତ ଥିବାରୁ ଏ ଦେଶରେ ଇଂରାଜୀ ଜାଣିଥିବା ଲୋକସଂଖ୍ୟା ଅପେକ୍ଷାକୃତ ଅଧିକ । ସ୍ଲୋଭାକ ଲୋକଉତ୍ସବ ପ୍ରାଗ୍‌ଠାରୁ କିଛି ଦୂରରେ ମିଜାମିଠାରେ ଅନୁଷ୍ଠିତ ହେଉଥିଲା । ସ୍ଲୋଭାକ୍ ଲୋକଉତ୍ସବ ଦେଖିବାକୁ ମୋତେ ନାସିର୍ ଅହମ୍ମଦ୍ ନେଇଯାଇଥିଲେ । ବୈଦେଶିକ ସାଂସ୍କୃତିକ ବିଭାଗ ଆମକୁ ଏଥିପାଇଁ ଗୋଟିଏ ଗାଡ଼ି ଦେଇଥିଲେ । ଏହି ଉତ୍ସବ ଏକ ଖୋଲାମଂଚରେ ଅନୁଷ୍ଠିତ ହୁଏ । ରଂଗମଂଚଟି ବିରାଟ ବଡ଼, ତାର ଛାତ ଅଛି, ମାତ୍ର ଦର୍ଶକମାନେ ବସିବା ସ୍ଥାନ ଘାସଭରା ଖୋଲାପଡ଼ିଆରେ । ଏହି ଉତ୍ସବରେ ବହୁ ଗ୍ରାମରୁ ଲୋକମାନେ ଆସିଥାଂତି; ଅଭିନେତା ଅଭିନେତ୍ରୀମାନେ ଗାଉଁଲି ଢଂଗରେ ଏବଂ ପୁରୁଣାକାଳର ବେଶଭୂଷା ପିଂଧି ଠିକ୍ ଗାଁଉଲି ଲୋକଂକ ପରି ମଂଚ ଉପରକୁ ଆସିଥାଂତି । ସେମାନେ ଦର୍ଶକମଂଡଳୀଂକ ମଧ ଦେଇ ମଂଚ ଉପରୁ ଯାଇଥାଂତି ।

ଆମେ ଏହି ମଂଚରେ ଏକ ଗାଉଁଲି ବିବାହ ଉତ୍ସବ ଦେଖିଥିଲୁ । ବରକନ୍ୟା ଓ ବରଯାତ୍ରୀ ତଥା କନ୍ୟାପକ୍ଷର ଲୋକମାନେ ପୁରୁଣା ଗାଉଁଲି ପୋଷାକରେ ସଜ୍ଜିତ ହୋଇ ଆସିଥାଂତି । ତାଂକ ସହିତ ପିଠାମିଠା ଭାର ବୋହି ବହୁ ଭାରୁଆ ମଧ ଆସିଥାଂତି । ବିବାହପରେ ବରଯାତ୍ରୀ ଓ କନ୍ୟାପକ୍ଷ ଲୋକମାନେ ସେହିସବୁ ପିଠାକୁ ଦର୍ଶକମାନଂକ ଉପରକୁ ଫିଙ୍ଗିଥିଲେ । ଦର୍ଶକମାନେ ଉପରକୁ ହାତଟେକି ସେସବୁ ଆନଂଦରେ କୋଳାହଳ କରି ଧରିପକାଇ ଖାଇବାକୁ ଲାଗଂତି । କେତେକ ପିଠା ତଳେ ପଡ଼ିଗଲେ ମଧ ଘାସ ଉପରୁ ସେସବୁ ଗୋଟାଇ ଖାଆଂତି । ଆମେ ପେଟ ଭରି ପିଠା ଖାଇଥିଲୁ । ପିଠା ଓ ଖାଦ୍ୟ ପୁରୁଣା ଢଂଗରେ ବନାଯାଇଥିଲା । ଏହି ଉତ୍ସବରେ ସ୍ଲୋଭାକ୍ ଗ୍ରାମ୍ୟ ଜନତାର ରୀତିନୀତି, ଚାଲିଚଳନ ଓ ପୋଷାକପରିଚ୍ଛଦ ସଂବଂଧରେ ଏକ ସ୍ୱଚ୍ଛ ଧାରଣା ହୁଏ । ଏହି ଉତ୍ସବ ପରେ ଆମେ ଚେକୋସ୍ଲୋଭାକିଆର କେତୋଟି ଗ୍ରାମ ବୁଲି ଦେଖିଥିଲୁ । ସଂଧ୍ୟାବେଳକୁ ହୋଟେଲ୍‌କୁ ଫେରିଆସିଥିଲୁ ।

ଏହାର ପରଦିନ ମୁଁ ପ୍ରାଗ୍ ଛାଡ଼ି ପୋଲାଂଡ ଯାତ୍ରା କରିଥିଲି । ସେଠାରେ ମୋର ଦୁଇ ସପ୍ତାହ ପାଇଁ କାର୍ଯ୍ୟକ୍ରମ ନିର୍ଦ୍ଧାରିତ ହୋଇଥିଲା । ମୋ ସଂଗରେ ମାରିଆ ଆସି ମୋତେ ବିମାନବନ୍ଦରରେ ଛାଡ଼ିଦେଇଗଲା । ଅଫିସ୍ ଦିନ ଥିବାରୁ ନାସିର୍ ଅହମ୍ମଦ୍ ବିମାନବନ୍ଦରକୁ ଆସିପାରିଲେନାହିଁ, ସେ ଫୋନ୍ କରି ମୋତେ ବିଦାୟ ଜଣାଇଥିଲେ ଏବଂ ମୋର ଶୁଭଯାତ୍ରା କାମନା କରିଥିଲେ ।

**ପୋଲାଂଡରେ ଦୁଇସପ୍ତାହ –**
**ନାଜି ଜର୍ମାନୀରେ ୫୦ ଲକ୍ଷ ଜୁ-ହତ୍ୟା :**

ମୁଁ ୧୯୭୯ ମସିହା ଜୁନ୍ ମାସ ଶେଷ ସପ୍ତାହରେ ପୋଲାଂଡର ରାଜଧାନୀ ୱାରଶ (Warsaw) ବିମାନବନ୍ଦରରେ ପହଁଚିଲି । ସେଠାରେ ବୈଦେଶିକ ବିଭାଗର ଜଣେ ଉଚ୍ଚକର୍ମଚାରୀ ଏବଂ ଦ୍ୱିଭାଷୀ ହେନେରୀ ମାସାକୋଭିଚ୍ ମୋତେ ଏୟାର୍‌ପୋର୍ଟରେ ଭେଟିଥିଲେ ଏବଂ Warsaw ହୋଟେଲକୁ ନେଇଯାଇଥିଲେ । ସେଠାରେ ମୁଁ ମୋ ନିର୍ଦ୍ଦିଷ୍ଟ ରୁମ୍‌କୁ ଯାଇ ଜିନିଷପତ୍ର ସଜାଡ଼ିଲି । ମୋ ପାସପୋର୍ଟ ହୋଟେଲ୍‌ର ଅଭ୍ୟର୍ଥନା ଅଫିସ୍ ରଖିଲେ । ମୋର ପୋଲାଂଡରେ କାର୍ଯ୍ୟକ୍ରମ ଥିଲା – ୱାରଶ ବିଶ୍ୱବିଦ୍ୟାଳୟରେ (ଆଲେକ୍‌ଜାଂଡାର ବିଶ୍ୱବିଦ୍ୟାଳୟ) ଏବଂ ପୋଲାଣ୍ଡ ଭାରତ ମୈତ୍ରୀସଂଘରେ ଭାରତର ପ୍ରାଚୀନ ଚିତ୍ରକଳା ଏବଂ ପ୍ରାଚୀନ ଓ ଆଧୁନିକ ଭାରତୀୟ ସାହିତ୍ୟ ସଂବଂଧରେ ଭାଷଣ ଦେବା ।

ମୁଁ ୱାରଶ ବିଶ୍ୱବିଦ୍ୟାଳୟରେ ଭାରତର ଏବଂ ବିଶେଷଭାବରେ ଓଡ଼ିଶାର ପ୍ରାଚୀନ ଚିତ୍ରକଳା, ଯଥା – ପୋଥିଚିତ୍ର ଏବଂ ପଟଚିତ୍ର ସଂବଂଧରେ ପ୍ରାୟ ୩୦ ମିନିଟ୍ ସମୟ କହିଥିଲି । ଏହାଛଡ଼ା ଆଧୁନିକ ଭାରତୀୟ ସାହିତ୍ୟ ଉପରେ ଆଲୋକପାତ କରିଥିଲି । ମୋର ଇଂରାଜୀ ଭାଷଣକୁ ଦ୍ୱିଭାଷୀ ହେନେରୀ ପୋଲିସ୍ ଭାଷାରେ ଅନୁବାଦ କରି ଶୁଣାଇଥିଲେ । ମୋ ପାଖରେ ବହୁତ ପ୍ରାଚୀନ ପୋଥିଚିତ୍ର ଓ ସ୍ଲାଇଡ ଥିଲା । ମାତ୍ର ବିଶ୍ୱବିଦ୍ୟାଳୟର ଉଦ୍ୟୋକ୍ତାମାନେ ପ୍ରୋଜେକ୍ଟର ଓ ସ୍କ୍ରିନ୍ ଇତ୍ୟାଦି ଯୋଗାଡ଼-କରିପାରିନଥିଲେ, ତେଣୁ ମୁଁ ସ୍ଲାଇଡ୍‌ଗୁଡ଼ିକ ପ୍ରଦର୍ଶନ କରିପାରିନଥିଲି ।

**ସଡ଼କର କଳାକାର :**

ୱାରଶରେ ହୋଟେଲରୁ ବାହାରକୁ ଗଲାବେଳେ ବହୁ ତରୁଣ ତରୁଣୀ ଚିତ୍ରକର ସେମାନଂକ କଳାକୃତିମାନ ସେମାନେ ବସିଥିବା ସ୍ଥାନରେ ସଜାଇ ରଖିଥିବାର ଦେଖିଲି । ସେମାନେ ଭିସ୍‌ଚୁଲା ନଦୀ କୂଳରେ ତଳେ ଖଂଡେ ଖଂଡେ କାନ୍‌ଭାସ୍ ପକାଇ ତା ଉପରେ ବସିଥାଂତି । କେହି କେହି ଚିତ୍ର ମଧ୍ୟ ଆଂକୁଥାଂତି । ଦର୍ଶକମାନେ ସେସବୁ ଚିତ୍ରରୁ କେବେ କେବେ ଖଂଡେ ଦୁଇଖଂଡ କିଣୁଥିଲେ ।

**ଦ୍ୱିତୀୟ ମହାଯୁଦ୍ଧର ଧ୍ୱଂସଲୀଳା :**

ଦ୍ୱିତୀୟ ମହାଯୁଦ୍ଧର ବିଭୀଷିକା ଓ ଧ୍ୱଂସଲୀଳା ୱାରଶର ବିଭିନ୍ନ ସ୍ଥାନରେ ଦେଖିବାକୁ ପାଇଲୁ । ବହୁ ପ୍ରାଚୀନ ଗିର୍ଜା ଏବଂ ପ୍ରାଥମିକ ଓ ମାଧ୍ୟମିକ ସ୍କୁଲ ଓ

କଲେଜମାନ ବଂଦ କରିଦିଆଯାଇଥିଲା । ତଥାପି ନାଜିମାନଂକର ବୋମାମାଡ଼ରୁ ସେସବୁ ରକ୍ଷାପାଇନଥିଲା ।

୧୯୩୯ ମସିହା ସେପଟେଂବର ପହିଲାରେ ହିଟଲର ପୋଲାଂଡ ସହିତ ହୋଇଥିବା ଅନାକ୍ରମଣ ଚୁକ୍ତି ଭଂଗକରି ପୋଲାଂଡ ଆକ୍ରମଣ କଲା । ନାଜିବାହିନୀ ପୋଲାଂଡରେ ସେମାନଂକର ଅମାନୁଷିକ ଧ୍ୱଂସଲୀଳା ଆରଂଭ କରିଦେଲେ । ପୋଲାଂଡ ନାଜି ଜର୍ମାନୀ ଓ ରୁଷ୍ ସହିତ ଅନାକ୍ରମଣ ଚୁକ୍ତିରେ ଆବଦ୍ଧ ଥିଲା । ନାଜି ଜର୍ମାନୀ ସେ ଚୁକ୍ତି ଭଂଗକରିବାରୁ ଇଂଲଣ୍ଡ ଜର୍ମାନୀ ବିରୋଧରେ ଯୁଦ୍ଧ ଘୋଷଣା କରିବାକୁ ବାଧହେଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର ଲେଲିହାନ୍ ଶିଖା ଜଳିଉଠିଲା । ସମଗ୍ର ଇଉରୋପ ଏବଂ ପୋଲାଂଡ ଓ ରୁଷିଆର କୋଟି କୋଟି ନରନାରୀ, ବୃଦ୍ଧ ଓ ଶିଶୁ ଏହି ଯୁଦ୍ଧରେ ଧ୍ୱଂସପାଇଗଲେ । ହିଟଲର ଚାହୁଁଥିଲା ଆର୍ଯମାନେ ହିଁ କେବଳ ଏହି ପୃଥିବୀରେ ବଂଚିରହିବେ । ଜର୍ମାନୀ ଜାତି ଏକମାତ୍ର ଆର୍ଯ ଜାତି ବୋଲି ସେ ନିଜ ଆତ୍ମଜୀବନୀ ''ମେ କ୍ୟାଂପ''ରେ ଲେଖିଥିଲା । ଏହାକୁ ଜର୍ମାନ୍ ଲୋକେ ବିଶ୍ୱାସ କରୁଥିଲେ । ଜ୍ୟୁମାନେ ଅନାର୍ଯ, ତେଣୁ ସେମାନଂକୁ ନିର୍ମୂଳ କରିବା ହିଟଲରର ପ୍ରଥମ କାର୍ଯ ଥିଲା । ପୋଲାଂଡରେ ପ୍ରାୟ ୩୫ ଲକ୍ଷ ଜ୍ୟୁ ବା ଇହୁଦୀଂକୁ ନାଜି ବାହିନୀ ବଂଦୀକରି ଘେଟୋମାନଂକରେ ରଖିଥିଲା । ଏହି ଘେଟୋଗୁଡ଼ିକ ଅଂଧକାରମୟ ବାୟୁପ୍ରଚଳନହୀନ ଘରମାନଂକର ସମଷ୍ଟି । ମୁଁ କେତେକ ଘେଟୋ ଦେଖିଥିଲି । ସେଠାକୁ ଗଲେ ଲୋମ ଟାଂକୁରିଉଠେ । ସିମେଂଟ ଟେବୁଲ ଉପରେ କେତୋଟି ଆଲମିନିୟମ୍ ପାତ୍ର ଓ ଗିଲାସ୍ ଥିବାର ଦେଖିଲି । ଏଥିରେ ବଂଦୀମାନଂକୁ ଅଳ୍ପକିଛି ଖାଇବାକୁ ଦିଆଯାଉଥିଲା । ହିଟଲର୍ ଏହି ବନ୍ଦୀ ଜ୍ୟୁମାନଂକ ମଧ୍ୟରୁ ପ୍ରାୟ ଦୁଇଲକ୍ଷ ଲୋକଂକୁ ଗ୍ୟାସ ଚାଂବର ପ୍ରଭୃତିରେ ମାରିଦେଇଥିଲା ।

୧୯୪୩ ମସିହା ଏପ୍ରେଲ୍ ୨୮ ତାରିଖରେ ଓ୍ୱାରଶର ଏକ ବଡ଼ ଘେଟୋରେ କେତେକ ତରୁଣ ଜ୍ୟୁ ଗ୍ୟାସ ଚାଂବରରେ ମରିବା ଅପେକ୍ଷା ସଂଗ୍ରାମ କରି ମରିବା ଶ୍ରେୟସ୍କର ଭାବି ନାଜି ବର୍ବରତା ବିରୋଧରେ ବିଦ୍ରୋହ କରିଥିଲେ । ସେମାନଂକର ଅସ୍ତ୍ରଶସ୍ତ୍ର ଥିଲା କେବଳ ହାତର ମୁଷ୍ଟି ଏବଂ ଅଳ୍ପ କେତୋଟି ବଂଦୁକ ଓ ମେସିନ୍‌ଗନ୍ ଯାହାକୁ କି ସେମାନେ ଚୋରାରେ ଆଣିପାରିଥିଲେ । ବାରଦିନ କାଳ ସେମାନେ ପ୍ରାଣମୂର୍ଚ୍ଛା ସଂଗ୍ରାମ କରିଥିଲେ । ଏଥିରେ ତିନିଶହଜଣ ଜର୍ମାନ୍ ନିହତ ହୋଇଥିଲେ ଏବଂ ପ୍ରାୟ ଏକହଜାର ଆହତହୋଇଥିଲେ । ଅଳ୍ପ କେତେଜଣ ଜ୍ୟୁ ନାଳ ଭିତର ଦେଇ ପଳାଇଯାଇଥିଲେ । ଏହି ସଂଘର୍ଷରେ ୨୬ ହଜାର ଜ୍ୟୁ ମରିଥିଲେ ଏବଂ ୧୪ ହଜାର ଜ୍ୟୁଂକୁ ଅନ୍ୟ ସ୍ଥାନକୁ ପଠାଯାଇଥିଲା । ଏହି ଘେଟୋର ମୁଖ୍ୟ ଦରଜା ଉପରେ Rising of the Jew ଶୀର୍ଷକରେ ଏକ ଚିତ୍ର ସିମେଂଟରେ ବନାଯାଇଛି । ମୁଁ ସେହି ଛବି ତଳେ ନିସ୍ତବ୍‌ଧଭାବେ କେତେ ସମୟ ଛିଡ଼ା ହୋଇ ରହିଲି । ମୋ ପାଟିରୁ କିଛି କଥା ବାହାରିଲା ନାହିଁ । ମୋର ଗୋଟିଏ କବିତାର ଧାଡ଼ି ''ଭଗବାନ୍ ଅଛ କାହିଁ'' ମନେପଡ଼ିଗଲା ।

ମୁଁ ମନେ ମନେ ପଚାରିଲି – ଯଦି ଭଗବାନ୍ ଥା'ନ୍ତି ତେବେ ଏଭଳି ପୈଶାଚିକ କାଣ୍ଡ ଏ ଦୁନିଆରେ ସଂଭବ ହେଲା କିପରି ? ମଣିଷ ସଭ୍ୟତା ଆଗେଇ ଚାଲିଛି । ମଣିଷ ଯାଇ ଚନ୍ଦ୍ରରେ ପହଂଚିଲାଣି । ମାତ୍ର ଇଆଡ଼େ ମଣିଷ ପଶୁଠାରୁ ହୀନ ହୋଇଯାଉଛି । କୋଟି କୋଟି ମଣିଷଂକୁ ଆଖିପିଛୁଳାକେ ରୁଦ୍ଧଶ୍ୱାସ କରି ଗ୍ୟାସଚାଂବରରେ ହତ୍ୟାକରାଯାଉଛି । ଏସବୁ ଦେଖିଲେ କିଏ ବିଶ୍ୱାସ କରିବ ଯେ ମଣିଷ ଭିତରେ ଟିକିଏ ହେଲେ ମଣିଷପଣିଆ ଅଛି ? ବାସ୍ତବିକ୍ ଏସବୁ ଦେଖିଲେ ମୁଂଡ ଘୂରିଯାଏ । ମନେହୁଏ ବର୍ତ୍ତମାନ ମୂର୍ଚ୍ଛାଯାଇ ତଳେ ପଡ଼ିଯିବ ।

ଏହାଛଡ଼ା ଇଉରୋପର ଅନ୍ୟାନ୍ୟ ଅଧିକୃତ ଦେଶମାନଂକରୁ ହିଟଲର ବଂଦୀ କରିଥିବା ଅସଂଖ୍ୟ ଇହୁଦୀଂକୁ ପୋଲାଂଡ ଆଣି ଘେଟୋମାନଂକରେ ରଖିଥିଲା । କେବଳ ଆର୍ଯ୍ୟମାନେ ହିଁ ଏହି ଘୋଟୋଗୁଡ଼ିକୁ ପାଶ୍ ଦେଖାଇ ଯାଇପାରୁଥିଲା । ମୋଟ ଉପରେ ପ୍ରାୟ ୫୦ ଲକ୍ଷ ଜୁ଼ଂକୁ ହିଟଲରବାହିନୀ ଗ୍ୟାସ ଚାଂବରରେ ପୂରାଇ ହତ୍ୟାକରିଥିବାର ଜଣାଯାଏ । ଏହି ସଂଗଠିତ ହତ୍ୟାକାଂଡ ପୃଥିବୀର ଇତିହାସରେ ଜଘନ୍ୟତମ ବୋଲି ଜଣାଯାଏ । ଓ୍ୱସିସିମ୍, ଟ୍ରିମ୍ଲିଂକା (Tremblinka) ଓ ବେଲ୍ଜେକ୍ ଠାରେ ଏହି ମୃତ୍ୟୁ କାରଖାନା ଗ୍ୟାସ ଚାଂବରଗୁଡ଼ିକ ଅବସ୍ଥିତ ଥିଲା । ମୁଁ ଏଥିରୁ ଗୋଟିଏ ଗ୍ୟାସ ଚାଂବର ଦେଖିଥିଲି । ସେଠାରେ ପହଞ୍ଚି ମୋର ମୁଂଡ ଘୂରାଇବାକୁ ଲାଗିଲା ଓ ଦେହ ଝିମ୍ ଝିମ୍ ହେଲା । ମୁଁ ଆଉ ଭିତରକୁ ନ ଯାଇ ସେହିଠାରୁ ଫେରିଯିବାକୁ ମୋ ଦ୍ୱିଭାଷୀ ଓ ଗାଇଡଂକୁ ଅନୁରୋଧ କରିଥିଲି ।

ରୁଷର୍ ଲାଲ୍‌ବାହିନୀ ଏଥି ମଧ୍ୟରେ ପୂର୍ବ ପୋଲାଂଡରେ ପ୍ରବେଶ କରିଥିଲେ । ପୋଲାଂଡ ସହିତ ମସ୍କୋର ଯୋଗାଯୋଗ ଛିନ୍ନ ହୋଇଯାଇଥିଲା । ୧୯୪୧ ମସିହା ଜୁଲାଇ ମାସରେ ଲଂଡନସ୍ଥିତ ପୋଲିସ୍ ନେତା ଶିକୋରସ୍କି (Sikorski) ମସ୍କୋ ଯାଇ ଏକ ବଂଧୁତ୍ୱ ଚୁକ୍ତି ଓ ପାରସ୍ପରିକ ସାହାଯ୍ୟ ଚୁକ୍ତି ସଂପାଦନ କରିଥିଲେ । ଏହି ଚୁକ୍ତିରେ ରୁଷରେ ଏକ ପୋଲିସ୍‌ବାହିନୀ ଗଠନ କରିବା ପାଇଁ ଉଭୟ ଦେଶ ରାଜିହୋଇଥିଲେ । ଜେନେରାଲ୍ ଓ୍ୱାଲଡିସଂକ ଅଧୀନରେ ରୁଷରେ ଏକ ପୋଲିସ୍‌ବାହିନୀ ଗଠିତ ହୋଇଥିଲା । ବ୍ରିଟିଶ୍ ସରକାର ଏହାକୁ ଅସ୍ତ୍ରଶସ୍ତ୍ର ଯୋଗାଇଥିଲେ । ଏହି ପୋଲିସ୍‌ବାହିନୀ ରୁଷିଆ ଛାଡ଼ି ମିତ୍ରପକ୍ଷରେ ଯୋଗ ଦେବା ପାଇଁ ଅଗ୍ରସର ହୋଇଥିଲେ । ପରସିଆଠାରେ ସେମାନଂକୁ ପୁନର୍ଗଠିତ କରାଯାଇଥିଲା । ତାପରେ ଏହି ବାହିନୀ ପୂର୍ବ ୟୁରୋପରେ ବ୍ରିଟିଶ୍‌ବାହିନୀ ସହିତ ଯୋଗଦେଇଥିଲେ । ଏମାନେ ଲିବିୟା ଓ ଇଟାଲୀରେ ଯୁଦ୍ଧ କରିଥିଲେ ଏବଂ କାସିନୋଠାରେ କୃତିତ୍ୱ ପ୍ରଦର୍ଶନ କରିଥିଲେ । ଆଉ ଏକ ପୋଲିସ୍ ସୈନ୍ୟବାହିନୀ ବ୍ରିଟେନ୍‌ରେ ଗଠିତହୋଇଥିଲା । ସେମାନେ ପଶ୍ଚିମ ୟୁରୋପର ରଣାଙ୍ଗନରେ ଯୁଦ୍ଧକରିଥିଲେ । ୧୯୪୪-୪୫ରେ ପ୍ରାୟ ଅଢ଼େଇଲକ୍ଷ ପୋଲିସ୍ ବା ପୋଲାଂଡବାସୀ ପୋଲାଂଡ ବାହାରେ ବ୍ରିଟିଶ୍ ଅଧୀନରେ ମିତ୍ରପକ୍ଷରେ ସଂଗ୍ରାମ କରୁଥିଲେ । ଶିକୋରସ୍କି ୧୯୪୩ ସାଲ୍ ଜୁଲାଇ ମାସରେ ବିମାନ ଦୁର୍ଘଟଣାରେ ମୃତ୍ୟୁମୁଖରେ ପଡଂତି । ଫଳରେ

ଲଂଡନସ୍ଥିତ ନିର୍ବାସିତ ପୋଲିସ୍ ସରକାର ବହୁତ କ୍ଷତିଗ୍ରସ୍ତ ହୁଏ । ଇତିମଧ୍ୟରେ ରୁଷର ଲାଲ୍‌ବାହିନୀ ଯୁଦ୍ଧ ପୂର୍ବରୁ ଥିବା ପୋଲିସ୍ ରୁଷ ସୀମାଂତ ଆଡ଼କୁ ଅଗ୍ରସର ହେଉଥିଲେ । ମିତ୍ରପକ୍ଷ ରୁଷ ପ୍ରସ୍ତାବକୁ ଗ୍ରହଣକରିନଥିଲେ । ସେମାନେ କହିଥିଲେ ଯେ ପୋଲାଂଡ ପୂର୍ବଦିଗର ସୀମା ବା ୧୯୧୯ ମସିହାର କର୍ଜନ ଲାଇନ୍ ଆଡ଼କୁ ଫେରିଯିବ । ଏଥିପାଇଁ ପାଶ୍ଚାତ୍ୟ ଶକ୍ତିମାନେ ପୋଲାଂଡକୁ ଜର୍ମାନୀଠାରୁ ଆଦାୟ କରି କ୍ଷତିପୂରଣ ଦେବେ । ଋଷିଆନ୍‌ମାନେ ଜୁଲାଇ ୨୪ରେ ଲୁବ୍‌ଲିନ୍ ଅଧିକାର କରିଥିଲେ ଏବଂ ସେଠାରେ ଜାତୀୟ ମୁକ୍ତି କମିଟି ଗଢ଼ିଥିଲେ । ଏହି କମିଟି ସମସ୍ତ ପୁନଃଅଧିକୃତ ଅଂଚଳର ଶାସନଭାର ଗ୍ରହଣକରିଥିଲା । ଫେବୃୟାରୀ ମାସରେ କ୍ରିମିଆ ରୟାଲ୍‌ଟାଠାରେ ଅନୁଷ୍ଠିତ ମିତ୍ରପକ୍ଷ ସମ୍ମିଳନୀରେ ବ୍ରିଟିଶ୍ ଓ ଆମେରିକା ସରକାର ନିର୍ବାସିତ ପୋଲିସ୍ ସରକାରଠାରୁ ସାମୟିକ ଭାବେ ସ୍ୱୀକୃତି ପ୍ରତ୍ୟାହାର କରିନେବାକୁ ରାଜିହୋଇଥିଲେ ଏବଂ ଲୁବଲି କମିଟି ପ୍ରଶାସନକୁ ମାନିନେବାକୁ ରାଜିହୋଇଥିଲେ ।

କିନ୍ତୁ ପୋଲିସ୍ ପକ୍ଷ ତାଂକ ପ୍ରଶାସନକୁ ପ୍ରଶସ୍ତ କରି ପୋଲାଂଡ ଏବଂ ପୋଲାଂଡ ବାହାରେ ଥିବା ଗଣତାଂତ୍ରିକ ଶକ୍ତିମାନଂକୁ ସେଥିରେ ଅନ୍ତର୍ଭୁକ୍ତ କରିବାର ସର୍ତ୍ତ ରଖିଥିଲେ । ମୁକ୍ତ ନିର୍ବାଚନ କରିବା ପାଇଁ ଉଭୟ ପକ୍ଷ ରାଜିହୋଇଥିଲେ । ଏହି ସମ୍ମିଳନୀ ସାମାନ୍ୟ ପରିବର୍ତ୍ତନ କରି କର୍ଜନ ଲାଇନ୍‌କୁ ପୋଲିସ୍‌ର ପୂର୍ବସୀମାଂତରୂପେ ସ୍ୱୀକାର କରିଥିଲା । ଏହାଛଡ଼ା ଜର୍ମାନୀଠାରୁ ଉତ୍ତର ଏବଂ ପଶ୍ଚିମ ଦିଗରେ ଥିବା ଅଂଚଳମାନ ଦଖଲ କରିବା ପାଇଁ ପୋଲାଂଡକୁ କ୍ଷମତା ଦିଆଯାଇଥିଲା ।

ନୂତନ ପୋଲିସ୍ ସରକାର ସହିତ ଏହିସବୁ ରାଜିନାମାରେ ଲଂଡନସ୍ଥିତ ନିର୍ବାସିତ ପୋଲିସ୍ ସରକାରର ମତାମତ ନିଆଯାଇଥିଲା । ସେମାନେ ଏହି ରାଜିନାମାକୁ ଗ୍ରହଣକରିନଥିଲେ । ସେମାନେ ଏକ ନୂତନ ଏବଂ ଅଧିକ ପ୍ରତିନିଧିମୂଳକ ସରକାର ଗଠନ ପାଇଁ ବିଭିନ୍ନ ରାଷ୍ଟ୍ରମାନଂକ ସହିତ କଥାବାର୍ତ୍ତା ଚଳାଇଥିଲେ । ମାତ୍ର ଖୋଦ୍ ପୋଲାଂଡରେ ଏହି ଉଦ୍ୟମ ବିଶେଷ ଅଗ୍ରଗତି କରିନଥିଲା । ତେଣେ ଜୁଲାଇ ମାସରେ ମସ୍କୋଠାରେ ଶିକୋରସ୍କିଂକ ସ୍ଥାନରେ ଲଂଡନସ୍ଥିତ ପୋଲିସ୍ ସରକାରରର ପ୍ରଧାନମଂତ୍ରୀ ମିକୋଲାଜସ୍କି ମଧ୍ୟରେ ରାଜିନାମା ଉଦ୍ୟମ ଚାଲିଥିଲା । ମିକୋଲାଜାସ୍କି, ଶିକୋରସ୍କିଂକ ବିମାନ ଦୁର୍ଘଟଣା ମୃତ୍ୟୁ ପରେ ଲଂଡନସ୍ଥିତ ପୋଲିସ୍ ସରକାରର ପ୍ରଧାନମଂତ୍ରୀ ହୋଇଥିଲେ, କିନ୍ତୁ ପରେ ସେଥିରୁ ଇସ୍ତଫା ଦେଇଥିଲେ ।

୧୯୪୪ ମସିହା ଅକ୍ଟୋବର ମାସରେ ଲୁବ୍‌ଲିନ୍ ସରକାରର ପୋଲାଂଡରେ ଏକ ନୂତନ ସରକାର ଗଠନ କରିବା ଦିଗରେ ପଦକ୍ଷେପ ନେଇଥିଲେ । ୱାରଶ୍‌ଠାରେ ମିକୋଲୋଜସ୍କି ଉପପ୍ରଧାନମଂତ୍ରୀ ଥାଇ ଏକ ସରକାର ଗଠନ କରାଯାଇଥିଲା । ଏହାକୁ ଆମେରିକା ଓ ବ୍ରିଟିଶ୍ ସରକାର ଜୁଲାଇ ୫ରେ ସ୍ୱୀକୃତି ଦେଇଥିଲେ । ମିକୋଲାଜସ୍କିଂକ କୃଷକ ପାର୍ଟି ଶୀଘ୍ର କ୍ଷମତାଚ୍ୟୁତ ହୋଇଥିଲା । ଏହାପରେ ପଟସ୍‌ଡ୍ୟାମ ସମ୍ମିଳନୀରେ ୧୯୪୫ରେ ସ୍ଥିରହୋଇଥିଲା ଯେ ଜର୍ମାନୀର କେତେକ ଅଂଶ Orderneisse ନଦୀ

ଏବଂ ଯୁଦ୍ଧ ପୂର୍ବବର୍ତ୍ତୀ ପୋଲିସ୍ ସୀମାଂତ ମଧ୍ୟରେ ଥିବା ଅଂଚଳ ପୋଲାଂଡ ଶାସନରେ ରହିବ ଯଦି ଏହା ଜର୍ମାନୀ ଶାଂତି ପ୍ରସ୍ତାବରେ ଗୃହୀତ ହୁଏ ।

ପୋଲାଂଡର କୃଷକମାନଂକର ସଂଖ୍ୟା ମହାଯୁଦ୍ଧ ପୂର୍ବରୁ ସମଗ୍ର ପୋଲିସ୍ ଜନସଂଖ୍ୟାର ଦୁଇ-ତୃତୀୟାଂଶ ଥିଲା, ତେଣୁ ଏହାକୁ କୃଷିପ୍ରଧାନ ଦେଶ କୁହାଯାଉଥିଲା । ୧୯୪୬ ମସିହାରେ ଜମିଜମା ସଂକ୍ରାତ ଆଇନ୍ ପାଶ୍ ହୋଇଥିଲା । ଏଥିରେ କୃଷକମାଂନକ ସ୍ୱାର୍ଥ ରକ୍ଷା କରାଯାଇ ପାରିଥିଲା । ମହାଯୁଦ୍ଧ ପରେ ପୋଲାଂଡରେ ବହୁ ଶିଳ୍ପ କାରଖାନା ପ୍ରତିଷ୍ଠିତ ହୋଇଛି ।

## ଜୁମାନଂକର ଅବଦାନ :

ଜୁ ଜାତିକୁ ପୃଥିବୀରୁ ମୂଳପୋଛ କରିବା ପାଇଁ ଫାସିବାଦର ଅମାନୁଷିକ ସଂହାରଲୀଳା ମଣିଷର ଇତିହାସକୁ କଳଂକିତ କରିଛି । ଜୁମାନଂକ ମଧ୍ୟରେ ବହୁ ମନୀଷୀ ଅଛଂତି ଯେଉଁମାନଂକର ଅବଦାନ ସଭ୍ୟତାକୁ ଋଦ୍ଧିମଂତ ଓ ଗୌରବମୟ କରିଛି । ବୈଜ୍ଞାନିକ କମ୍ୟୁନିଜିମ୍‌ର ପ୍ରବର୍ତ୍ତକ କାର୍ଲମାର୍କସ୍ ଅଷ୍ଟ୍ରିଆର ଏକ ଜୁ ପରିବାରରେ ଜାତ । ମନୋବିଜ୍ଞାନ କ୍ଷେତ୍ରରେ ସିଗ୍‌ମଂଡ ଫ୍ରୟେଡଂକର ଅବଦାନ ଚିରସ୍ମରଣୀୟ ରହିବ । ସେହିପରି ବିଶ୍ୱବିଶ୍ରୁତ ବୈଜ୍ଞାନିକ ଆଇନ୍‌ଷ୍ଟାଇନଂକର ଜନ୍ମ ଜୁ ପରିବାରରେ ହୋଇଥିଲା । ତାଛଡ଼ା ବିଭିନ୍ନ ଦେଶରେ ଜୁମାନେ ବହୁକ୍ଷେତ୍ରରେ ଶୀର୍ଷସ୍ଥାନ ଅଧିକାର କରିଛଂତି, ଯଥା ଜର୍ମାନୀର ଏଲେରିହାବ୍, ଫ୍ରାନ୍‌ସର ବର୍ଗସନ୍, ଇଂଲଡର ତୁଂଗ ରାଜନୀତିଜ୍ଞ ବେଂଜାମିନ୍ ଡିଜ୍‌ରେଲି ପ୍ରଭୃତିଂକ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ଏହାଛଡ଼ା ଇଂଲଡର କୃତୀ ଜୁମାନଂକ ମଧ୍ୟରେ ଫାଷ୍ଟଲର୍ଡ ରିଡିଂଗ୍, ଲର୍ଡ ସାମୁଏଲ ଏବଂ ଏଡୱାର୍ଡ ମଂଟେଗ୍ୟୁ ପ୍ରଭୃତି ଅଗ୍ରଗଣ୍ୟ ।

## ଫାସିବାଦ ବିରୋଧରେ ମୋର ଲେଖନୀ :

ଫାସିବାଦ ବିରୋଧରେ ମୁଁ ୧୯୩୬ ମସିହାରୁ ଅନବରତ ସଂଗ୍ରାମ କରିଆସିଛି । ସେ ସମୟର 'ସହକାର' ମାସିକ ପତ୍ରିକାର ପୃଷ୍ଠା ଲେଉଟାଇଲେ ମୋର ଅଜସ୍ର କବିତା ଓ ପ୍ରବଂଧ ମୋ କଥାର ସାକ୍ଷ୍ୟ ଦେବ । ଅନ୍ୟାନ୍ୟ ବହୁ ପତ୍ରପତ୍ରିକାରେ ମଧ୍ୟ ମୋ ଲେଖା ଫାସିବାଦ ବିରୋଧରେ ମୃତ୍ୟୁ ପରବାନା ଜାରିକରିଛି । ମୋ ଲିଖିତ ସେସବୁ କବିତା ମୋର କବିତା ସଂକଳନ ଅଭିଯାନ ଓ ପାଂଡୁଲିପି ପୁସ୍ତକରେ (୧୯୩୬-୩୮) ସ୍ଥାନ ପାଇଛି । ମୋ କବିତା 'ବର୍ଲିନ୍', 'ହିଟଲାର୍' 'ହିଟଲାରର ଦୁଃସ୍ୱପ୍ନ' 'ସ୍ପେନ୍' ପ୍ରଭୃତି ଦ୍ରଷ୍ଟବ୍ୟ ।

ମୁଁ ଏସବୁ କବିତା ଲେଖିବାବେଳେ ଦ୍ୱିତୀୟ ମହାଯୁଦ୍ଧ ଆରଂଭ ହେବାକୁ ଆହୁରି ପାଂଚ ବର୍ଷ ବାକି ଥିଲା । ଏହି ପରିପ୍ରେକ୍ଷୀରେ ମୋ ଲେଖାଗୁଡ଼ିକ ତାତ୍‌ପର୍ଯପୂର୍ଣ । ମୋ କବିତା 'ସ୍ପେନ୍' ୧୯୩୪ ମସିହାରେ 'ସହକାର' ପତ୍ରିକାରେ ପ୍ରକାଶପାଇଥିଲା । ମୋର ବର୍ଲିନ୍ କବିତାର କେତେକ ଅଂଶ ଅନ୍ୟତ୍ର ଉଦ୍ଧାର କରାଯାଇଛି । ତଳେ 'ସ୍ପେନ୍' ଓ 'ହିଟଲାର୍' ଏବଂ ଅନ୍ୟ କେତେ କବିତାର କେତୋଟି ପଦ୍‌କ୍ତି ଦିଆଗଲା ।

**ହିଟଲାର୍ :**

ରାହିନ୍ କୂଳର ପାଇନ୍ ବନରେ ଶୁଭେ ଝଂଜାର ହାସ
ଗର୍ଭିଣୀ ରାତି କୂଳେ କୂଳେ ଆଜି ନଗ୍ନ ପ୍ରେତର ରାସ ।
ଲକ୍ଷ ବେକାର କପାଳରେ ଆଜି ସ୍ୱସ୍ତିକ ଟୀକା ଲେଖି
ନାଜିର ନିଶାଣ ନିଜ କଂକାଳ-ସ୍ତଂଭରେ ରଖେ ଟେକି ।
ଇହୁଦୀ ରକ୍ତେ ରାହିନ୍‌ର ଜଳ ରାତି ପରି ଦିଶେ କଳା
ସାମ୍ୟବାଦୀର ସୌମ୍ୟ ଶୋଣିତେ ଜର୍ମାନ୍ ମାଟି ଢଳା ।
ଲକ୍ଷ୍ୟଦୂର ଚର୍ମ ଉପରେ ଜୋତାର ଗୋଇଠି ରଖି
ମଣିଷର ମୁଖା ପିଂଧି ପିଶାଚ ଡେଣା ପିଟେ ଯଥା ପକ୍ଷୀ ।
ଝଡ଼ର ବାହିନୀ ପଥେ ପଥେ ଆଜି ରଚଇ ତା ପଟୁଆର ।*
ମଣିଷର ରୂପେ ଆସିଛି ଦୈତ୍ୟ ଧରାତଳେ ହିଟଲାର ।
ବାମ ପାଦ ତାର ଜର୍ମାନୀ ବୁକେ, ପୁଣି ତା ଡାହାଣ ଖୋଜ
ଅଷ୍ଟ୍ରିଆର ଶ୍ୟାମଳ ଛାତିରେ ରଚେ ଧ୍ୱଂସର ଭୋଜ ।
ଆର୍ଯ ଜାତିର ସଭ୍ୟତା ନାମ ବାରେ ବାରେ ଦେଇ ଦ୍ୱାହି
ମଣିଷକୁ ଆଜି ମୁର୍ଦ୍ଦାର କରେ ଫାସିଷ୍ଟ ଲହୁ ବାହି ।
ଦୁନିଆ ତୁ ହୁସିଆର,
କଳାକୁର୍ତାର ତଳେ ତଳେ ଆଜି ଜିଭ ଚାଟେ ଜାନୁଆର ।
ଦୁନିଆର ଯେତେ ଧନିକ, ବଣିକ ପୁଂଜିପତିର ଚର
ଯେତେ ଟାଉଟର ଦଲାଲ୍ ସବୁତ ବାଂଧିଲେଣିରେ ଦଳ ।
ଜାତିର ନାଁରେ, ଦେଶର ନାଆଁରେ ଯୁଦ୍ଧର ନିଆଁ ଜଳେ
ଯେତେ ଚୋର ଆଉ ତସ୍କର ହସେ ବୀରର ପୋଷାକ ତଳେ ।
ଚାଷୀ ଓ ମୂଲିଆ ଯେ ଦେଶ ଗଢ଼ିଲେ ଭୂମଧ ପାରାବାରେ
ସେହି ସ୍ପେନର ଉର୍ବର ଛାତି ଫାଟେ ଆଜି କମାଣରେ ।
ଫ୍ରାଂକୋର ସେନା ସହ ଆଜି କର ମର୍ଦ୍ଦନ କରେ ନାଜି
ଦୁନିଆକୁ ଭାଗ ବାଂଟି ନେବାର ଫଂଦି ଏ କାରସାଜି ।
ଶାସନ ନାମରେ ଗୁଂଡାମି ଆଜି ଧରାରେ ଟେକଇ ବେକ
ଶାଂତିର ବେଶେ ଶୋଷଣବାଦର ଆଜି କିବା ଅଭିଷେକ ।
ସାମ୍ୟର ବାନା ଉଡ଼ାଇଲେ ଯେହୁ ଧରାବୁକେ ଏତେ ଦିନ
ଯେ କହିଲେ ଆଗ "ନ ରହିବେ ଏଥି ଦୁଃସ୍ଥ, ଗରିବ ଦୀନ"

---

* ଝଡ଼ର ବାହିନୀ ଅର୍ଥ : Storm Troopers — ଏମାନେ କଳା କୁର୍ତ୍ତା ପିନ୍ଧିଥାନ୍ତି, ସ୍ୱସ୍ତିକ ଚିହ୍ନ ଲଗାଇ ଥାଆନ୍ତି ।

ମଣିଷ ମୁହଁରେ ଦେବା ପାଇଁ ରୁଟି ଯେହୁ ହେଲେ ଆଗୁଆନ
ବଂଧୁକ ଆଉ ବେଓନେଟ୍ ରାଜି ହରିଲା ତାହାରି ପ୍ରାଣ ।
ରାଇନାର କୂଳେ ହିଟଲାର ଆଜି ଧ୍ୱଂସ ସପନ ଦେଖେ
ମସ୍କୋର ଶିରେ ତାହାରି ଡଗର କଳଂକ କାଳି ଲେଖେ ।
ଯେଉଁଠି କରିଛି ଚାଷୀ ମଜୁରିଆ ରାଷ୍ଟ୍ରକୁ କରଗତ
ସେଇଠି ଚାଲିଛି ଶୋଷଣଜୀବୀର ଅଂଧାରି କସରତ ।
ସାମ୍ୟର ବାଣୀ ଇହୁଦୀ ଦେଇଛି ଦୁନିଆକୁ ଯେଣୁ ଦାନ
ଇହୁଦୀ ଲଡ଼କା ମାର୍କସ ଗାଇଛି ସାମ୍ୟର ଜୟଗାନ,
ଧରାକୁ ପହିଲେ ଉପହାର ସେହୁ ଦେଇଛି ମୁକ୍ତି ଯେଣୁ
ତାହାରି ଜାତିର ସରା ଲିଭିବ ଇତିହାସ ବୁକୁ ତେଣୁ ।
ରାଜପଥେ ତେଣୁ ସେ ଜାତି ଉପରେ ପକାଇବ ଛେପ ନାଜି
ଇହୁଦୀ ନାରୀର ଇଜ୍ଜତ ନେଲେ ନୀରବ ରହିବ କାଜି ।
ସଭ୍ୟତା ଏହା ଆର୍ଯ୍ୟ ଜାତିର ଅବା ଏହା ସୟତାନି
ଏହି ସଭ୍ୟତା, କରେ ଯେ ପ୍ରଚାର ସୁସଭ୍ୟ ଜର୍ମାନୀ,
ଇହୁଦୀର ମୁର୍ଦାର
ସଭ୍ୟ ନାଜିର ସଂଗୀନ୍ ମୁନେ ଆଜି ଦେଖ ନାରଖାର ।
କୃଷ୍ଣନିଶିର କୂଳେ ଜାଗେ ଯେବେ ବିଷାକ୍ତ ଅଣଚାଶ
ନାଜିର ଦେବତା ଶକୁନିର ପରି ଛାଡ଼ଇ ଅଟ୍ଟହାସ
ସ୍ୱପ୍ନ ଦେଖେ ସେ ଇହୁଦୀର ଯୁବା ରାତିର ଗୁପ୍ତପଥେ
ଜର୍ମାନ୍ ନାରୀ ସହ ସହବାସ କରଇ କି ଅବା ସତେ ?
ହିଂସ୍ର ରସନା ପଶୁ ପରି ସେହୁ ବାରବାର ଖାଲି ଚାଟେ
ଇହୁଦୀ ରକ୍ତ ଢେଉ ଲୋଡ଼ା ଆଜି ଶାଂତିର ଘାଟେ ଘାଟେ ।
ହିଟଲାର ଭାବେ ଆର୍ଯ୍ୟ ଶୋଣିତ ଇହୁଦୀ ଦୂଷିତ କରେ
ତେଣୁ ସେ ଗର୍ଜେ – ଜର୍ମାନ୍ ନାରି ! ଫେରିଯାଆ ପୁଣି ଘରେ,
କଳ ପରି ଖାଲି ଶିଶୁ କର ଦାନ ଗୃହର କାରାରେ ଥାଇ
ରାଇଫଲ ଆଜି ଧରିବାକୁ ଲୋଡ଼ା ଅସଂଖ୍ୟ ହାତ ଭାଇ ।
କମାଣର ଲାଗି ମଣିଷ ଯୋଗାଅ ଖାଲି ଜର୍ମାନ୍ ନାରୀ
ବିପ୍ଲବମୁଖୀ ନିକମାଂକ ପାଇଁ ଚାକିରି କର ହେ ଖାଲି ।
ତମେ ସଢ଼ି ମର ଘର କଣେ ପଛେ ନିକମା ପାଆଂତୁ କାମ
ନୋହିଲେ ନିମିଷେ ବିଦ୍ରୋହ ନିଆଁ ଭାଗ୍ୟକୁ ହେବ ବାମ ।
ଏହି ଯେ ହୁକୁମ ଏହି ହୁଂକାର ଏହି ସିଂହର ରଡ଼ି
ବର୍ଲିନ୍ ବୁକୁ ଥରାଏ ଯେସନ ବର୍ଷାର ଘଡ଼ଘଡ଼ି ।

ମୁସୋଲିନୀ ତେଣେ ପାଳି ଧରେ ଏହି ଧ୍ୱଂସର କୀର୍ତନେ
ଫାସିଷ୍ଟ ନାଜି ହାତ ଧରାଧରି ପୋଷଣର ନର୍ତନେ ।
ସର୍ବହରାର ଯେତେ ଅଧିକାର ଯେତେ ନ୍ୟାୟ ଦାବି ତାର
ସବୁ ଦଳି ପଦେ ଶୋଷକର ଦଳ ରଚେ ଆଜି ଅଭିସାର ।
କଅଁଳ କଥାରେ କାଏମ୍ କରେ ସେ ତାହାର ଶୋଷଣ ନୀତି
ନୂତନ ତଥ୍ୟ ଆକାର ଧରଇ ତାହାର ଗୋପନ ରୀତି ।
ଭାରତର ମହାସାଗର ମଂଥି ସେ ରୋଳର ପ୍ରତିଧ୍ୱନି
ଗ୍ରାମ ଓ ନଗରେ ଲଭେ ପରକାଶ ନାନା ରୂପ ଭେକ ଘେନି ।
ଦେଶର ଶୋଷକ ତସ୍କର ସାଥେ କରାହୁଏ ସହଯୋଗ
ଦେଶୀ ଓ ବିଦେଶୀ ବଣିକ ମିଳି ଏ ଦେଶକୁ କରେ ଯେ ଭୋଗ ।
ଆମର ଘାତକ ସାଥେ ସେ ସାଲିସ ନିତି ନିତି ଖାଲି କରେ
ଶୋଷଣ କଳର ଚାଳକ ଆସନ ନିଜ ଛାଏଁ ସେତ ବରେ ।
ଚୁକ୍ତିର ମୂଳେ ମୁକ୍ତିକୁ ଆମ ଦେବାଳିଆ ସେ ଯେ କରେ
ଲଢ଼େଇ ଆଡ଼ମ୍ବର ଗଣ ବିପ୍ଳବେ ବଜାରେ ନିଲାମ କରେ
ସର୍ବହରା ତୁ ଆଜି
ଏହି ସୟତାନୀ କୌଶଳ ଚୂର ମାୟାଜାଲ ପଡୁ ଭାଜି ।

ଦ୍ୱିତୀୟ ମହାଯୁଦ୍ଧ ଲାଗିବାର ପାଞ୍ଚବର୍ଷ ଆଗରୁ ମୁଁ ଫାସିବାଦ ସଂବଂଧରେ ଯାହା ଯାହା ଲେଖିଥିଲି ତାହା ଅକ୍ଷରେ ଅକ୍ଷରେ ସତ୍ୟ ପ୍ରମାଣିତହେଲା । ହିଟଲର ଓ ନାଜିମାନେ ଚାହିଁଥିଲେ ନାରୀମାନେ ଘର କଣକୁ ଫେରିଯାଆଂତୁ ଏବଂ ଖାଲି ପିଲା ଜନ୍ମ କରଂତୁ । ବହୁସଂତାନର ଜନନୀମାନଂକୁ ଜାତୀୟ ପୁରସ୍କାର ଦିଆଯାଉଥିଲା । ନାଜିମାନେ ଚାହୁଁଥିଲେ କମାଣ ପାଇଁ ଖାଦ୍ୟ ଦରକାର, ସେ ଖାଦ୍ୟ ଯୋଗାଇବେ ନାରୀମାନେ । ନାରୀମାନେ ଘରକଣରେ ଗୃହିଣୀ ହୋଇ ରହିଲେ ସେମାନଂକ ଖାଲିପଡ଼ିଥିବା ସ୍ଥାନରେ ବେକାରମାନଂକୁ ଚାକିରି ଦିଆଯାଇପାରିବ । ବେକାରମାନଂକର ଥଇଥାନ ହେଲେ ଦେଶରୁ "ଚାକିରି ଦିଅ" ଆଦୋଂଳନ ମାଂଦାପଡ଼ିବ ଏବଂ କ୍ରମେ ତରୁଣଂକ ବିକ୍ଷୋଭ ପ୍ରଶମିତ ହେବ ।

ଗ୍ୟାସ ଚାଂବର ପ୍ରଭୃତିରେ ମାରିଦିଆଯାଇଥିବା ଲକ୍ଷ ଲକ୍ଷ ଇହୁଦୀଂକ ଚମଡ଼ାରେ ଲେଂପ ଶେଡ୍ ପ୍ରସ୍ତୁତହୋଇ ବଜାରରେ ବିକ୍ରିହେଉଥିଲା । ଏକ ଫିଲ୍ମରେ ଦେଖିଥିଲି ହିଟ୍‌ଲାର୍‌ର ଟେବୁଲ ଉପରେ ରଖାଯାଇଥିବା ଲେଂପ୍‌ଶେଡ୍‌ଟି ଇହୁଦୀ ଚମଡ଼ାରେ ତିଆରି ହୋଇଥିଲା । ଏହି ଫିଲ୍ମଟି ୟୁରୋପରେ ପ୍ରସ୍ତୁତ ହୋଇଥିଲା ।

ମୁଁ ୧୯୩୪ ମସିହାରେ ସ୍ପେନ୍ ଉପରେ 'ସହକାର' ପତ୍ରିକାରେ 'ସ୍ପେନ' ଶୀର୍ଷକ ଯେଉଁ କବିତାଟି ଲେଖିଥିଲି ସେଥିରେ ଫାସିବାଦ ବିଷବୃକ୍ଷ କିପରି ଶାଖା ପ୍ରଶାଖା ମେଲୁଛି ତାହା ଦେଖାଇଥିଲି । ସେ କବିତାର ପ୍ରଥମ ପଦ୍‌କ୍ତିଟି ତଳେ ଦେଲି ।

* ସହକାର' ଆଷାଢ଼ – ୧୩୪୫, ୧୯୩୮ ସାଲ୍‌ରେ ପ୍ରକାଶିତ ।

**ସ୍ପେନ୍ :**

ସାରା ଧରଣୀର ଇତିହାସ ଶିରେ ଜାଗିଛି ବିରାଟ ଦେଶ
ଘୋଷଣା ତାହାର ସୂଚନା ଦେଲାଣି ଶୋଷଣବାଦର ଶେଷ ॥
ଆକାଶେ ତାହାର ହୁକାଂରି ଆଜି ଝଡ଼ର ଶିଂଗା ବାଜେ
ତାହାରି ମାଟିରେ ବିପ୍ଳବୀମନ ଭୈରବ ରସେ ସାଜେ ।
କୂଳେ କୂଳେ ତାର ଶୁଭୁଛି ତ ଆଜି ନବଜୀବନର ଗୀତା
ଅତୀତର ଶବ ଜଳିଯାଏ ତହିଁ, ହସେ ଶମଶାନ ଚିତା ।
ବିପକ୍ଷେ ତାର ହୋଇଅଛି ଛିଡ଼ା ବିଶ୍ୱର ପ୍ରତିକ୍ରିୟା
ପୁଂଜିବାଦର ଭୈରବ ରୂପ, ନିଷ୍ଠୁର ଲୋଳ ଜିହ୍ୱା ।
ଲକ୍ଷ ଯୁଗର ଲକ୍ଷ ଶୋଷଣ, କଷଣ, ପେଷଣ, ପୀଡ଼ା
ଅସ୍ଥିରୁ ତାର ଶୋଷିଛି ତ ସାର, କରି ସେ ରୁଦ୍ର କ୍ରୀଡ଼ା ।
ଚାରିଆଡ଼େ ତେଣୁ ଦୂର୍ବା ସମାନ କଂକାଳ ଟେକେ ମଥା
କଠିନ ସାହାରା ଛାତିରେ କହେ ତ ଜୀବନର ଶିଖା କଥା ।
ମରଣ-ସାଗର-ତୀରୁ ଜୀବନର ସଂବାଦ ଆଣେ ସେ ତ
ନିଖିଳ ଧରାର ତର୍ପଣ ମାଗେ ବୁଭୁକ୍ଷୁ ତାର ପ୍ରେତ
ଧରଣୀର ଅଛି ଯେତେ ଲହୁ ଶୋଷା ପଚା ମାଉଁସର ପୋକ
ମଣିଷ ଚମଡ଼ା ଛିଂଡାଇ ଯେହୁ ଖାଂତି ଯଥା ଜୋକ ।
ସେହି ହିଟଲାର ମୁସୋଲିନୀ ଆଉ ଫ୍ରାଙ୍କୋ ମୋଲାର ଦଳ
ମୁକ୍ତିବାହିନୀ ଶିରେ ତ ଚଳାଏ ଲକ୍ଷ କମାଣ କଳ ॥

x x x x

('ସହକାର' କଟକ, ୧୯୩୪ ମସିହାରେ ପ୍ରକାଶିତ 'ଅଭିଯାନ' ପୁସ୍ତକ ୧୯୩୮ରେ ସ୍ଥାନିତ ।)

ଏହି ଫାସିବାଦର ରଣହୁଂକାର ପ୍ରଥମେ ଆମେ ସ୍ପେନର ଗୃହଯୁଦ୍ଧରେ ଶୁଣିବାକୁ ପାଉ । ଏହି ଯୁଦ୍ଧ ଲାଗିଥିଲା ସ୍ପେନର ମୁକ୍ତିବାହିନୀ ଓ ଫାସିବାଦୀ ଫ୍ରାଙ୍କୋର ସୈନ୍ୟବାହିନୀ ମଧ୍ୟରେ । ପଂଡିତ ନେହେରୁ ମୁକ୍ତିବାହିନୀର ସାହାଯ କଳ୍ପେ ଭାରତରୁ ଖାଦ୍ୟଦ୍ରବ୍ୟ, ଔଷଧପତ୍ର ଏବଂ ତିନିଜଣ ଡାକ୍ତରଂକୁ ୧୯୩୪ ମସିହାରେ ଏକ ସଦିଚ୍ଛା ମିଶନରେ ସ୍ପେନ୍ ପଠାଇଥିଲେ । ବିଶ୍ୱର ବହୁ ଖ୍ୟାତନାମା ଲେଖକ ସ୍ପେନ୍ ରଣାଂଗନରେ ମୁକ୍ତିବାହିନୀ ସପକ୍ଷରେ ଲଢ଼ି ପ୍ରାଣବଳି ଦେଇଥିଲେ । ସେମାନେ ହେଲେ 'Illusion and Reality'ର ପ୍ରଣେତା ଖ୍ରୀଷ୍ଟୋଫର କଡ୍‌ୱେଲ, କବି ଓ ନାଟ୍ୟକାର କାଫକା ଏବଂ ରାଲଫ୍ ଫକ୍ସ ପ୍ରମୁଖ । ସ୍ପେନ୍ ମୁକ୍ତିବାହିନୀର ନେତ୍ରୀ ଥିଲେ ଲାପାଶୋନାରା । ସେମାନଂକର ଧ୍ୱନି ଥିଲା "No Passaron" ଅର୍ଥାତ୍ They shall not pass । ସ୍ପେନ୍‌ର ଗୃହଯୁଦ୍ଧ ସାରା ବିଶ୍ୱର ପ୍ରଗତି ଓ ପ୍ରତିକ୍ରିୟା ମଧ୍ୟରେ ଏକ ଆପୋଷହୀନ

ସଂଗ୍ରାମ ଥିଲା । ଏହିଠାରୁ ଫାସିବାଦ ଜନ୍ମଲାଭକରି ଇଉରୋପର ଇଟାଲୀ ଓ ଜର୍ମାନୀରେ ମୁସୋଲିନୀ ଓ ହିଟଲାର୍ ନେତୃତ୍ୱରେ ପ୍ରସାର ଲାଭ କରିଥିଲା । ମୁଁ ଏହି ସମୟରେ ବହୁ ପ୍ରବଂଧ ଓ କବିତା ଲେଖି ଫାସିଜିମ୍‌ର କରାଳ ରୂପ ଦେଖାଇଦେଇଥିଲି । ମୋର "ଜୀବାଣୁ" ଓ ଅନ୍ୟ କେତେକ ପ୍ରବଂଧରେ ହିଟଲାରର ରକ୍ଷିତା ୧୧ ଜଣ ତରୁଣୀଂକର (ଇଭା ବ୍ରାଉନ୍ ସମେତ) ଫଟୋଚିତ୍ର ଏହି ସହକାର ପତ୍ରିକାରେ ପ୍ରକାଶ କରିଥିଲି । ଏସବୁ ଲେଖା ଓଡ଼ିଶାର ପାଠକପାଠିକାମାନେ ଭୁଲିଯାଇଥାଇପାରଂତି, କିନ୍ତୁ ମୁଁ ଭୁଲିନାହିଁ ।

**କ୍ରାକୋରେ ଚାରିଦିନ :**

ମୁଁ ୱାରଶରୁ ଚାରିଦିନ ସକାସେ କ୍ରାକୋ ଯାଇଥିଲି । କ୍ରାକୋ ପୋଲାଂଡର ଦ୍ୱିତୀୟ ବୃହତ୍ତମ ନଗରୀ । ଏଠାରେ ଥିବା କ୍ୟାଥେଡ୍ରାଲ୍‌ରେ ପୂର୍ବେ ରାଜାମାନଂକର ଅଭିଷେକ ହେଉଥିଲା । ଏହା ପ୍ରଥମେ ପୋଲାଂଡର ରାଜଧାନୀ ଥିଲା । ମଝିରେ ମଝିରେ ବହୁଥର ଅଷ୍ଟ୍ରିଆନ୍‌ମାନଂକଦ୍ୱାରା ଅଧିକୃତ ହୋଇ ସେମାନଂକ ରାଜ୍ୟର ଅଂତର୍ଗତ ହୋଇଥିଲା, ମାତ୍ର ଶେଷରେ ଏହା ପୋଲାଂଡର ଅନ୍ତର୍ଭୁକ୍ତ ହେଲା । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଜର୍ମାନୀର ସୈନ୍ୟବାହିନୀ ୧୯୩୯ ମସିହା ସେପ୍‌ଟେଂବରରେ ପୋଲାଂଡ ଆକ୍ରମଣ କରଂତି । ସେପ୍‌ଟେଂବର ୬ ତାରିଖରେ ସେମାନେ କ୍ରାକୋ ଅଧିକାର କରଂତି । ଏହା ପରେ ପୋଲାଂଡକୁ ଦୁଇଭାଗ କରି ରୁଷ୍ ଓ ଜର୍ମାନୀ ଭାଗବାଂଟି ଏହାକୁ ନିଅଂତି । କ୍ରାକୋ ଜର୍ମାନ ଭାଗରେ ପଡ଼େ । ଏହାପରେ ୧୯୪୫ ମସିହା ଜାନୁଆରୀରେ କ୍ରାକୋ ରୁଷ୍‌ର ପ୍ରଥମ ୟୁକ୍ରେନିଆନ୍ ଫ୍ରଂଟର ସେନାଧକ୍ଷ କୋନିଭଂକଦ୍ୱାରା ପୁନଃ ଅଧିକୃତ ହୁଏ ଏବଂ ପୋଲାଂଡରେ ସାମିଲ୍ ହୁଏ ।

କ୍ରାକୋର ମାର୍କେଟ ସ୍କୋୟାର ଓ କ୍ଲକ୍‌ହଲ୍ ସମଗ୍ର ଇଉରୋପରେ ଅତୁଳନୀୟ । ଏହା ପ୍ରକୃତରେ ଅତୀବ ସୁଂଦର । କ୍ରାକୋର ପ୍ରଧାନ ଦର୍ଶନୀୟ ସ୍ଥାନଟି ହେଲା Castle ବା ପ୍ରାଚୀନ ରାଜପ୍ରାସାଦ । ଏହାର ଭିତ୍ତିଚିତ୍ର ଏବଂ ଛାତର ମଂଡଣୀରେ ସୁନାପାଣି ବ୍ୟବହାର କରାଯାଇଛି । ଏହା ଅତ୍ୟଂତ ଶୋଭନୀୟ ।

**କ୍ରାକୋରେ ଲେଖକମାନଂକ ଗହଣରେ :**

କ୍ରାକୋ ନଗରୀର ଲେଖକସଂଘ ମୋତେ ମଧାହ୍ନଭୋଜନକୁ ନିମଂତ୍ରଣ କରିଥିଲେ । ସେଠାରେ ବହୁ ଲେଖକ, ଲେଖିକା, ବୁଦ୍ଧିଜୀବୀ ଓ କେତେକ ସାଂବାଦିକ ଓ ଶିଳ୍ପୀଂକ ସଂଗେ ମୋର ପରିଚୟ ହୋଇଥିଲା । ମୁଁ ସେମାନଂକୁ ଭାରତର ପ୍ରାଚୀନ ଚିତ୍ରକଳା ଓ ଭାସ୍କର୍ଯ ଏବଂ ଆଧୁନିକ ସାହିତ୍ୟ ସଂବଂଧରେ ପ୍ରାୟ ୪୫ ମିନିଟ୍ ଇଂରାଜୀରେ କହିଥିଲି । ମୋ ଭାଷଣକୁ ମୋର ଦ୍ୱିଭାଷୀ ହେନେରୀ ପୋଲିସ୍ ଭାଷାରେ ଅନୁବାଦ କରି ଶୁଣାଇଥିଲେ ।

କ୍ରାକୋର Czartoryski ମିଉଜିୟମ୍‌ରେ ବହୁ ମୂଲ୍ୟବାନ୍ ସାମଗ୍ରୀ ସଂରକ୍ଷିତ ରହିଛି । ସେଥି ମଧରେ ମଧ-ଯୁଗୀୟ ଇଉରୋପର ବହୁ ଲଳିତକଳା ଓ ଭାସ୍କର୍ଯ ବିଭିନ୍ନ

ଦେଶରୁ ସଂଗୃହୀତ ହୋଇ ରଖାଯାଇଛି । କ୍ରାକୋର ଚିତ୍ରଶାଳା ବା ଆର୍ଟ ଗ୍ୟାଲେରୀରେ ପ୍ରସିଦ୍ଧ ଚିତ୍ରଶିଳ୍ପୀମାନଂକର ବହୁ ଅନବଦ୍ୟ ଚିତ୍ର ଶୋଭାପାଉଛି । ଏସବୁ ମୁଁ ଦେଖିଥିଲି ।

**ୱାରଶରେ ଲେଖକମାନଂକ ଅଭ୍ୟର୍ଥନା :**

ପୋଲାଂଡର ଲେଖକ ସଂଘ ୱାରଶରେ ମୋତେ ଏକ ମଧ୍ୟାହ୍ନଭୋଜନରେ ଅଭ୍ୟର୍ଥନା ଜଣାଇଥିଲେ । ଏଥିରେ ବହୁ ଲେଖକ, ଲେଖିକା, ସଂଘର ସାଂବାଦିକ ଓ ବୁଦ୍ଧିଜୀବୀ ଯୋଗଦେଇଥିଲେ । ଲେଖକ ସଂଘର ସଭାପତି ଏହି ଅଭ୍ୟର୍ଥନା ସଭାରେ ପୌରୋହିତ୍ୟ କରିଥିଲେ । ମୁଁ ଏହି ସଭାରେ ପୋଲାଂଡ କିପରି ନାଜି ବର୍ବରତାର ଶିକାର ହୋଇଥିଲା ତାହା ସ୍ମରଣକରାଇଦେଇ ପୋଲାଂଡବାସୀଂକ ସ୍ୱଦେଶ ପ୍ରୀତିର ଭୂୟସୀ ପ୍ରଶଂସା କରିଥିଲି ।

ମୁଁ କହିଥିଲି – ଏଠାରେ ଜୁମାନେ ଲକ୍ଷ ଲକ୍ଷ ସଂଖ୍ୟାରେ ଗ୍ୟାସ ଚାମ୍ବର ପ୍ରଭୃତିରେ ପ୍ରାଣବଳି ଦେଇଥିଲେ । ଏହା ମଣିଷର ଇତିହାସକୁ ଚିରଦିନ କଳଂକିତ କରିଛି । ପୋଲାଂଡ ଓ ଭାରତ ମଧ୍ୟରେ ସାଂସ୍କୃତିକ ସଂପର୍କ ଅଧିକ ଦୃଢ଼ ହେଉ ଏବଂ ଏହି ଦୁଇ ଦେଶର ଲେଖକମାନଂକ ମଧ୍ୟରେ ସଦ୍‌ଭାବନା ଓ ସହଯୋଗ ବୃଦ୍ଧି ପାଉ ବୋଲି ମୁଁ ମୋ ଭାଷଣରେ କହିଥିଲି । ସଭାପତି ତାଂକ ଭାଷଣରେ ମୋର ସାହିତ୍ୟକୃତି ସଂବଂଧରେ ସୂଚନା ଦେଇଥିଲେ । ସେ କହିଥିଲେ ଯେ ଭାରତ ଏକ ଶାଂତିପ୍ରିୟ ଦେଶ । ବିଶ୍ୱ ଶାଂତି ପ୍ରତିଷ୍ଠା ଦିଗରେ ଭାରତବର୍ଷ ଯେପରି ସକ୍ରିୟ ପଦକ୍ଷେପ ନେଇଛି ତାହା ବାସ୍ତବିକ ଅଭିନଂଦନୀୟ ।

ମଧ୍ୟାହ୍ନ ଭୋଜନ ସମୟରେ ମୋ ପାଖ ଚୌକିରେ ବସିଥିବା ଲେଖକ ସଂଘର ସଭାପତି ମହାଶୟଂକୁ ଏକାଂତରେ ମୁଁ ପଚାରିଥିଲି – କମ୍ୟୁନିଷ୍ଟ ଶାସନରେ ପୋଲାଂଡ କିପରି ଅଗ୍ରଗତି କରିଛି । ସେ କହିଥିଲେ – ବଡ଼ ବଡ଼ ଶିଳ୍ପ ଓ ବ୍ୟବସାୟ ରାଷ୍ଟ୍ରାୟତ୍ତ ହେବା ଆମେ ସମସ୍ତେ ଚାହୁଁ । ମାତ୍ର ଛୋଟ ଛୋଟ ଦୋକାନ, ଯଥା ରାସ୍ତାକଡ଼ର କିଣକ ପ୍ରଭୃତିକୁ ରାଷ୍ଟ୍ରାୟତ୍ତ କରିବାରେ କୌଣସି ମାନେ ହୁଏ ନାହିଁ । ମୁଁ ସେହିଥିରୁ ବୁଝିଥିଲି ପୋଲାଂଡରେ ଲୋକମାନେ ସମାଜବାଦୀ ବ୍ୟବସ୍ଥା ଚାହୁଁଥିଲେ ମଧ୍ୟ ବ୍ୟକ୍ତିସ୍ୱାତନ୍ତ୍ର୍ୟ ଲୋପ ପାଉ ବୋଲି ଚାହୁଁନଥିଲେ ।

**ମାଛ ରେସ୍ତୋରାଁ :**

ୱାରଶରେ ମୋ ହୋଟେଲ ପାଖରେ ଏକ ବଡ଼ ମାଛ ରେସ୍ତୋରାଁ (Fish Restaurant) ଥିଲା । ଏଥିରେ କେବଳ ସିଝା ମାଛ ମିଳେ । ଗୋଟିଏ ବଡ଼ ପ୍ଲେଟରେ ପ୍ରାୟ ଏକ ଫୁଟ୍ ଲଂବ ଓ ଛଅ ଇଂଚ୍ ଓସାର ଗୋଟା ମାଛ ସିଝା ଦିଅଂତି । ସେଥିରେ କଂଟା ପ୍ରାୟ ନଥାଏ । ତାହା ଖାଇବାକୁ ଖୁବ୍ ସୁସ୍ୱାଦୁ ଲାଗେ । ଏକ ପ୍ଲେଟ ମାଛ ସିଝା ଖାଇଲେ ପେଟ ଭରିଯିବ, ଆଉ କିଛି ଖାଇବା ଦରକାର ନାହିଁ । ମୁଁ ଏହି ସିଝା ମାଛ ବହୁବାର ଖାଇଛି ।

## ପୋଲାଂଡ-ଭାରତ ମୈତ୍ରୀ ସଂଘ :

ୱାରଶରେ ଥିବାବେଳେ ପୋଲାଂଡ-ଭାରତ ମୈତ୍ରୀ ସଂଘ ମୋତେ ଦିନେ ସଂଧ୍ୟାରେ ବକ୍ତୃତା ଦେବାପାଇଁ ନିମଂତ୍ରଣ କରିଥିଲେ । ଏହି ଅନୁଷ୍ଠାନର ସଂପାଦିକା ମିସ୍ ମାର୍‌ଜିନା ରୋସେହା ସଭାରେ ମୋର ପରିଚୟ ଦେଇଥିଲେ ଏବଂ ପୋଲାଂଡ-ଭାରତ ମୈତ୍ରୀ ସଂଘର ଲକ୍ଷ୍ୟ ଓ କାର୍ଯ୍ୟସୂଚୀ ବିଷୟରେ ଏକ ପ୍ରାରଂଭିକ ଭାଷଣ ଦେଇଥିଲେ ।

ମୁଁ ଭାଷଣରେ ପୋଲାଂଡ ଓ ଭାରତ ମଧ୍ୟରେ ସାଂସ୍କୃତିକ ବିନିମୟ ସୂତ୍ର ଆହୁରି ସୁଦୃଢ଼ ହେବା ଦରକାର ବୋଲି ମତ ପ୍ରକାଶ କରିଥିଲି । ଭାରତର କଳା, ସଂସ୍କୃତି ଓ ସାହିତ୍ୟ କ୍ରମେ ବିକାଶୋନ୍ମୁଖୀ ହେଉଛି ବୋଲି କେତେକ ଉଦାହରଣ ଦେଇ କହିଥିଲି ।

ମୁଁ କହିଥିଲି ଯେ ଭାରତର ଶ୍ରେଷ୍ଠ ସାହିତ୍ୟକୃତିଗୁଡ଼ିକ ପୋଲିସ୍ ଭାଷାରେ ଏବଂ ପୋଲାଂଡର ସାହିତ୍ୟ ସଂପଦ ଭାରତୀୟ ଭାଷାମାନଂକରେ ଅନୂଦିତ ହୋଇ ପ୍ରକାଶ ପାଇଲେ ଉଭୟ ଦେଶ ମଧ୍ୟରେ ଭାବଗତ ଐକ୍ୟ ଗଢ଼ିଉଠଂତା । ନାଜି ଅମଳରେ ପୋଲାଂଡବାସୀଂକର ଦୁଃଖଦୁର୍ଦ୍ଦଶା ଭାରତବାସୀଂକ ହୃଦୟରେ ଗଭୀର ବେଦନାର ଦାଗ କାଟିଛି । ନାଜି ବର୍ବରତା ବିରୋଧରେ ଭାରତୀୟ ସାହିତ୍ୟ ଓ ପତ୍ରପତ୍ରିକାମାନଂକରେ ଭାରତର ମର୍ମବେଦନା ପ୍ରକାଶ ପାଇଛି । ବିଶ୍ୱଶାଂତି ଓ ବିଶ୍ୱମୈତ୍ରୀ ପ୍ରତ୍ୟେକ ମଣିଷ ଚାହେଁ । ଏହା ତାର ଜନ୍ମଗତ ଅଧିକାର । ମୁଁ ପୁଣି କହିଥିଲି – ଯେଉଁମାନେ ଜାତିଗତ ଧ୍ୱନି ଉଠାଇ ଲକ୍ଷ ଲକ୍ଷ ଲୋକଂକୁ ଆଖିପିଛୁଳାକେ ଗ୍ୟାସ ଚାମ୍ବର ପ୍ରଭୃତିରେ ପୂରାଇ ହତ୍ୟା କରିପାରଂତି ସେମାନେ ସଭ୍ୟତାର ଶତ୍ରୁ । ସେମାନେ ମଣିଷ ନୁହଁନ୍ତି ପଶୁ । ଆଜି ସମଗ୍ର ବିଶ୍ୱରେ ମଣିଷ ଜାତି ଏକ ଓ ଅଭିନ୍ନ ବୋଲି ସ୍ୱର ଉଠିଛି । ଆମେ ସମସ୍ତେ ଏକ ଅଖଂଡ ଓ ଅବିଭାଜ୍ୟ ମାନବିକ ଅଦୃଷ୍ଟର ଉତ୍ତରାଧିକାରୀ । ମଣିଷ ସଭ୍ୟତାକୁ ଆଗେଇନବା ଆମର ଲକ୍ଷ ଓ ଭୂମିକା । ବିଶ୍ୱଶାଂତି ଆମର ଏକମାତ୍ର ଧ୍ୟେୟ ।

ମୁଁ ଓଡ଼ିଶାର ପ୍ରାଚୀନ ପୋଥିଚିତ୍ର ଓ ପଟଚିତ୍ର ଆଦିର ଏକ ସ୍ଲାଇଡ୍‌ସ୍ ଶୋ ଦେଖାଇ ତାର ବୈଶିଷ୍ଟ୍ୟ ବିଷୟରେ କିଛି କହିଥିଲି । ମୋର ଇଂରାଜୀ ଭାଷଣକୁ ୱାରଶର ଜଣେ ବିଶିଷ୍ଟ ଲେଖିକା ମାଡାମ୍ ପାଇଟୋଭା ପୋଲିସ୍ ଭାଷାରେ ଅନୁବାଦ କରି ଶୁଣାଇଥିଲେ । ଏ ସଭାର ପୂର୍ଣ୍ଣାଂଗ ବିବରଣୀ ପୋଲାଂଡର ସବୁ ବଡ଼ ବଡ଼ ପତ୍ରିକାରେ ଏବଂ ଗଣମାଧ୍ୟମରେ ପ୍ରକାଶପାଇଥିଲା ।

ମୁଁ ୱାରଶରୁ ଲଂଡନ ଯାତ୍ରା କରିଥିଲି । ମୋତେ ୱାରଶ ବିମାନଘାଟିରେ ବିଦାୟ ଦେବାପାଇଁ ପୋଲାଂଡ ଲେଖକ ସଂଘର କେତେକ ବିଶିଷ୍ଟ ଲେଖକ ଲେଖିକା ଓ ସଂପାଦିକା, ପୋଲାଂଡ-ଭାରତ ମୈତ୍ରୀ ସଂଘର ସଂପାଦିକା ଏବଂ ବହୁ ବିଶିଷ୍ଟ ବ୍ୟକ୍ତି ଉପସ୍ଥିତ ଥିଲେ ।

# ସପ୍ତଚତ୍ୱାରିଂଶ ଉଲ୍ଲାସ

**ଲଂଡନ ଓ ପ୍ୟାରିସ୍‌ରେ ଏକମାସ :**
**ୱେଲସ ଏକାଡେମୀରେ କବି ଟେଡ ହ୍ୟୁଜଂଙ୍କ ସହ ବ୍ରିଟିଶ କାଉନ୍‌ସିଲ୍‌ର ଆତିଥ୍ୟ :**
**ଆଧୁନିକ ଚିତ୍ରକଳା ଓ ସ୍ଥାପତ୍ୟ :**
**ଲଂଡନରେ ଏକମାସ କାର୍ଯକ୍ରମ : କବି ସିଲ୍‌ଭିଆପ୍ଲାଥ୍ :**

ମୁଁ ୱାରଶରୁ ବିମାନ ଯୋଗେ ୧୯୭୯ ଜୁଲାଇ ମାସରେ ଲଂଡନରେ ପହଁଚିଲି । ବ୍ରିଟିଶ୍ କାଉନ୍‌ସିଲ୍ ମୋ ପାଇଁ ଏକ କାର୍ଯକ୍ରମ ସ୍ଥିରକରିଥିଲେ । ମୁଁ ଲଂଡନର ହିଥ୍ରୋ ବିମାନ ଘାଟିରେ ଓହ୍ଲାଇଲି । ସେଠାରେ ମୋ ଜାମାତା ପ୍ରଶାନ୍ତ ଏବଂ ବଡ଼ଝିଅ ମଂଜୁଶ୍ରୀ ମୋତେ ଅପେକ୍ଷା କରିଥିଲେ । ସେମାନେ ଇଲ୍‌ଫୋର୍ଡରେ 20 No. ମେଲବୋର୍ଣ ରୋଡ଼ରେ ଗୋଟିଏ ଘର କିଣି ସେଠାରେ ସପରିବାର ରହୁଥିଲେ । ପ୍ରଶାଂତ ସେତେବେଳେ ଲଂଡନରେ କଷ୍ଟଆକାଉଣ୍ଟାଟ୍ ଚାକିରି କରୁଥିଲା । ମଂଜୁଶ୍ରୀ ମଧ ଏକ ଷ୍ଟେସ୍‌ନାରୀ ଦୋକାନ କିଣି ଚଳାଉଥିଲା । ସେମାନେ ମୋତେ ତାଂକ ଗାଡ଼ିରେ ନେଇଗଲେ । ବାଟରେ ପ୍ରଶାନ୍ତ ଏକ ପେଟ୍ରୋଲ ସପ୍ଲାଇ ଦୋକାନ ପାଖରେ ଗାଡ଼ି ରଖିଲା । ମୁଁ ଭାବିଲି ବୋଧହୁଏ ଗାଡ଼ିରେ ପେଟ୍ରୋଲ୍ ପକାଇବ । ସେ ତାଂକ ଅଫିସ୍ ଭିତରକୁ ଯାଇ ମୋତେ ଡାକିଲା । ମୁଁ ଯାଇ ଦେଖିଲି ସେଠାରେ ମୋର ସାନ ପୁଅ ବୁଚି ଓରଫ୍ ଉଦୟନ ଏକ ଟେବୁଲ୍ ସାମ୍‌ନାରେ ବସିଛି । ମୁଁ ଦୀର୍ଘ ୫ ବର୍ଷ ପରେ ବୁଚିକୁ ଦେଖି ଭାରି ଖୁସିହେଲି । ସେ ୧୯୭୪ ମସିହାରେ କଟକ ଖ୍ରୀଷ୍ଟ କଲେଜରୁ ବି.ଏ. ଇତିହାସ ଅନର୍ସ ପାସ୍ କରିବା ପରେ ଉଚ୍ଚ ଶିକ୍ଷା ପାଇଁ ଲଂଡନ ଆସିଥିଲା । ସେ ମାର୍କେଟିଂ ଏବଂ ବିଜିନେସ୍ ମ୍ୟାନେଜ୍‌ମେଂଟ କୋର୍ସରେ ଲଂଡନରେ ପଢୁଥିଲା । ଆମେ ସମସ୍ତେ ଇଲଫୋର୍ଡ଼ ଘରକୁ ଗଲୁ ।

ମୁଁ ଇଲଫୋର୍ଡ଼ରେ ପହଞ୍ଚି କିଛି ସମୟ ପରେ ବ୍ରିଟିଶ୍ କାଉନ୍‌ସିଲ୍‌କୁ ଫୋନ୍‌କଲି । ସେମାନେ କହିଲେ ଯେ ସେମାନେ ଆସି ମୋତେ ଭେଟିବେ । ସେମାନେ ମୋତେ ହୋଟେଲରେ ଛାଡ଼ି ଦେବା ପାଇଁ ଜଣେ ଅଫିସରଂକୁ କାର୍ ସହ ଲିଭର୍‌ପୁଲ୍ ରେଳଷ୍ଟେସନକୁ ପଠାଇଛଂତି ବୋଲି ମଧ କହିଲେ । ମୁଁ କହିଲି, ମୋ ଝିଅ ଜ୍ୱାଇଁ ହିଥ୍ରୋରୁ ମୋତେ ତାଂକ ଇଲ୍‌ଫୋର୍ଡ଼ ଘରକୁ ନେଇଆସିଲେ । ମୁଁ ଏଇଠି ରହିଲେ ଭଲହୁଅଂତା । ସେମାନେ କହିଲେ ଇଲ୍‌ଫୋର୍ଡ଼ କେଂଦ୍ର ଲଂଡନଠାରୁ ଦୂରହେବ, ତେଣୁ ମୁଁ ସେଠାରେ ନରହି ବ୍ରାଡେନ୍‌ବିଲ୍ଡ ହୋଟେଲରେ ରହିବା ପାଇଁ ବ୍ୟବସ୍ଥା କରାଯାଇଛି । ତାହା ଦକ୍ଷିଣ-ପଶ୍ଚିମ ଲଂଡନ୍‌ରେ ଅବସ୍ଥିତ । ତେଣୁ ମୁଁ ସେଠାରେ ରହିଲେ ମୋତେ ସେମାନଂକ ଭାରପ୍ରାପ୍ତ ଅଫିସର ଓ ଗାଇଡ୍ ରୋଜ୍ ଗାଡ଼ିରେ ନେବା ଆଣିବା କରିବା

ସୁବିଧା ହେବ । ମୁଁ ସପ୍ତାହର ଶେଷ ଦୁଇଦିନ ଛୁଟି ଦିନରେ ମୋ ଝିଅ ଘରେ ଇଲ୍‌ଫୋର୍ଡ଼ରେ ରହିପାରେ । ମୁଁ ତାଂକ କଥାରେ ହଁଭରିଲି । ତା ପରଦିନ ସକାଳ ୯ଟାରେ ପ୍ରଶାନ୍ତ ମୋତେ ନେଇ ବ୍ରାଡ଼େନ୍‌ବିଲ୍ଡ ହୋଟେଲରେ ଛାଡ଼ି ଦେଇ ଆସିଥିଲା । ହୋଟେଲ ଖର୍ଚ୍ଚ ଓ ଆନୁଷଂଗିକ ଖର୍ଚ୍ଚ କାଉନ୍‌ସିଲ୍ ବହନକରୁଥିଲା ।

**କାଡ୍ରିଫ୍‌ରେ ଦୁଇଦିନ :**

ମୁଁ ଅନେକ ଥର ଇଂଲଂଡ ଯାଇଛି, କିନ୍ତୁ ସ୍କଟଲ୍ୟାଂଡ ଯିବାର ସୁଯୋଗ ଘଟିନଥିଲା । କାଡ୍ରିଫ୍ ୱେଲସ୍‌ର ସବୁଠାରୁ ବଡ଼ ସହର । ୱେଲସ୍ ସ୍କଟଲ୍ୟାଂଡର ଏକ ସମୃଦ୍ଧ ଅଞ୍ଚଳ । ବ୍ରିଟେନ୍‌ର ରାଜକୁମାରଂକୁ ପ୍ରିନ୍ସ ଅଫ୍ ୱେଲସ୍ କୁହାଯାଏ । ଏହା ଟ୍ୟାଫ (Taff) ମୁହାଣରେ ଅବସ୍ଥିତ ଏକ ପୋତାଶ୍ରୟ । ଏହି ସହରଟି ୧୯୦୫ ଖ୍ରୀଷ୍ଟାବ୍ଦରେ ଏକ ରୟାଲ ଚାଟାର ଦ୍ୱାରା ନଗରୀ ବୋଲି ଘୋଷିତ ହୁଏ । ଏହାର ପ୍ରଧାନ ମାଜିଷ୍ଟ୍ରେଟଂକୁ ଲର୍ଡ ମେୟର୍ ଆଖ୍ୟା ଦିଆଯାଇଥିଲା । ଏହା ପ୍ରଥମେ ରୋମାନ୍‌ମାନଂକଦ୍ୱାରା ଅଧିକୃତ ହୋଇଥିଲା । ପରେ ଏହା ନରମ୍ୟାନ୍‌ମାନଂକ ଦ୍ୱାରା ଅଧିକୃତ ହୁଏ । ଏହା ଦ୍ୱାଦଶ ଶତାବ୍ଦୀର କଥା । କାଡ୍ରିଫ୍ ରାଜଧାନୀ ହିସାବରେ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶାସନିକ କେନ୍ଦ୍ର ଥିଲା । ଏଠାରେ ରୋମାନ୍ ମୂଳଦୂଆ ଉପରେ ବହୁ ନରମ୍ୟାନ୍ ସ୍ଥାପତ୍ୟ ଓ ପ୍ରାଚୀର ନିର୍ମିତ ହୋଇଛି । ଏସବୁ ବିଶେଷ ଦର୍ଶନୀୟ । ଏହି ନଗରୀ ଓ ଆଖ ପାଖ ଅଞ୍ଚଳ ଘନ କୁହୁଡ଼ିରେ ଆବୃତ ହୋଇପଡ଼େ । ୧୪୦୪ ଖ୍ରୀଷ୍ଟାବ୍ଦରେ ଏହି ରାଜଧାନୀ Glendower revolt ବା ବିଦ୍ରୋହ ଦ୍ୱାରା ଏବଂ ୧୬୪୬ ମସିହାରେ Civil War ବା ଗୃହଯୁଦ୍ଧଦ୍ୱାରା ବହୁ କ୍ଷତିଗ୍ରସ୍ତ ହୋଇଥିଲା । ଏହା ପ୍ରଥମେ ୧୧୦୦ ଖ୍ରୀଷ୍ଟାବ୍ଦରେ ରର୍ବଟ ଫିଜ୍ ହ୍ୟାମ୍‌ନଂକ ଦ୍ୱାରା ସ୍ଥାପିତ ହୋଇଥିଲା । ପ୍ରଥମେ ଏହା ୪୦୦ ବରୋ ବା ମହକୁମାକୁ ନେଇ ଗଠିତ ହୋଇଥିଲା । ପରେ ଏହା ଏକ ନଗରୀ ଓ ରାଜଧାନୀରେ ପରିଣତ ହୋଇଥିଲା । ଏହି ବରୋଗୁଡ଼ିକୁ ୧୩୪୦, ୧୪୨୧ ଏବଂ ୧୪୫୫ ମସିହାରେ ରାଜନିର୍ଦ୍ଦେଶନାମାଦ୍ୱାରା ସ୍ୱାୟତ୍ତଶାସନ ଏବଂ ମୁକ୍ତ ବାଣିଜ୍ୟର ଅଧିକାର ମିଳିଥିଲା । ୧୬୦୦ ମସିହାରେ ଏହା ରାଣୀ ଏଲିଜାବେଥଂକ ଦ୍ୱାରା ଏବଂ ୧୬୦୮ ମସିହାରେ ଜେମସ୍-୧ଙ୍କ ଆଦେଶ ଦ୍ୱାରା ଏହା ଦୃଢ଼ୀଭୂତ ହୋଇଥିଲା । ୧୫୩୬ ଖ୍ରୀଷ୍ଟାବ୍ଦରେ Act of Union ଅନୁସାରେ ଏହି ସହର ଏକ କର୍‌ପୋରେସନ୍‌ରେ ପରିଣତ ହୋଇଥିଲା । ୧୫୩୬ ଖ୍ରୀଷ୍ଟାବ୍ଦରେ ଏହା ନିଉ ସେୟାର ଅଫ୍ ଗ୍ଲାମରଗାନ୍. ସଂଗେ ମିଶି ଯୁଗ୍ମନଗରୀ ରୂପେ ସ୍ୱୀକୃତି ଲାଭ କରିଥିଲା । ଏହାର ଦକ୍ଷିଣ ପ୍ରବେଶ ଦ୍ୱାର ନିକଟରେ S. Mary Convent ରହିଛି । ଟ୍ୟାଫ୍ କୂଳରେ ଥିବା ଚର୍ଚ୍ଚଟି ୧୩୦୦ ଶତାବ୍ଦୀରୁ ତିଷ୍ଠି ରହିଛି । ଏହା ବାରବାଂର ବନ୍ୟାରେ ଆକ୍ରାଂତ ହୋଇ ମଧ ନିଜର ସତ୍ତା ବଜାୟ ରଖିପାରିଛି । ଅତ୍ୟଧିକ କହୁଡ଼ି ଯୋଗୁ କାଡ୍ରିଫ୍ ୧୬୦୭ ମସିହା ଜାନୁୟାରୀ ମାସରୁ ଆଉ ପୋତାଶ୍ରୟ ହୋଇ ରହି ନାହିଁ । S.Mary ଚ୍ୟାପେଲ୍‌ଟି କ୍ଷୟପ୍ରାପ୍ତ ହେବା ପରଠାରୁ S.Jhon ଚ୍ୟାପେଲଟି ପ୍ରାଧାନ୍ୟ ଲାଭ କରିଛି । କାଡ୍ରିଫ୍‌ରେ

୧୪୭୩ରେ Lady Anne Nevillଙ୍କ ଦ୍ୱାରା ନିର୍ମାୟିତ ଟାଓ୍ୱାରଟି ଖୁବ୍ ଆକର୍ଷଣୀୟ । ୧୫୩୮ ମସିହା ଗୃହଯୁଦ୍ଧର ବହୁ ଚିହ୍ନ ଏବେ ମଧ ଦେଖିବାକୁ ମିଳେ । କ୍ୟାଥେଡ୍ରାଲ୍ ଚର୍ଚ୍ଚଟି ମଧ୍ୟଯୁଗୀୟ ସ୍ଥାପତ୍ୟର ବହୁ ନିଦର୍ଶନ ବହନ କରିଛି । କାଡ୍ରିଫ୍‌ରେ ବହୁ ଲୁହା ଓ କୋଇଲା କାରଖାନା ଗଢ଼ିଉଠିଛି । ଫଳରେ ଲୋକ ସଂଖ୍ୟା ମଧ ଦ୍ରୁତଗତିରେ ବଢ଼ିଚାଲିଚି । Dowlais (1748), Merthyr (1755) ଏବଂ Rhondda ଉପତ୍ୟକା (1870) ପ୍ରଭୃତି ଶିଳ୍ପସମୃଦ୍ଧ ଅଞ୍ଚଳ ବିଶେଷ ଉଲ୍ଲେଖନୀୟ । ୧୭୯୪ ସାଲରେ ଗ୍ଲାମରଗାନ୍ କେନାଲ ନିର୍ମିତ ହେବାଫଳରେ ଜଳପଥରେ ବ୍ୟବସାୟ ବାଣିଜ୍ୟ ଓ ଯାତାୟାତ ବୃଦ୍ଧି ପାଇଛି । ଏହି କେନାଲ୍ ମିଥରଠାରୁ କାଡ୍ରିଫ୍ ପର୍ଯ୍ୟନ୍ତ ବିସ୍ତୃତ । ୧୮୩୫ ସାଲରେ ମ୍ୟୁନିସିପାଲ୍ କର୍‌ପୋରେସନ୍ ଆକ୍ଟ ପାଶ୍ ହେଲାପରେ କାଡ୍ରିଫ୍ ଏକ ଆଧୁନିକ ନଗରୀ ରୂପେ ବିକାଶ ଲାଭ କରିଛି । କାଡ୍ରିଫ୍ ପୌର ନିଗମରେ ଜଣେ Mayor, ଛଅଜଣ Aldermen ଏବଂ ୧୮ଜଣ ନିର୍ବାଚିତ କାଉନ୍‌ସିଲ୍‌ର ଥିଲେ । ଏହାର ପାର୍ଲାମେଂଟ ସଭ୍ୟ ସଂଖ୍ୟା ମଧ ଦୁଇକୁ ବୃଦ୍ଧି ପାଇଥିଲା । ଗତ ଦ୍ୱିତୀୟ ମହାଯୁଦ୍ଧରେ ବୋମା ବୃଷ୍ଟି ଫଳରେ କାଡ୍ରିଫ୍‌ର ବହୁ ଗୁରୁତର କ୍ଷତି ଘଟିଛି । ୧୯୪୧ ମସିହା ଜାନୁୟାରୀ, ଫେବୃୟାରୀ ମାସରେ ସର୍ବାଧିକ ବୋମାମାଡ଼ ହୋଇଥିଲା । ବହୁ ଶିଳ୍ପ ବାଣିଜ୍ୟ କେଂଦ୍ର ଓ ଅନ୍ୟାନ୍ୟ ପ୍ରତିଷ୍ଠାନ ଧ୍ୱଂସସ୍ତୂପରେ ପରିଣତ ହୋଇଥିଲା । ତାହା ମଧରେ Land of Cathedral ଅନ୍ୟତମ ।

### ଓ୍ୱେଲସ୍ ଏକାଡେମୀ ପରିଦର୍ଶନ : କବି ଟେଡ୍‌ହ୍ୟୁଜ୍‌ଂକ ସହ :

କାଡ୍ରିଫ୍‌ରେ ମୋର ଏକ ପ୍ରଧାନ କାର୍ଯକ୍ରମ ଥିଲା, ଓ୍ୱେଲସ୍ ଏକାଡେମୀରେ ଦିନେ କଟାଇ ସେମାନଂକର କାର୍ଯ୍ୟକଳାପ ନିରୀକ୍ଷଣ କରିବା । ମୁଁ ସେତେବେଳେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଥିଲି । ସେଥିପାଇଁ ବୋଧହୁଏ ବ୍ରିଟିଶ୍ କାଉନ୍‌ସିଲ୍ ଭାବିଥିଲେ ମୁଁ ଓ୍ୱେଲସ୍ ଏକାଡେମୀର କାର୍ଯକ୍ରମ ଦେଖିବାକୁ ବିଶେଷ ଆଗ୍ରହୀ ହେବି ।

ମୁଁ ଏବଂ ମୋର ଗାଇଡ୍ ବୁଲାଇ ଶେଷରେ ଓ୍ୱେଲସ୍ ଏକାଡେମୀରେ ପହଁଚିଲୁ । ଓ୍ୱେଲସ୍ ଏକାଡେମୀର ସେକ୍ରେଟାରୀ ଥିଲେ ସମସାମୟିକ ପ୍ରସିଦ୍ଧ ଇଂରାଜୀ କବି ଟେଡ୍ ହ୍ୟୁଜ । ପରେ ସେ କେତେବର୍ଷ ଇଂଲଣ୍ଡର ରାଜକବି ବା ପୋଏଟ ଲରିଏଟ୍ ଥିଲେ । ସେ ମୋତେ ସ୍ୱାଗତ କରି ତାଂକ ଅଫିସ୍‌ରେ ବସାଇଲେ । ମଧ୍ୟାହ୍ନଭୋଜନର ମଧ ବ୍ୟବସ୍ଥା କରିଥିଲେ ।

ଓ୍ୱେଲସ୍ ଏକାଡେମୀ ଅନେକ ବଡ଼ ବଡ଼ ବହି ପ୍ରକାଶ କରିଛି । ସେସବୁ ସ୍କଟିସ୍ ବା ସ୍କଚ୍ ଭାଷାରେ ଓ ରୋମାନ୍ ଅକ୍ଷରରେ ଲିଖିତ । ସ୍କଟିସ୍ ଭାଷା ଆମ ସଂବଲପୁରୀ ଭାଷା ଭଳି ଏକ ଆଞ୍ଚଳିକ ଉପଭାଷା । ତଥାପି ଏହି ଭାଷାରେ ବହୁ ଉପାଦେୟ ପୁସ୍ତକମାନ ଇଂରାଜୀ ହରଫ୍‌ରେ ଲିଖିତ ହୋଇଛି ଏବଂ ପ୍ରକାଶ ପାଇଛି । ସ୍କଟଲ୍ୟାଂଡବାସୀମାନେ ବାହାରେ ଇଂରାଜୀରେ କଥାବାର୍ତ୍ତା କରଂତି ଏବଂ ଇଂରାଜୀରେ ଲେଖଂତି । ମାତ୍ର ଘରେ ନିଜ ନିଜ ମଧରେ ଆଂଚଳିକ ଭାଷାରେ କଥାବାର୍ତ୍ତା କରିଥାଂତି ।

ଟେଡ୍ ହ୍ୟୁଜଂକ ସଂଗେ ମୋର ଆଧୁନିକ ଇଂରାଜୀ କବିତା ସଂବଂଧରେ ଅନେକ ସମୟ ଆଲୋଚନା ହେଲା । ମୁଁ ତାଂକର କେତେକ କବିତା ପଢ଼ିଥିଲି । ତାହା ଖୁବ୍ ଉଚ୍ଚକୋଟୀର । ସେ କହିଲେ ଇଂରାଜୀ କବିତାର ବିକ୍ରୟ ସୀମିତ । ତଥାପି ବହୁ ପ୍ରତିଭାବାନ୍ ତରୁଣକବି କବିତା ଲେଖୁଛଂତି । ମୁଁ ତାଂକୁ ଭାରତୀୟ କବିତା ବିଷୟରେ କହିଥିଲି । ଭାରତରେ କାବ୍ୟିକ ଦୃଶ୍ୟପଟ ଉତ୍ସାହଜନକ ନୁହେଁ ବୋଲି ମୁଁ ତାଂକୁ ଜଣାଇଥିଲି । ସେ ଜଣେ ଦୁଇଜଣ ଭାରତୀୟ ଲେଖକଙ୍କ କଥା ପଚାରିଲେ । ସେମାନଂକ ଲେଖା ଗଳ୍ପ ଉପନ୍ୟାସ ଭଲଲାଗିଲା ବୋଲି ମତ ପ୍ରକାଶ କଲେ । ସେମାନଂକ ମଧ୍ୟରେ ଡ. ମୁଲ୍କରାଜ ଆନଂଦ, ଆର୍. କେ. ନାରାୟନ୍ ପ୍ରଭୃତି ଅନ୍ୟତମ । ରବୀଂଦ୍ରନାଥଂକର କେତେକ କବିତା ସେ ପଢ଼ି ଆନଂଦ ପାଇଛଂତି ବୋଲି କହିଲେ । ମୁଁ ତାଂକୁ ଦୁଇତିନିଜଣ ଇଂଡୋ-ଇଂଗ୍ଲିସ୍ ବା ଇଂରାଜୀରେ ଲେଖୁଥିବା ଭାରତୀୟ କବିଂକ କଥା କହିଲି । ସେମାନେ ହେଲେ ନିସିମ୍ ଇଜିକିଏଲ୍, ଡମ୍ ମୋରେସ୍, କମଳାଦାସ ପ୍ରଭୃତି । ସେ କୌଣସି କୌଣସି ଆନ୍‌ଥୋଲୋଜିରେ ସେମାନଂକର କବିତା ଏବଂ ମୋର ଇଂରାଜୀ ଅନୂଦିତ କବିତା ପଢ଼ିଛଂତି ବୋଲି କହିଲେ । ରବୀଂଦ୍ରନାଥଂକର କାବ୍ୟକବିତାର ମୂଳ ସ୍ୱର ଅତିଂଦ୍ରୀୟବାଦ ଆଧୁନିକ ପାଠକ ଓ ଲେଖକଂକୁ ପ୍ରଭାବିତ କରିପାରି ନାହିଁ ବୋଲି କହିଲେ ।

**କବି ସିଲିଭିଆ ପ୍ଲାଥ :**

କବି ଟେଡ୍ ହ୍ୟୁଜଂକ ଦାଂପତ୍ୟ ଜୀବନ ସଂବଂଧରେ ମୁଁ କେତେକ କଥା ଶୁଣିଥିଲି । ଟେଡ୍ ବିଖ୍ୟାତ କବୟିତ୍ରୀ ସିଲିଭିଆ ପ୍ଲାଥଂକୁ ବିବାହ କରିଥିଲେ । ସିଲିଭିଆ ଆମେରିକାର ଝିଅ । ସେ ଇଂଲଡର ପ୍ରଖ୍ୟାତ ବିଶ୍ୱବିଦ୍ୟାଳୟ କେମ୍ବ୍ରିଜ୍‌ରେ ପଢୁଥିଲେ । ସେହି ସମୟରେ ସେ ଟେଡ୍‌ଂକ ସଂପର୍କରେ ଆସଂତି ଏବଂ ତାଂକୁ ବିବାହ କରଂତି । ତାଂକର ବୈବାହିକ ଜୀବନ ମାତ୍ର ଛଅ ବର୍ଷ ସ୍ଥାୟୀ ଥିଲା । ତାଂକର ଏକ ମଲାପୁଅ ଜନ୍ମହୁଏ । ସେ ଟେଡ୍‌ଂକ ସହିତ ବିବାହ ବିଚ୍ଛେଦ କରି ଆମେରିକା ଫେରିଗଲେ । ଆମେରିକାରେ ସେ ବହୁ ଦୁର୍ଦ୍ଦଶା ଭୋଗ କରଂତି । ଏହାପରେ ୧୯୬୭ ମସିହାରେ ସେ ଗ୍ୟାସଚୁଲିରେ ବେକପୂରାଇ ଆତ୍ମହତ୍ୟା କରଂତି । ପ୍ଲାଥଂକ ଭଳି ଏକ ଶକ୍ତିଶାଳୀ କବି ଆମ ସମୟରେ ବିରଳ । ସେ ଗତ ପ୍ରଜନ୍ମର ଏକ ଶ୍ରେଷ୍ଠ କବିକଂଠ ବୋଲି ବହୁ ସମୀକ୍ଷକଂକ ମତ । ତାଂକ ପ୍ରଣୀତ କବିତା ପୁସ୍ତକମାନ ପଢ଼ି ମୁଁ ଅପାର ଆନଂଦ ଲାଭ କରିଛି । ତାକଂ ପ୍ରଣୀତ କବିତା ପୁସ୍ତକମାନଂକ ମଧ୍ୟରେ Corssing the Water ଓ Arill ପ୍ରଭୃତି ବିଶେଷ ଉଲ୍ଲେଖଯୋଗ୍ୟ । ପ୍ଲାଥଂକ କବିତାଗୁଡ଼ିକ ବହୁ ପ୍ରତୀକ ଓ ଚିତ୍ରକଳ୍ପରେ ଭରପୂର ଏକ ''Enclosed Cosmic Circus ବୋଲି କୁହାଯାଇଛି । ତାଂକ କବିତାର ବୈଦଗ୍ଧ ଓ ସାଧାରଣକୁ ଅସାଧାରଣ ରଂଗରେ ଦେଖିବାର କ୍ଷମତା ସମସ୍ତଂକୁ ମୁଗ୍ଧ କରେ । ପିଲାଂକ ପାଇଁ ଅତି ତରୁଣ ବୟସରେ ଲିଖିତ ତାଂକର କବିତା ବହି (Bed Poems) କେତେଗୁଡ଼ିଏ ଲଳିତ ଛଂଦୋମୟୀ କବିତାର ଅପୂର୍ବ ସମାବେଶ ।

'ଏରିଏଲ୍' କବିତାଗୁଡ଼ିକ ପ୍ଲାଥ୍‌ଂକ ଆତ୍ମହତ୍ୟା ପୂର୍ବରୁ ରଚିତ ଏବଂ ଖୁବ୍ ଶୀଘ୍ର ଶୀଘ୍ର ଲେଖାଯାଇଥିଲା । ଅନେକ କବିତାରେ ମୃତ୍ୟୁର ଛାୟା ପଡ଼ିଥିବା ମନେହୁଏ । ଶ୍ରୀମତୀ ପ୍ଲାଥ୍‌ଂକର କବିତାର ଶକ୍ତି ହେଲା ଭାଷାବିନ୍ୟାସ ଓ ଶବ୍ଦ ସୌଂଦର୍ଯ୍ୟ । ଜଣେ ସମାଲୋଚକଂକ ମତରେ ଶ୍ରୀମତୀ ପ୍ଲାଥ ତାଂକର ଅସଲ କାବ୍ୟଶକ୍ତି ହାସଲ କରୁଥିବାବେଳେ ମୃତ୍ୟୁବରଣ କରିଥିଲେ । ଏହା ସମସ୍ତଂକ ପକ୍ଷରେ ଘୋର ଦୁଃଖର ବିଷୟ । ବିଖ୍ୟାତ ମାର୍କିନ୍ କବି ରିଚାର୍ଡ ଉଇଲ୍‌ବର ତାଂକୁ ଆମ ସମୟର "କରୁଣତମ କାବ୍ୟପ୍ରତୀକ୍ଷା" ବୋଲି ବର୍ଣନା କରିଛଂତି । ତାଂକର କେତେକ କବିତାରେ ତାଂକ ବିଷାଦମୟ ଦାଂପତ୍ୟ ଜୀବନର କ୍ଲାଂତି ଓ ଅବସାଦ ସ୍ପଷ୍ଟ ପ୍ରତିଫଳିତ ହୋଇଛି । ଗୋଟିଏ ଲାଇନ୍‌ରେ ଶୁଣୁଁ "ମୋ ପ୍ରଥମ ସ୍ୱାମୀଂକ ଶୋଫାଉପରେ ବସିଥିବା ପରି କ୍ଲାଂତିକର" । ତାଂକର ଗ୍ରଂଥାବଳୀ ୧୯୮୧ ମସିହାରେ ମରଣୋତ୍ତର ପୁଲିଟଜର ପୁରସ୍କାର ଲାଭ କରିଥିଲା । ତାଂକର ସମଗ୍ର କବିତାଗୁଡ଼ିକ ପଢ଼ିଲେ ମନରେ ସ୍ୱତଃ ପ୍ରଶ୍ନ ଉଠେ, କ'ଣ ଥିଲେ ସିଲିଭିଆ ପ୍ଲାଥ ଏବଂ କ'ଣ ହେଲା ତାକଂର ପରିଣତି ?

**ପ୍ଲାଥ୍‌ଂକର ଦ୍ୱିତୀୟ କବର :**

ମୁଁ ୧୯୮୯ ମସିହାରେ ଲଂଡନରେ ୪ ମାସ ଥିବା ଭିତରେ ପ୍ଲାଥ୍‌ଂକ ଉପରେ ଖଂଡେ ପୁସ୍ତକ ପ୍ରକାଶ ପାଇବାର ଦେଖିଲି । ଏ ପୁସ୍ତକଟିର ଶୀର୍ଷକ ଥିଲା Bitter Fame" । ଏ ବହିର ରିଭ୍ୟୁ "ଟାଇମ୍‌ସ୍" ଓ "ଅବଜରଭର" ପତ୍ରିକାରେ ପଢ଼ି ବହିଟି ପ୍ରତି ଆକୃଷ୍ଟ ହୋଇଥିଲି । ବହିଟି ଆଣି ପଢ଼ି ଦେଖିଲି ତାହା ଆଦ୍ୟପ୍ରାଂତ କବି ସିଲିଭିଆ ପ୍ଲାଥ୍‌ଂକର ମରଣୋତ୍ତର ଚରିତ୍ରସଂହାର ଛଡ଼ା ଅନ୍ୟ କିଛି ନୁହଁ । ବହିଟି ପଢ଼ି ମନେହେଲା ଏହା ଯେପରି ସିଲିଭିଆ ପ୍ଲାଥ୍‌ଂକର ଦ୍ୱିତୀୟ କବର । ବହିଟି ଲେଖିଛଂତି ଆଉ ଜଣେ କବି ଶ୍ରୀମତୀ ଆନେ ଷ୍ଟିଭେନ୍‌ସନ୍ ଏବଂ ପ୍ରକାଶ କରିଛଂତି ଭାଇକିଂଗ୍, ଲଂଡନ । ଏ ପୁସ୍ତକର ରଚୟିତ୍ରୀ ଶ୍ରୀମତୀ ଆନେ ଷ୍ଟିଭେନ୍‌ସନ୍ ଲେଖିଛଂତି ଯେ ସେ ଏ ପୁସ୍ତକ ରଚନା କରିବାରେ ଟେଡ୍‌ଂକ ଭଉଣୀ ଓ୍ୱଲଓ୍ୱିନ୍‌ଂକଠାରୁ ବହୁ ତଥ୍ୟ ସଂଗ୍ରହ କରିଛଂତି । ଏହାଛଡ଼ା ଟେଡଂକ ସପକ୍ଷରେ ସାକ୍ଷ୍ୟ ଦେଇଛଂତି, ତାଂକର କେତେକ କବିବଂଧୁ ଯଥା ଲୁକାସ୍ ମାୟର, ମେର୍‌ୱିନ୍ ପ୍ରଭୃତି, ନିଜେ ଟେଡ୍‌ହ୍ୟୁଜ୍ ମଧ ସାକ୍ଷିଗଡ଼ାରେ ଛିଡ଼ା ହୋଇ ଏକ କ୍ଷୁଦ୍ର ସଫେଇ ଦେଇଛଂତି ଯେ କେବଳ ତଥ୍ୟଗତ ଭୁଲ୍ ଦେଖେଇବା ଛଡ଼ା ସେ ଅନ୍ୟ କୌଣସି ପ୍ରକାରେ ଏ ବହି ସହିତ ସଂଶ୍ଳିଷ୍ଟ ନୁହଁତି । ତାଂକ ବକ୍ତବ୍ୟଟି ଛପାଯାଇଛି ପୁସ୍ତକର ଆଦ୍ୟରେ ।

ଏ ପୁସ୍ତକରେ ପ୍ଲାଥ୍‌ଂକର ସମସ୍ତ ଦୁର୍ଗୁଣ ବୟାନ କରାଯାଇଛି । ତାଂକର ନାନା ସମୟରେ ବହୁ ପ୍ରେମିକ ଥିଲେ । ସେ ଗୃହକର୍ମ ଠିକ୍ ଭାବେ କରୁନଥିଲେ । ତାଂକ ଚାରିତ୍ରିକ ତ୍ରୁଟିବିଚ୍ୟୁତିର ଟିକିନିଖି ବିବରଣୀ ଦିଆଯାଇଛି । ସେଥିମଧରୁ କେତୋଟି ହେଲା ପ୍ଲାଥ୍‌ଂକର ଏକକାଳୀନ ବହୁପ୍ରେମିକ ଥିଲେ । ଥରେ ଟେଡ୍ ଓ ମାୟାର ପ୍ଲାଥ୍‌ଂକୁ ଘରେ ଖାଇବା ପ୍ରସ୍ତୁତ କରିବା ପାଇଁ ଏକା ଛାଡ଼ିଦେଇ ବାହାରକୁ ଯାଇଥିଲେ ।

ଫେରିଆସି ଦୁହେଁ ଦେଖଂତି ଯେ ରଂଧାବଢ଼ା ଠିକ୍ ଭାବେ ହୋଇନାହିଁ ଏବଂ ଯାହା ବା ହୋଇଛି ତାହା ଯଥେଷ୍ଟ ନୁହେଁ। ପ୍ଲାଥଂ ପୁଣି ଗୁମ୍ ମାରି ସାରା କ୍ଷଣ ବସିରହିଲେ, କାହା ସହିତ କିଛି କଥାବାର୍ତ୍ତା କଲେନାହିଁ। ଏହି କଥା ଟେଡ୍ କହିଥିଲେ ଜଣେ ବଂଧୁଂକୁ – ପ୍ଲାଥ ତାଂକୁ ଛାଡ଼ିଯିବା ପରେ। ଆଉଥରେ ବି.ବି.ସି.ର ଜଣେ ଯୁବତୀଂକ ସଂଗେ ଟେଡ୍ ଅବୈଧ ସଂପର୍କ ରଖିଛଂତି ବୋଲି ସଂଦେହ କରି ପ୍ଲାଥ ଟେଡ୍ ଘରେ ନଥିବାବେଳେ ତାଂକର ବହୁ କାଗଜପତ୍ର, ଫାଇଲ୍, କେତେକ କବିତା ଓ ଖଂଡେ ନାଟକର ପାଂଡୁଲିପି, ନୋଟ୍ ବୁକ୍ ଏବଂ ସେକ୍ସପିୟରଂକ ଗ୍ରଂଥାବଳୀ ଚିରି ଟିକିଟିକି କରିଦେଇଥିଲେ। ସେ ଟେଡଂକୁ ଅନ୍ୟ ନାରୀ ଗହଣରେ ଦେଖିଲେ ଈର୍ଷାରେ ଜଳିଯାଉଥିଲେ, ଜମା ସହ୍ୟକରିପାରୁନଥିଲେ। ଥରେ ଟେଡଂକ ଭଉଣୀ ଓଲୱିନ୍ ଜଣେ ବଂଧୁଂକ ସହ ଏକ କୋଠରିରେ ବସି ସିଗାରେଟ୍ ଖାଉଥିବାବେଳେ ପ୍ଲାଥ ବାହାରୁ ଠେଲି ଝରକା ଖୋଲିଦେଇଥିଲେ ଏବଂ ସେଥିପାଇଁ ଶେ ମାଫି ଚାହିଁନଥିଲେ। ଯଦିଚ ଓଲୱିନ୍ ତାଂକୁ ସେଥିପାଇଁ ସୁଯୋଗଦେଇଥିଲେ। ପ୍ଲାଥ ଥିଲେ ବଦ୍‌ରାଗୀ ଇତ୍ୟାଦି। ସେ ହ୍ୟୁଜ୍‌ଂକ ସ୍ୱାଧୀନତାରେ ବରାବର ହସ୍ତକ୍ଷେପ କରୁଥିଲେ। ତାଂକ ଲେଖାପଢ଼ା ଘରେ ଘଂଟା ଘଂଟା ଧରି ବସିରହି ନିଜ କାମ କରୁଥିଲେ।

ଅନ୍ୟ ଜ୍ଞାତବ୍ୟ ତଥ୍ୟ ମଧ୍ୟରେ ସେ (ପ୍ଲାଥ) କୁଆଡ଼େ ଓଲୱିନଂକ ଡ୍ରେସିଂଗ୍ ଗାଉନ୍ ଚୋରିକରିଥିଲେ। ମାତ୍ର ଉଭୟେ ଏକତ୍ର ବା ନିକଟରେ ରହୁଥିବାବେଳେ ତାହା କିପରି ବ୍ୟବହାର କରୁଥିଲେ ଜଣାନାହିଁ। ତାହାଛଡ଼ା ପ୍ଲାଥ କପ୍ ପ୍ଲେଟ ଆଦି ବେଳେବେଳେ ରାଗରେ ଫିଙ୍ଗି ଭାଂଗିଦେଉଥିଲେ ଇତ୍ୟାଦି ଇତ୍ୟାଦି। ଟାଇମ୍‌ସ୍ ସମୀକ୍ଷକଂକ ମତରେ ପଦେହେଲେ ଭଲକଥା ପ୍ଲାଥଂକ ସପକ୍ଷରେ ଏ ବହିରେ ନାହିଁ। ପ୍ଲାଥଂକ ପାଲରେ ପଡ଼ିଥିବା ଜଣେ ହାର୍ବାଡ଼ ପ୍ରଫେସରଂକ ସ୍ତ୍ରୀ ପ୍ଲାଥଂକୁ ସେଇ 'ସୁଂଦରୀ କୁତି' (That blonde bitch) ବୋଲି ଯାହା କହିଥିଲେ ତାହା ମଧ୍ୟ ଏ ବହିରୁ ବାଦ୍ ପଡ଼ି ନାହିଁ। ପ୍ଲାଥ କୁଆଡ଼େ ଖାଇବା ଟେବୁଲ ତଳେ ଗୋଡ଼ ବଢ଼ାଇ ନିକଟରେ ବସିଥିବା ଜଣେ ବଂଧୁଂକ ଗୋଡ଼ ଚିପିଦେଉଥିଲେ। ପ୍ଲାଥ ନ୍ୟୁୟର୍କ ଫେରିଯିବା ପରେ ସେଠାରେ ବହୁ ପୁରୁଷଂକ ସଂଗେ ଯୌନ ସଂପର୍କ ରଖିଥିଲେ ଏବଂ ହୋଟେଲରେ ରାତ୍ରି ଯାପନ କରୁଥିଲେ ବୋଲି ମଧ୍ୟ ଷ୍ଟିଭେନସନ୍‌ଙ୍କ ଗବେଷଣାରେ ସ୍ଥାନ ପାଇଛି। ଏହିପରି ଅନେକ କଥା କିଛି ସତ୍ୟ କିଛି ଅତିରଂଜିତ ଏବଂ ଅନେକ କିଛି ଅବାଂତର ଓ ଅମାର୍ଜିତ। ମୋଟଉପରେ ଏହି ବହିକୁ ପ୍ଲାଥଂକର ଜୀବନୀ ନ କହି ବରଂ ତାଂକ ବିରୋଧରେ ଏକ ଅଭିଯୋଗ ଫର୍ଦ ବା ଚାର୍ଜସିଟ୍ କହିଲେ ଅଧିକ ସଂଗତ ହେବ। ଏହି ବହିର ରଚୟିତ୍ରୀ ଅନଷ୍ଟିଭେନ୍‌ସନ ବୋଧହୁଏ ଧରିନେଇଛଂତି ଯେ ଜଣେ ନାରୀକବିଂକୁ ସତୀ ଏବଂ ସଚ୍ଚା ଗୃହିଣୀ ହେବାକୁ ପଡ଼ିବ। ତା ନହେଲେ ଅନ୍ୟାନ୍ୟ କ୍ଷେତ୍ରରେ ଥିବା ତାର ଭାବମୂର୍ତ୍ତି ତାହା ଯେତେ ଉଜ୍ଜ୍ୱଳ ହେଉନା କାହିଁକି ଧ୍ୱଂସ ହେବ। ପ୍ଲାଥଂକୁ ଜଣେ କାମୁକୀ ଓ ପୁରୁଷଂକ ପଛରେ ଗୋଡ଼ାଉଥିବା ନାରୀ (Man-Chaser) ରୂପେ ଚିତ୍ରିତ କରିବାର

ତାତ୍ପର୍ଯ୍ୟ ବୋଧେ ସେଇଆ । ସେ ସିଲିଭିଆକୁ ସଂପୂର୍ଣ୍ଣ ରୂପେ ଧ୍ୱଂସ କରିଦେବାକୁ ଚାହିଁଛଂତି । ପ୍ଲାଥଂକ ମାତାଂକୁ ମଧ୍ୟ ଏ ବହିରେ ଏକ ସାକ୍ଷୀରୂପେ ବ୍ୟବହାର କରାଯାଇଛି । ସେ କୁଆଡ଼େ ଥରେ ଆମେରିକାରୁ ଝିଅଙ୍କୁ ସଂଖୋଳିବା ପାଇଁ ଇଂଲଣ୍ଡ଼ ଆସିଥିଲେ । ଝିଅର ବ୍ୟବହାର ଦେଖି ଦୁଃଖପ୍ରକାଶ କରି କହିଥିଲେ – "ଆହା, ବିଚରା ଟେଡଂକୁ ବହୁତ କିଛି ସହିବାକୁ ପଡ଼ୁଛି ।" ମୋଟଉପରେ ସମଗ୍ର ବହିଟି ହୋଇଛି ଟେଡଂକ ଆତ୍ମରକ୍ଷା ସପକ୍ଷରେ ଏକ ନକଲି ପ୍ରମାଣପତ୍ର । ଟେଡଂକ ସୁରକ୍ଷା ପାଇଁ ପ୍ଲାଥଂକର ଦ୍ୱିତୀୟ କବର ଦରକାର ଥିଲା, ତେଣୁ ଏଭଳି ଏକ ପ୍ରବଳ ମିଳିତ ପ୍ରଚେଷ୍ଟା । ଏହାହିଁ ହେଉଛି ପତ୍ର ପତ୍ରିକାମାନଂକର ଧାରଣା ଓ ସ୍ପଷ୍ଟ ରାୟ । (ଟାଇମ୍‌ସ୍) ଲଂଡନ ୫.୧୧.୮୯ ଏଭଳି ଏକତରଫା ଓ ଦୋଷଦର୍ଶୀ ପୁସ୍ତକ ଯେ ଅଧିକାଂଶ ପାଠକପାଠିକାଂକ ମନରେ ବିରକ୍ତି ଆଣିବ ଏହା ସହଜରେ ଅନୁମେୟ । ମାତ୍ର କୁଆଡ଼େ ଗଲା ପ୍ଲାଥଂକର ସବୁ କବିତା ? କୁଆଡ଼େ ଗଲା ତାଂକର ସେହି ଅନବଦ୍ୟ କବିତାବଳୀ ଯାହା ତାଂକର ବାଙ୍ମୟ ପ୍ରତିରୂପ ଭାବେ ସାରା ବିଶ୍ୱସାହିତ୍ୟକୁ ଅଦ୍‌ଭୁତ ପ୍ରାଣରସରେ ଅଭିସିଂଚିତ କରୁଛି ଓ କରିବ ।

**ପୁରୁଣା ଯଂତ୍ରପାତି ଦର୍ଶନ :**

କାଡ୍ରିଫର ଏକ ମିଉଜିୟମ୍‌ରେ ପୁରୁଣା ଯଂତ୍ରପାତି ଦେଖିଥିଲି । ପୁରଣା ଏବଂ ଅତି ପୁରୁଣା କାର୍, ସାଇକେଲ୍, ତଂତ, ଏବଂ ସିଲାଇ କଳ ପ୍ରଭୃତି ପ୍ରଥମେ କିପରି ଥିଲା ଏବଂ ଧୀରେ ଧୀରେ କିପରି ପରିବର୍ତ୍ତିତ ହୋଇଛି ତାହା ଆଗ୍ରହଜନକ । ପୁରୁଣା ଫୋର୍ଡର ପ୍ରାଚୀନ ମୋଟର ଗାଡ଼ି ଏବଂ ତାର ବର୍ତ୍ତମାନ ଆକାର ପ୍ରକାର ମଧ୍ୟରେ ଆକାଶପାତାଳ ପାର୍ଥକ୍ୟ ଦେଖାଯାଏ ।

**ଚଂଦ୍ର ମୃତ୍ତିକା :**

ଲଂଡନକୁ ଫେରି କେତେକ ଦ୍ରଷ୍ଟବ୍ୟ ସ୍ଥାନ ଦେଖିଥିଲି । ଏକ ମିଉଜିୟମ୍‌ରେ ଚଂଦ୍ର-ପୃଷ୍ଠର ମୃତ୍ତିକା ଓ କ୍ଷେପଣକାରୀ ରକେଟ୍‌ର କେତେକ ଭଗ୍ନାଂଶ ଦେଖିଥିଲି । ୧୯୬୯ ମସିହା ଜୁଲାଇ ୨୦ ତାରିଖରେ ଆମ ଗ୍ରହର ତିନିଜଣ ମନୁଷ୍ୟ ଚଂଦ୍ରପୃଷ୍ଠକୁ ଯାତ୍ରା କରିଥିଲେ । ସେମାନେ ହେଲେ ଆମେରିକାର ମହାକାଶଚାରୀ ନିଲ୍‌ଆର୍ମଷ୍ଟ୍ରାଂଗ, ଏଡ୍‌ଉଇନ୍ ଆଲ୍‌ଡ୍ରିନ୍ ଏବଂ ମିଖାଇଲ କଲିନ୍‌ସ୍ । ନିଲ୍‌ଆର୍ମଷ୍ଟ୍ରଂଗ ଓ ଏଡ୍‌ଉଇନ୍ ଆଲ୍‌ଡ୍ରିନ୍ ଚଂଦ୍ରପୃଷ୍ଠରେ ଅବତରଣ କରିଥିଲେ । ସେମାନେ କିଛି ଚଂଦ୍ରମୃତ୍ତିକା ଓ ଗୋଡ଼ିପଥର ସଂଗ୍ରହ କରିଥିଲେ । ମାଇକେଲ୍ କଲିନ୍‌ସ୍ ମୂଳ ମହାକାଶଯାନରେ ଚଂଦ୍ରକକ୍ଷରେ ପରିଭ୍ରମଣ କରୁଥିଲେ । ସେମାନେ ଆପୋଲୋ ପ୍ରୋଗ୍ରାମ୍ ଅନୁଯାୟୀ ଚଂଦ୍ରକୁ ଯାତ୍ରା କରିଥିଲେ । ପୃଥିବୀଠାରୁ ଚଂଦ୍ରର ଦୂରତ୍ୱ ୩୮୪,୦୦୦ କିଲୋମିଟର । ମଣିଷ ଯେ ଦିନେ ମହାକାଶ ସୀମା ଟପି ଆଉ ଏକ ଗ୍ରହରେ ପହଁଚିପାରିବ ଏହା କଳ୍ପନାତୀତ ଥିଲା । ତାହା ଏବେ ବାସ୍ତବରେ ପରିଣତ ହେଲା । ଏହା ଯେ ମଣିଷ ଇତିହାସରେ ଏକ

ଯୁଗାଂତକାରୀ ବିପ୍ଳବ ଏଥିରେ କୌଣସି ସଂଦେହ ନାହିଁ । ପୃଥିବୀର କେତେକ ମିଉଜିୟମ୍‌ରେ ଚଂଦ୍ରମୃତ୍ତିକା ଓ ଗୋଡ଼ି ପ୍ରଭୃତି ସଂରକ୍ଷିତ ହୋଇ ରହିଛି ।

**ଜିଓଗ୍ରାଫିକାଲ୍ ସୋସାଇଟି :**

ମୁଁ ଜିଓଗ୍ରାଫିକାଲ୍ ସୋସାଇଟିର ପତ୍ରିକା ବହୁ ବର୍ଷ ଧରି ପଢ଼ିଆସୁଛି । ଏଥର ଲଂଡନରେ ଥିବା ଅବସରରେ ମୁଁ ଜିଓଗ୍ରାଫିକାଲ୍ ସୋସାଇଟି ବୁଲି ଦେଖିଥିଲି ଏବଂ କେତେକ ଜ୍ଞାତବ୍ୟତଥ୍ୟ ସଂଗ୍ରହ କରିଥିଲି । ଜିଓଗ୍ରାଫିକାଲ୍ ସୋସାଇଟିର ପତ୍ରିକା ଏକ ସୁଂଦର, ସଚିତ୍ର ଓ ତଥ୍ୟପୂର୍ଣ ପତ୍ରିକା ଭାବରେ ସମଗ୍ର ପୃଥିବୀରେ ପରିଚିତ ।

**ନ୍ୟାସ୍‌ନାଲ୍ ଆର୍ଟ ଗ୍ୟାଲେରୀ :**

ଲଂଡନରେ ନ୍ୟାସ୍‌ନାଲ୍ ଆର୍ଟ ଗ୍ୟାଲେରୀ ପୂର୍ବରୁ କେତେଥର ଦେଖିଛି । ତଥାପି ''ଯେତେ ଦେଖିଲେ ନୂଆ ଦିଶୁଥାଏ'' । ମୁଁ ସେଠାରେ ଦୁଇ ତିନି ଘଂଟା କଟାଇଥିଲି । "High Priest and Christ" ଛବିଟି ବାରବାଂର ଦେଖିଲି । ହାଇପ୍ରିଷ୍ଟଂକର କୁଟିଳ ଚରିତ୍ର ତାଂକର ଏକ କ୍ଷୀଣ ସ୍ମିତହାସ୍ୟରେ ଫୁଟିଉଠିଛି, ଯିଶୁଂକ ମୁହଁରେ କରୁଣା ଓ ଶାଂତିର ମୁଦ୍ରାଂକ ।

**ଆଧୁନିକ ନୈରୂପବାଦୀ ଚିତ୍ରକଳା :**

ଦ୍ୱିତୀୟ ମହାଯୁଦ୍ଧ ସମୟରେ ଏବଂ ତାର ଅବ୍ୟବହିତ ପରେ ନୈରୂପବାଦୀ ଚିତ୍ରକଳା (Abstract) ଆତ୍ମପ୍ରକାଶ କରେ । ନନ୍-ଫିଗରେଟିଭ କ୍ୟୁବିଜିମ୍ ବା ଅବଜେକ୍ଟିଭ୍ କ୍ୟୁବିଜିମ୍ ଏହାର ଶାଖାରୂପେ ପ୍ରଚଳନ ଲାଭକରେ । ନୈରୂପବାଦୀ ଚିତ୍ରକଳା କେବଳ ୟୁରୋପରେ ନୁହେଁ ସୁଦୂର ଆମେରିକାରେ ମଧ୍ୟ ବିପୁଳ ବିସ୍ତାରଲାଭ କରିଥିଲା । ଆମେରିକାର ବଜାର ତ କ୍ୟୁବିଷ୍ଟ ଇଲେକ୍‌ଟ୍ରିକ୍ ବଲ୍‌ବଠାରୁ ଆରଂଭକରି କ୍ୟୁବିଷ୍ଟ ଲଣ୍ଠନ ପର୍ଯଂତ ଜିନିଷପତ୍ରରେ ଭରିଯାଇଥିଲା । କ୍ୟୁବିଜିମ୍ ବା ଘନବାଦର ନନ୍-ଫିଗରେଟିଭ୍ ସଂତାନ ହେଲା ନୈରୂପବାଦ ବା ଆବ୍‌ଷ୍ଟ୍ରାକ୍ଟ ଆର୍ଟ । କେତେକ ନୈରୂପବାଦୀ ଚିତ୍ରଶିଳ୍ପୀ, ଯଥା ବେନନିକଲସନ ପ୍ରଭୃତିଂକ ଚିତ୍ରରେ ପ୍ରଗତିଶୀଳ ସାମ୍ମୁଖ୍ୟ ଥିଲା ଯେଉଁଥିରୁ ସେମାନଂକର ସାମାଜିକ ପ୍ରତିବଦ୍ଧତା ଓ ସଚେତନତା ପ୍ରମାଣିତ ହୁଏ । ସେମାନଂକର ଯାତ୍ରା ପ୍ରୟୋଗରୁ ପ୍ରୟୋଗକୁ (from experiment to experiment), କିଂତୁ ପିକାଶୋ ଓ ବ୍ରାଂକ୍‌କ ଚିତ୍ର ବିଶ୍ଳେଷଣାତ୍ମକ ଏବଂ ତାହା ପ୍ରାକୃତିକ ଜଗତର ନାଂଦନିକ ରୂପ ଉଦ୍‌ଘାଟନ କରିଥାଏ । ଏଥିରେ କେତେକ ବସ୍ତୁ (objects)ର ତାତ୍ପର୍ଯପୂର୍ଣ ରୂପାୟନ କରାଯାଇଥାଏ ଯେଉଁଥିରୁ କି ସେମାନଂକର ମୌଳିକ ପ୍ରକୃତି ଜଣାଯାଏ ।

ଖାଂଟି ନୈରୂପବାଦ (Pure Abstraction) ରୁଷୀୟଶିଳ୍ପୀ ଗାବୋ, ତାଂକ ଭାଇ ଆଂଟୋନିଓ ପେଭେନିଓଂକ ନେତୃତ୍ୱରେ ପ୍ରତିଷ୍ଠିତ ହୁଏ । ଏହାକୁ constructivision କୁହାଯାଇଥାଏ । ଆଉ ଟିକିଏ ଅତୀତକୁ ଗଲେ ଏହା ୧୯୧୫ ମସିହାରେ ମସ୍କୋରେ

ଆରଂଭହୋଇଥିବା supermaterialismର ନିକଟବର୍ତ୍ତୀ ବୋଲି ଜଣାଯାଏ । ଗାବୋ ଓ ତାଂକ ଭାଇ supermaterialism ଛାଡ଼ି constructivision ଆଡ଼କୁ ଢଳିବାର ମୂଲ୍ୟ ସ୍ୱରୂପ ସେ ଦୁହିଁକି ଜର୍ମାନୀରେ ନିର୍ବାସନ ଭୋଗକରିବାକୁ ପଡ଼େ । ଏହା ୧୯୨୦ ମସିହାର କଥା । ଏହି ଭ୍ରାତାଦ୍ୱୟ ମୂଳତଃ ମାର୍କସୀୟ ଆର୍ଟତତ୍ତ୍ୱ ଏବଂ ଦ୍ୱାଂଦିକ ବସ୍ତୁବାଦଦ୍ୱାରା ପ୍ରଭାବିତ ଥିଲେ ।

୧୯୪୭ ମସିହାରେ ପ୍ୟାରିସ୍‌ଠାରେ ଅନୁଷ୍ଠିତ ଏକଜିବିସନ୍‌ରେ ସୁପରରିୟଲିଷ୍ଟ ଆର୍ଟ ଆଂଦ୍ରେ ବ୍ରେତୋଁଂକ ନେତୃତ୍ୱରେ ନିଜର ସଂକଳ୍ପ ଓ ମାର୍ଗ ଘୋଷଣା କରେ । ପିକାଶୋ ମଧ ଏଥିରେ ଅଂଶ ଗ୍ରହଣ କରଂତି । ବର୍ତ୍ତମାନ ସୁପରରିୟଲିଜିମ୍ ଏକ ମୃତ ଆଦୋଂଳନ । ମାତ୍ର କେତେକ ବିଚକ୍ଷଣ ଶିଳ୍ପୀ ଏହାର ଉତ୍ତରଦାୟାଦରୂପେ ବିଶ୍ୱର ପ୍ରଶଂସା ଅର୍ଜନ କରିଛଂତି । ସେମାନଂକ ମଧରେ ଆଂଦ୍ରେ ବ୍ରେତୋଁ, ପିକାଶୋ, ମ୍ୟାକସ୍, ଏର୍ପେଷ୍ଟ, ଟାଂଗେ, ମିରୋ, ମାଟ ଏବଂ ଲ୍ୟାମ ପ୍ରଭୃତି ସ୍ମରଣୀୟ । ସୁପର ରିୟଲ ଜଗତର ଆବିର୍ଷ୍କର୍ତ୍ତା ରୂପେ ଚିତ୍ରରେ ପିକାଶୋ ଏବଂ ଭାସ୍କର୍ଯରେ ହେନେରୀ ମୁରଂକ ନାମ ସ୍ମରଣଯୋଗ୍ୟ ।

ଏହି ସମୟ ପରିଧି ମଧରେ ସ୍କାଂଡିନେଭିଆନ୍ ରାଷ୍ଟ୍ରଗୁଡ଼ିକରେ ଏବଂ ଜର୍ମାନୀ ଓ ଅଷ୍ଟ୍ରିଆରେ ଏକ୍ସପ୍ରେସନିଷ୍ଟ (ଅଭିବ୍ୟକ୍ତିବାଦ) ଆଦୋଂଳନ ବେଶ୍ ଗତିବେଗ ହାସଲ କରେ । ଏହି ଆଦୋଂଳନର ପ୍ରମୁଖ ପ୍ରବକ୍ତା ହେଲେ ଜର୍ମାନୀର ମ୍ୟାକସ୍ ବେକ୍ ମ୍ୟାକ୍ ଓ ଅଟୋଡିକସ୍ । ଚେକୋସ୍ଲୋଭାକିଆର କୋକୋରିକା, ବେଲଜିୟମ୍‌ବାସୀ ଡ. ସ୍ମଟ, ପରମେଭେ, ଫ୍ରିଜ୍‌ଭ୍ୟାନ, ଜେନଗେଓ୍ୱାଲଟ ପ୍ରମୁଖ ଶିଳ୍ପୀବୃନ୍ଦ ।

ପୂର୍ବୋକ୍ତ ଆଲୋଚନାରୁ ଜଣାଯିବ ଯେ ନୈରୂପବାଦୀ ଚିତ୍ର ଦ୍ୱିତୀୟ ମହାଯୁଦ୍ଧୋତ୍ତର ୟୁରୋପରେ ତାର ବିଭିନ୍ନ ଶାଖାପ୍ରଶାଖା ନେଇ ପ୍ରତିଷ୍ଠା ବଜାୟ ରଖିଛି । ନୈରୂପବାଦୀ ଚିତ୍ରଶୈଳୀ ୧୯୧୦ ମସିହା ବେଳକୁ ସ୍ପଷ୍ଟଭାବେ ଆତ୍ମପ୍ରକାଶ କରେ । ପିକାଶୋଂକ ଅଂକିତ 'Demoiaselles D' Avigon" ୧୯୦୭ ମସିହାରେ ଅଂକିତ ହୋଇଥିଲା । ଏହାକୁ ପ୍ରଥମ ଘନବାଦୀ (କ୍ୟୁବିଷ୍ଟ) ଚିତ୍ର ବୋଲି ଚିହ୍ନଟ କରାଯାଇଛି । ପିକାଶୋ ଆଫ୍ରିକାନ୍ ସ୍ଥାପତ୍ୟ ପ୍ରଭାବରେ ଜ୍ୟାମିତିକ ଉପାଦାନରେ ଏହା ରଚନା କରିଥିଲେ ବୋଲି କୁହାଯାଏ । ମାତ୍ର ୧୯୧୦ ମସିହାରେ ଅଂକିତ ତାଂକର Portrait of Kahmweller ଭଳି ଚିତ୍ରାବଳୀରେ ନୈରୂପବାଦର ସ୍ପଷ୍ଟ ଲକ୍ଷଣ ଫୁଟିଉଠିଥିଲା । ଜର୍ମାନୀରେ ମଧ ଅନୁରୂପ ପରିସ୍ଥିତି ଥିଲା । କାଂଡିନସ୍କି ୧୯୧୦ ମସିହାରେ ଜର୍ମାନୀର ମ୍ୟୁନିକ୍‌ଠାରେ ଆସି ବସତି ସ୍ଥାପନ କରଂତି । ସେତେବେଳକୁ ଉଇଲେହାମ୍ ଓ୍ୱରିଙ୍ଗ୍ ଏକ ଗ୍ରଂଥ 'Abstraction and Empathy" ଯାହା ୧୯୦୬ ମସିହାରେ ପ୍ରକାଶପାଏ ଲେଖି ନୈରୂପବାଦର ତାତ୍ତ୍ୱିକ ଭିତ୍ତି ପ୍ରସ୍ତୁତ କରିଥିଲେ । ଏହାର ଦୁଇବର୍ଷ ପରେ କାଂଡିନିସ୍କି ତାଂକର "Spiritual in Art" ପୁସ୍ତକଟି ପ୍ରଣୟନ କରଂତି । ଦର୍ଶନକ୍ଷେତ୍ରରେ ସ୍ଥିତିବାଦୀ ଚିଂତା Kierkegaad, Nitzefie, Hevedegger, Husserl ଏବଂ

Jespers ପ୍ରମୁଖଙ୍କ ଲେଖାରେ ପ୍ରତିଫଳିତ ହୋଇ ୟୁରୋପର ଚିଂତାଧାରାରେ ବୈପ୍ଲବିକ ଆଲୋଡ଼ନ ସୃଷ୍ଟିକରିଥାଏ । କିଂତୁ ପ୍ଲାଷ୍ଟିକ ଆର୍ଟରେ ଏ ଆଲୋଡ଼ନର ସ୍ୱାକ୍ଷର ପିକାଶୋ, କାଂଡିନସ୍କି, କ୍ଲି ମଂଡ୍ରିୟାନ ଓ ଗାବୋଂକ ପୂର୍ବରୁ ଦେଖାଯାଇନଥିଲା ।

ସ୍ଥିତିବାଦୀ ଦର୍ଶନର ଆବିର୍ଭାବ ପୂର୍ବରୁ ନୈରୂପବାଦ ପଛରେ କୌଣସି ଦାର୍ଶନିକ ଯଥାର୍ଥତା ନ ଥିଲା । ତେଣୁ ଏହାକୁ ନୈତିକ ସମର୍ଥନ ଦେବାପାଇଁ Heidgegger, Jaspers, Marcel ଓ ସାତ୍ରେଂକ ପର୍ଯଂତ ଅପେକ୍ଷା କରିବାକୁ ପଡ଼ିଥିଲା । କାରଣ ଯେଉଁ Mullity ବା ନାସ୍ତିତା ଆଧୁନିକ ଦର୍ଶନର ମୂଳକଥା ଏବଂ ଯାହା ସେହି ମୁହୂର୍ତ୍ତରେ ଶିଳ୍ପୀକୁ ପ୍ରକୃତିଠାରୁ ସ୍ୱାଧୀନ କରେ, ତାହାକୁ ଚିତ୍ରକଳା ମାଧମରେ ପ୍ରକାଶ କରିବା ବା ଅନ୍ୟ କଥାରେ ଶିଳ୍ପ ଜରିଆରେ ଏକ ବାସ୍ତବତା ସୃଷ୍ଟିକରିବା ଆଧୁନିକ କଳା ଓ ଦର୍ଶନକ୍ଷେତ୍ରରେ ବଡ଼କଥା । କାରଣ ଏହା ଦ୍ୱାରା ଶିଳ୍ପୀର ବ୍ୟକ୍ତିତ୍ୱ ତତ୍‌କାଳିକ ମୁହୂର୍ତ୍ତରେ ସ୍ୱାଧୀନତା ଲାଭ କରେ । ହାର୍ବାଟ ରିଡଂକ୍ ଭାଷାରେ "Art in this sense becomes the most precious evidence of freedom".

ତେଣୁ ଆଧୁନିକ ନୈରୂପବାଦୀ ଆନ୍ଦୋଳନକୁ ସ୍ଥିତିବାଦ ପାଇଁ ଅପେକ୍ଷା କରିବାକୁ ପଡ଼ିବା ସ୍ୱାଭାବିକ । କିଂତୁ ସ୍ଥିତିବାଦ ଏକ ସୁସଂହତ (coherent) ଦର୍ଶନ ନୁହେଁ । ଉପରେ ଯେଉଁ ସ୍ଥିତିବାଦୀ ଦାର୍ଶନିକମାନଂକ କଥା କୁହାଗଲା ସେମାନେ ପରସ୍ପରଠାରୁ ସଂପୂର୍ଣ ବିରୋଧୀ ମତ ପୋଷଣ କରଂତି । ତଥାପି ମୋଟାମୋଟିଭାବେ ସ୍ଥିତିବାଦୀ ଦର୍ଶନର ନୈତିକ ସମର୍ଥନ ଓ ପ୍ରେରଣା ନଥିଲେ ନୈରୂପବାଦ ନିଶ୍ଚୟ ଭୂୟୋବିକାଶରୁ ବଂଚିତ ହୋଇଥାଂତା । ପିକାଶୋଂକୁ ନୈରୂପବାଦୀ ଦର୍ଶନର ଅଗ୍ରସୂରି କହିଲାବେଳେ ତାଂକ ଶିଳ୍ପୀ ଜୀବନର ବିଭିନ୍ନ ପର୍ଯ୍ୟାୟ ଆଖିଆଗରେ ରଖିବାକୁ ହୁଏ । ୧୮୮୧ ମସିହା ଅକ୍ଟୋବର ୨୫ ତାରିଖରେ ସ୍ପେନ୍‌ରେ ଜନ୍ମଲଭିଥିବା ଏହି ଯୁଗସ୍ରଷ୍ଟା ଶିଳ୍ପୀଂକ ଜୀବନରେ ବହୁ ଶୈଳୀର ମୁଦ୍ରାଂକ ସ୍ପଷ୍ଟ । ୧୯୦୦ ମସିହାରୁ ସେ ପ୍ୟାରିସ୍‌ରେ ବସବାସ କରଂତି । ୧୯୦୪ ପର୍ଯଂତ କାଳକୁ ତାଂକ ଜୀବନରେ ରେଡ୍ ପିରିଅଡ କୁହାଯାଇଥାଏ । ଏହି ଦୁଇଟି ସମୟ-ପରିଧି ମଧ୍ୟରେ ଅଂକିତ ଚିତ୍ରାବଳୀରେ ବ୍ୟବହୃତ ପ୍ରମୁଖ ରଂଗ ଦୃଷ୍ଟିରୁ ଏପରି ନାମକରଣ କରାଯାଇଛି ବୋଲି ଜଣାଯାଏ । ଏହାଛଡ଼ା ୧୯୦୬-୦୭ ବର୍ଷଟିକୁ 'ନିଗ୍ରୋ ପିରିଅଡ' ବୋଲି ମଧ ନାମିତ କରାଯାଇଥାଏ । ୧୯୨୫ ମସିହାରେ ପିକାଶୋ ଏକ ନୂଆଧରଣର ଚିତ୍ର ରଚନାରେ ମନୋନିବେଶ କରଂତି । ଥରେ ଏକ ସାକ୍ଷାତ୍‌କାର ପ୍ରସଂଗରେ ପିକାଶୋ କହିଥିଲେ – "ଚିତ୍ରକଳାରେ ରୂପ ବା ନୈରୂପ ବୋଲି କିଛି ନାହିଁ । ଚିତ୍ରରେ କେବଳ କେତେକ ବିଶ୍ୱାସଯୋଗ୍ୟ ମିଥ୍ୟାର ଅବତାରଣା କରାଯାଇଥାଏ, ଯାହା ଆମର ଅଧ୍ୟାତ୍ମ ସତ୍ତା ପାଇଁ ଲୋଡ଼ା । କାରଣ ସେଇଥିରୁ ହିଁ ଆମେ କେତେଗୁଡ଼ିଏ ନାଂଦନିକ ଚିତ୍ରକଳ୍ପ (image) ଗଢ଼ିଥାଉ । ପିକାଶୋଂକ ଛଡ଼ା ଆଧୁନିକ ଚିତ୍ରକଳାକୁ ଯେଉଁ ଶିଳ୍ପୀମାନେ ସମୃଦ୍ଧ କରିଛଂତି ସେମାନଂକ ମଧ୍ୟରେ ପଲକ୍ଲି, ପଲନାଶ୍, ସ୍ଥପତି, ହେନେରୀମୁର୍, ନେରୀମୁର୍, ବେନ୍‌ନିକୋଲସନ୍ ପ୍ରଭୃତି ସ୍ରଷ୍ଟାମାନେ

ଅନ୍ତର୍ଭୁକ୍ତ – ଯେଉଁମାନଂକର କାଳଜୟୀ ଅବଦାନ ଚିର ଅବିସ୍ମରଣୀୟ ରହିବ। ପଲନାଶ୍‌ଙ୍କର କେତେକ ଚିତ୍ରରେ ଆଧିଭୌତିକ ଚେତନା ସ୍ପଷ୍ଟ। ଏଥିର ପ୍ରତିଧ୍ୱନିଶୀଳ ଆକାର (echoing forms) ସତରେ ଆକର୍ଷଣୀୟ ଓ ଅନବଦ୍ୟ।

ପରିବର୍ତ୍ତନ ହିଁ ଆର୍ଟର ପ୍ରଥମ ସର୍ତ। ଆର୍ଟ ସ୍ଥାଣୁ ହୋଇ ରହି ନ ପାରେ। ଆର୍ଟର ଭୂୟୋବିକାଶରେ ନୈରୂପବାଦ ଏକ ଅପରିହାର୍ଯ ପରିଣାମ ରୂପେ ଦେଖାଦେଇଛି।

ଶେଷରେ ପ୍ରଶ୍ନ ଉଠେ ଏହି ନୈରୂପବାଦୀ ଚିତ୍ରକଳା ବା ଆବଷ୍ଟ୍ରାକଟ ଆର୍ଟ କ'ଣ ? ଏ ପ୍ରଶ୍ନ ପ୍ରତ୍ୟେକ କଳାପ୍ରେମୀମାନଂକୁ ଆନ୍ଦୋଂଳିତ କରେ। Meyer Schapvie ତାଂକର "ମଡ଼ର୍ଣ୍ଣ ଆର୍ଟ" ବହିରେ ସୂଚନା ଦେଇଛଂତି – "କଳା ବସ୍ତୁଜଗତର ଅନୁକରଣ ନୁହେଁ କି ପ୍ରତିଧ୍ୱନି ନୁହେଁ। ଏହା ବସ୍ତୁର ମୌଳିକ ପରିଣାମକୁ ଏକ ନାଂଦନିକ ଏବଂ କଳାତ୍ମକ ରୂପ ଦେଇଥାଏ। ତେଣୁ ଏପ୍ରକାର କଳାସୃଷ୍ଟିରେ ବାସ୍ତବ ଆକାର ବା ରୂପ ବଡ଼ କଥା ନୁହେଁ, ବଡ଼ କଥା ହେଉଛି ତାର ପ୍ରଭାବ ବା ବୈଶିଷ୍ଟ୍ୟ"। ସେ ଲେଖିଛଂତି ନୈରୂପବାଦୀ ଚିତ୍ରକଳାର ଆବିର୍ଭାବ ପୂର୍ବରୁ ସମସ୍ତଙ୍କର ଧାରଣା ଥିଲା ଯେ ଚିତ୍ର ହେଉଛି ରଂଗ ଓ ଆକୃତିର ବିଷୟ। ସଂଗୀତ ଓ ସ୍ଥାପତ୍ୟକୁ Pure Artର ଆଦର୍ଶ ରୂପେ ଧରିନିଆଯାଉଥିଲା, ଯାହା ବସ୍ତୁର ଅନୁକରଣ ନ କରି ସେଥିରୁ କେବଳ କେତେକ ପ୍ରଭାବ ପକାଇବା ଭଳି ଉପାଦାନ ଗ୍ରହଣ କରୁଥିଲା। କିଂତୁ ଏଭଳି ଧାରଣା ବଦଳିବାକୁ ବାଧହେଲା, କାରଣ କେହି ଏପରି ଚିତ୍ର ଦେଖିନାହିଁ ଯାହା କେବଳ ରଂଗ ଓ ଆକାରର ସମଷ୍ଟି, ମାତ୍ର କୌଣସି ଜିନିଷର ପ୍ରତିନିଧିତ୍ୱ କରେନାହିଁ। କେବଳ ଆକୃତିଦ୍ୱାରା କୌଣସି ଚିତ୍ରର ଗୁଣ ନିର୍ଣୟ କରାଯାଇ ନ ପାରେ। ଏପରି କଲେ ଚିତ୍ରଟିକୁ ବିକୃତ ବା ହ୍ରସ୍ୱ କରାଯିବ। କେବଳ ଆକୃତି ଦ୍ୱାରା ଛବିର ମର୍ମ ଉଦ୍‌ଘାଟନ କରାଯାଇ ପାରିବ ନାହିଁ। ତାଛଡ଼ା ଛବି ଯେଉଁମାନଂକୁ ନେଇ ଅଂକା ତାହା ହେଉଛି ବ୍ୟକ୍ତିଦୃଶ୍ୟପଟ, ସ୍ଥାନ ଇତ୍ୟାଦି ଯାହା ବାସ୍ତବ ବା ପୌରାଣିକ (ମିଥିକାଲ) ହୋଇପାରେ। ତେଣୁ ସେସବୁ ଉପରେ ସମୟର ମୁଦ୍ରାଂକ ରହିବାକୁ ବାଧ। ଆର୍ଟ 'ଐତିହାସିକ ସମୟ'ର ଊର୍ଦ୍ଧ୍ୱରେ – ଏହା ଯେପରି ଏକ ଛଳନାପୂର୍ଣ କଥା, ସେହିପରି ଅସ୍ପଷ୍ଟ ମଧ। କିଂତୁ ନୈରୂପବାଦୀ କଳାରେ ନାଂଦନିକ ସ୍ୱାଧୀନତା ତଥା ନିର୍ବିଶେଷ ରୂପାୟନ କଂକ୍ରିଟ ଫର୍ମରେ ପ୍ରକାଶ ଲାଭ କରେ। ପରିଶେଷରେ ଆମେ ଅଂକନ ପ୍ରଣାଳୀରେ କେବଳ ନାଦଂନିକ ଉପାଦାନ ଲୋଡୁନା। ବର୍ତ୍ତମାନ ଏହାହିଁ ନୈରୂପବାଦୀ ଆର୍ଟ, ତେଣୁ ଏହା ପ୍ରାକ୍ଟିକାଲ୍ ଡେମନଷ୍ଟ୍ରେସନର ଗୁଣ ଅଧିକାର କରିଚି। ଏହା କ୍ୟାନଭାସ୍ ଉପରେ pure form ପ୍ରତିଫଳିତ କରେ ଯାହା ବାହ୍ୟିକ ବସ୍ତୁପୁଞ୍ଜ ଦ୍ୱାରା ଆଚ୍ଛାଦିତ ହୋଇ ରହିଥିଲା। ନୈରୂପବାଦୀ ଆର୍ଟ ଶିଳ୍ପୀକୁ ଅତ୍ୟଂତ ସ୍ୱାଧୀନତା ଦେବା ସଂଗେ ସଂଗେ କଳାକୁ ସାର୍ବଭୌମତ୍ୱ ପ୍ରଦାନ କରିଥାଏ। ଅନେକ ଶିଳ୍ପୀ ଯେଉଁମାନେ କି ନୈରୂପବାଦୀ ଶୈଳୀରେ ଚିତ୍ରାଂକନ କରଂତି ନାହିଁ ସେମାନେ ମଧ ନୈରୂପବାଦର ସ୍ୱାଗତ କରିଥାଂତି। କାରଣ ଏହା ସେମାନଂକୁ ନଂଦନତତ୍ତ୍ୱର ସାର୍ବଭୌମତ୍ୱ ସଂବଂଧରେ ଆତ୍ମବିଶ୍ୱାସ ଆଣିଦିଏ

ଏବଂ ବିଶୁଦ୍ଧ ଅଂକନ ରୀତି ଅବଲଂବନ କରିବାକୁ ସାହସ ଓ ପ୍ରେରଣା ଦିଏ । (ମଡର୍ଣ ଆର୍ଟ) ଆର୍ଟର ଅଖଂଡ ସ୍ୱାଧୀନତା ଏବଂ ନାଦଂନିକ ସାର୍ବଭୌମତ୍ୱ (absoluteness) ସପକ୍ଷରେ ସମକାଳୀନ ନୈରୂପବାଦ ବା ଆବଷ୍ଟ୍ରାକଟ ଆର୍ଟ ଏକ ମହାନ ଅପକ୍ଷେପ୍ର । ଆକୃତି ଓ ରଂଗବିନ୍ୟାସର ଧରାବଂଧା ଗତରୁ ମୁକୁଳି ଏକ ନୂତନ ମୁକ୍ତ ଦିଗ୍‌ବଳୟର ସଂଧାନ ଏହାର ପ୍ରଧାନ ଲକ୍ଷ୍ୟ (ଓଡ଼ିଶା ଲଳିତକଳା ଏକାଡେମୀର ମୁଖପତ୍ର 'ରଂଗ ଓ ରେଖା'ର ରଜତ ଜୟଂତୀ ସଂଖ୍ୟା ୧୯୮୮ରେ ପ୍ରକାଶିତ ମୋର ପ୍ରବଂଧ ''ଆଧୁନିକ ଚିତ୍ରକଳା ଓ ନୈରୂପବାଦ'' ଦ୍ରଷ୍ଟବ୍ୟ । ଏହାଛଡ଼ା ଆଧୁନିକ ଚିତ୍ରକଳା ସଂପର୍କରେ ମୋର ଦୁଇଟି ଧାରାବାହିକ ପ୍ରବଂଧ ଦୈନିକ ସଂବାଦ ରବିବାସରୀୟ ସଂଖ୍ୟା ନଭେମ୍ବର-ଡିସେମ୍ବର ୧୯୮୯ ଦ୍ରଷ୍ଟବ୍ୟ ।)

**ଚିତ୍ରର ମୂଲ୍ୟ ଓ ପ୍ରତିଷ୍ଠା :**

୧୯୮୯ ଖ୍ରୀଷ୍ଟାବ୍ଦରେ ବିଖ୍ୟାତ ଡଚ୍ ଚିତ୍ରଶିଳ୍ପୀ ଭ୍ୟାନ ଗଗଂକ ଖଂଡିଏ ଚିତ୍ର ନିଉୟର୍କଠାରେ ସତୁରି ନିୟୁତ ଡଲାର୍ ମୂଲ୍ୟରେ ନିଲାମ ହୋଇଛି । ଭାରତୀୟ ମୂଲ୍ୟରେ ଏହା ୧୫୦ କୋଟି ଟଂକା ହେବ । ଏହା ଆମକୁ ଆଶ୍ଚର୍ଯ୍ୟ ଲାଗିବ । ମାତ୍ର ବିଖ୍ୟାତ ଶିଳ୍ପୀମାନଂକର ଚିତ୍ର ଆମେରିକା ଓ ୟୁରୋପରେ ଶହେକୋଟିରୁ ଅଧିକ ମୂଲ୍ୟରେ ବିକ୍ରି ହୋଇଛି । ଏଥିରୁ ଚିତ୍ରକଳାର ଉତ୍କର୍ଷ ଜଣାପଡ଼ିବ ।

ମୁଁ ଲଂଡନ, ପ୍ୟାରିସ୍, ରୋମ୍ ଓ ଆମେରିକାରେ ବହୁ ଚିତ୍ରଶାଳା ବା ଆର୍ଟ ଗ୍ୟାଲେରୀ ବୁଲି ଦେଖିଛି । ଆଧୁନିକ ଚିତ୍ର ଦେଖି ମୁଁ ତନ୍ମୟ ହୋଇଯାଇଛି । ଆର୍ଟ ସାହିତ୍ୟକୁ ପ୍ରଭାବିତ କରିଥାଏ । ବହୁ ନୂତନ ଶିଳ୍ପଶୈଳୀ ଓ ମତବାଦ ପ୍ରଥମେ ଆର୍ଟ ଆନ୍ଦୋଳନରୁ ଜନ୍ମଲାଭ କରିବ । ସାହିତ୍ୟର ଆଂଗିକ ଓ ଆଭିମୁଖ୍ୟକୁ ନୂତନ ଦାର୍ଶନିକ ଦୃଷ୍ଟିକୋଣ ଦେଇଥାଏ । ତାହାର କାରଣ ଆର୍ଟ ଏକ ପ୍ରତ୍ୟକ୍ଷୀଭୂତ ମାଧମ ହୋଇଥିବାରୁ ନୂତନ ମତବାଦ ପ୍ରଥମେ ଆର୍ଟରେ ଆତ୍ମପ୍ରକାଶ କରେ, ପରେ ତାହା ସାହିତ୍ୟକୁ ସଂକ୍ରମିତ ହୁଏ । ଆଧୁନିକ ସାହିତ୍ୟରେ ଚିତ୍ରକଳ୍ପବାଦ, ଭବିଷ୍ୟବାଦ, ଅଭିବ୍ୟକ୍ତିବାଦ ପ୍ରଭୃତି ଆତ୍ମପ୍ରକାଶ କରିବା ପୂର୍ବରୁ ଚିତ୍ରକଳା ଓ ଭାସ୍କର୍ଯ ମାଧମରେ ଆତ୍ମପ୍ରକାଶ କରିଥିଲା ।

**ପ୍ୟାରିସ୍‌ରେ UNESCO ସହିତ ଆଲୋଚନା :**

*ଓଡ଼ିଶାର ଦୁଇଟି ମୌଳିକ ଚିତ୍ରକଳା ପୋଥିଚିତ୍ର ଓ ପଟଚିତ୍ର ଦିଗଂତ ମିଉଜିୟମରେ ସଂରକ୍ଷିତ ଥିଲା । ସେସବୁର ୩୦୦ ବହୁବର୍ଣ slides ମୁଁ ସଂଗରେ ବିଦେଶ ଆଣିଥିଲି । ମୁଁ ପ୍ୟାରିସ୍ ଯାଇ ସେଠାରେ ଅବସ୍ଥିତ UNESCO ସହିତ ସେସବୁର ପ୍ରକାଶନ ସଂବଂଧରେ ଆଲୋଚନା କରିବାକୁ ଚାହୁଁଥିଲି ।

---

* ୧୯୭୯ ମସିହାରେ ମୁଁ ଲଂଡଂନରେ ଥିବା ଅବସରରେ UNESCO ଓ ଲଂଡନରେ କେତେକ ଆର୍ଟଗ୍ୟାଲେରୀ ପରିଦର୍ଶନ କରିଥିଲି ।

ମୁଁ ଏ ବିଷୟରେ UNESCO ସହିତ ଘନିଷ୍ଠ ଭାବରେ ସଂପୃକ୍ତ ମୋର ଜଣେ ବଂଧୁ ରାଓ ଚେଲିକାନିକୁ ଲେଖିଥିଲି । ସେ UNESCO ର CCIVS ଶାଖାର ସଭାପତି ଥିଲେ । ସେ ପ୍ୟାରିସ୍‌ରେ ଟୋକିଓ ବିଲଡିଂଗ୍ କମପ୍ଲେକସ୍‌ରେ ଗୋଟିଏ ଫ୍ଲାଟ୍ ନେଇ ସପରିବାର ରହୁଥିଲେ । ସେ ମୋ ଲଂଡନ ଠିକଣାରେ ଲେଖିଲେ ଯେ ମୋ ପ୍ରକଳ୍ପ ସଂବଂଧରେ ସେ ମୋତେ ସାହାଯ କରିବେ । ମୁଁ ପ୍ୟାରିସ୍ ଗଲେ ତାଂକ ଘରେ ଯେତେଦିନ ଇଚ୍ଛା ରହିପାରିବି । ତାଂକ ଚିଠିଟି ତଳେ ଦିଆଗଲା ।

Rao CHELIKANI<br>President CCIVS<br>UNESCO. 1, Rue Miollis<br>75015 Paris, France.

Paris 19th June 1979<br>Tel- 577-16-10 UNESCO<br>Poste (ext) 4965<br>583-36-20/583-88-07

Dear Sri Raut-Roy,

I am in receipt of your letter from India as well as the card from Moscow. I am glad to know that you are on a lecture tour visiting number of countries. Unfortunately one of the associations which normally conduct these meetings or the universities are not in a positions to arrange anything since it is already a period of vacations in France. However my wife and myself will be very happy to recieve you as long as you would like to stay in Paris excepting the first week of July in which period I will be in Geneva and my wife in her parents place, you are welcome anytime. We can always arrange an informal gathering. I can take you to UNESCO to see a few people there. Apart from the air-flight, quite a few of us use the train or the bus between London and Paris. Lloyds and firms like the Sliver arrow arrange these things. For obtaining visa if you need, I can send you a letter of hosting etc. on hearing from you.

I understand that there is an Oriya lady in the Indian Embassy in Belgium by name Mrs. Paratima (Tel-home : 649 59 90 office : 3435125) who has very good contacts in Brusselles. In case you are interested in visiting Belgium, please contact her.

Right now I have no plans to visit London; next time when I will be there. I will certainly contact Mrs. M. Rout.

Looking forward to see you in case you decide to visit Paris.

Yours very sincersly<br>Rac Chelikani

Dr. S. Raut-Roy<br>20 Melbourn Road<br>Ilford, England.

କିଛିଦିନ ପରେ ଚେଲିକାନି, ତାଂକ ପତ୍ନୀ ଏବଂ ୧୨ ବର୍ଷର ପୁଅ ଧରମେଂଦ୍ର ସହ ଲଂଡନ ଆସିଥିଲେ । ସେ ମୋତେ ଟେଲିଫୋନ କରିଥିଲେ । ଆମେ ଏକ ରେଷ୍ଟୋରାଁରେ ମିଳିତ ହୋଇଥିଲୁ ଏବଂ ମଧ୍ୟାହ୍ନଭୋଜନ କରିଥିଲୁ । ସେ ମୋତେ ପ୍ୟାରିସ୍ ଯିବାକୁ କହିଲେ । ମୁଁ ଲଂଡନରୁ ପ୍ୟାରିସ୍ ଯିବାକୁ ପ୍ରସ୍ତୁତ ହେଲି । ସେଠାରୁ ଭାରତ ଫେରିଯିବି ।

**ପ୍ୟାରିସ୍ ରହଣି :**

ପ୍ୟାରିସ୍‌ରେ ୧୦ ଦିନ ରହଣି ଭିତରେ ମୁଁ ଓ ଚେଲିକାନି ଚାରିପାଂଚଥର UNESCOର ସଂପୃକ୍ତ ବିଭାଗକୁ ଯାଇ ଓଡ଼ିଶାର ପ୍ରାଚୀନ ଚିତ୍ର ପ୍ରକାଶନ ସଂବଧରେ ବିଭାଗୀୟ ମୁଖ୍ୟମାନଂକ ସହିତ ଆଲୋଚନା କରିଥିଲୁ । ମୁଁ slidesଗୁଡ଼ିକର ପ୍ରଦର୍ଶନୀ କରିଥିଲି । UNESCO କର୍ତ୍ତୃପକ୍ଷ ଚିତ୍ର ପୁସ୍ତକ ପ୍ରକାଶ ଦିଗରେ ସାହାଯ କରିବେ ବୋଲି କହିଥିଲେ, ମାତ୍ର ସେମାନେ ବିଶେଷ କିଛି କଲେ ନାହିଁ । ଜଣେ ଭଦ୍ରମହିଳା ମତ ପ୍ରକାଶ କରିଥିଲେ ଯେ ଏହି Miniatureଗୁଡ଼ିକ (ଚିତ୍ର) ଅତି ସୁଂଦର । ଏହା ପ୍ରକାଶ ପାଇଲେ ଭାରତ ଓ ଓଡ଼ିଶାରେ ପ୍ରାଚୀନ ଚିତ୍ରକଳା ସଂବଂଧରେ ସମସ୍ତେ ଜାଣିପାରିବେ । ମାତ୍ର ଯେଉଁ କାବ୍ୟଗୁଡ଼ିକ ଉପରେ ଏହି ଚିତ୍ରଗୁଡ଼ିକ ଆଧାରିତ ତହିଁର ଇଂରାଜୀ ଅନୁବାଦ କରାଇବା କଷ୍ଟକର ହେଲା । କାରଣ ତାହାସବୁ ରୀତିଯୁଗୀୟ ଆଳଂକାରିକ ଭାଷାରେ ରଚିତ । ମୁଁ କହିଲି ଯେ ପଦ୍ୟରେ ନ ହେଲେ ମଧ ଗଦ୍ୟରେ କାବ୍ୟଗୁଡ଼ିକର ଇଂରାଜୀ ଅନୁବାଦ କରାଇବା ସହଜ ହେବ, ମୁଁ ଏହା କରାଇପାରିବି । ସେ ଯାହାହେଉ ମୋ ପ୍ରସ୍ତାବ ଓ ପ୍ରକଳ୍ପ ଆଜିଯାଏ କାର୍ଯରେ ପରିଣତ ହୋଇପାରିଲାନି ।

**ଲୁଭ୍ (LOUVRE) ପରିଦର୍ଶନ :**

ମୁଁ ପ୍ୟାରିସ୍‌ରେ ଥିଲାବେଳେ ଅନେକ ଥର ଲୁଭ୍‌ରେ ସଂରକ୍ଷିତ ଚିତ୍ର ଓ ସ୍ଥାପତ୍ୟ ଦେଖିଥିଲି । ସେଥିମଧ୍ୟରେ Raphaelଙ୍କ "Holy family", "Leonardoଙ୍କ "Virgin of the Rock's ଓ Monalisa (ଯାହା ସମଗ୍ର ବିଶ୍ୱରେ ସମାଦୃତ) ଉଲ୍ଲେଖଯୋଗ୍ୟ । ସ୍ଥାପତ୍ୟ ମଧ୍ୟରେ Samothracଙ୍କ "Winged Victory' ଏବଂ ମିଲୋଂକର "The Venus' ବିଶେଷ ଉଲ୍ଲେଖଯୋଗ୍ୟ । ଅନ୍ୟାନ୍ୟ ଚିତ୍ରଶିଳ୍ପୀମାନଂକ ମଧ୍ୟରେ ଭ୍ୟାନଗଗ୍, ପାବ୍‌ଲୋ, ପିକାଶୋ ପ୍ରଭୃତି ଅନ୍ୟତମ ।

ଲୁଭ୍ ସିଏନ୍ ନଦୀ କୂଳରେ ଅବସ୍ଥିତ । ଏହା ଫ୍ରାନସ୍ ରାଜାଂକର ପ୍ରାସାଦ ଥିଲା । ଏହା ୧୭ ଏକର ଜମି ଉପରେ ନିର୍ମିତ ହୋଇଛି । ଏହାର ବହୁ ସଂସ୍କରଣ ଓ ନବୀକରଣ ବିଖ୍ୟାତ ସ୍ଥପତିମାନଂକଦ୍ୱାରା ହୋଇଛି ।

**ଭାରତ ପ୍ରତ୍ୟାଗମନ :**

ପ୍ୟାରିସ୍‌ରେ ଦଶଦିନ ରହି ମୁଁ ସେପ୍‌ଟେଂବର ମାସକୁ ଭାରତ ଫେରିଆସିଲି ।

**ଅପରେସନ୍ :**

ବିଦେଶରୁ ଫେରି ମୋତେ ଏକଶିରା ଅପରେସନ୍ କରିବାକୁ ପଡ଼ିଥିଲା । କଟକ S.C.B. Medical college Hospitalରେ ନର୍ସିଂଗହୋମରେ ମୁଁ ଭର୍ତ୍ତି ହେଲି ।

ମୋର ବ୍ଲଡ୍ ସୁଗାର ବେଶି ଥିବାର ଦେଖାଗଲା । ତେଣୁ ବ୍ଲଡ୍‌ସୁଗାର ବା ରକ୍ତରେ ଥିବା ଶର୍କରା କିପରି ସ୍ୱାଭାବିକ ହେବ, ସେ ଦିଗରେ ଡାକ୍ତରମାନେ ଚିକିତ୍ସା ଆରମ୍ଭକଲେ । ମୁଁ ପ୍ରାୟ ଦେଢ଼ମାସ କାଳ ନର୍ସିଂହୋମ୍‌ରେ ରହିଥିଲି । ବ୍ଲଡ୍ ସୁଗାର ନର୍ମାଲ୍ ହେବା ପରେ ଡାକ୍ତର ଏନ୍.ସି. ପଟ୍ଟନାୟକ ମୋର ଅପରେସନ-କଲେ । ଡାକ୍ତର ନୃସିଂହ ପଟ୍ଟନାୟକ ଜଣେ କୁଶଳୀ ସର୍ଜନ ଯେ ମୋର ଅପରେସନ୍ କରିଥିଲେ । ମୁଁ ନର୍ସିଂଗହୋମ୍‌ରେ ଥିଲାବେଳେ ଡକ୍ଟର ରାଧାନାଥ ରଥ (ସମାଜ ସଂପାଦକ), ଜଷ୍ଟିସ୍ ହରିହର ମହାପାତ୍ର, ସ୍ୱାସ୍ଥ୍ୟ ଡିରେକ୍ଟର ଡାକ୍ତର ମଦନମୋହନ ପ୍ରଧାନ ପ୍ରମୁଖ ମୋତେ କେତେଥର ନର୍ସିଂଗହୋମ୍‌କୁ ଆସି ଦେଖିଯାଇଥିଲେ । ଷ୍ଟିଚ୍ ଖୋଲିଲାପରେ ମୁଁ ଘରକୁ ଫେରିଲି । ଦେଢ଼ ମାସ କାଳ ନର୍ସିଂହୋମରେ ରହି, ମୁଁ ବଡ଼ ଏକୁଟିଆ ବୋଧ କରୁଥିଲି । ନର୍ସମାନେ ମୋର ଖୁବ୍ ଯତ୍ନ ନେଉଥିଲେ ।

**ଛବିରାଣୀର ଧର୍ଷଣ ଓ ହତ୍ୟା :**

ମୁଁ ନର୍ସିଂଗହୋମ୍‌ରେ ଥିବାବେଳେ ଛବିରାଣୀର ଧର୍ଷଣ ଓ ହତ୍ୟା ମୋତେ ବଡ଼ ବ୍ୟଥିତ କରିଥିଲା । ମୁଁ ଖବରକାଗଜରୁ ତାହା ପଢ଼ି ମର୍ମନ୍ତୁଦ ଯଂତ୍ରଣା ଅନୁଭବ କରିଥିଲି । ''ଅଂଗାର'' ନାମକ ଏକ କବିତା ଲେଖି ମୋ ମର୍ମବ୍ୟଥା କିଂଚିତ୍ ପ୍ରକାଶ କରିଛି । କବିତାଟି ପ୍ରଜାତଂତ୍ର ପତ୍ରିକାର ରବିବାସରୀୟ ସାହିତ୍ୟପୃଷ୍ଠାରେ ପ୍ରକାଶପାଇଥିଲା । ଏ କବିତାର କିଛି ଅଂଶ ମୁଁ ଏଥିପୂର୍ବରୁ ଅନ୍ୟତ୍ର କରିଛି ।

# ଅଷ୍ଟଚତ୍ୱାରିଂଶ ଉଲ୍ଲାସ

## ଲଂଡନ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଓଡ଼ିଶାର ପ୍ରାଚୀନ ଚିତ୍ରକଳା ପ୍ରଦର୍ଶନୀ : ଓଡ଼ିଶାର ଲେଖକ, କଳାକାର, କ୍ରୀଡ଼ାବିତ୍ ସଂଗଠନ :

### ଲଂଡନ ବିଶ୍ୱବିଦ୍ୟାଳୟରେ ଓଡ଼ିଶୀ ଚିତ୍ରକଳା ପ୍ରଦର୍ଶନୀ :

ପୂର୍ବେ ସୂଚନା ଦେଇଛି ୧୯୮୨ ମସିହାରେ ଲଂଡନରେ ଭାରତ ଉତ୍ସବ (Festival of India) ଅନୁଷ୍ଠିତ ହେଉଥାଏ । ଭାରତ ସରକାର ବହୁ କାରୁକାର୍ଯ୍ୟପୂର୍ଣ ପ୍ରସ୍ତରମୂର୍ତ୍ତି ଓ ଅନ୍ୟାନ୍ୟ କଳାକୃତିର ଲଂଡନରେ ଏକ ପ୍ରଦର୍ଶନୀ କରୁଥାଂତି । ଲଂଡନ ବିଶ୍ୱବିଦ୍ୟାଳୟ ତାଂକ ତରଫରୁ ତାଂକର ଏକ ଅନୁଷ୍ଠାନ "School of Oriental African Studies"ରେ ଏକ ଭାରତୀୟ କଳା ପ୍ରଦର୍ଶନୀ କରିବାକୁ ସ୍ଥିରକରଂତି । ସେମାନେ ମୋତେ ଓଡ଼ିଶାର ପୋଥିଚିତ୍ର ଏବଂ ପଟଚିତ୍ରର ଏକ ପ୍ରଦର୍ଶନୀ କରିବାକୁ ଅନୁରୋଧ କଲେ । ମୁଁ ତାଂକ ପ୍ରସ୍ତାବରେ ରାଜିହୋଇଥିଲି ।

ମୁଁ ଓ ମୋ ସ୍ତ୍ରୀ ଭୂଦେବୀ ପ୍ରଦର୍ଶନୀ କରିବାକୁ ଲଂଡନ ଯିବୁ ବୋଲି କପିଳା ବାତ୍ସାୟନଂକୁ ଜଣାଇଦେଲି । ସେ ରାଜିହୋଇଗଲେ । ଭାରତ ସରକାରଂକ ତରଫରୁ ଆମ ଦୁହିଁଙ୍କର ବିମାନଯୋଗେ ଯିବାଆସିବାର ବ୍ୟବସ୍ଥା କରାଯିବ ବୋଲି ଭାରତ ସରକାରଂକର Indian Council for Cultural Relations ରାଜିହେଲେ । ଲଂଡନରେ ଆମର ଦୁଇତିନିମାସ ରହିବା ଓ ଖାଇବା ଇତ୍ୟାଦି ଖରଚ (Hospitality) ଭାରତ ସରକାର ବହନ କରିବା ପାଇଁ ମୁଁ କେଂଦ୍ର ସଂସ୍କୃତି ବିଭାଗକୁ ଅନୁରୋଧ କଲି । ମାତ୍ର ସେମାନେ ଆମର Hospitality ବାବଦ ଖରଚ ବହନ କରିବାକୁ ରାଜି ହେଲେ ନାହିଁ । ଲଂଡନରେ ଦୁଇ ତିନି ମାସ ମୁଁ ଓ ମୋ ସ୍ତ୍ରୀ ରହିବା ବହୁତ ବ୍ୟୟସାପେକ୍ଷ ବ୍ୟାପାର ଥିଲା । ତେଣୁ ମୁଁ ହତୋତ୍ସାହ ହୋଇପଡ଼ିଲି ।

ମୁଁ ଏ ବିଷୟରେ ଲଂଡନ ବିଶ୍ୱବିଦ୍ୟାଳୟ ଏବଂ ସେମାନଂକ School of Oriental and African Studiesର କର୍ତ୍ତୃପକ୍ଷଂକୁ ଆମ Hospitality ବାବଦ ଖରଚ ବହନ କରିବାକୁ ଅନୁରୋଧ କଲି । ଏହି ସ୍କୁଲର Deputy Librarian Stethen Goddard ସେମାନଂକ ଅକ୍ଷମତା ପ୍ରକାଶ କରି ପତ୍ର ଦେଲେ । ସେମାନେ ଲେଖିଲେ ସେମାନଂକର ସେପରି କୌଣସି ବ୍ୟବସ୍ଥା ନାହିଁ । ଯେ ଯାହାହେଉ ଆମ ଝିଅ ଜ୍ୱାଇଁ ମଂଜୁଶ୍ରୀ ଓ ପ୍ରଶାଂତ ରାଉତ ଲଂଡନରେ Illfordରେ ନିଜ ଘରେ ରହୁଥିଲେ । ସେମାନେ ଆମକୁ ତାଂକ ଘରେ ରହିବା ପାଇଁ ଟେଲିଫୋନ୍‌ରେ ଅନୁରୋଧକଲେ । ଆମେ ତାଂକ ଘରେ ରହିବୁ ବୋଲି ସମ୍ମତି ଜଣାଇଲୁ ।

ମୁଁ ଏ ପ୍ରଦର୍ଶନୀ ବାବଦରେ ଆନୁଷଂଗିକ ଖରଚ ଆଦି ବହନ କରିବାକୁ ମୋତେ ଉପଯୁକ୍ତ ଅର୍ଥ ସାହାଯ୍ୟ ଦେବା ପାଇଁ ଓଡ଼ିଶା ସରକାରଂକୁ ଅନୁରୋଧ କରିଥିଲି । ମୁଖ୍ୟମଂତ୍ରୀ ଜାନକୀବାବୁଂକୁ ମଧ୍ୟ ସାକ୍ଷାତ କରି ଏ ବିଷୟ ଜଣାଇଥିଲି । ମାତ୍ର ଓଡ଼ିଶା ସରକାର କିଛି ଆର୍ଥିକ ସାହାଯ୍ୟ ଦେଲେନାହିଁ ।

ଲଂଡଂନ କଳା ପ୍ରଦର୍ଶନୀ ସଂପର୍କୀୟ ନିମଂତ୍ରଣ ପତ୍ରର ପ୍ରତିଲିପି ଦିଆଗଲା ।

**UNIVERSITY OF LONDON**

SCHOOL OF ORIENTAL & AFRICAN STUDIES &
FESTIVAL OF INDIA

An Exhibition of Orissan Palm-Leaf Illustrations and Canvas Paintings – 6th May,10th June 1982

Arranged by Dr. Sachi Raut-Roy (Former President of Orissa Sahitya Akademi) and Mr. Stephen Goddard (Deputy Librarian, School of Oriental & African Studies)

Presented with the kind assistance of the Government of India and the Visiting Arts Unit of Great Britain.

**ଦିଗଂତ ମିଉଜିୟମ୍ ନ୍ୟାସନାଲ୍ ମିଉଜିୟମକୁ ହସ୍ତାଂତର :**

ଦିଗଂତ ମିଉଜିୟମ୍ ମୋ ମୁଂଡ ଉପରେ ଏକ ବଡ଼ ଭାର ହୋଇ ରହିଥିଲା । ଏହା ମୋ ବାସଭବନରେ ଦୁଇଟି ବଖରା ଏବଂ ସାମନା ବାରଂଡାର ବହୁ ଅଂଶ ପ୍ରାୟ ୧୫ବର୍ଷ କାଳ ଅଧିକାର କରି ବସିଥିଲା । ଏହି ଦୁଇଟି ବଖରା ଭଡ଼ାଦେଇଥିଲେ ମୁଁ ମାସକୁ ୧୫୦୦ ଟଂକା ଭଡ଼ା ପାଇଥାଂତି । ତାଛଡ଼ା ମୋ ପାଖରେ ଯେଉଁ ସାତ ଆଠଟି ବହୁ ବର୍ଣ ଚିତ୍ର ଶୋଭିତ ପୋଥି ଥିଲା ସେଗୁଡ଼ିକ ସାରା ଓଡ଼ିଶାରେ ଉତ୍କୃଷ୍ଟଧରଣର ଚିତ୍ରପୋଥି ବୋଲି ବିବେଚିତ ହେଉଥିଲା । ସେହି ସଚିତ୍ର ପୋଥିଗୁଡ଼ିକ ବିଷୟରେ ମୁଁ ଆଗରୁ ସୂଚନା ଦେଇଛି । ସେହି ପୋଥିଚିତ୍ରଗୁଡ଼ିକର ରକ୍ଷଣାବେକ୍ଷଣ ବହୁ ବ୍ୟୟସାପେକ୍ଷ । ପୋଥିଚିତ୍ର ଗୁଡ଼ିକର ବର୍ଣ ବା Colour tone ରକ୍ଷା କରିବାକୁ ହେଲେ ଶୀତତାପ ନିଂୟତ୍ରିତ ଘର ଦରକାର । ତେଣୁ ସେଗୁଡ଼ିକର ବର୍ଣବିଭବ ଅକ୍ଷୁଣ୍ଣ ରଖିବା ମୋ ପକ୍ଷରେ ପ୍ରାୟ ଅସଂଭବ ଥିଲା । ମୋ ପାଖରେ ଥିବା ଚିତ୍ରପୋଥିଗୁଡ଼ିକ, ଯଥା – ''ଲାବଣ୍ୟବତୀ'', ''ତ୍ରିଭୁବନ ସୁଂଦରୀ'' ''ଚିତ୍ରକାବ୍ୟ ବଂଧୋଦୟ'' ପ୍ରଭୃତିର ପ୍ରାୟ ଦେଢ଼ ଶହ ରଂଗିନ୍ ସ୍ଲାଇଡ୍ ମୁଁ କରାଇଥିଲି । ସେଗୁଡ଼ିକର ପ୍ରଦର୍ଶନୀ ବା ସ୍ଲାଇଡ୍ ଶୋ ପ୍ୟାରିସ୍‌ରେ UNESCO, ମସ୍କୋ ବିଶ୍ୱବିଦ୍ୟାଳୟ, ପୋଲାଂଡର ରାଜଧାନୀ ୱାରସର ୨ଟି ବିଶ୍ୱବିଦ୍ୟାଳୟ ଏବଂ ମୈତ୍ରୀ ସଂସଦ ଏବଂ ଚେକୋସ୍ଲୋଭାକିଆର କେତୋଟି ବିଶ୍ୱବିଦ୍ୟାଳୟ ଏବଂ ସାଂସ୍କୃତିକ ଅନୁଷ୍ଠାନରେ ଏବଂ ଲଂଡନ ବିଶ୍ୱବିଦ୍ୟାଳୟରେ ପ୍ରଦର୍ଶନ କରାଇଥିଲି । ମାତ୍ର ମୂଳପୋଥି ଚିତ୍ରଗୁଡ଼ିକ କିପରି ସୁରକ୍ଷିତ ରହିବ ସେ ଚିଂତା ସବୁବେଳେ ମୋ ମୁଂଡକୁ ଘାରୁଥାଏ ।

୧୯୮୧ ମସିହା ପ୍ରାରଂଭରେ କେଂଦ୍ର ସରକାରଂକ ସଂସ୍କୃତି ପରାମର୍ଶଦାତା ଶ୍ରୀମତୀ କପିଳା ବାତ୍ସାୟନ ଏବଂ ଦିଲ୍ଲୀସ୍ଥ ଜାତୀୟ ମିଉଜିୟମ୍‌ର ସର୍ବୋଚ୍ଚ ନିର୍ଦ୍ଦେଶକ ଏବଂ ଭାରତ ସରକାରଂକ କଳା ଓ ସଂସ୍କୃତି ବିଭାଗର ପରାମର୍ଶଦାତା ମୋ କଟକସ୍ଥିତ ମିଶନରୋଡ୍ ବାସଭବନକୁ ଆସିଥିଲେ । କପିଳା ବାତ୍ସାୟନ ପ୍ରଖ୍ୟାତ ଆଧୁନିକ ହିଂଦୀ କବି ସଚ୍ଚିଦାନଂଦ ବାତ୍ସାୟନ (ଅଜ୍ଞେୟ) ସହଧର୍ମିଣୀ । ଦିଗଂତ ମିଉଜିୟମ୍‌କୁ ଏବଂ ସେଥିରେ ଥିବା ଚିତ୍ରପୋଥିଗୁଡ଼ିକୁ ଜାତୀୟ ମିଉଜିୟମ୍‌କୁ ଦେବା ପାଇଁ ଅନୁରୋଧ କରିଥିଲେ । ମୁଁ ଏବଂ ମୋ ସ୍ତ୍ରୀ ସେମାନଂକ ପ୍ରସ୍ତାବରେ ରାଜିହୋଇଥିଲୁ, କାରଣ ମୋ ସଂଗୃହୀତ ଚିତ୍ରପୋଥି ଓ ପ୍ରାଚୀନ କଳାଦ୍ରବ୍ୟଗୁଡ଼ିକର ସୁରକ୍ଷା ପାଇଁ ଏହା ନିତାଂତ ଆବଶ୍ୟକ ଥିଲା । ମୋ ଦ୍ୱାରା ସଂଗୃହୀତ ସମସ୍ତ କଳାକୃତି ଓ ଚିତ୍ରପୋଥିଗୁଡ଼ିକ ମୁଁ ନ୍ୟାସନାଲ୍ ମିଉଜିୟମ୍‌କୁ ଦେଇଦେଲି । ସେମାନଂକ ସହିତ ସର୍ତ୍ତ ଥିଲା ଯେ ମୁଁ ଭାରତରେ ବା ଭାରତ ବାହାରେ ବିଭିନ୍ନ ଦେଶରେ କଳାପ୍ରଦର୍ଶନୀ କଲାବେଳେ ସେମାନେ ଚିତ୍ରପୋଥିଗୁଡ଼ିକ ଆମ ଖରଚରେ ସେଠାକୁ ପଠାଇବେ । ଆମେ ତହିଁର ଇନ୍‌ସ୍ୟୁରାନ୍ସ ଖରଚ ଏବଂ ଅନ୍ୟ ସମସ୍ତ ଆନୁଷଂଗିକ ଖରଚ ବହନ କରିବୁ । ଏହି ସର୍ତ୍ତରେ ମୁଁ ସେମାନଂକୁ ମୋର ସମସ୍ତ ଚିତ୍ରପୋଥି ଓ ଶିଳ୍ପସାମଗ୍ରୀ (ଯଥା – ମୂର୍ତ୍ତି ଶିଳା, ଲିପି) ଇତ୍ୟାଦି ହସ୍ତାଂତର କରିବାକୁ ରାଜିହେଲି । ସେମାନେ ସେ ସମସ୍ତ ପ୍ରତ୍ନଦ୍ରବ୍ୟଗୁଡ଼ିକ ତାଂକ ଲୋକଦ୍ୱାରା ପ୍ୟାକ୍ କରାଇ ଗୋଟିଏ ଲରୀରେ ଦିଲ୍ଲୀ ନେଇଗଲେ ।

ସେମାନେ ମୋତେ କଥା ଦେଇଥିଲେ ଯେ ମୋର ସମସ୍ତ ସଂଗ୍ରହକୁ ସେମାନେ ଗୋଟିଏ ସ୍ଥାନରେ ରଖି ତାହାକୁ ମୋ ନାମରେ ନାମିତ କରିବେ । ଯଥା – (Sacchi Rout Roy Collections)

**ଜାତୀୟ ମିଉଜିୟମର ପ୍ରତିଶ୍ରୁତିଭଂଗ :**

ଏହାପରେ ଆହୁରି ଏକ ଅସୁବିଧା ଦେଖାଦେଲା । ଦିଗଂତ ମିଉଜିୟମ୍ ଜାତୀୟ ମିଉଜିୟମ୍‌କୁ ହସ୍ତାଂତର କଲାବେଳେ ମୁଁ ସର୍ତ୍ତ ରଖିଥିଲି ଯେ ମୁଁ ଭାରତ ବା ବିଦେଶରେ ପ୍ରଦର୍ଶନୀ କଲାବେଳେ ସେମାନେ ମୋ ଠାରୁ ନେଇଥିବା ଚିତ୍ରପୋଥିଗୁଡ଼ିକ ଏବଂ କେତେକ ଶିଳ୍ପସାମଗ୍ରୀ ମୋ ଖରଚରେ ପଠାଇବେ । ଏହାପରେ ଲଂଡନ ବିଶ୍ୱବିଦ୍ୟାଳୟଂକ ଅନୁରୋଧ କ୍ରମେ ସେଠାରେ ଓଡ଼ିଶାର ପଟଚିତ୍ର ଓ ପୋଥିଚିତ୍ରର ଏକ ପ୍ରଦର୍ଶନୀ କରିବାପାଇଁ ମୁଁ ରାଜିହେଲି । ମୁଁ ଦିଲ୍ଲୀ ଜାତୀୟ ମିଉଜିୟମ୍‌କୁ ଚିତ୍ରପୋଥି ଓ ପଟଚିତ୍ରଗୁଡ଼ିକ ଆମ ଖରଚରେ ପଠାଇବା ପାଇଁ ଅନୁରୋଧ କରି ପତ୍ର ଲେଖିଲି । ସମସ୍ତ ଖରଚ ଲଂଡନ ବିଶ୍ୱବିଦ୍ୟାଳୟ ବହନ କରିବ ବୋଲି ମୁଁ ସେମାନଂକୁ ଲେଖିଥିଲି । ଏହାର ଇନ୍‌ସ୍ୟୁରାନ୍‌ସ୍ ଖରଚ ଏବଂ ନେବାଆଣିବା ଖରଚ ମୁଁ ବା ସଂପୃକ୍ତ ଅନୁଷ୍ଠାନ ବହନ କରିବୁ ବୋଲି ଜଣାଇଥିଲୁ । ତେଣୁ ମୁଁ ଦିଲ୍ଲୀ ଜାତୀୟ ମିଉଜିୟମ୍‌କୁ ଲଂଡନ ବିଶ୍ୱବିଦ୍ୟାଳୟଂକ School of Oriental and African Studiesକୁ ପୋଥିଚିତ୍ର ଓ ପଟଚିତ୍ରଗୁଡ଼ିକ ପଠାଇଦେବାକୁ ଅନୁରୋଧ କଲି । ସମସ୍ତ ଖରଚ ଏହି ଲଂଡନ

ଅନୁଷ୍ଠାନ ବହନ କରିବେ ବୋଲି ସେମାନେ ଦିଲ୍ଲୀସ୍ଥ ଜାତୀୟ ସଂଗ୍ରହାଳୟ କର୍ତ୍ତୃପକ୍ଷଂକୁ ଜଣାଇଲେ । ମାତ୍ର କିଛି ଫଳ ହେଲା ନାହିଁ । ଜାତୀୟ ସଂଗ୍ରହାଳୟ ମୋ ଚିତ୍ରପୋଥି ଓ ପଟଚିତ୍ରଗୁଡ଼ିକ ଲଂଡନ ପଠାଇବା ବିଷୟରେ ସଂପୂର୍ଣ ନୀରବ ରହିଲେ । ମୁଁ ବାରଂବାର ଚିଠି ଦେଇ କୌଣସି ଅନୁକୂଳ ଜବାବ ପାଇଲି ନାହିଁ । ଜାତୀୟ ମିଉଜିୟମ୍ ତାଂକର ପ୍ରତିଶ୍ରୁତି ଭଂଗ କରିବେ ବୋଲି ମୁଁ ପୂର୍ବରୁ କଳ୍ପନା କରିନଥିଲି । ଏହିପରି ନାନା ପ୍ରତିକୂଳ ଅବସ୍ଥା ଭିତରେ ମୁଁ ଲଂଡନ ବିଶ୍ୱବିଦ୍ୟାଳୟଂକ ସ୍କୁଲ ଅଫ୍ ଓରିଏଂଟାଲ୍ ଆଂଡ ଆଫ୍ରିକାନ୍ ଷ୍ଟଡିସ୍‌ରେ ଓଡ଼ିଶାର ପୋଥିଚିତ୍ର ଓ ପଟଚିତ୍ରର ଏକ ପ୍ରଦର୍ଶନୀ ୧୯୮୨ ମସିହା ମଇମାସ ୬ ତାରିଖରେ ଆରଂଭ କରିଥିଲି । ଏହି ସ୍କୁଲର Director, Prof. C.D. Cowan ପ୍ରଦର୍ଶନୀ ଉଦ୍‌ଘାଟନ କରିଥିଲେ । ଏହି ପ୍ରଦର୍ଶନୀ ମଇ ୬ ତାରିଖରୁ June 10 ତାରିଖ ପର୍ଯଂତ ଚାଲିବ ବୋଲି ନିମଂତ୍ରଣ ପତ୍ରରେ ଲେଖାଥିଲା । ମାତ୍ର ଏହାପରେ ଆଉ ଦୁଇମାସ ବଢ଼ାଇ ଦିଆଗଲା । ଏହାର ଲୋକପ୍ରିୟତା ଯୋଗୁଁ ଆଉ ଦୁଇମାସ ବଢ଼ାଇଦିଆଯାଇଥିଲା ।

**ପ୍ରଦର୍ଶନୀ ଉଦ୍‌ଘାଟନ :**

ସ୍କୁଲ ଅଫ୍ ଓରିଏଂଟାଲ୍ ଆଂଡ ଆଫ୍ରିକାନ ଷ୍ଟଡିଜ୍‌ର ଡିରେକ୍‌ଟର C.D. Cowan ପ୍ରଦର୍ଶନୀ ଉଦ୍‌ଘାଟନ କରି ତାଂକ ଭାଷଣରେ କହିଥିଲେ ଯେ, ଭାରତର କଳା ଓ ସଂସ୍କୃତି ବିଶ୍ୱବିଖ୍ୟାତ । ଇଂଲଡବାସୀମାନଂକୁ ସେଥିର କେତେକ ନମୁନା ଦେଖିବାର ଅପୂର୍ବ ସୁଯୋଗ ଦେବା ପାଇଁ ଭାରତ ସରକାର ଲଂଡନରେ ଭାରତ ଉତ୍ସବର ଆୟୋଜନ କରିଛଂତି । ଏହା ଖୁବ୍ ଲୋକପ୍ରିୟ ହୋଇଛି । ଆମ ଲଂଡନ ବିଶ୍ୱବିଦ୍ୟାଳୟ ସେ ଦିଗରେ ତାଂକର ଭୂମିକା ପାଳନ କରିବା ପାଇଁ ଏହି ସ୍କୁଲରେ ଓଡ଼ିଶୀ ଚିତ୍ରକଳାର ଏକ ପ୍ରଦର୍ଶନୀର ଆୟୋଜନ କରିଛଂତି । ଏହା ମଧ୍ୟ ବିଶେଷ ଜନପ୍ରିୟ ହେବ ବୋଲି ଆଶାକରାଯାଏ । ଏ ଦିଗରେ ଆମକୁ ଓଡ଼ିଶା ସାହିତ୍ୟ ଏକାଡେମୀର ପ୍ରାକ୍ତନ ସଭାପତି ଡ. ସଚ୍ଚି ରାଉତରାୟ ନିଜର ସଂଗୃହୀତ ପୋଥିଚିତ୍ରର କେତେକ ସୁନିର୍ବାଚିତ ଅଂଶ ଆମର ଅନୁରୋଧ ରକ୍ଷାକରି ଏଠାରେ ପ୍ରଦର୍ଶନ କରିଛଂତି । ତାଂକଠାରେ ଆମ ସ୍କୁଲ୍ ଅଫ୍ ଓରିଏଂଟାଲ୍ ଆଂଡ ଆଫ୍ରିକାନ୍ ଷ୍ଟଡିଜ୍ ଏବଂ ଲଂଡନ ବିଶ୍ୱବିଦ୍ୟାଳୟ ବିଶେଷଭାବେ କୃତଂଗ୍ୟ । ଶ୍ରୀମତୀ ଭୂଦେବୀ ରାଉତରାୟ ଏଠାକୁ ଆସି ଏହି ପ୍ରଦର୍ଶନୀ କରିବାରେ ବିଶେଷ ସାହାଯ୍ୟ କରିଛଂତି । ଆମେ ତାଂକୁ ତାକଂର ସାହାଯ୍ୟ ପାଇଁ ବିଶେଷ ଧନ୍ୟବାଦ ଦେଉଁଛୁ । ଏହି ପ୍ରାଚୀନ କଳା ପ୍ରଦର୍ଶନୀ ଓଡ଼ିଶା ଓ ଭାରତର ମହାନ୍ ସଂସ୍କୃତିର ପରିଚାୟକ । ଲଂଡନର କଳାପ୍ରିୟ ବିଧଗ୍‌ଧମଂଡଳୀ ଏହା ଦେଖି ନିଶ୍ଚୟ ଆନଂଦିତ ଓ ଉପକୃତ ହେବେ । ଏଠାରେ ଉପସ୍ଥିତ ଦର୍ଶକ ଓ ନିମଂତ୍ରିତ ଅତିଥିମାନଂକୁ ମୁଁ ଉଦ୍‌ଘାଟନ ଉତ୍ସବ ପରେ ବଂଧୁମିଳନରେ ଯୋଗ ଦେବାପାଇଁ ଅନୁରୋଧ କରୁଛି ।

ସ୍କୁଲର ଡେପୁଟି ଲାଇବ୍ରେରିଆନ୍ ଷ୍ଟିଫେନ୍ ଗୋଡ୍ରାଡ୍ ତାଂକ ଭାଷଣରେ ସେ ଇଂଲଡ ଓ ଭାରତ ମଧ୍ୟରେ ସାଂସ୍କୃତିକ ଆଦାନ ପ୍ରଦାନ ବୃଦ୍ଧିକରିବା ଦିଗରେ ଏ

ପ୍ରଦର୍ଶନୀ ସହାୟକ ହେବ ବୋଲି ଆଶା ପ୍ରକାଶ କରିଥିଲେ । ସେ କହିଥିଲେ ଭାରତ ଏବଂ ଓଡ଼ିଶାର ସାଂସ୍କୃତିକ ଐତିହ୍ୟ, ଯଥା ଶିଳ୍ପକଳା ଓ ସାହିତ୍ୟ ପ୍ରଭୃତି ଅତି ଉଚ୍ଚକୋଟୀର । ଏହି ଦିଗରେ ଅନ୍ୟତ୍ର ଚାଲିଥିବା ଭାରତ ଉତ୍ସବ ଏବଂ ତାହାର ଏକ ଅଂଶସ୍ୱରୂପ ଏହି ପ୍ରଦର୍ଶନୀ ବିଶେଷ ଭାବରେ ସ୍ୱାଗତଯୋଗ୍ୟ । ଆମ୍ଭେମାନେ ମିଃ ଏବଂ ମିସେସ୍ ରାଉତ୍‌ରାୟଙ୍କ ନିକଟରେ ଗଭୀର କୃତଂଗ୍ୟତା ପ୍ରଦର୍ଶନ କରୁଛୁ ।

**ମୋର ଭାଷଣ :**

ମୁଁ ଏହି ପ୍ରଦର୍ଶନୀର ଉଦ୍‌ଘାଟନ ଉତ୍ସବରେ ଭାଷଣ ଦେଇ ଇଂଲଂଡ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ମିଃ Cowan ଓ ମିଃ ଗୋଡ୍ରାଡ୍‌ଙ୍କୁ ଆଂତରିକ ଧନ୍ୟବାଦ ଦେଇଥିଲି । ମୁଁ କହିଥିଲି ଯେ ଏହା ଇଂଲଡରେ ପ୍ରଥମ ପ୍ରାଚୀନ ଉତ୍କଳ ଚିତ୍ରକଳା ପ୍ରଦର୍ଶନୀ ବୋଲି କୁହାଯାଇପାରେ । ଏହା ସ୍ୱତନ୍ତ୍ର ଭାବରେ ଏବଂ ଏକକ ଉଦ୍ୟମରେ ଅନୁଷ୍ଠିତ ହେଉଥିଲେ ମଧ୍ୟ ଲଂଡନରେ ଚାଲିଥିବା ଭାରତ ଉତ୍ସବର ଏକ ପରିପୂରକ ଅଂଗ ରୂପେ ଏହା ଗୁରୁତ୍ୱପୂର୍ଣ୍ଣ । ପ୍ରାଚୀନ ଉତ୍କଳର ଚିତ୍ରକଳା ଏହାର ଭାସ୍କର୍ଯ ଓ ଶିଳ୍ପକଳାପରି ମହନୀୟ ଓ ଉଚ୍ଚକୋଟୀର ମାନସ ସପଂଦ ରୂପେ ସ୍ୱୀକୃତ ହୋଇଛି । ପ୍ରଥମ ଅବସ୍ଥାରେ କେତେକ ବ୍ରିଟିଶ୍ କଳା ସମୀକ୍ଷକ ଭାରତୀୟ ଶିଳ୍ପକଳାକୁ ପ୍ରଶଂସା କରିବା ପରିବର୍ତ୍ତେ ନିଂଦା କରିଛଂତି । ଜଣେ ବ୍ରିଟିଶ୍ ସମୀକ୍ଷକ ଭାରତର ବୁଦ୍ଧ ମୂର୍ତ୍ତିକୁ ପୁଂଡିଂଗ୍ ସହିତ ତୁଳନା କରିଥିଲେ । ମାତ୍ର କ୍ରମେ ସେମାନଂକର ଦୃଷ୍ଟିକୋଣ ପରିବର୍ତ୍ତିତ ହୋଇଛି । ସେମାନେ ଭାରତୀୟ ଶିଳ୍ପକଳାକୁ ଉଚ୍ଚ ପ୍ରଶଂସା କରିଯାଇଛଂତି । ଭୁବନେଶ୍ୱରର ମୁକ୍ତେଶ୍ୱର ତୋରଣକୁ ଭାରତୀୟ ସ୍ଥାପତ୍ୟର ରତ୍ନ ବୋଲି ଫର୍ଗୁସନ ବର୍ଣ୍ଣନା କରିଛଂତି । ସଂପ୍ରତି ବ୍ରିଟିଶ୍ ମିଉଜିୟମର ଜଣେ କ୍ୟୁରେଟର ମିଃ ଲଷ୍ଟି ଓଡ଼ିଶାର ପୋଥିଚିତ୍ର ଉପରେ ଖଂଡିଏ ପୁସ୍ତକ ଲେଖି ଏହାର ବୈଶିଷ୍ଟ୍ୟ ଓ ଉତ୍କର୍ଷ ପ୍ରତିପାଦନ କରିଛଂତି । ଉଦ୍‌ଘାଟନ ଉତ୍ସବ ପରେ School of Oriental and African Studies ଆନୁକୂଲ୍ୟରେ ଏକ ବଂଧୁମିଳନର ବ୍ୟବସ୍ଥା କରାଯାଇଥିଲା । ଏଥିରେ ପ୍ରାୟ ତିନିଶହ ଦର୍ଶକ, ଅଧ୍ୟାପକ ଅଧ୍ୟାପିକା ଓ ବିଶ୍ୱବିଦ୍ୟାଳୟ ଛାତ୍ରଛାତ୍ରୀ ଏବଂ ସାଂବାଦିକ ଓ ଲେଖକ ଲେଖିକା ଯୋଗଦେଇଥିଲେ । ବଂଧୁମିଳନରେ ଜଳଯୋଗ ଓ ପାନୀୟ ଇତ୍ୟାଦି ପରିବେଷଣ କରାଯାଇଥିଲା ।

ଏହି ପ୍ରଦର୍ଶନୀ ଏକ ମାସ ଚାଲିବା ପରେ ଏହାର ସମୟ ଆହୁରି ଦେଢ଼ମାସ ବଢ଼ାଇ ଦିଆଯାଇଥିଲା । ଏହା ବିଶେଷ ଲୋକପ୍ରିୟ ହୋଇଥିଲା । ଏହି ପ୍ରଦର୍ଶନୀ ପରେ ମିଃ ଗୋଡ୍ରାଡ୍ ଇଲ୍‌ଫୋର୍ଡ଼ଠାରେ ସାଧାରଣ ଲାଇବ୍ରେରିରେ ଏହି ପୋଥିଚିତ୍ର ଓ ପଟଚିତ୍ର ଗୁଡ଼ିକର ଆଉ ଏକ ପ୍ରଦର୍ଶନୀର ଆୟୋଜନ କରିଥିଲେ । ସେଠାରେ ଏହା ଏକମାସ ଚାଲିଥିଲା । ଅନ୍ୟ କେତେକ ବିଶ୍ୱବିଦ୍ୟାଳୟ ଏହି ପ୍ରଦର୍ଶନୀ କରିବାକୁ ଆଗ୍ରହୀ ଥିଲେ । ମାତ୍ର ଆମେ ଏତେଦିନ ଲଂଡନରେ ରହିବା ସଂଭବ ନଥିଲା । ତେଣୁ ଆମେ ସେସବୁ ପ୍ରସ୍ତାବ ଗ୍ରହଣ କରିପାରିନଥିଲୁ ।

## ଓଡ଼ିଶା ରାଜ୍ୟ ଲେଖକ, କଳାକାର ଓ କ୍ରୀଡ଼ାବିତ୍ ସଂଗଠନ :

ଓଡ଼ିଶାକୁ ଫେରି ମୋ ଉଦ୍ୟମରେ ଓଡ଼ିଶା ରାଜ୍ୟ ଲେଖକ, କଳାକାର, କ୍ରୀଡ଼ାବିତ୍ ସଂଗଠନ ଗଠିତ ହୋଇଥିଲା । ଏହା Society Act ଅନୁସାରେ ରେଜିଷ୍ଟ୍ରୀ ହୋଇଥିଲା । ଓଡ଼ିଶାର ବରେଣ୍ୟ ଲେଖକ ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ ଏହାର ସଭାପତି ଥିଲେ । ମୁଁ ଥିଲି ଏହି ସଂଗଠନର କାର୍ଯକାରୀ ସଭାପତି । ସଂଗଠକ ସଂପାଦକ ଥିଲେ ଢେଙ୍କାନାଳ ଅଶୋକ କୁମାର ରାୟ । ଏହି ସଂଗଠନର ବୈଠକ ମୋର ମିଶନରୋଡ଼ସ୍ଥ ବାସଭବନରେ ଏବଂ କେବେ କାଳିନ୍ଦୀବାବୁଙ୍କ ଘରେ ନିୟମିତ ବସୁଥିଲା । ପରେ ଏଥିରେ ବହୁ ଲେଖକ ଲେଖିକା, କ୍ରୀଡ଼ାବିତ୍, କଳାକାର ଯଥା ଅଭିନେତା, ସଂଗୀତ ଶିଳ୍ପୀ ଓ ଚିତ୍ରଶିଳ୍ପୀ ପ୍ରଭୃତି ଯୋଗ ଦେଉଥିଲେ । କାଳିନ୍ଦୀଚରଣ ପାଣିଗ୍ରାହୀ, ଡକ୍ଟର କୁଂଜବିହାରୀ ଦାସ, ବିନୟ କୁମାର ବସୁ, ଅଭିନେତା ପୁରଂଜନରାୟ ଓ କାର୍ତ୍ତିକ କୁମାର ଘୋଷ, ଶ୍ରୀଧର ମହାପାତ୍ର, ଉଦୟନାଥ ଷଡଂଗୀ, ଗୋବିନ୍ଦଚନ୍ଦ୍ର ପାତ୍ର ପ୍ରଭୃତି ସଂଗଠନ ବୈଠକରେ ଯୋଗଦେଇ ଆଲୋଚନାରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । କେବେ କେବେ ବୈଠକ ପରେ କେତେକ ସଂଗୀତଶିଳ୍ପୀ ସଂଗୀତ ପରିବେଷଣ କରୁଥିଲେ । ବିନୟ ଘୋଷ ଜଣେ ପ୍ରଖ୍ୟାତ ମେଜିସିୟାନ୍ ଥିଲେ । ସେ ଦୁଇତିନିଥର ବୈଠକ ପରେ ମ୍ୟାଜିକ୍ ପ୍ରଦର୍ଶନ କରିଥିଲେ । ଏହି ସଂଗଠନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଂକର ସ୍ୱାର୍ଥରକ୍ଷା । ସେମାନଂକର ମାସିକ ପେନ୍‌ସନ୍ ହାର ସର୍ବନିମ୍ନ ଦୁଇଶହଟଂକାରୁ ତିନିଶହ ଟଂକାକୁ ବୃଦ୍ଧି କରିବା ପାଇଁ ସଂଗଠନ ପ୍ରସ୍ତାବ ଗ୍ରହଣ କରିଥିଲା ଏବଂ ସେଦିଗରେ ପ୍ରବଳ ଆଂଦୋଳନ ଚଳାଇଥିଲା । ଓଡ଼ିଶା ସରକାର ଗତ କେତେ ବର୍ଷ ହେଲା ମାସିକ ତିନିଶହ ଟଂକାରୁ ପାଂଚଶହ ପର୍ଯଂତ ପେନ୍‌ସନ୍ ଦେଇ ଆସୁଛଂତି । ପ୍ରଥମ ପର୍ଯାୟରେ ପ୍ରାୟ ୧୮୫ ବ୍ୟକ୍ତି ଏ ପେନ୍‌ସନ୍ ପାଇଥିଲେ । ବର୍ତ୍ତମାନ ପ୍ରାୟ ୧୦୦୦ ବ୍ୟକ୍ତି ପେନ୍‌ସନ୍ ପାଇଲେଣି । ବହୁ ବର୍ଷ ପରେ ସରକାର ସର୍ବନିମ୍ନ ପେନ୍‌ସନ୍ ହାର ମାସିକ ତିନିଶହ ଟଙ୍କାକୁ ବୃଦ୍ଧିକରିଥିଲେ । ସଂଗଠନର ପ୍ରଥମ ବୈଠକ ମିଶନ୍‌ରୋଡ଼ସ୍ଥିତ ଦିଗଂତ ପତ୍ରିକା ଅଫିସ୍‌ରେ ୩.୧୦.୮୨ ତାରିଖରେ କାଳିଂଦୀଚରଣ ପାଣିଗ୍ରାହୀଂକ ସଭାପତିତ୍ୱରେ ବସିଥିଲା । ଏଥିରେ ଡ. ସଚ୍ଚିଦାନଂଦ ରାଉତରାୟ ସଂଗଠନର ଉଦ୍ଦେଶ୍ୟ ଓ କାର୍ଯକ୍ରମ ବିଷୟରେ ସୂଚନା ଦେଇଥିଲେ । ସେ କହିଥିଲେ ଯେ ସେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଥିବାବେଳେ ମେ ୨୧/୧୦/୧୯୭୮ ତାରିଖରେ ଅନୁଷ୍ଠିତ ସାଧାରଣ କାଉନ୍‌ସିଲ୍ ବୈଠକରେ ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଂକୁ ପେନ୍‌ସନ୍ ଦେବାପାଇଁ ଆଣିଥିବା ପ୍ରସ୍ତାବ ଓଡ଼ିଶାର ରାଜ୍ୟ ସରକାର ଗ୍ରହଣକରିନେଇଥିବା ଅତ୍ୟଂତ ଆନଂଦର କଥା । ୧୭.୪.୮୨ ତାରିଖରେ ରାଜ୍ୟ ସରକାର ୧୮୫ ଜଣ କୃତୀଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଂକୁ ୫୦୦ ଟଂକା ପର୍ଯଂତ ପେନ୍‌ସନ୍ ଦେଇ ଆସୁଛଂତି । କ୍ରୀଡ଼ାବିତ୍‌ମାନଂକ ମଧ୍ୟରେ ଜର୍ଜ ପଟ୍ଟନାୟକଂକୁ ଏବଂ ସଂଗୀତଜ୍ଞ ନିମାଇ ହରିଚଂଦନଂକୁ ମାସିକ ୫୦୦

ଟଂକା କରି ପେନ୍‌ସନ୍ ଦିଆଯାଉଛି । କଳାକାରମାନଂକ ମଧ୍ୟରେ ନୃତ୍ୟଶିଳ୍ପୀ, ଅଭିନେତା, ଅଭିନେତ୍ରୀ, ସଂଗୀତଜ୍ଞ, ସ୍ଥପତି, ଚିତ୍ରଶିଳ୍ପୀ, କାଷ୍ଠଶିଳ୍ପୀ (ବଢ଼େଇ), କମାର ପ୍ରଭୃତି ଅଂତର୍ଗତ ଅଛଂତି । ସଚ୍ଚି ରାଉତରାୟ ପୁଣି କହିଥିଲେ ଯେ ଏହି ପେନ୍‌ସନ୍ କେବଳ ୬୦ ବର୍ଷ କିଂବା ତହିଁରୁ ଉର୍ଦ୍ଧ୍ୱ ବୟସ୍କ ବ୍ୟକ୍ତିମାନଂକୁ ଦିଆଯାଉଛି । ଏହି ବୟସସୀମା ୫୦ ବର୍ଷକୁ କମେଇ ଦବା ପାଇଁ ଆମେ ଦାବି କରିଛୁ । ଏହାଛଡ଼ା ସର୍ବନିମ୍ନ ପେନ୍‌ସନ୍ ହାର ମାସକୁ ୩୦୦ ଟଂକାକୁ ବୃଦ୍ଧି କରାଯିବ ବୋଲି ଆମେ ଦାବି କରିଆସୁଛୁ । ରାଜ୍ୟର ବିଶିଷ୍ଟ ନେତୃବୃନ୍ଦ ଦଳମତ ନିର୍ବିଶେଷରେ ଆମକୁ ସମର୍ଥନ କରିଛଂତି ଏବଂ ଆମ ଦାବିପତ୍ରରେ ସ୍ୱାକ୍ଷର କରିଛଂତି । ଦାବିପତ୍ର ୧୦.୩.୧୯୮୧ ଏବଂ ଏ ବର୍ଷ ମଧ୍ୟ ୩.୫.୮୨ ତାରିଖରେ ପ୍ରକାଶିତ ହୋଇଛି । ତୁଂଗ ନେତୃବୃଂଦ ମିଳିତ ବିବୃତି ଜରିଆରେ ଆମକୁ ସମର୍ଥନ କରି ଏଥିରେ ସ୍ୱାକ୍ଷର କରିଛଂତି । ଓଡ଼ିଶାର ଅନ୍ୟୂନ ୫୦୦ କୃତୀ କଳାକାର ଲେଖକ ଓ କ୍ରୀଡ଼ାବିତ୍‌ଙ୍କୁ ପେନ୍‌ସନ୍ ଦିଆଯାଉ ବୋଲି ଆମେ ଏବଂ ବିଶିଷ୍ଟ ବ୍ୟକ୍ତିମାନେ ଦାବି କରିଆସୁଛୁ । ମାତ୍ର ରାଜ୍ୟ ସରକାର ୧୮୫ ଜଣ ବ୍ୟକ୍ତିଂକୁ ମାସିକ ୨୦୦ ଟଙ୍କାରୁ ୫୦୦ ଟଂକା ହାରରେ ୬୦ ବର୍ଷ ବୟସରୁ ପେନ୍‌ସନ୍ ଦେଉଛଂତି । ଏହା ବଦଳିବା ଉଚିତ । ତେଣୁ ଆମ ସଂଗଠନ ଏ ଦିଗରେ ଶକ୍ତିଶାଳୀ ପଦକ୍ଷେପ ନେବା ଆବଶ୍ୟକ ।

ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ଆମ ଦାବିପତ୍ରରେ ସ୍ୱାକ୍ଷର କରିଛଂତି ସେମାନଂକ ମଧ୍ୟରେ ୪ ଜଣ ପୂର୍ବତନ ମୁଖ୍ୟମଂତ୍ରୀ ଅଛଂତି । ସେମାନେ ହେଲେ ବିଶ୍ୱନାଥ ଦାସ, ଡ. ହରେକୃଷ୍ଣ ମହତାବ୍, ନବକୃଷ୍ଣ ଚୌଧୁରୀ, ବିନାୟକ ଆଚାର୍ଯ୍ୟ ପ୍ରଭୃତି । ଏହାଛଡ଼ା ବହୁ ବିଶିଷ୍ଟ ବ୍ୟକ୍ତି ଯଥା – ମାଳତୀ ଚୌଧୁରୀ, ଜଷ୍ଟିସ୍ ହରିହର ମହାପାତ୍ର, ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି, ଡ. ସଦାଶିବ ମିଶ୍ର, ସମାଜ ସଂପାଦକ ଡ. ରାଧାନାଥ ରଥ, କାଳିଂଦୀଚରଣ ପାଣିଗ୍ରାହୀ ପ୍ରମୁଖ ଏଥିରେ ସ୍ୱାକ୍ଷର କରିଛଂତି ଏବଂ ଆମ ଦାବିକୁ ଦୃଢ଼ ସମର୍ଥନ କରିଛଂତି । ମାତ୍ର ଦୁଃଖର ବିଷୟ ଓଡ଼ିଶା ସରକାର, ଆମ ଯୁକ୍ତିଯୁକ୍ତ ଦାବିକୁ ଏପର୍ଯ୍ୟଂତ କାର୍ଯକାରୀ କରିନାହାଂତି । ଏହାଛଡ଼ା ଭାରତର ବହୁ ବିଶିଷ୍ଟ ସାହିତ୍ୟିକ ଆମ ଦାବିକୁ ସମର୍ଥନ କରି ଓଡ଼ିଶାର ମୁଖ୍ୟମଂତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଂକୁ ପତ୍ର ଦେଇଥିଲେ । ସେମାନଂକ ମଧ୍ୟରେ ପ୍ରଫେସର ଡ. ସୁକୁମାର ସେନ୍, ଡ. ମୁଲକ ରାଜ୍ ଆନନ୍ଦ, ଅନ୍ନଦା ଶଂକର ରାୟ ପ୍ରମୁଖ ଅଂତର୍ଗତ । (ଏଠାରେ ପ୍ରକାଶଥାଉକି ମୋ ଉଦ୍ୟମରେ ଏହି ପେନ୍‌ସନ୍ କଥା ଚାଲୁ ହୋଇଥିଲେ ମଧ୍ୟ ମୋତେ ୪ ରୁ ୫ ବର୍ଷ ପର୍ଯଂତ କୌଣସି ପେନ୍‌ସନ୍ ମିଳି ନଥିଲା । ତାପରେ ମୁଖ୍ୟମଂତ୍ରୀ ହଠାତ୍ ଦିନେ ଟେଲିଫୋନ୍ କରି ଜଣାଇଲେ ଯେ ମୋତେ ମାସିକ ୫୦୦ ଟଂକା ଲେଖକ, କଳାକାର, କ୍ରୀଡ଼ାବିତ୍‌ମାନଂକୁ ଦିଆଯାଉଥିବା ପେନ୍‌ସନ୍ ଦିଆଯିବ ବୋଲି ସରକାର ସ୍ଥିର କରିଛଂତି । ମୁଁ ତାଂକୁ ଧନ୍ୟବାଦ ଦେଇଥିଲି । ଏ ସମସ୍ତ ବିଷୟ ପୂର୍ବ ପ୍ରସଂଗରେ କୁହାଯାଇଛି ।)

ଏହି ବୈଠକରେ ପୂର୍ବୋକ୍ତ ପ୍ରସ୍ତାବ ଆଗତ ହେଲାବେଳେ ସଚି ରାଉତରାୟ ଦର୍ଶାଇଥିଲେ ଯେ (ସଂଗଠନର କାର୍ଯ୍ୟ ବିବରଣୀ ରେଜିଷ୍ଟରରୁ ଗୃହୀତ ତେଣୁ ତୃତୀୟ ପୁରୁଷ ରୂପେ ଲେଖାଯାଇଛି ।) ୫୦ ବର୍ଷ ବୟସରେ ସୃଜନକ୍ଷମ ଅବସ୍ଥାରେ ପେନ୍‌ସନ୍ ଦିଆନଯାଇ ୬୦ ବର୍ଷ ବୟସରେ ସୃଜନଶକ୍ତି ହରାଇବା ପରେ କଳାକାର ଓ ଲେଖକ, କ୍ରୀଡ଼ାବିତ୍‌ମାନଙ୍କୁ ଏ ପେନ୍‌ସନ୍ ଦିଆଯାଉଛି । ଫଳରେ ଜାତି ଏମାନଙ୍କର ପରିଣତ ଅବଦାନରୁ ବଞ୍ଚିତ ହେଉଛି । ସେ ପୁଣି ପ୍ରକାଶ କରିଥିଲେ ଯେ କେରଳ ସରକାର ୫୦ ବର୍ଷ ବୟସରୁ ୧୧୫୫ ଜଣଙ୍କୁ ଅନୁରୂପ ପେନ୍‌ସନ୍ ଦେଉଥିବାବେଳେ ଓଡ଼ିଶା ସରକାର ୧୮୫ ଜଣ ବ୍ୟକ୍ତିଙ୍କୁ ଆମ ଆନ୍ଦୋଳନ ଫଳରେ ପେନ୍‌ସନ୍ ଦେଉଛନ୍ତି । ଏହା ଘୋର ଲଜ୍ଜାର କଥା ।

ଡ. ରାଉତରାୟ ପୁଣି କହିଥିଲେ ଯେ ଲେଖକ, କଳାକାର, କ୍ରୀଡ଼ାବିତ୍‌ମାନଙ୍କୁ ବେତନଭୋଗୀ ସରକାରୀ ଚାକିରିଆଙ୍କ ସହିତ ତୁଳନା କରାଯାଇନପାରେ । ସରକାରୀ ଚାକିରିଆମାନେ ତାଙ୍କ କାମ ପାଇଁ ବେତନ ପାଇଥାନ୍ତି, ତାପରେ ୬୦ ବର୍ଷରେ ପେନ୍‌ସନ୍ ପାଆନ୍ତି । ମାତ୍ର ଲେଖକ, କଳାକାର, କ୍ରୀଡ଼ାବିତ୍‌ମାନେ ସାରାଜୀବନ ବିନା ବେତନରେ କଳା ଓ ସାହିତ୍ୟ ସାଧାନାରେ ଜୀବନ ଉତ୍ସର୍ଗ କରିଥାନ୍ତି । ତେଣୁ ସେମାନଙ୍କୁ ୬୦ ବର୍ଷ ବୟସରେ ପେନ୍‌ସନ୍ ଦେବା ସଂପୂର୍ଣ୍ଣ ଅସଂଗତ ।

ଡ. ରାଉତରାୟ ପୁଣି କହିଥିଲେ ଯେ, ରାଜ୍ୟ ସରକାର କ୍ରୀଡ଼ା ଓ ସଂସ୍କୃତି ବିଭାଗ ଜରିଆରେ ୯.୭.୧୯୮୧ ତାରିଖରେ ବିଜ୍ଞପ୍ତିରେ ସ୍ପଷ୍ଟ ଘୋଷଣା କରିଥିଲେ ଯେ ସରକାର ୧୯୮୧-୮୨ ଆର୍ଥିକ ବର୍ଷଠାରୁ ୨୦୦ ବ୍ୟକ୍ତିଙ୍କୁ ମାସିକ ୨୦୦ ଟଙ୍କା କରି ଆଜୀବନ ପେନ୍‌ସନ୍ ଦିଆଯିବ । ମାତ୍ର ୧୮୫ ଜଣଙ୍କୁ ପେନ୍‌ସନ୍ ଦେବା ଦ୍ୱାରା ନିଜେ ନିଜ ବିଜ୍ଞପ୍ତିର ଖିଲାପ୍ କରିଛନ୍ତି । ଡ. ରାଉତରାୟ ପୁଣି କହିଥିଲେ ଯେ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ସୂଚନାଭବନଠାରେ ତା ୧୨.୪.୮୨ ତାରିଖରେ ଅନୁଷ୍ଠିତ ପେନ୍‌ସନ୍ ପ୍ରଦାନ ଉତ୍ସବରେ ଉଦାର କଣ୍ଠରେ ଘୋଷଣା କରିଥିଲେ ଯେ ଆମେ ପ୍ରଥମେ ୨୦୦ ବ୍ୟକ୍ତିଙ୍କୁ ସ୍ୱୀକୃତି ଦେବାକୁ ଘୋଷଣା କରିଥିଲୁ । ମାତ୍ର ୨୦୦ ନାହିଁ କି ୫୦୦ ନାହିଁ, ଏପରି ଯେତେ ଯେଉଁଠି ସାହିତ୍ୟିକ, କଳାକାର, କ୍ରୀଡ଼ାବିତ୍ ଅଛନ୍ତି ସମସ୍ତଙ୍କୁ ସ୍ୱୀକୃତି ଦିଆଯିବ । ଏଥିପାଇଁ ଅର୍ଥର ଅଭାବ ନାହିଁ । ମାତ୍ର ଦୁଃଖର ବିଷୟ ଏହାପରେ ଚଳିତ ବର୍ଷ ପାଇଁ ପେନ୍‌ସନ୍ ସଂକ୍ରାନ୍ତ ଦରଖାସ୍ତ ଆହ୍ୱାନ କରି ସରକାରଙ୍କ କ୍ରୀଡ଼ା ଓ ସଂସ୍କୃତି ନିର୍ଦ୍ଦେଶାଳୟ ତା ୩.୫.୮୨ରେ ଯେଉଁ ବିଜ୍ଞପ୍ତି ପ୍ରକାଶକଲେ ସେଥିରେ ମୁଖ୍ୟମନ୍ତ୍ରୀଙ୍କର ଏହି ଉଦାର ମନୋଭାବ ଆଦୌ ପ୍ରତିଫଳିତ ହୋଇନାହିଁ । ସେ ବିଜ୍ଞପ୍ତିରେ ଚଳିତ ଆର୍ଥିକ ବର୍ଷରେ ସୀମିତ ବ୍ୟକ୍ତିଙ୍କୁ ପେନ୍‌ସନ୍ ଦିଆଯିବ ବୋଲି କୁହାଯାଇଛି । ଏଥିରୁ ସରକାରଙ୍କ କଥା ଓ କାର୍ଯ୍ୟ ମଧ୍ୟରେ ତଫାତ୍ ପ୍ରମାଣିତ ହେଉଛି ।

ଡ. ରାଉତରାୟ ପ୍ରକାଶ କରିଥିଲେ ଯେ, ତା ୧.୧୦.୮୧ରେ ରାଜ୍ୟ ସରକାର ତାଙ୍କର ପେନ୍‌ସନ୍ ନିୟମାବଳୀ ସଂଶୋଧନ କରି ବୟସ ସୀମା ବିଶେଷ ପ୍ରତିଭାବାନ୍

ବ୍ୟକ୍ତିଂକ କ୍ଷେତ୍ରରେ ୧୦ ବର୍ଷ କୋହଳ କରିଦିଆଯାଇପାରିବ ବୋଲି ନିଷ୍ପତ୍ତି ଗ୍ରହଣ କରିଛଂତି । (ରାଜ୍ୟ କ୍ରୀଡ଼ା ଓ ସଂସ୍କୃତି ନିର୍ଦ୍ଦେଶାଳୟଂକ VCAE-4-81/8370/X ସଂଶୋଧନ ଦ୍ରଷ୍ଟବ୍ୟ) ମାତ୍ର ଚଳିତ ବର୍ଷ ପେନ୍‌ସନ୍ ପାଇଁ ଦରଖାସ୍ତ ଆହ୍ୱାନ କରି ଉକ୍ତ ନିର୍ଦ୍ଦେଶାଳୟ ଯେଉଁ ବିଜ୍ଞପ୍ତି ଜାରିକରିଛଂତି ସେଥିରେ ଏହା ଆଦୌ ସୂଚିତ ହୋଇନାହିଁ । ସେହିପରି ଉକ୍ତ ନିର୍ଦ୍ଦେଶାଳୟର ନଂ VCAF-4181/3895-61, ତା୨୩.୪.୮୨ର ସଂଶୋଧନ (Amendment)ରେ ପେନ୍‌ସନ୍ ପରିମାଣ ମାସିକ ୫୦୦ ଟଂକାକୁ ବୃଦ୍ଧି କରାଯିବାର ବ୍ୟବସ୍ଥା କରାଯାଇଛି ଏବଂ ତଦନୁଯାୟୀ ଦୁଇ ଜଣ ବିଶିଷ୍ଟ ବ୍ୟକ୍ତିଂକୁ ୧୯୮୧-୮୨ ଆର୍ଥିକ ବର୍ଷଠାରୁ ମାସିକ ୫୦୦ ଟଂକା କରି ପେନ୍‌ସନ୍ ଦିଆଯାଇଛି । ତେଣୁ ସାଧାରଣ ଭାବରେ ମାସିକ ୩୦୦ ଟଙ୍କା କରି ପେନ୍‌ସନ୍ ଦେବାରେ କିଛି ଅସୁବିଧା ନାହିଁ । ରାଜ୍ୟର ନେତୃବୃଂଦ ଏଥିପାଇଁ ବାରଂବାର ଦାବି କରିଥିଲେ ମଧ୍ଯ ସରକାର ମାସିକ ୨୦୦ ଟଂକା କରି ପେନ୍‌ସନ୍ ଦେଉଥିବାରୁ ସେ କ୍ଷୋଭ ପ୍ରକାଶ କରିଥିଲେ ।

ସେ ପୁଣି ଦର୍ଶାଇଥିଲେ ଯେ ଉକ୍ତ ନିର୍ଦ୍ଦେଶାଳୟର ୨୩.୪.୮୨ ତାରିଖର No. VCAP-4/81/3895 ସଂଶୋଧନ ଅନୁସାରେ ରାଜ୍ୟ ସରକାର ପେନ୍‌ସନ୍ ନିୟମାବଳୀରେ ଆବଶ୍ୟକୀୟ ପରିବର୍ତ୍ତନ ବିଶେଷ କ୍ଷେତ୍ରରେ କରିପାରଂତି । ଡ. ରାଉତ୍‌ରାୟ ଆୟ ସୀମା ସଂପର୍କରେ କହିଥିଲେ ଯେ ତାଂକଦ୍ୱାରା ଚାରିବର୍ଷ ତଳେ, ତା୨୧.୧୦.୭୮ରେ ଓଡ଼ିଶା ସାହିତ୍ୟ ଏକାଡେମୀରେ ଆଗତ ଓ ଗୃହୀତ ମୂଳ ପ୍ରସ୍ତାବରେ ପ୍ରାର୍ଥୀଂକର ବ୍ୟକ୍ତିଗତ ଆୟ-ସୀମା ମାସିକ ୫୦୦ ଟଂକା ରଖାଯାଇଥିଲା । ଭାରତ ସରକାର ତାଂକ ଯୋଜନାରେ ବ୍ୟକ୍ତିଗତ ଆୟସୀମା ମାସିକ ୪୦୦ ଟଂକା ଧାର୍ଯ କରିଛଂତି । ତେଣୁ ଓଡ଼ିଶାର ବରେଣ୍ୟ ନେତୃବୃଂଦ ତା୨୩.୮.୮୨ରେ ମିଳିତ ବିବୃତିରେ ଓଡ଼ିଶା ସରକାର କେରଳ ସରକାରଂକ ଛାଞ୍ଚରେ ବ୍ୟକ୍ତିଗତ ଆୟସୀମା ମାସିକ ୪୦୦ ବା ବାର୍ଷିକ ୫୦୦୦ ଟଂକା ରଖଂତୁ ବୋଲି ଦାବି କରିଛଂତି ଏବଂ ବର୍ତ୍ତମାନ ପ୍ରଚଳିତ ଆୟସୀମା ଯାହା ମାସିକ ୨୦୮-୩୩ ପଇସା ଧାର୍ଯ୍ୟ ହୋଇଛି ଅତି ଅସଂଗତ ବୋଲି ମତ ବ୍ୟକ୍ତ କରିଥିଲେ । ଗତବର୍ଷ ଓଡ଼ିଶାର ନେତୃବର୍ଗଂକର ଯେଉଁ ମିଳିତ ବିବୃତି ପ୍ରକାଶ ପାଇଥିଲା (ତା୧୦.୩.୮୧) ସେଥିରେ ଦଳମତ ବୟସ ନିର୍ବିଶେଷରେ ଏମ୍.ଏଲ୍.ଏ ଓ ଏମ୍.ପି.ମାନଂକ ପରି ପେନ୍‌ସନ୍ ଦେବାକୁ ରାଜ୍ୟସରକାରଂକଠାରେ ଦାବି-କରାଯାଇଥିଲା ।

ପେନ୍‌ସନ୍ ଛଡ଼ା ରାଜ୍ୟ ସରକାର ତଥା ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ଏବଂ ବିଶ୍ୱବିଦ୍ୟାଳୟ ଓ ଏକାଡେମୀ ପ୍ରଭୃତି ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଂକୁ ଯେଉଁ ସବୁ ସୁବିଧା ସୁଯୋଗ, ଭତ୍ତା, ବୃତ୍ତି ଓ ସାହାଯ୍ୟ ପ୍ରଦାନ କରୁଛଂତି, ସେସବୁ ବିଷୟରେ ସେମାନଂକୁ ଲେଖକ, କଳାକାର ଅବହିତ କରାଇବା ଏବଂ ସେସବୁ ସୁବିଧା ସୁଯୋଗ ପାଇବା ଦିଗରେ ସାହାଯ୍ୟ କରିବା ଏହି ସଂଗଠନର ଲକ୍ଷ୍ୟ ବୋଲି ସେ କହିଥିଲେ ।

ମୋଟ ଉପରେ ଦେଶ ବିଦେଶରେ ଓଡ଼ିଆ ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନେ ଯେପରି ସମ୍ମାନ ଓ ସ୍ୱୀକୃତି ପାଇବେ ସେ ଦିଗରେ ସଂଗଠନ ସକ୍ରିୟ ପଦକ୍ଷେପ ନେବା ଉଚିତ। ଏହିସବୁ କାର୍ଯ୍ୟକ୍ରମର ସମନ୍ୱୟ ଓ ସଫଳ ରୂପାୟନ ପାଇଁ ଏହି ବହୁମୁଖୀ ପ୍ରତିଷ୍ଠାନର ଏକ କେନ୍ଦ୍ରୀୟ ଭବନ ମଧ୍ୟ ପ୍ରତିଷ୍ଠା କରାଯାଇପାରେ ବୋଲି ସେ ଆଶା ପ୍ରକାଶ କରିଥିଲେ। ଜିଲ୍ଲା ସ୍ତରରେ ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଙ୍କର ସର୍ବାଂଗୀଣ ଉନ୍ନତି ସାଧନ କରିବା ଉଦ୍ଦେଶ୍ୟରେ ଶାଖାମାନ ସ୍ଥାପନ କରାଯିବ ବୋଲି ସେ ସୂଚନା ଦେଇଥିଲେ। ଡ. କୁଞ୍ଜବିହାରୀ ଦାଶ କହିଥିଲେ ଯେ ରାଜ୍ୟ ସରକାରଙ୍କ ପେନ୍‌ସନ୍ ନିୟମାବଳୀରୁ ''ଦୁସ୍ଥ'' ଶବ୍ଦ ସଂପୂର୍ଣ ଉଠାଇଦିଆଯାଉ, କାରଣ ଏହା ମାନହାନିକର। ଅନେକ ଲେଖକ କଳାକାର ଏଥିପାଇଁ ପେନ୍‌ସନ୍ ସକାଶେ ଦରଖାସ୍ତ କରୁନଥିବା କଥା ସେ ଜାଣଂତି ବୋଲି ପ୍ରକାଶ କରିଥିଲେ। ଆଉ ଏକ ଗୁରୁତ୍ୱପୂର୍ଣ ବିଷୟ ପ୍ରତି ଡ. ଦାଶ ସଭାର ଦୃଷ୍ଟି ଆକର୍ଷଣ କରିଥିଲେ। ତାହା ହେଉଛି ଚଳିତ ବର୍ଷ ପେନ୍‌ସନ୍ ପାଇଁ ଦରଖାସ୍ତ ଗ୍ରହଣ କରିବାର ଶେଷ ତାରିଖ ଅଗଷ୍ଟ ତା ୩୧ ବୋଲି ତା ୩.୫.୮୨ ସରକାରୀ ବିଜ୍ଞପ୍ତିରେ ପ୍ରକାଶ ପାଇଥିଲା। ମାତ୍ର ଅଗଷ୍ଟ ତା ୩୦ ଠାରୁ ପ୍ରଳୟଂକରୀ ବନ୍ୟା ହେବା ଯୋଗୁଁ ଭୁବନେଶ୍ୱର ଯିବାର ରାସ୍ତାଘାଟ, ଟ୍ରେନ, ବସ, ଏବଂ ଏପରିକି ଡାକ ଚଳାଚଳ ମଧ୍ୟ କିଛିଦିନ ପାଇଁ ବଂଦ ହୋଇଗଲା। ଫଳରେ ବହୁ ପ୍ରାର୍ଥୀ ଦରଖାସ୍ତ ଦାଖଲ କରିପାରିଲେ ନାହିଁ।

ଏହି ଶେଷ ତାରିଖ ଅକ୍ଟୋବର ତା ୩୦ ପର୍ଯ୍ୟଂତ ସଂପ୍ରସାରିତ ହେଉ ବୋଲି ଡ. ଦାଶ ଦାବି କରିଥିଲେ। ସମସ୍ତେ ତାଂକ ସହିତ ଏକମତ ହୋଇଥିଲେ। ବ୍ୟକ୍ତିଗତ ଆୟ ସୀମା ବିଷୟରେ ଡ. ଦାସ କହିଥିଲେ ଯେ ବର୍ତମାନ ଧାର୍ଯ୍ୟ କରାଯାଇଥିବା ମାସିକ ଟ ୨୦୮.୩୩ ପଇସା ଆୟ-ସୀମା ସଂପୂର୍ଣ ଅସଂଗତ। ଜଣେ ସାଧାରଣ ମୂଲିଆ ମଧ୍ୟ ଏହାଠାରୁ ବେଶୀ ଆୟ କରୁଛି। ତେଣୁ ଏହି ଆୟସୀମା ତୁରଂତ ପରିବର୍ତ୍ତିତ ହେବା ଉଚିତ। ଏ ପେନ୍‌ସନ୍ ସରକାର ନିଜଆଡୁ ବିଶିଷ୍ଟ ବ୍ୟକ୍ତିମାନଂକୁ ଦେବା ଉଚିତ। ସାଧାରଣ ସଂପାଦକ ଶ୍ରୀ ପ୍ରଫୁଲ୍ଲଚଂଦ୍ର ପଟ୍ଟନାୟକ କହିଥିଲେ ଯେ ସ୍ୱାଧୀନତାସଂଗ୍ରାମୀମାନେ ପେନ୍‌ସନ୍ ପାଇଁ ଦରଖାସ୍ତ କଲାବେଳେ କୌଣସି ଆୟସୀମା ଏବେ ଆଉ ରଖାଯାଇ ନାହିଁ, ତେଣୁ ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଂକ କ୍ଷେତ୍ରରେ ମାସିକ ଟ ୨୦୮-୩୩ ପଇସା ବା ବାର୍ଷିକ ଟ ୨୫୦୦ ସୀମା ଧାର୍ଯ୍ୟ କରିବା ଅନ୍ୟାୟ ଓ ଅବାଞ୍ଛନୀୟ। ଏହି ସମ୍ମାନସୂଚକ ପେନ୍‌ସନ୍ ଅତୀତର ଅବଦାନ ପାଇଁ ହିଁ ଦିଆଯାଇଛି। ତେଣୁ ଏହାର ପ୍ରାର୍ଥୀଂକର ବର୍ତ୍ତମାନ ଆୟ ସହିତ କିଛି ସଂପର୍କ ନାହିଁ।

ଶ୍ରୀଯୁକ୍ତ ଉଦୟନାଥ ଷଡଂଗୀ କହିଥିଲେ ଯେ ଏହି ସମସ୍ତ ବିଷୟକୁ ସଫଳ ରୂପରେଖ ଦେବା ପାଇଁ ଏକ ବିଧିବଦ୍ଧ ଅନୁଷ୍ଠାନ ଏକାଂତ ପ୍ରୟୋଜନ। ଏକ ବହୁମୁଖୀ ବଳିଷ୍ଠ ପ୍ରତିଷ୍ଠାନ ଗଢ଼ିବା ଦିଗରେ ତୁରଂତ ପଦକ୍ଷେପ ନିଆଯାଉ ବୋଲି ଶ୍ରୀଯୁକ୍ତ ଷଡଂଗୀ ପ୍ରସ୍ତାବ କରିଥିଲେ। ସଭାପତି ଡ. କାଳିଂଦୀଚରଣ ପାଣିଗ୍ରାହୀ କହିଥିଲେ ଯେ

ଆମର ସମସ୍ତ ଦାବି ସରକାରଂକ ନିକଟରେ ଠିକ୍ ଭାବରେ ଉପସ୍ଥାପିତ କରିବା ପାଇଁ ଶୀଘ୍ର ଏକ ପ୍ରତିନିଧିଦଳ ମୁଖ୍ୟମଂତ୍ରୀଂକୁ ଭେଟି ଦାବିପତ୍ର ଦାଖଲ କରିବା ଦରକାର । ଓଡ଼ିଶାର ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଂକୁ ସରକାର ଏହି ପେନ୍‌ସନ୍ ମାଧ୍ୟମରେ ଏକତାସୂତ୍ରରେ ବାଂଧିଦେଇଛଂତି । ସେମାନେ ସଂଗଠିତ ହୋଇ ନିଜନିଜର ଅଭାବ ଅସୁବିଧା ଦୂରକରିବା ଦିଗରେ ସକ୍ରିୟ ଭୂମିକା ନିଅଂତୁ । ନିଜ ଭାଗ୍ୟ ନିଜେ ପରିବର୍ତ୍ତନ କରିପାରିବାର ଏହା ଏକ ଅପୂର୍ବସୁଯୋଗ ।

**କଳିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଏମ୍.ଏ. କ୍ଲାସ ପୁନରାୟ ଚାଲୁ କରିବାକୁ ଦାବି :**

ଓଡ଼ିଶାବାସୀ ଜାଣଂତି, କଳିକତା ବିଶ୍ୱବିଦ୍ୟାଳୟରେ ୧୯୨୦ ମସିହାରୁ ଭାରତରେ ସର୍ବପ୍ରଥମେ ଓଡ଼ିଆ ଏମ୍.ଏ. କ୍ଲାସ ଚାଲୁହୋଇଥିଲା । ଓଡ଼ିଶାର ବହୁ କୃତବିଦ୍ୟ ଲୋକ ଏଠାରୁ ଓଡ଼ିଆରେ ଏମ୍.ଏ. ପାସ୍ କରିଛଂତି । ୧୯୨୦ ମସିହାରେ ଓଡ଼ିଶାର ଏକ ଦେଶୀୟ ରାଜ୍ୟ ସୋନ୍‌ପୁର ରାଜ୍ୟର ମହାରାଜା ଶ୍ରୀ ବୀରମିତ୍ର ସିଂହଦେଓ ଏମ୍.ଏ. କ୍ଲାସ ଚାଲୁ କରିବା ପାଇଁ ୫୦,୦୦୦ ଟଂକାର ପାଂଠି କଳିକତା ବିଶ୍ୱବିଦ୍ୟାଳୟକୁ ଦାନକରିଥିଲେ । ସେହି ପାଂଠିର ସୁଧରେ ଓଡ଼ିଆ ଏମ୍.ଏ. କ୍ଲାସ ଚାଲିଥିଲା । ପଂଡିତ ନୀଳକଂଠ ଦାସ ଏହି ଓଡ଼ିଆ ଏମ୍.ଏ. କ୍ଲାସର ଜଣେ ଅଧ୍ୟାପକ ଥିଲେ । ପରେ ଶାଂତିନିକେତନରେ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରେ ଓଡ଼ିଆରେ ଏମ୍.ଏ. କ୍ଲାସ ଚାଲୁହୋଇଥିଲା । ଦୁଃଖର କଥା ୧୯୪୯ ମସିହାରୁ କଳିକତା ବିଶ୍ୱବିଦ୍ୟାଳୟ ଓଡ଼ିଆ ଏମ୍.ଏ. କ୍ଲାସ ବଂଦକରିଦେଲା । ଏହାକୁ ପୁନର୍ବାର ଚାଲୁ କରିବା ପାଇଁ ଓଡ଼ିଶା ରାଜ୍ୟ ଲେଖକ, କଳାକାର, କ୍ରୀଡ଼ାବିତ୍ ସଂଗଠନ ଦୃଢ଼ ଦାବି କରିଥିଲା ।

୨୧.୧୧.୮୨ ତାରିଖରେ ମୋ ସଭାପତିତ୍ୱରେ ବସିଥିବା ସଂଗଠନର ତୃତୀୟ ବୈଠକରେ ଡ. କୁଂଜବିହାରୀ ଦାସ କଳିକତା ବିଶ୍ୱବିଦ୍ୟାଳୟ ପୁନରାୟ ଓଡ଼ିଆ କ୍ଲାସ ଚାଲୁ ବୋଲି ଦାବିକରି ଏକ ପ୍ରସ୍ତାବ ଆଣିଥିଲେ । ଏହା ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ଏହି ପ୍ରସ୍ତାବକୁ କାର୍ଯକାରୀ କରିବା ଦିଗରେ ବିହିତ ପଦକ୍ଷେପ ନେବା ପାଇଁ କାର୍ଯକାରୀ ସଭାପତିଂକୁ ଦାୟିତ୍ୱ ଦିଆଯାଇଥିଲା ।

ମୁଁ ଏ ପ୍ରସ୍ତାବର ପ୍ରତିଲିପି କଳିକତା ବିଶ୍ୱବିଦ୍ୟାଳୟର କୁଳପତି ଏବଂ ପଶ୍ଚିମବଂଗର ମୁଖ୍ୟମଂତ୍ରୀ ଜ୍ୟୋତିବସୁଂକୁ ପଠାଇଦେଇଥିଲି ଏବଂ ଏହାକୁ ତୁରଂତ କାର୍ଯକାରୀ କରିବା ପାଇଁ ଅନୁରୋଧ କରିଥିଲି । ପଶ୍ଚିମବଂଗର ମୁଖ୍ୟମଂତ୍ରୀ ଜ୍ୟୋତି ବସୁଂକ ସହିତ ମୋର କଳିକତାରେ ଭଲ ଜଣାଶୁଣା ଥିଲା । ସେ ମୋ ଚିଠି ଓ ପ୍ରସ୍ତାବ ତାର କଳିକତା ବିଶ୍ୱବିଦ୍ୟାଳୟ କୁଳପତିଂକୁ ପଠାଇଦେଇଥିଲେ ଏବଂ ଏହାକୁ କାର୍ଯକାରୀ କରିବା ପାଇଁ ଲେଖିଥିଲେ । ତାଂକ ଚିଠିର ଏକ କପି ମୋ ନିକଟକୁ ପଠାଇଦେଇଥିଲେ ।

ଏହାପରେ ଆମ ସଂଗଠନ ଓଡ଼ିଶା ରାଜ୍ୟ ଲେଖକ, କଳାକାର, କ୍ରୀଡ଼ାବିତ୍ ସଂଗଠନ ତରଫରୁ ଆମେ କଳିକତା ବିଶ୍ୱବିଦ୍ୟାଳୟ କୁଳପତିଂକୁ ବାରବାଂର ପତ୍ର

ଲେଖି ଆମ ପ୍ରସ୍ତାବ କାର୍ଯକାରୀ କରିବା ପାଇଁ, ଅର୍ଥାତ୍ କଲିକତା ବିଶ୍ୱବିଦ୍ୟାଳୟ ପୁନର୍ବାର ଓଡ଼ିଆ ଏମ୍.ଏ. କ୍ଲାସ ଚାଲୁ କରିବା ପାଇଁ ଦାବି କରିଥିଲେ । ଶେଷରେ କଲିକତା ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଓଡ଼ିଆ ଏମ୍.ଏ. କ୍ଲାସ ପୁନର୍ବାର ଚାଲୁ କରିବା ପାଇଁ ରାଜିହୋଇଥିଲେ । ମାତ୍ର ଆବଶ୍ୟକ ସଂଖ୍ୟକ ଛାତ୍ର ନମିଳିବାରୁ ଏହା ବଂଦହୋଇଥିଲା ବୋଲି ପରେ ଖବରପାଇଥିଲି । ଅଧିକାଂଶ ଛାତ୍ର ଓଡ଼ିଆରେ ଏମ୍.ଏ କରିବା ପାଇଁ ବିଶ୍ୱଭାରତୀ (ଶାଂତିନିକେତନ) ଯିବାକୁ ପସଂଦ କରୁଥିଲେ ।

ଏହାଛଡ଼ା ଓଡ଼ିଶା ଲେଖକ, କଳାକାର, କ୍ରୀଡ଼ାବିତ୍ ସଂଗଠନ ପ୍ରତି ଜିଲ୍ଲାରେ ଆଧୁନିକ ରଂଗମଂଚ ସ୍ଥାପନ କରିବା ପାଇଁ ରାଜ୍ୟ ସରକାରଂକଠାରେ ଦୃଢ଼ ଦାବି କରି ଆସିଥିଲେ । ଓଡ଼ିଶାର ପେସାଦାର ରଂଗମଂଚ ଓ ନାଟକ ମ୍ରିୟମାଣ ହୋଇଯାଇଥିଲା । ନାଟକ ହିଁ ସାହିତ୍ୟର ଏକ ବଳିଷ୍ଠ ଅଂଗ । ଆମ ସଂଗଠନ ଓଡ଼ିଆ ନାଟକ ଓ ରଂଗମଂଚର ପୁନର୍ଜୀବନ ପାଇଁ ଯଥାସାଧ୍ୟ ଉଦ୍ୟମ ଚଳାଇଥିଲା ।

# ଊନପଂଚାଶତ୍ ଉଲ୍ଲାସ

## ଜୀବନର ବିଶେଷ ଘଟଣାପୁଂଜ : ସାହିତ୍ୟସଭାରେ ଏସିଡ୍ ମାଡ଼ : ଝଂକାର ପତ୍ରିକାରେ ଧାରାବାହିକ କୁତ୍ସା ପ୍ରଚାର

**ସାହିତ୍ୟସଭାରେ ଏସିଡ୍ ମାଡ଼ :**

ଜୀବନର ଯାତ୍ରାପଥରେ କେବଳ ଫୁଲଚଂଦନ ମିଳେ ନାହିଁ, ଟେକାପଥର ମାଡ଼ ମଧ୍ୟ ସହିବାକୁ ପଡ଼େ । ଶତ୍ରୁ ନଥିଲେ ମଧ୍ୟ କେଉଁ ଗୂଢ଼ ଅଂତରାଳରୁ ଶତ୍ରୁ ଆସି ଜୁଟି ଯାଂତି । ମୋ ଜୀବନରେ ମଧ୍ୟ ତାହା ଘଟିଛି ।

୧୯୫୫ ମସିହାରେ ମୁଁ ଆମେରିକାର ହାର୍ଭାଡ୍ ବିଶ୍ୱବିଦ୍ୟାଳୟରେ ୨ ମାସ ବ୍ୟାପୀ, ଆଂତର୍ଜାତିକ କଳାବିଜ୍ଞାନ ସେମିନାର୍‌ରେ ଯୋଗଦେଇ ଲଂଡନ, ପ୍ୟାରିସ୍, ରୋମ୍ ପ୍ରଭୃତି ୟୁରୋପର ବିଭିନ୍ନ ରାଜଧାନୀମାନଂକରେ ଅନୁଷ୍ଠିତ ସାହିତ୍ୟସଭା-ମାନଂକରେ ଭାଷଣ ଦେଇ ଓ ବିପୁଳ ଅଭ୍ୟର୍ଥନା ଲାଭକରି ଫେରିଥିଲି । ଏହାପରେ ୧୯୬୨ ମସିହାରେ ଚୀନ-ଭାରତ ଯୁଦ୍ଧ ଆରଂଭହେବାର ଦିନକପୂର୍ବରୁ ମୁଁ ଆମେରିକାର "Study Mission International"ଙ୍କ ଆନୁକୁଲ୍ୟରେ ଆମେରିକାର ସମସ୍ତ ରାଜ୍ୟକୁ ଏକ ବକ୍ତୃତାଗ୍ରସ୍ତରେ ଯାଇ ଭାଷଣମାନ ଦେଇଥିଲି । ବିଭିନ୍ନ ରାଜ୍ୟର ବଡ଼ ବଡ଼ ଖବରକାଗଜମାନଂକଦ୍ୱାରା ଆୟୋଜିତ ସଭାମାନଂକରେ ଭାଷଣ ଦେଇ ସ୍ୱଦେଶକୁ ଫେରିଥିଲି । ତାହା ଆମେରିକାର ବିଭିନ୍ନ ପତ୍ରପତ୍ରିକାରେ ଏବଂ ଟେଲିଭିଜନ ଓ ରେଡ଼ିଓ ମାଧମରେ ପ୍ରସାରିତ ହୋଇଥିଲା ।

ମାତ୍ର ମୋ ଦେଶରେ ଅର୍ଥାତ୍ ଓଡ଼ିଶାରେ ଠିକ୍ ତାର ଓଲଟା ବ୍ୟବହାର ଭୋଗିବାକୁ ପଡ଼ିଥିଲା । ୧୯୭୪ ମସିହା ଶେଷଭାଗରେ କଟକ ଟାଉନ୍‌ହଲ୍‌ରେ ଏକ ସାହିତ୍ୟସଭାରେ ଲେଖକବଂଧୁମାନଂକ ଅନୁରୋଧରେ ମୁଁ ସଭାପତିତ୍ୱ କରୁଥିଲି । ଏହି ସଭାରେ ଲେଖକ ରବି ସିଂହ ଏବଂ ତାଂକ ସହଚର ଓମ୍‌ପ୍ରକାଶ ଅଗ୍ରୱାଲ୍ ଓ ସେମାନଂକର ଆଉ ଜଣେ ଦି'ଜଣ ବଂଧୁ ଯେଉଁମାନେ ଏକ କଣରେ ବସିଥିଲେ, ହଠାତ୍ ସଭା ଉପରକୁ ଏସିଡ୍ ବୋତଲମାନ ଫୋପାଡ଼ିଲେ । ସେତେବେଳେ ସଭା ଆରଂଭ ହେବାକୁ ଯାଉଥାଏ । ଅନ୍ୟତମ ଉଦ୍ୟୋକ୍ତା ଗିରିଜା କୁମାର ବଳିୟାର୍‌ସିଂହ ପ୍ରାରଂଭିକ ଭାଷଣ ଦବାକୁ ଠିଆ ହୋଇଥାଂତି । ଏସିଡ୍ ବୋତଲ ଘୂରୁଥିବା ପଂଖାରେ ବାଜି ଟିକି ଟିକି ହୋଇଗଲା । ସଭାରେ ବସିଥିବା ବହୁ ଲୋକଂକ ମୁଂଡରେ ଏସିଡ୍ ପଡ଼ି ସବୁ ବାଳ ଓଦାହୋଇଗଲା । ମୁଁ ଟିକେ ଦୂରରେ କାଠର ପ୍ଲାଟଫର୍ମ ଉପରେ ସଭାପତି ଆସନରେ ବସିଥାଏ । ବୁଂଦାଏ ଏସିଡ୍ ଆସି ମୋ ବାମପାଖ ଆଖି ଉପରେ କପାଳରେ ପଡ଼ିଲା ।

ସମସ୍ତେ ହୋ ହୋ ପାଟିକରି ଉଠି ଛିଡ଼ାହୋଇଗଲେ ଏବଂ ବାହାରକୁ ଚାଲିଆସିଲେ । ଆମେ ସମସ୍ତେ ଆସି ବାରଂଡାରେ ଛିଡ଼ାହୋଇଥିଲୁ । ନିକଟସ୍ଥ ଶ୍ରୀରାମଚଂଦ୍ରଭବନ ଇଗୁଆଳି ଧଡ଼ି ଦୌଡ଼ିଆସି ମୋ କପାଳରୁ ଏସିଡ଼୍ ପୋଛିଦେଲା । ସେ ଯାହାହେଉ, ଏସିଡ୍ ଟୋପା ପଡ଼ିଥିବା ଜାଗାରେ ଗୋଟାଏ ଛୋଟ ଗାଡ଼ ଏପର୍ଯ୍ୟଂତ ରହିଛି । ଭୃଗୁ ପଦ୍ମଚିହ୍ନ ପରି ମୁଁ ସେ ଚିହ୍ନଟିକୁ ସଗର୍ବରେ ଧାରଣକରିଛି । ଏହାପରେ ଦୈନିକ ମାତୃଭୂମି ସଂପାଦକ ସ୍ୱର୍ଗତ ବିଚିତ୍ରାନଂଦ କର ତାଂକ ଅଫିସ୍‌ରେ ଏ ଖବର ପାଇ ସଂଗେ ସଂଗେ ପୁଲିସ୍‌କୁ ଟେଲିଫୋନ୍ କରିଥିଲେ । ଲାଲ୍‌ବାଗ୍ ପୋଲିସ୍ ସଂଗେ ସଂଗେ ଆସି ରବି ସିଂହ ଓ ଅଗ୍ରୱାଲଂକୁ ଗିରଫକରିନେଇଥିଲେ, ପରେ ଜାମିନ୍‌ରେ ଛାଡ଼ିଦେଲେ ।

ଏ ଘଟଣା ବଡ଼ ବଡ଼ ଓଡ଼ିଆଖବରକାଗଜ ଏବଂ କଲିକତା, ପାଟଣା, ଦିଲ୍ଲୀ, ବଂବେ ଓ ଅନ୍ୟାନ୍ୟ ରାଜ୍ୟର ଇଂରାଜୀ ପତ୍ରିକାମାନଂକରେ ପ୍ରକାଶ ପାଇଥିଲା । ତାହା ପଢ଼ି ବହୁ ପାଠକ ବିଚଳିତ ହୋଇ ଓଡ଼ିଶାରେ ଥିବା ତାଂକ ବଂଧୁମାନଂକୁ ମୋ ଖବର ପଚାରି ବୁଝିଥିଲେ । ସେମାନଂକ ମଧ୍ୟରେ କଟକ ରେଭେନ୍‌ସା କଲେଜ୍‌ର ଭୂତପୂର୍ବ ରସାୟନ ବିଜ୍ଞାନ ପ୍ରାଧାପକ ଏବଂ ପାଟଣା ବିଶ୍ୱବିଦ୍ୟାଳୟର ଏକଦା କୁଳପତି ଡ. ବଳଭଦ୍ର ପ୍ରସାଦଜୀ ଅନ୍ୟତମ ।

**ରବି ସିଂହଂକ କ୍ରୋଧର କାରଣ :**

ରବି ସିଂହଂକ କ୍ରୋଧର ଶିକାର ହେବା ମୋ ପାଖରେ କିଛି ନୂଆ କଥା ନୁହେଁ । ଏଥିପୂର୍ବରୁ ସେ ବହୁତଥର ମୋ ବିରୋଧରେ ବିଷୋଦ୍‌ଗାର କରି ବିଭିନ୍ନ ପତ୍ରପତ୍ରିକାରେ ଲେଖାଲେଖି କରିଥିଲେ । ଏଥର ଏପରି ଭୟାନକ କାଂଡ କରିବେ ବୋଲି ମୋର ଧାରଣା ନଥିଲା । ଏଥର ତାଂକର କ୍ରୋଧର କାରଣ ହେଲା କଲିକତାରୁ ପ୍ରକାଶିତ ମାସିକ ପତ୍ରିକା ଆସଂତାକାଲିର ୧୯୭୪ ସାଲ୍ ଅଗଷ୍ଟ ସଂଖ୍ୟାରେ ଗିରିଜା କୁମାର ବଳିୟାର୍‌ସିଂହଂକ ''ଓଡ଼ିଆ ବିପ୍ଳବ କବିତାର ପ୍ରେକ୍ଷାପଟ'' ନାମକ ଏକ ପ୍ରବଂଧ ପ୍ରକାଶ ପାଇଥିଲା । ଏହା ଦୁଇଟି ସଂଖ୍ୟାରେ ସମାପ୍ତ ହୋଇଥିଲା । ସେ ତାଂକ ପ୍ରବଂଧରେ ବହୁ ଦୃଷ୍ଟାଂତ ଦେଇ ଦେଖାଇଥିଲେ ଯେ ରବି ସିଂହଂକ କେତେକ କବିତାରେ ମୋ କବିତାର ଅଂଶମାନ ନକଲ କରାଯାଇଛି । ଏହା ସାହିତ୍ୟିକ ଅପହରଣ ପ୍ରବୃତ୍ତି ବୋଲି ସେ ପ୍ରମାଣକରିଥିଲେ । ତାଂକ ଲେଖାର କେତେକ ଅଂଶ ତଳେ ଦିଆଗଲା ।

x x x x

''ଯେଉଁମାନେ ରବି ସିଂହଂକ କାବ୍ୟିକ ବାତାବରଣକୁ ଲକ୍ଷ୍ୟ କରିଥିବେ, ସେମାନେ ଜାଣିଥିବେ ଯେ, ଓଡ଼ିଆ କବିତା ରାଜ୍ୟରେ ଏକ କ୍ରୋଧୀ ତରୁଣର ଅପବାଦ ନେଇ ଷଷ୍ଠ ଦଶକର ପ୍ରାଂତଭାଗକୁ ତାଂକର ଆବିର୍ଭାବ । ଓଡ଼ିଆ କବିତାରେ ରାଉତ୍‌ରାୟ ଓ ଅନଂତ ପଟ୍ଟନାୟକଂକ ପରେ ମାର୍କସବାଦର ସେ ଜଣେ ଉଦ୍‌ଗାତା ରୂପେ ଦେଖାଦେଲେ । ତାଂକ କବିତାରେ ମଣିଷ ଜୀବନର ଅର୍ଥନୈତିକ ଅଭାବବୋଧ ହିଁ ମୂଳକଥା । ଭାଗ୍ୟବାଦ,

ଧର୍ମ ଓ ଈଶ୍ୱରଂକ ପାଇଁ ତାଂକ କବିତାରେ ବିଦ୍ରୋହ ରହିଛି, ବିଦ୍ରୂପର ସ୍ୱର ଫୁଟିଛି । କିଂତୁ ଏ ଦିଗରୁ ସେ ମୌଳିକ ଚିଂତାର ନାୟକ ନୁହଂତି । ୧୯୩୮ରେ ରାଉତ୍‌ରାୟଂକ ଅଭିଯାନ କାବ୍ୟଧାରାରେ ବି ଏଇ ପ୍ରବୃତ୍ତି ପ୍ରସାରଲାଭ କରିଥିଲା ।

ସୁତରାଂ ୧୯୫୯ରେ ପ୍ରକାଶିତ ''ପଥ ପ୍ରାଂତର କବିତା''ରେ ଯଦିଓ ସେ ଗୋଦାବରୀଶ ମହାପାତ୍ରଂକର ଛଂଦ ଓ ଧ୍ୱନି ଆଣିଥିଲେ ଏବଂ ପରେ ବି ଅନଂତ ପଟ୍ଟନାୟକଂକ କବିତା ଦ୍ୱାରା ପ୍ରଭାବିତ ହୋଇପଡ଼ିଥିଲେ, ତଥାପି ଆଂଗିକ ଓ ଆତ୍ମିକ ଉଭୟ ଦୃଷ୍ଟିରୁ ସେ ପ୍ରଗତି ଯୁଗର ସେଇ ତରୁଣ ରାଉତରାୟଂକର ହିଁ ପ୍ରମୁଖ ଶିଷ୍ୟ । ସ୍ୱାଧୀନତା ପରବର୍ତ୍ତୀ କାଳରେ 'ଅଭିଯାନ' 'ପାଂଡୁଲିପି' ପ୍ରଭୃତିର ଯେଉଁ ବୈପ୍ଲବିକ ପରଂପରାକୁ ତ୍ୟାଗକରି ରାଉତରାୟ ତାଂକର ଏକାଂତ ଭାବଜଗତରେ ପ୍ରବିଷ୍ଟହେଲେ ଓ ବ୍ୟକ୍ତିମାନସର ଆର୍ତ୍ତନାଦକୁ ସ୍ପଷ୍ଟଭାବରେ ଶୁଣେଇଲେ, ପଷ୍ଠଦଶକର ଶେଷଭାଗରେ ଶ୍ରୀ ସିଂହ ସେଇ ବିଲୁପ୍ତ ପରପଂରାର ପୁନଃପ୍ରବର୍ତ୍ତକ ବା ସେଇ ବିଲୟମାନ କାବ୍ୟଧାରାର ବିଶ୍ୱସ୍ତ ବାର୍ତ୍ତାବାହକ ଭାବରେ ଦେଖାଦେଲେ । ଏହି ଦୃଷ୍ଟିରୁ ତାଂକର କବିତାଗୁଡ଼ିକରେ ସେ ସେଦିନର (୧୯୩୬-୪୬) ରାଉତ୍‌ରାୟଂକୁ ହିଁ ପ୍ରତିବିଂବିତ କରାଂତି । ଦୃଷ୍ଟାଂତ ସ୍ୱରୂପ ତାଂକର କବିତାଗୁଡ଼ିକ ପଢ଼ିବାବେଳେ ମୁଁ ରାଉତରାୟଂକର ଅବିକଳ ଶବ୍ଦାନୁକୃତି ସହିତ ଗତାନୁଗତିକ ଶବ୍ଦ ପରିବର୍ତ୍ତେ ଅନେକ ନୂତନ ଶାବ୍ଦିକ ପ୍ରୟୋଗ ମଧ ଦେଖିବାକୁ ପାଉଥିଲେ, ସେଇ ଢଂଗରେ ଶବ୍ଦମାନେ ଏଠି ଅଭିଧାନର ଶବ୍ଦ ଅର୍ଥରେ ବୁଝାଯାଉନି । ପ୍ରଚଳିତ ଶବ୍ଦ ପ୍ରୟୋଗକୁ ଭାଂଗିବାକୁ ଯାଇ ରାଉତ୍‌ରାୟ ଓଡ଼ିଆ କବିତାରେ ସ୍ୱଚ୍ଛ ବ୍ୟବହୃତ ଓ କଥିତ ଶବ୍ଦମାନଂକର ପାରସ୍ପରିକ ସଂଗମ ଦ୍ୱାରା ଛୋଟ ଛୋଟ ଚିତ୍ରକଳ୍ପମାନ ସୃଷ୍ଟିକରିଥିଲେ । ଏହି ଚିତ୍ର ସୃଜନକାରୀ ଶବ୍ଦ ପ୍ରୟୋଗ ଦ୍ୱାରା କବିତାର ଅର୍ଥ ପ୍ରକାଶରେ ଭାବ ବା କବିତାର ଉଦ୍ଦେଶ୍ୟ ଗତାନୁଗତିକତାର ଗଂଡି ଅତିକ୍ରମ କରି ନୂତନ ବ୍ୟଞ୍ଜନାରେ ପ୍ରାଣବଂତ ହୋଇ ଉଠୁଥିଲା ।

ରାଉତରାୟଂକର ସେଦିନର କବିତାଗୁଡ଼ିକରେ ବ୍ୟବସ୍ଥିତ ଶବ୍ଦମାନଂକର ସେହି ନୂତନ ପ୍ରୟୋଗକୁ ଶ୍ରୀ ସିଂହ ମଧ ଅନେକ ସ୍ଥଳରେ ନକଲ କରିଛଂତି ଏବଂ ସେହି ଅନୁକରଣର ଚିତ୍ରକଳ୍ପମାନ ସୃଷ୍ଟି କରିଛଂତି । ଏପରି ରାଉତରାୟଂକର ଏକାଧିକ ନିଜସ୍ୱ ପ୍ରୟୋଗକୁ ଆମେ ମଧ ଲକ୍ଷ୍ୟ କରୁ । ସିଂହଂକ କବିତାଗୁଡ଼ିକରେ ଯଥା – 'ଅଫିମର କଳାରାତି ଜାରଜ ସଭ୍ୟତା', 'ଜାରଜ ଆକାଶ', 'ନପୁଂସକ ସଭ୍ୟତା', 'ଶୋଷଣର କଳାରାତ୍ରି', 'ଯୌବନର ରକ୍ତଘୋଡ଼ା', 'ଉଷାର ତୋରଣ', 'ରାତ୍ରିର ତୋରଣ', 'ରାତ୍ରିର କବରୀ', 'ଝଡ଼ର କବରୀ', 'ମେଘର ଉଭରୀ', 'ଡେଣାର ଢେଉ', 'ମୃତ୍ୟୁର ମାନଚିତ୍ର', 'ଭାଂଗିବାର କବି', 'ରାତ୍ରିର ସାମ୍ରାଜ୍ୟ', 'ଜମ୍ବଦ୍‌ଗବ ସମାଜ' ଓ ଏହିପରି ଅନେକ ।

ଚିତ୍ରକଳ୍ପ ପ୍ରୟୋଗରେ ବି ସେ ରାଉତରାୟଂକର ଖାତକ । ରାଉତ୍‌ରାୟଂକର ''xxx ଉଇଁ ଆସେ ଚାଂଦ ଶରତର ।'' ସେପରି ''ସୁନାର ଦାଆ କାଟିଯାଏ ଅଂଧାର ଫସଲର ଛାୟା ସଂପଦକୁ'' ମଧ ଆମେ ଲକ୍ଷ୍ୟ କରିପାରିବା ସିଂହଂକର ''ଚଂଦ୍ରର

ଦାଆ ଶୂନ୍ୟେ କାଟିବ ଫସଲ'' ପରି ଏକ ପ୍ରଚ୍ଛନ୍ନ ଚିତ୍ରକଳ୍ପରେ । ରାଉତ୍‌ରାୟଂକର ''ହସିଉଠେ କଜ୍ଜଳରାତି'' ''ଫିଟିପଡ଼େ ଝଡ଼ର କବରୀ'' ସହିତ ତାଂକର ଅନ୍ୟ ଏକ କବିତାର ଚିତ୍ର ସୂଚନା ମଧ୍ୟ ତୁଳନାଯୋଗ୍ୟ – ''ଫିଟିପଡୁଥିବା ଝଡ଼ର କବରୀ, ଡାକୁଥିବ ଘନଘଟା'' । ଏପରିଭାବେ ଏକ ଅଧମର୍ଣ କବି ରୂପେ ସେ କିଛିଟା ସ୍ୱୀକୃତି ପାଇଲେ । ତାଂକର ଅଧିକାଂଶ କବିତାରେ ରାଉତରାୟସୁଲଭ ପ୍ରୟୋଗ ଯଥା ''ଫୁଲର ରାଜଧାନୀ'', ''ସପ୍ତର୍ଷିର ଦେଶ'', ''ଜୀବନର ସିଂହଦ୍ୱାର'' ''ରାତ୍ରିର ପାଦଟୀକା'' ପ୍ରଭୃତିର ଅନୁକରଣ ଦେଖାଯାଏ ।

କିଂତୁ ଏସବୁ ଆଂଗିକ ଅନୁକୃତି ପାଇଁ ସେ ଯେତେଦୂର ରାଉତରାୟଂକ ନିକଟରେ ଋଣୀ ନୁହଂତି, ସେତେଦୂର ଋଣୀ ବରଂ ତାଂକର ଆତ୍ମିକ (୧୯୩୬-୪୬)ର ଅନୁକରଣ ପାଇଁ । ରାଉତରାୟଂକ କବିତାରେ ଅଶୁଭ ଓ ଅଶିବକୁ ଶୁଭ ଓ ଶିବ ଭାବରେ ଚିତ୍ରିତ କରିବାର ଚେଷ୍ଟା ଏବଂ ଜୀବନର ଉପେକ୍ଷିତ ଓ ଅବହେଳିତ ଦିଗକୁ କବିତାରେ ସ୍ଥାନଦେବାର ଲକ୍ଷଣ ବି ତାଂକ କବିତାର ପ୍ରମୁଖ ପ୍ରମୁଖ ପ୍ରବୃତ୍ତି । ରାଉତରାୟଂକର 'ପଶୁ' ଓ 'ରାକ୍ଷସ'ଧର୍ମୀ କବିତାଗୁଡ଼ିକରେ ''ଧ୍ୱଂସକ୍ରିୟା ପ୍ରତି ଯେଉଁପରି ଅନୁରକ୍ତି ଅଭିବ୍ୟକ୍ତ, ସେଇ ସ୍ୱତଂତ୍ର ଧ୍ୱଂସାନୁରାଗ ତାଂକ କବିତାରେ ମୂଳ ଚାରିତ୍ରିକ ଗୁଣ ଉକ୍ତିଟି ପଢ଼ି ରାଉତରାୟ ମଧ୍ୟ ଏକଦା ଏହା ଲକ୍ଷ୍ୟ କରିଥିଲେ ଯେ – ରବି ସିଂହଂକ କାବ୍ୟ-ପୁରୁଷର ପ୍ରଧାନ ଚାରିତ୍ରିକ ଗୁଣ ହେଲା ଧ୍ୱଂସ ପ୍ରତି ଅନୁରାଗ । ଅଥଚ ରାଉତରାୟ ଯେତେବେଳେ ଭାଂଗିବାର କବି ହୋଇ ଗଢ଼ିବାର ସ୍ୱପ୍ନ ଦେଖଂତି, ସେତେବେଳେ ସେ ସ୍ୱପ୍ନ ମଧ୍ୟ ସିଂହଂକ କାବ୍ୟଜଗତରେ ଛାୟା ବିସ୍ତାର କରେ । ପୁଣି ସେଇ 'ଅଭିଯାନ' କାଳର ଦୁଇପଥଧର୍ମୀ କବିତାଗୁଡ଼ିକରେ ନାରୀ ଓ ପ୍ରେମ ପ୍ରତି ଯେଉଁ ତୀର୍ଯକ ଦୃଷ୍ଟିକୋଣ ପ୍ରତିବିଂବିତ, ସେ ଦୃଷ୍ଟିକୋଣ ସିଂହଂକ ବୈପ୍ଳବିକ ପ୍ରେମକବିତାଗୁଡ଼ିକର ମଧ୍ୟ ପ୍ରବୃତ୍ତି । ମାତ୍ର ଏଠାରେ ଲକ୍ଷଣୀୟ ଯେ, ଅଭିଯାନ, ବାଜିରାଉତ ଓ ପାଂଡୁଲିପିରେ ଯେଉଁ ଶବ୍ଦପ୍ରୟୋଗ, ଉପମା, ଚିତ୍ରକଳ୍ପ ତଥା ଭାବଧାରା ତିରିଶ ବର୍ଷ ତଳେ ପାଠକଚିତ୍ତରେ ଏକ ନୂତନ ଉଦ୍ଦୀପନା ଆଣିପାରିଥିଲା ସେସବୁର ପୁନରାବୃତ୍ତି ସିଂହଂକ କବିତାରେ ସେଭଳି ଉଦ୍ଦୀପନା ସୃଷ୍ଟି କରିପାରେନା । ତାର କାରଣ 'ଅଭିଯାନ' ଓ ସିଂହଂକ ଭିତରେ ଦୀର୍ଘ ପ୍ରାୟ କୋଡ଼ିଏ ବର୍ଷ ସମୟର ବ୍ୟବଧାନ ତଥା ଅଂତରାୟ ରହିଛି ।

x x x x

'ଆସଂତାକାଲି' ଅଗଷ୍ଟ ୧୯୭୪ରେ ଏହି ଲେଖା ପ୍ରକାଶର ଅବ୍ୟବହିତ ପରେ ଗିରିଜା କୁମାର ବଳିୟାରସିଂହ ପ୍ରଭୃତି ଟାଉନ୍‌ହଲରେ ଏହି ସାହିତ୍ୟ ସଭା ଡାକିଥିଲେ । ଏହାର ଆଲୋଚ୍ୟ ବିଷୟ ଥିଲା ''ଆଜିର ଓଡ଼ିଆ ସାହିତ୍ୟିକ ପରିସ୍ଥିତି'' । ଏକଥା ସଭାର ପ୍ରଚାର ପତ୍ରରେ ଏବଂ ନିମଂତ୍ରଣପତ୍ରରେ ଆବାହକମାନେ ଉଲ୍ଲେଖ କରିଥିଲେ । ଏ ସଭାରେ ସଭାପତି ଭାବରେ ମୋ ନାମ ଏବଂ ବକ୍ତାମାନଂକ ନାମ ମଧ୍ୟ ଏଥିରେ ଲିପିବଦ୍ଧ ହୋଇଥିଲା । ରବି ସିଂହ ବୋଧହୁଏ ଭାବିଥିଲେ, ଏହି ସଭାରେ ତାଂକର

ମୋ ଲେଖାର ନକଲ ବିଷୟ ଆଲୋଚିତ ହେବ, ତେଣୁ ମୂଳରୁ ସଭା ଭାଂଗିଦେଲେ ଅଡୁଆ ଛିଂଡିଯିବ ।

**''ଝଂକାର'' ପତ୍ରିକାରେ କୁତ୍ସା ପ୍ରଚାର :**

ଏହାପରେ ୧୯୭୪-୭୫ ରେ ରବି ସିଂହ ''ଝଂକାର'' ମାସିକପତ୍ରିକାରେ ମୋ ବିରୋଧରେ ''ସାହିତ୍ୟରେ ବୈପ୍ଳବିକ ମୂଲ୍ୟବୋଧ'' ଶୀର୍ଷକ ଏକ ଧାରାବାହିକ ପ୍ରଂବଂଧ ପ୍ରକାଶ କରିଥିଲେ । ଡ. ହରେକୃଷ୍ଣ ମହତାବ ଝଂକାରର ସଂପାଦକ ଥିଲେ । ତେଣୁ ସେଥିରେ ମାସ ମାସ ଧରି ଚାରିପାଂଚଟି ସଂଖ୍ୟାରେ ମୋ ବ୍ୟକ୍ତିଗତ ଜୀବନକୁ ଆକ୍ଷେପ କରି କିପରି ଏଭଳି ଏକ ଧାରାବାହିକ ପ୍ରଂବଂଧପ୍ରକାଶ ପାଉଛି ତାହା ବହୁ ବୁଦ୍ଧିଜୀବୀ ଓ ସାହିତ୍ୟିକଂକୁ ବିସ୍ମିତ କରିଥିଲା । ଡ. ମହତାବ କାହିଁକି ଓ କିପରି ଏଭଳି ବିଦ୍ୱେଷପୂର୍ଣ ଲେଖାକୁ ପ୍ରଶ୍ରୟ ଦେଉଛଂତି ତାହା କେହି ବୁଝିପାରୁନଥାଂତି ।

ଅନେକ ପାଠକ ଭାବିଥିଲେ ଜୟଦେବଂକ ସ୍ଥିତି ନେଇ ଡ. ମହତାବ ଓ ମୋ ମଧ୍ୟରେ ଯେଉଁ ମତାଂତର ଘଟିଥିଲା ତାହାହିଁ ଏହି କୁତ୍ସା ଅଭିଯାନର ମୂଳ କାରଣ । ମୁଁ ମୋର ''ସାହିତ୍ୟର ମୂଲ୍ୟବୋଧ'' ପୁସ୍ତକରେ ଏବଂ ଅନ୍ୟାନ୍ୟ କେତେକ ଲେଖାରେ ଜୟଦେବ ଗୌଡ଼ବଂଶର ରାଜା ଲକ୍ଷ୍ମଣ ସେନଂକ ସଭାକବି ଥିଲେ ବୋଲି ଦୃଢ଼ଭାବରେ ପ୍ରତିପାଦିତ କରିଥିଲି । ବୀରଭୂମ୍ ସେତେବେଳେ ଅର୍ଥାତ୍ ଜୟଦେବଂକ ସମୟରେ ଓଡ଼ିଶାର ଅଂନ୍ତର୍ଭୁକ୍ତ ଥିଲା ବୋଲି ମହତାବ ସୂଚନା ଦେଇ ମଂତବ୍ୟ ପ୍ରକାଶ କରିଥିଲେ ।

ମୁଁ ମୋ ପୁସ୍ତକରେ ସେନ୍ ରାଜାମାନଂକର କେତେକ ପ୍ରଶସ୍ତିଫଳକ ଓ ଅଭିଲେଖ ଉଦ୍ଧାରକରି ବୀରଭୂମ୍ ଲକ୍ଷ୍ମଣ ସେନଂକ ସମୟରେ ଗୌଡ଼ବଂଗର ବର୍ଦ୍ଧମାନଭୁକ୍ତିର ଅଂତର୍ଭୁକ୍ତ ଥିଲା ବୋଲି ପ୍ରମାଣକରିଥିଲି । ମହତାବଜୀ ତାଂକ ଓଡ଼ିଶା ଇତିହାସରେ ସ୍ପଷ୍ଟ ମତ ଦେଇ ଜୟଦେବଂକୁ ଲକ୍ଷ୍ମଣ ସେନଂକ ସଭାକବି ବୋଲି ନିର୍ଣୟ କରିଥିଲେ । ସେ ଲେଖିଥିଲେ – ''ଯେଭଳି ପ୍ରମାଣ ସହ ଜୟଦେବ ଲକ୍ଷ୍ମଣ ସେନଂକ ସଭାପଂଡିତ ରୂପେ ଇତିହାସ ଜଗତରେ ଥୁଆହୋଇଛଂତି, ତଦ୍ଦୃଷ୍ଟେ ତାଂକୁ ଓଡ଼ିଶାବାସୀ ବା ଓଡ଼ିଶା ରାଜସଭାର ପଂଡିତ କହିବା ସଂଭବ ନୁହେଁ । ଏଥିପାଇଁ ଆହୁରି ଅଧ୍ୟୟନ ଆବଶ୍ୟକ ।''

ବର୍ତ୍ତମାନ ସେ ଭିନ୍ନ ମତ ପ୍ରକାଶ କରୁଥିବାରୁ ମୁଁ ମୋ ପୁସ୍ତକରେ ତହିଁର ପ୍ରତିବାଦ କରିଥିଲି ଏବଂ ତାହାକୁ ଖଂଡନ କରିଥିଲି । ଏ ବିଷୟରେ ମୁଁ ମୋର ''ସାହିତ୍ୟର ମୂଲ୍ୟବୋଧ'' ପୁସ୍ତକରେ ବିଶଦ ଭାବରେ ଆଲୋଚନା କରିଛି । ରବି ସିଂହଂକ ଝଂକାରରେ ପ୍ରକାଶିତ ଲେଖା ତାହା ଡ. ମହତାବଂକ ଜ୍ଞାତସାରରେ ପ୍ରକାଶ ପାଇଥିଲା ବୋଲି ମୋର ଓ ଅନ୍ୟ ବଂଧୁମାନଂକର ଧାରଣା ଥିଲା ।

ଓଡ଼ିଶାର ବହୁ ଖ୍ୟାତନାମା ଲେଖକ ଏଭଳି ବ୍ୟକ୍ତିଗତ କୁତ୍ସାରଚନାମୂଳକ ପ୍ରବଂଧର ଘୋର ବିରୋଧ କରିଥିଲେ । ସେମାନଂକ ମଧ୍ୟରେ ସ୍ୱର୍ଗତ ଡ. କୃଷ୍ଣପ୍ରସାଦ ମିଶ୍ର, ମହାପାତ୍ର ନୀଳମଣି ସାହୁ, ଡ. ଶାଂତନୁ ଆଚାର୍ଯ ପ୍ରମୁଖ ନାମ ଉଲ୍ଲେଖନୀୟ ।

ସେମାନେ ମହତାବଂକୁ ଭେଟି ଏବଂ ପତ୍ର ଲେଖି ଏଭଳି ଲେଖା ବଂଦ କରିବାକୁ ଦାବିକରିଥିଲେ ।

ଏହି ସମୟରେ ୧୯୭୫ ମସିହାରେ ଦେଶରେ ଜରୁରିକାଳୀନ ଅବସ୍ଥା ଜାରି ହୁଏ ଏବଂ ତୁଂଗ ବିରୋଧୀ ନେତାମାନେ ଯଥା – ଜୟପ୍ରକାଶ ନାରାୟଣ, ଡଃ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ଗିରଫ ହୋଇଯାଂତି । ମହତାବଂକୁ କିଛିଦିନ ଭଂଜନଗର ଜେଲ୍‌ରେ ରଖାଯାଇଥିଲା । ମହତାବ ବଂଦୀ ହେବା ପରେ ଝଂକାରରେ ରବି ସିଂହଂକ କୁତ୍ସାମୂଳକ ପ୍ରବଂଧ "ସାହିତ୍ୟରେ ବୈପ୍ଳବିକ ମୂଲ୍ୟବୋଧ"ର ପ୍ରକାଶନ ବଂଦ-ହୋଇଥିଲା । ପରେ ଅବଶ୍ୟ ରବି ସିଂହଂକ ଏସବୁ ପ୍ରଂବଧ "ସାହିତ୍ୟରେ ବୈପ୍ଳବିକ ମୂଲ୍ୟବୋଧ" ନାମରେ ପ୍ରକାଶ ପାଇଲା ।

ଅନ୍ୟଥା ରବି ସିଂହଂକ ସହିତ ମୋର ସଂପର୍କ ଭଲଥିଲା । ସେ ତାଂକର ଏକ କବିତା ସଂକଳନ 'ଭ୍ରୂକୁଟି'ର ମୁଖବଂଧ ଲେଖିବାକୁ ମୋତେ ଅନୁରୋଧ କରିଥିଲେ, ମୁଁ ଆନଂଦର ସହିତ ଲେଖିଥିଲି । ସେଥିରେ ମୁଁ ଲେଖିଥିଲି – "ସେ ଖାଲି ଜଣେ କ୍ରୋଧୀ ତରୁଣ ନୁହଂତି, କ୍ରୋଧ ହିଁ ତାଂକର ଜୀବିକା" । ସେ ଖୁସିରେ ମୋ ମୁଖବଂଧଟି ତାଂକ ପ୍ରଣୀତ 'ଭ୍ରୂକୁଟି'ରେ ଛାପିଥିଲେ ।

ମୁଁ କଲିକତା ଚାକିରି ଛାଡ଼ି କଟକରେ ଆସି ରହିଲାପରେ ସେ ବରାବର ମୋ ଘରକୁ ଆସୁଥିଲେ । ତାଂକର ଅଭାବ ଅନଟନ କଥା ମୋତେ ଅକପଟରେ ଜଣାଉଥିଲେ । ମୁଁ ତାଂକୁ ସାଧ୍ୟ ମତେ କିଛି କିଛି ଅର୍ଥ ସାହାଯ କରୁଥିଲି । ମାତ୍ର ମଝିରେ ମଝିରେ କ'ଣ ହୁଏ କେଜାଣି ସେ ଭାରସାମ୍ୟ ହରାଇବସଂତି, ମୋ ବିରୋଧରେ ଗୁଡ଼ାଏ ଲେଖାଲେଖି କରଂତି । ମୁଁ ସେସବୁର ଜବାବ ଦିଏନାହିଁ । ତାଂକର କୁତ୍ସାମୂଳକ ପୁସ୍ତକ 'ସାହିତ୍ୟରେ ବୈପ୍ଳବିକ ମୂଲ୍ୟବୋଧ'ର ମଧ୍ୟ ମୁଁ ଇଚ୍ଛାକଲେ ଜବାବ ଦେଇପାରିଥାଂତି, ମାତ୍ର ମୁଁ ନୀରବ ରହିଲି । ବଂଧୁମାନଂକର ପରାମର୍ଶ ମାନି ମୁଁ ଏଭଳି ନିମ୍ନସ୍ତରର ଲେଖାର କୌଣସି ଜବାବ୍ ଦେବା ଉଚିତ ମନେ କଲି ନାହିଁ । ତାହା କରିଥିଲେ ତାଂକର ଓ ସେ ବହିର ଗୁରୁତ୍ୱ ହିଁ ବଢ଼ିଥାଂତା ।

**ସୁରେଂଦ୍ର ମହାଂତିଂକ ନକଲନବିଶ୍‌ପଣିଆ :**

ସୁପରିଚିତ କଥାକାର ସୁରେଂଦ୍ର ମହାଂତିଂକ ବହୁ ଲେଖା ମୋ ଲେଖାର ନକଲ ଓ ଅନୁକରଣ ବୋଲି ଜଣାଯାଇଛି । ଓଡ଼ିଆ ଅଧ୍ୟାପକ ବିଜୟ ଚୌଧୁରୀ ୧୯୮୦ରେ "କଥାକାର ସୁରେଂଦ୍ର ମହାଂତି" ନାମକ ଖଂଡିଏ ସମୀକ୍ଷା ପୁସ୍ତକ ପ୍ରକାଶକରି ଏହା ଦର୍ଶାଇଛଂତି । ସେ ଦେଖାଇଛଂତି ଯେ ମୋର ଗୋଟିଏ ବଡ଼ ଗଳ୍ପ "ସହସ୍ରଶଯ୍ୟାର ନାୟିକା" କଟକରୁ ପ୍ରକାଶିତ ସାହିତ୍ୟ ପତ୍ରିକା "ଆରତି"ରେ ୧୯୪୧ ମସିହାରେ ପ୍ରକାଶ ପାଇଥିଲା । ସୁରେଂଦ୍ର ମହାଂତି କେତେ ବର୍ଷ ପରେ ସେହି ନାମରେ ଅର୍ଥାତ୍ "ସହସ୍ରଶଯ୍ୟାର ନାୟିକା" ନାମ ଦେଇ ଖଂଡିଏ ଉପନ୍ୟାସ କଟକରୁ ପ୍ରକାଶକରିଥିଲେ । ମୋ ଗଳ୍ପରେ ଥିବା ନାୟକନାୟିକା ଓ ଉପନାୟିକାମାନଂକର ନାମ ସେ ତାଂକ ବହିରେ

ସେହିପରି ରଖିଛଂତି । ଏହାଛଡ଼ା କଥାବସ୍ତୁ ଓ ଭାଷାରେ ସେ ମୋ ଗଳ୍ପକୁ ବହୁଳ ନକଲ ଓ ଅନୁକରଣ କରିଛଂତି । ସୁରେଂଦ୍ରବାବୁ ଅଧ୍ୟାପକ ଚୌଧୁରୀଂକ ଲିଖିତ ପୁସ୍ତକର କୌଣସି ଜବାବ୍ ଦେଇ ନାହାଂତି, ପ୍ରତିବାଦ ତ କରିବା ଦୂରର କଥା । ଅଧ୍ୟାପକ ଚୌଧୁରୀ ତାଂକ ପୁସ୍ତକରେ ସୁରେଂଦ୍ର ବାବୁଂକର ଅନ୍ୟ କେତେକ ଗଳ୍ପର ପ୍ରଶଂସା କରିଛଂତି ।

**ଡ. ମାନସିଂହଂକ ଲଗୁଡ଼ ଉତ୍ତୋଳନ :**

ଡ. ମାୟାଧର ମାନସିଂହ ତାଂକ ପ୍ରଣୀତ ଏବଂ କେଂଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ଇଂରାଜୀ ପୁସ୍ତକ History of Oriya Literatureରେ ମୋତେ ଆଧୁନିକ ସାହିତ୍ୟର ସ୍ରଷ୍ଟାଭାବରେ ବହୁସ୍ଥଳରେ କଷାଘାତ କରିଛଂତି । ସେ ମୋତେ ଆଧୁନିକ ଓଡ଼ିଆ କବିତାର ଭଗୀରଥ ବୋଲି ବର୍ଣନାକରି ତୀବ୍ର ସମାଲୋଚନା କରିଛଂତି । ସେ କିଂତୁ ତାଂକ ସଂପାଦିତ 'ଶଂଖ' ପତ୍ରିକାରେ ମୋ କବିତା ''ପ୍ରତିମା ନାୟକ''କୁ ପ୍ରଥମେ ପ୍ରକାଶ କରିଥିଲେ । ପରେ ତାଂକ ସଂପାଦକୀୟ ମଂତବ୍ୟରେ ଏହି କବିତାକୁ ଭୂୟସୀ ପ୍ରଶଂସା କରିଥିଲେ । ସେ ଲେଖିଥିଲେ ''ଏପରି ସ୍ୱର ଆମେ ରାଧାନାଥ, ମଧୁସୂଦନ କିଂବା ତାଂକ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ କବିମାନଂକ କଂଠରେ ଶୁଣିବାକୁ ପାଉନା ।''

ଡ. ମାନସିଂହ ପ୍ରଗତି ସାହିତ୍ୟ ଓ ଆଧୁନିକ ସାହିତ୍ୟର ବିରୋଧୀ ଥିଲେ । ମୋ କବିତା ସଂକଳନ ''ପାଂଡୁଲିପି''ରେ ଗ୍ରଥିତ ''କୋଣାର୍କ'' କବିତା ରେ ମୁଁ ଲେଖିଥିଲି –

''ତମେତ ଦେଖିଚ ଶିଳାରେ ତାହାର ରମ୍ୟକଳାର ରୂପ,
ମୁଁ ଦେଖିଛି ତହିଁ କୋଟି କଂକାଳ ଭଗ୍ନ ବୁକୁର ସ୍ତୂପ
ମୂଲିଆର ଆଖି ନେଇ
ମୁଁ ଦେଖିଛି ସେହି ମଂଦିର ରୂପ, ବ୍ୟଥାର ଆରତି ଦେଇ ।
x x x x x
ହାଏରେ ରମ୍ୟକଳା
କିଛି ତ କହିନି ମଣିଷର କଥା କହିବାର ଯାହା ଥିଲା ।

ଏହା ପଢ଼ି ଡ. ମାନସିଂହ ଲେଖିଥିଲେ – ''ସଚ୍ଚି ରାଉତରାୟ ପଥୁରିଆଂକ କବି'' । ଏହି ଉକ୍ତିରୁ ଜଣାଯାଏ ଯେ ସେ ପ୍ରଗତି ସାହିତ୍ୟକୁ ସହ୍ୟକରିପାରୁନଥିଲେ ।

**ଓଡ଼ିଶାର ସୁଖେ ଦୁଃଖେ C.P.D.R.A. ଗଠନ :**

ମୁଁ ଓଡ଼ିଶାରେ ବହୁ ସମାଜକଲ୍ୟାଣ କାର୍ଯରେ ପ୍ରତ୍ୟକ୍ଷ ଅଗ୍ରଭୂମିକା ଗ୍ରହଣ କରିଥିଲି । S.U.C.I. (ସୋସିଆଲିଷ୍ଟ ୟୁନିଟି ସେଂଟର)ର କେତେକ କର୍ମୀ ଏବଂ ମୁଁ C.P.D.R.S. ବା Committee for Protection of Democratic Rights and Secularism ଗଠନ କରିଥିଲୁ । ମୁଁ ଏହାର ସଭାପତି ଥିଲି । ନବକିଶୋର ରାଉତ ଏବଂ ବିଜୟ କୁମାର ସାହୁ ଯଥାକ୍ରମେ ସଂପାଦକ ଓ ସଂଗଠନ ସଂପାଦକ ଥିଲେ ।

ସମାଜ ଓ ଶାସନରେ ଯେଉଁସବୁ ଅନ୍ୟାୟ ଓ ଅତ୍ୟାଚାର ଚାଲିଛି ତା ବିରୋଧରେ ଆଂଦୋଳନ କରିବା ଏବଂ ଜନମତ ସୃଷ୍ଟିକରିବା ଏହାର ଲକ୍ଷ୍ୟ ଥିଲା । ଜନସାଧାରଣଂକର ଗଣତାଂତ୍ରିକ ଅଧିକାର ଓ ଧର୍ମନିରପେକ୍ଷତା ଉପରେ ଆକ୍ରମଣ ହେଲେ ତହିଁର ପ୍ରତିରୋଧ କରିବା C.P.D.R.S.ର ମୁଖ୍ୟ ଉଦ୍ଦେଶ୍ୟ ଥିଲା ।

**ପାରାଦ୍ୱୀପରେ ଗଣହତ୍ୟା :**

୧୯୮୪ ମସିହା ମାର୍ଚ୍ଚ ମାସରେ ପାରାଦ୍ୱୀପରେ କଣ୍ଟ୍ରାକ୍ଟର ଓ ସେମାନଂକ ଶ୍ରମିକମାନଂକ ମଧ୍ୟରେ ସଂଘର୍ଷ ଘଟିଥିଲା । ଶ୍ରମିକମାନେ ଅଧିକ ମଜୁରି ଏବଂ ଅନ୍ୟ କେତେକ ନ୍ୟାଯ୍ୟ ପାଉଣା ଓ ସୁବିଧା ଦାବିକରି ଧର୍ମଘଟ କରିଥିଲେ । ଏହାକୁ ଦମନ କରିବା ପାଇଁ ଠିକାଦାରମାନେ ପ୍ରାଣପଣେ ଚେଷ୍ଟାକରୁଥିଲେ । ମାତ୍ର ଶ୍ରମିକମାନଙ୍କର କାମବଂଦ ଆଂଦୋଳନ ଚାଲୁରହିଥିଲା । ଠିକାଦାରମାନେ ପୁଲିସକୁ ଖବର ଦେଇଥିଲେ । ଜଣେ ସବ୍‌ଇନିସ୍‌ପେକ୍ଟରଂକ ଅଧୀନରେ କେତେକ ସଶସ୍ତ୍ର ପୁଲିସ ପାରାଦ୍ୱୀପରେ ପହଂଚି ଶ୍ରମିକମାନଂକୁ କାମ ଚାଲୁ କରିବା ପାଇଁ ଏବଂ ଶାଂତିଶୃଙ୍ଖଳା ବଜାୟ ରଖିବା ପାଇଁ ଧମକ ଚମକ ଦେଲେ, ମାତ୍ର ଶ୍ରମିକମାନେ ଦବିଲେନାହିଁ । ପୁଲିସ ଓ ଶ୍ରମିକମାନଂକ ମଧ୍ୟରେ ଧସ୍ତାଧସ୍ତି ହେଲା । ପୁଲିସ୍ ଗୁଳିଚଳାଇଲା । ଦୁଇତିନିଜଣ ଶ୍ରମିକ ଘଟଣାସ୍ଥଳରେ ମୃତ୍ୟୁମୁଖରେ ପଡ଼ିଲେ । ଏଥିରେ ଶ୍ରମିକମାନେ ଉତ୍ତ୍ୟକ୍ତ ହୋଇ ପୁଲିସ୍ ଉପରେ ଆକ୍ରମଣକଲେ । ଜଣେ ପୋଲିସ୍ ସବ୍‌ଇନିସ୍‌ପେକ୍ଟର ନିହତ ହେଲେ । କେତେକ ପୁଲିସ୍ କନ୍‌ଷ୍ଟେବଲ ଆହତ ହୋଇଥିଲେ ।

ପୋଲିସ୍ ଟେଲିଫୋନ୍ କରି ଓ.ମ୍.ପି ଛକରେ ଥିବା ପୋଲିସ୍ ବ୍ୟାରାକରୁ ବହୁ ସଶସ୍ତ୍ର ପୋଲିସ୍ ମଗାଇଲେ । ଦୁଇତିନିଟି ଟ୍ରକରେ ବୋଝାଇହୋଇ ବହୁ ସଶସ୍ତ୍ରପୋଲିସ୍ ଆସି ପାରାଦ୍ୱୀପରେ ପହଞ୍ଚିଲେ । ଶ୍ରମିକମାନଂକ ବସ୍ତିରେ ପଶି ଶ୍ରମିକମାନଂକୁ ଟାଣିଆଣି ମାରଧରକଲେ । ସଂଧ୍ୟାବେଳେ ଶ୍ରମିକବସ୍ତିରେ ନିଆଁଲଗାଇଦେଲେ । ବହୁ ଶ୍ରମିକ ନିଆଁରେ ଜଳିଯାଇ ମୃତ୍ୟୁବରଣ କଲେ । ପୋଲିସ ଚାରିପଟେ ଜଗିରହିଥିଲେ, ଯାହାକୁ ପାଇଲେ ବାଡ଼ଉଥିଲେ । ପଳେଇବାର ବାଟ ନଥିଲା ।

ସରକାରଂକ ପକ୍ଷରୁ ଯେଉଁ ରିପୋର୍ଟ ପ୍ରକାଶ ପାଇଲା ସେଥିରେ ମାତ୍ର ତିନି-ଚାରିଜଣ ଶ୍ରମିକ ଏବଂ ଜଣେ ପୁଲିସ୍ ସବ୍‌ଇନିସ୍‌ପେକ୍ଟର ମରିଛଂତି ବୋଲି ଉଲ୍ଲେଖ ଥିଲା ।

ଆମେ C.P.D.R.S. ପକ୍ଷରୁ ତାପରଦିନ ଯାଇ ପାରାଦ୍ୱୀପରେ ପହଁଞ୍ଚିଲୁ । ମୁଁ ଓ ସଂପାଦକ ନବକିଶୋର ରାଉତ ଓ ବିଜୟସାହୁ ପ୍ରଭୃତି ଶ୍ରମିକମାନଂକ ଜଳିଯାଇଥିବା ବସ୍ତି ଦେଖିଲୁ । ବହୁ ସ୍ଥାନୀୟ ଲୋକଂକୁ ଭେଟି ପ୍ରକୃତ ଘଟଣା ଜାଣିବା ପାଇଁ ପଚରାଉଚରା କଲୁ । ସେମାନଂକର ବକ୍ତବ୍ୟକୁ ଟେପ୍ ରେକର୍ଡ଼ ମଧ୍ୟ କଲୁ । ଆମେ ଜାଣିବାକୁପାଇଲୁ ପ୍ରାୟ ୪୦/୫୦ ଉର୍ଦ୍ଧ୍ୱ ଶ୍ରମିକ ନିଆଁରେ ପୋଡ଼ି ମୃତ୍ୟୁବରଣ କରିଛଂତି । ସେମାନଂକ ଶବକୁ ବସ୍ତି ନିକଟରେ ବହିଯାଉଥିବା ଖରସ୍ରୋତାନଦୀ ପାଣିରେ ଏବଂ ସମୁଦ୍ରରେ ଭସାଇଦିଆଯାଇଛି ।

ଆମେ ଏ ବିଷୟରେ ଏକ ଛାପାପୁସ୍ତିକା ଆକାରରେ ରିପୋର୍ଟ ପ୍ରକାଶ କଲୁ । ସରକାର, ଶାସକବର୍ଗ ଓ ସଂବାଦପତ୍ରମାନଂକୁ ଏହି ଛାପା ରିପୋର୍ଟ ଦେଇଥିଲୁ । ମୃତ ଶ୍ରମିକମାନଂକ ପରିବାରବର୍ଗକୁ ଉପଯୁକ୍ତ କ୍ଷତିପୂରଣ ଦେବାକୁ ଏବଂ ପୁଲିସ୍‌ବାହିନୀକୁ ଓ ଅଫିସରମାନଂକୁ କଡ଼ା ଶାସ୍ତି ଦେବା ପାଇଁ ଦାବିକରିଥିଲୁ । ଆମେ ଏଭଳି ନୃଶଂସ ଗଣହତ୍ୟା ବିରୋଧରେ ଆଂଦୋଳନ କରିଥିଲୁ ।

**ଜରିରେ ଅସବର୍ଣ ଲୋକଂକ ଉପରେ ଚଢ଼ାଉ ଓ ଘରପୋଡ଼ି :**

୧୯୮୭ ମସିହା ସେପ୍‌ଟେଂବର ମାସରେ କଟକ ଜିଲ୍ଲା ଜରି ଗ୍ରାମରେ ଅସବର୍ଣ ଲୋକଂକ ଉପରେ ସବର୍ଣମାନେ ଆକ୍ରମଣକରି ସେମାନଂକ ଘର ପୋଡ଼ିଦେବା ସଂଗେ ସଂଗେ ଗୁରୁତର ଭାବରେ ମାର୍‌ପିଟ୍ କରିଥିଲେ । ଘଟଣାର ବିବରଣୀରୁ ପ୍ରକାଶ ଯେ ଭାରତୀ ସାମଲ ନାମକ ଜଣେ ମାଇନର ସ୍କୁଲ ଛାତ୍ରୀ ବାବୁଲି ମଳିକ ନାମକ ଜଣେ କଂଡରା ଯୁବକକୁ ଭଲପାଉଥିଲା । ସେ ଦୁହେଁ ବିବାହ କରିବେ ବୋଲି ସ୍ଥିରକରିଥିଲେ । ସେମାନେ ଅତର୍କିତ ଭାବରେ ଗ୍ରାମ ଛାଡ଼ି ଅନ୍ୟ କେଉଁଠିକି ପଳାଇଯାଇଥିଲେ । ଏଥିପାଇଁ ଗ୍ରାମର ସବର୍ଣ ଲୋକେ କଂଡରା ସାହିରେ ପଶି ସେମାନଂକୁ ମାରଧର କରିଥିଲେ ଏବଂ ସେମାନଂକ ଘର ପୋଡ଼ିଦେଇଥିଲେ । ଅଧିକାଂଶ ଘର କଂଡରାମାନଂକର ପୋଡ଼ିଯାଇଥିଲା । ସବର୍ଣମାନଂକ ଦୁଇତିନି ବଖରା ଘର ନିଆଁ ଲାଗି ପୋଡ଼ିଯାଇଥିଲା । ଖବରକାଗଜମାନଂକରେ କିଂତୁ ଓଲଟା ଖବର ବାହାରିଥିଲା । ସେମାନେ କଂଡରାମାନଂକ ଉପରେ ଦୋଷ ଦେଇ ଲେଖିଥିଲେ । ଆମେ C.P.D.R.S. ତରଫରୁ ସେ ଗ୍ରାମକୁ ଯାଇଥିଲୁ । ନବକିଶୋର ରାଉତ, ବିଜୟ ସାହୁ ମୋ ସଂଗରେ ଥିଲେ । ଆମେ ସବର୍ଣ ଓ ଅସବର୍ଣ ଉଭୟ ଜାତିର ମୁରବୀସ୍ଥାନୀୟ ଲୋକଂକ ସହିତ କଥାବାର୍ତ୍ତା କରି ଖବର ସଂଗ୍ରହ କରିଥିଲୁ । ସେମାନଂକ ବକ୍ତବ୍ୟକୁ ସେମାନଂକ ଅଲକ୍ଷ୍ୟରେ ଟେପ୍ ରେକର୍ଡ଼ କରିଥିଲୁ । ଆମେ ଖରସୁଆ ନଦୀର ଏପଟରେ ଗାଡ଼ି ରଖି ନଈଭିତରେ ବାଲିରାସ୍ତାରେ ଚାଲି ଚାଲି ଯାଇ ଜରି ଗ୍ରାମରେ ପହଁଚିଥିଲୁ । ଆମେ ଖବରକାଗଜରେ ଆମ ବିବୃତି ପ୍ରକାଶକରିଥିଲୁ ।

ଭାରତୀ ସାମଲର ଜନ୍ମ "ଗୋଲାମ ଖଂଡାୟତ" କୁଳରେ । ସେଥିପାଇଁ ସେ ଗ୍ରାମରେ ସବର୍ଣମାନେ ସେମାନଂକୁ ହରିଜନ ଭଳି ବ୍ୟବହାର କରଂତି । ମାତ୍ର ବର୍ତ୍ତମାନ ଭାରତୀର ବାବୁଲି ସହିତ ବିବାହକୁ ସେମାନେ ଏକ ବଡ଼ ଇସ୍ୟୁ କରିଛଂତି ।

ଏଇ ଦଂଗାହଂଗାମା ବେଳେ ପାଖ ଗାଁର ଜଣେ ୩୦-୩୫ ବର୍ଷର ଦୋକାନୀ ସେ ଗାଁ ବାଟେ ଘରକୁ ଫେରୁଥିଲା । ତାକୁ କେତେଜଣ ଦୁର୍ବୃତ୍ତ ଗାଁମୁଂଡରେ ମାରିଦେଲେ । ଗ୍ରାମବାସୀଂକଠାରୁ ଶୁଣିଲି ସେ ଦୋକାନୀ ଲୋକଂକୁ ଧାରଉଧାର ଦେଇ ପଇସା ଅସୁଲ କରିବା ପାଇଁ ଜୁଲୁମ କରୁଥିଲା, ତେଣୁ ଲୋକେ ତା ଉପରେ ଉତ୍ୟକ୍ତ ହୋଇଥିଲେ । ମାତ୍ର କିଏ ତାକୁ ମାରିଲା ତାହା ଠିକ୍ ଜଣାପଡ଼ିନଥିଲା । ସେ ଯାହାହେଉ, ଆମେ ଫେରିଲାବେଳେ ସେ ଦୋକାନୀର ଗାଁକୁ ଯାଇଥିଲୁ । ତା ଘରକୁ ଯାଇ ତା ପରିବାରବର୍ଗଂକୁ

ସାନ୍ତ୍ୱନା ଦେଇଥିଲୁ । ତାର ୨୫/୨୬ ବର୍ଷର ସଦ୍ୟ ବିଧବା ସ୍ତ୍ରୀ ଭୋ' ଭୋ' ହୋଇ କାଂଦିଲା । ଆମେ ତାଂକୁ ପ୍ରବୋଧଦେଇ ସରକାରଂକୁ ଲେଖି କିଛି ଆର୍ଥିକ ସାହାଯ କରାଇ ଦେବୁ ବୋଲି କହି ଚାଲିଆସିଲୁ । ଆମେ ସେହି ମୃତ ବ୍ୟକ୍ତିର ପରିବାରବର୍ଗଂକୁ କ୍ଷତିପୂରଣ ବାବଦରେ ଆର୍ଥିକ ସାହାଯ୍ୟ ଦେବାକୁ ସରକାରଂକୁ ଲେଖିଥିଲୁ ।

ମୁଁ ମୋ ମିଶନ୍‌ରୋଡ଼ ଘରେ ଉକ୍ତ ବିଷୟ ନେଇ ଗୋଟିଏ ପ୍ରେସ୍ କନ୍‌ଫରେନସ୍ ଡାକିଥିଲି । ବହୁ ଓଡ଼ିଆ ଓ ଇଂରାଜୀ ଦୈନିକ ପତ୍ରିକାର ପ୍ରତିନିଧି ଏଥିରେ ଯୋଗ ଦେଇଥିଲେ । ଆମେ ସେମାନଂକୁ ସମସ୍ତ ବିଷୟ କହିଥିଲୁ ଏବଂ ଟେପ୍ ରେକର୍ଡ଼ ଶୁଣାଇଥିଲୁ ।

**ବୁର୍ଲା ଇଂଜିନିୟରିଂଗ୍ କଲେଜରେ ଛାତ୍ରହତ୍ୟା :**

ବୁର୍ଲା ଇଂଜିନିୟରିଂଗ କଲେଜର ହଷ୍ଟେଲରେ ରହୁଥିବା ଛାତ୍ରମାନେ ନିକଟରେ ଥିବା ବଜାରକୁ କେନାଲ୍ ବଂଧ ଉପରଦେଇ ଜଳଖିଆ କରିବା ପାଇଁ ଏବଂ ଜିନିଷପତ୍ର କିଣିବା ପାଇଁ ପ୍ରତିଦିନ ଯାଉଥିଲେ । ବଜାରର ଦୋକାନୀମାନେ ଓଡ଼ିଆ ଓ ମାରୱାଡ଼ୀ ଥିଲେ । ସେମାନଂକ ଭିତରୁ କେତେକ ଦୋକାନୀଂକ ସହ ହଷ୍ଟେଲ ଛାତ୍ରଂକର କଳିଝଗଡ଼ା ବହୁଦିନରୁ ଲାଗି ରହିଥିଲା । ସେଦିନ ସଂଧ୍ୟାରେ ତାହା ବଢ଼ି ମାର୍‌ପିଟରେ ପରିଣତ ହେଲା । ଛାତ୍ରମାନେ କେନାଲ୍‌ବଂଧ ଉପରେ ହଷ୍ଟେଲକୁ ପଳାଇଆସୁଥିବାବେଳେ ସେମାନଂକ ପଛରୁ ଦୌଡ଼ି ଦୌଡ଼ି ଆସି ଦୋକାନୀମାନେ କେନାଲ୍ ବଂଧ ଉପରେ ଧରିପକାଇଥିଲେ । ୧୦/୧୨ ଜଣ ଛାତ୍ରଂକୁ ଧରି କେନାଲରେ ଫୋପାଡ଼ିଦେଲେ । ସେ କେନାଲର ସ୍ରୋତ ବଡ଼ ପ୍ରଖର ଥିଲା । ତାହା ହୀରାକୁଦ ବଂଧ ସହିତ ସଂଯୁକ୍ତ ଥିଲା । କେନାଲ୍‌ରେ ଛାତ୍ରମାନେ କୁଆଡ଼େ ଭାସିଗଲେ । ଏହିପରି ୧୦/୧୨ ଜଣ ଛାତ୍ରଂକର ସଳିଳ ସମାଧି ଘଟିଲା । ଏ ସଂବାଦ ଓଡ଼ିଶାରେ ଚହଳ ପକାଇଦେଇଥିଲା ।

ଆମ C.P.D.R.S. ତରଫରୁ ସାଧାରଣ ସଂପାଦକ ବୁର୍ଲା ଯାଇ ଠିକ୍ ଖବର ସଂଗ୍ରହ କରିଥିଲେ । ଆମେ ଖବରକାଗଜରେ ଠିକ୍ ବୃତ୍ତାନ୍ତ ପ୍ରକାଶ କରିଥିଲୁ । ଦୋକାନୀମାନେ ପୋଲିସ୍‌କୁ ହାତ କରି ଏ ତଦଂତ ଭଂଡୁର କରିବାକୁ ଚାହୁଁଥିଲେ । ଆମ ବିବୃତି ତଦଂତରେ ସାହାର୍ଯ କରିଥିଲା ।

# ପଂଚାଶତ୍ ଉଲ୍ଲାସ

## ଜ୍ଞାନପୀଠ ପୁରସ୍କାର, ସାହିତ୍ୟ ଭାରତୀ ପୁରସ୍କାର, ମହାକବି ଉପାଧି ଓ ଅନ୍ୟାନ୍ୟ ସମ୍ମାନ

**ଜ୍ଞାନପୀଠ ପୁରସ୍କାର :**

୧୯୮୬ ମସିହା ପାଇଁ ମୁଁ ଜ୍ଞାନପୀଠ ସମ୍ମାନ ପାଇବି ବୋଲି ଭାରତୀୟ ଜ୍ଞାନପୀଠ ବିଚାରକ ମଂଡଳୀ ୧୯୮୭ ସାଲ୍‌ରେ ଘୋଷଣା କରିଥିଲେ । ଜ୍ଞାନପୀଠ ପୁରସ୍କାର ମୋତେ ଭାରତୀୟ ସାହିତ୍ୟକୁ ମୋର କାଳଜୟୀ ସାହିତ୍ୟିକ ଅବଦାନ ପାଇଁ ପ୍ରଦାନ କରାଯାଇଥିଲା । ଏହା କୌଣସି ନିର୍ଦ୍ଦିଷ୍ଟ ପୁସ୍ତକ ପାଇଁ ଦିଆଯାଇନଥିଲା । ୧୯୮୮ ମସିହା ମାର୍ଚ୍ଚ ୨୮ ତାରିଖରେ ନୂଆଦିଲ୍ଲୀର ଘାଲିବ୍ ହଲ୍‌ରେ ମହାସମାରୋହ ସହିତ ଏକ ସ୍ୱତଂତ୍ର ଉତ୍ସବରେ ଭାରତର ମୁଖ୍ୟ ନ୍ୟାୟାଧୀଶ ଶ୍ରୀଯୁକ୍ତ ଭଗବତୀଂକଦ୍ୱାରା ମୋତେ ଅଂଗବସ୍ତ୍ର ଓ ସରସ୍ୱତୀଂକ ପିତ୍ତଳ ମୂର୍ତ୍ତି ସହ ଦେଢ଼ଲକ୍ଷ ଟଂକାର ଏକ ବ୍ୟାଂକ ଡ୍ରାଫ୍ଟରେ ଏହା ପ୍ରଦାନ କରାଯାଇଥିଲା । ଭାରତୀୟ ଜ୍ଞାନପୀଠ ମଂଡଳୀର ସଭାପତି, ଭାରତର ତତ୍‌କାଳୀନ ମାନବ ସଂବଳ ମଂତ୍ରୀ (ପରେ ଭାରତର ପ୍ରଧାନମଂତ୍ରୀ) ଶ୍ରୀ ନରସିଂହ ରାଓ ମୋ ସାହିତ୍ୟ କୃତି ସଂବଂଧରେ ଏକ ମୂଲ୍ୟାୟନ ପାଠକରିଥିଲେ । ଏହି ମୂଲ୍ୟାୟନଟି ପୁସ୍ତିକାଆକାରରେ ଛପାଯାଇଥିଲା । Acceptance Speech ଏବଂ ସାହିତ୍ୟ ସଂବଂଧରେ ମୋ ବକ୍ତବ୍ୟ ଏକ ୧୮/୧୯ ପୃଷ୍ଠାର ଇଂରାଜୀ ପୁସ୍ତକରେ ପ୍ରକାଶିତ ହୋଇଥିଲା ଏବଂ ସଭାରେ ବଂଟା ଯାଇଥିଲା । ଜ୍ଞାନପୀଠ ସମ୍ମାନ ଭାରତର ସର୍ବୋଚ୍ଚ ସାହିତ୍ୟିକ ସମ୍ମାନ ଥିଲା । ଏହି ପୁରସ୍କାର ପୂର୍ଣାଂଗ ଭାବେ ପାଇବାରେ ମୁଁ ଓଡ଼ିଶାର ପ୍ରଥମ ବ୍ୟକ୍ତି । ମୋ ପୂର୍ବରୁ ପ୍ରାୟ ୯/୧୦ ବର୍ଷ ଆଗରୁ କଥାକାର ଗୋପୀନାଥ ମହାଂତି ଓ କର୍ଣ୍ଣାଟକର କବି ଶ୍ରୀବେଂନ୍ଦ୍ରେଂକୁ ଯୁଗ୍ମ ଭାବେ ଏହି ପୁରସ୍କାର ମିଳିଥିଲା ।

ଏହି ପୁରସ୍କାର ଛଡ଼ା ଭାରତୀୟ ଜ୍ଞାନପୀଠ ମୋର ନିର୍ବାଚିତ କବିତା ଓ ଗଳ୍ପଗୁଡ଼ିକୁ ହିଂଦୀରେ ଅନୁବାଦ କରାଇ ଦୁଇଟି ସଂକଳନ ପ୍ରକାଶକରିଥିଲେ । କବିତାସଂକଳନର ନାମ ଥିଲା "ବସଂତ କେ ଏକାଂତ ଜିଲ୍ଲେ ମେ" ଓ ଗଳ୍ପ ସଂକଳନର ନାମ ଥିଲା "ଅଂଧାରୋଆ" ।

ଏହି ପୁରସ୍କାର ଖବର ପାଇବା ପରେ ମୋତେ ଅଭିନଂଦନ ଜଣାଇ ଓଡ଼ିଶା ଓ ଭାରତର ବିଭିନ୍ନ ଅଂଚଳରୁ ପ୍ରାୟ ୬୦ଟି ଟେଲିଗ୍ରାମ ଓ ଟେଲିଫୋନ କଲ୍ ଏବଂ ପ୍ରାୟ ୩୦୦ ପତ୍ର ବଂଧୁମାନଂକଠାରୁ ପାଇଥିଲି ।

ତଳେ ଇଂରାଜୀରେ ଲିଖିତ ଜ୍ଞାନପୀଠ ପ୍ରଶସ୍ତିପତ୍ର ଦିଆଗଲା । ଏହାର ହିଂଦୀ ଅନୁବାଦ ମଧ୍ୟ ପ୍ରକାଶ ପାଇଥିଲା ।

22nd Annual Jnanpith Award

**CITATION**

Bharitya Jnanpith presents the Jnanpith Award for 1986 to Sacchidananda Routroy for his outstanding contribution to Indian literature. Sachi Rautroy has made significant contribution to Oriya poetry, fiction and literary criticism. But it is predominantly as a poet that he has made the deepest impression on the contemporary literary scene and has greatly influenced the poets of the next generation.

He heralded the advent of the new poetry and modern era in Oriya literature with the publication of Patheya and Pandulipi. This new trend was consolidated in Kavita 1962. regarded as a classic. His subsequent anthologies imparted a rare intensity and depth to this modernity. This Bhagiratha of Modern Oriya poetry has shown that peotry can shake off all ornamentation and musical allurements and still capture the reader's imagination simply with its own grace and innate power.

Robust humanism and a craving for spiritual uplift underlie his poetry. His peotry stands for the dignity of man and freedom from fear, it is a defiant declaration of human rights against a decadent social order. As a stylist he is a master of imagery, transmitting his own poetic experiences to his readers through colour, sound and telescopic designs.

Rautroy is one of the most authentic poets of our time. From matter to spirit his is an all inclusive muse. It is his vision as a poet that sees the ultimate peace, beauty and goodness beyond all strife and ugliness.

Bharatiya Jnanpith wishes Sachi Rautroy a long life to carry on his fine work in the service of literature and humanity.

| | | |
|---|---|---|
| Chairman | Mng. Trustee | President |
| Selection Board | Bharatiya Jnanpith | Bharatiya Jnanpith |

**U.P.S.C.ରେ ସଂବର୍ଦ୍ଧନା :**

ଜ୍ଞାନପୀଠ ପୁରସ୍କାର ପାଇବା ପରଦିନ U.P.S.C. ବା Union Public Service Commissionର କର୍ମଚାରୀ ଓ କର୍ମକର୍ତ୍ତାମାନଂକ Association ମୋତେ

ଏକ ସଭାରେ ଭବ୍ୟ ସଂବର୍ଦ୍ଧନା ଜ୍ଞାପନ କରିଥିଲେ । ମୁଁ ପୂର୍ବେ କହିଛି, ମୁଁ ୧୯୮୨-୮୫ ମସିହା ମଧ୍ୟରେ U.P.S.C.ର ପରାମର୍ଶଦାତା ଥିଲି । ବହୁ ନିଯୁକ୍ତି ବୋର୍ଡ଼ରେ ମୁଁ ସଭ୍ୟ ଥିଲି । ଶ୍ରୀ ବିଘ୍ନରାଜ ପଟେଲ I.A.S. ଏବଂ ଶ୍ରୀ ଜେ.ପି. ଦାସ ପ୍ରମୁଖ ମଧ୍ୟ ଏଥିରେ ଯୋଗଦେଇଥିଲେ । ମୁଁ ଭାଷଣ ଦେଇଥିଲି । ମୋ ଭାଷଣ ଉଚ୍ଚପ୍ରଶଂସିତ ହୋଇଥିଲା । Associationର Secretary ତାଂକ ଭାଷଣରେ କହିଥିଲେ ଯେ ମୋର seintillatingର speech ପାଇଁ Association ମୋ ନିକଟରେ କୃତଜ୍ଞ ।

**ସାହିତ୍ୟ ଭାରତୀ ସମ୍ମାନ :**

କଟକରେ ୧୮.୧.୯୭ ତାରିଖରେ ଶ୍ରୀ ଗଂଗାଧର ରଥ ଫାଉଂଡେସନ ତରଫରୁ ମୋତେ ୧୯୯୬ ମସିହା ପାଇଁ ସାହିତ୍ୟ ଭାରତୀ ସମ୍ମାନ ଦିଆଯାଇଥିଲା । ଓଡ଼ିଶା ହାଇକୋର୍ଟର ମାନ୍ୟବର Justice ସୁଶାଂତ ଚାଟାର୍ଜୀ ଏହି ଉତ୍ସବ ଉଦ୍‌ଘାଟନ କରିଥିଲେ ଏବଂ ମୋତେ ସାହିତ୍ୟ ଭାରତୀ ସମ୍ମାନ ପ୍ରଦାନକରିଥିଲେ । ଏହି ସମ୍ମାନ ସ୍ୱରୂପ ଏକ ରୋପ୍ୟ କୋଣାର୍କ ମଂଦିର ଏବଂ ଏକଲକ୍ଷ ଟଂକାର ଡ୍ରାଫ୍‌ଟ ଦିଆଯାଇଥିଲା ।

**ସଭାପତି ଓ ଉତ୍ସବର ପ୍ରତିଷ୍ଠାତା ଶ୍ରୀ ରଥଂକ ଭାଷଣ :**

ଶ୍ରୀ ଗଂଗାଧାର ରଥ ଉତ୍ସବର ସଭାପତି ଏବଂ ଫାଉଂଡେସନର ପ୍ରତିଷ୍ଠାତା । ତାଂକ ସ୍ୱାଗତ ଭାଷଣରେ ସେ କହିଥିଲେ ଯେ ଶ୍ରୀ ରାଉତରାୟ ଓଡ଼ିଆ ସାହିତ୍ୟର ଜଣେ ଅନନ୍ୟ ସ୍ରଷ୍ଟା, ଗଭୀର ମାନବବାଦୀ ଓ ବାସ୍ତବବାଦୀ ଆଭିମୁଖ୍ୟ ଓ ଦେଶାତ୍ମବୋଧରେ ଜର୍ଜରିତ । ଡକ୍ଟର ରାଉତରାୟଂକ ରଚନାବଳୀ ଭାରତୀୟ କାବ୍ୟସାହିତ୍ୟକୁ ଦୀର୍ଘ ସତୁରି ବର୍ଷରୁ ଊର୍ଦ୍ଧ୍ୱକାଳ ଧରି ଋଦ୍ଧିମଂତ କରିଛି । ସେ ସଫଳତାର ଶୀର୍ଷସ୍ଥାନରେ ଉପନୀତ ହୋଇଛଂତି ।

**ବିଭୂତିଭୂଷଣ ବଂଦୋପାଧ୍ୟାୟ ସମ୍ମାନ :**

ପଶ୍ଚିମ ବଂଗର ସୁପ୍ରସିଦ୍ଧ ଔପନ୍ୟାସିକ ବିଭୂତିଭୂଷଣ ବଂଦୋପାଧ୍ୟାୟ ଆୱାର୍ଡ଼ ବିହାରର ଘାଟଶିଳାଠାରେ ପ୍ରତିଷ୍ଠିତ ହୋଇଛି । ୧୯୮୮ ମସିହାରେ ଘାଟଶିଳାଠାରେ ମୋତେ ସର୍ବପ୍ରଥମେ ଏହା ଦିଆଯାଇଥିଲା । କାଳଜୟୀ ଉପନ୍ୟାସ ''ପଥେର୍ ପାଂଚାଲୀ'', ''ଅପରାଜିତା'' ପ୍ରଭୃତିର ଲେଖକ ସ୍ୱର୍ଗତ ବିଭୂତିଭୂଷଣ ବଂଦୋପାଧ୍ୟାୟଂକ ସ୍ମୃତିରେ ଏହି ଆୱାର୍ଡ଼ ପ୍ରତିଷ୍ଠିତ । ଏହି ଉତ୍ସବ ମହାସମାରୋହରେ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ ପଶ୍ଚିମବଂଗର ବହୁ ପ୍ରଖ୍ୟାତ ଲେଖକ, ଲେଖିକା ଏବଂ ବିଭୂତିଭୂଷଣଂକ ବିଧବା ପତ୍ନୀ ଓ ପୁତ୍ର ଯୋଗଦେଇଥିଲେ । ଏହି ଆୱାର୍ଡ଼ରେ ମୋତେ ମାନପତ୍ର ଏବଂ ନଗଦ ଅର୍ଥ ଉପହାର ଦିଆଯାଇଥିଲା ।

**ପ୍ରାଣନାଥ ସମ୍ମାନ :**

୧୯୯୮ ମସିହାରେ ଖୋର୍ଦ୍ଧାର ପ୍ରାଣନାଥ କଲେଜ ମୋତେ ''ପ୍ରାଣନାଥ ସମ୍ମାନ'' ଦେଇଥିଲେ । ମାନପତ୍ର ଏବଂ ପାଂଚହଜାର ଟଂକା ଆୱାର୍ଡ଼ ସ୍ୱରୂପ ଦିଆଯାଇଥିଲା ।

ଏହି ଆୱାର୍ଡ଼ କଲେଜର ପ୍ରତିଷ୍ଠାତା ସ୍ୱର୍ଗତ ପ୍ରାଣନାଥ ପଟ୍ଟନାୟକଙ୍କ ସ୍ମୃତିରକ୍ଷାର୍ଥେ ପ୍ରତିଷ୍ଠିତ ହୋଇଛି ।

**ଉତ୍କଳରତ୍ନ ଉପାଧି :**

ଓଡ଼ିଶାର ପ୍ରାଚୀନତମ ସାହିତ୍ୟ ଅନୁଷ୍ଠାନ "ଉତ୍କଳ ସାହିତ୍ୟ ସମାଜ" କଟକ, ମୋତେ ୭.୯.୯୪ ତାରିଖରେ ଶ୍ରୀରାମଚନ୍ଦ୍ର ଭବନରେ ଉତ୍କଳରତ୍ନ ଉପାଧିରେ ଭୂଷିତ କରିଥିଲେ । ସେମାନଙ୍କ ମାନପତ୍ର ତଳେ ଦିଆଗଲା ।

**ଉତ୍କଳରତ୍ନ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ରାଉତରାୟ**

**ମାନନୀୟେଷୁ,**

ଆଧୁନିକ ଓଡ଼ିଆ ସାହିତ୍ୟ ଆକାଶର ଆପଣ ଏକ ଦୀପ୍ତିମାନ୍ ଜ୍ୟୋତିଷ୍କ । ପ୍ରଜ୍ଞାର ବଡ଼ଦାଣ୍ଡରେ ଆପଣ ହେଉଛନ୍ତି ଏକ ବର୍ଷୀୟାନ୍ ନନ୍ଦିଘୋଷ । ପ୍ରଗତିଶୀଳ ସାହିତ୍ୟ ଚେତନାର ଆପଣ ହେଲେ ତପୋନିଷ୍ଠ ଭଗୀରଥ । ଆପଣଙ୍କ କବିତାର ଆଧୁନିକ ଚେତନା ଯେପରି ପ୍ରାଣବନ୍ତ, ଗଭୀର ମାନବିକ ଅନ୍ତର୍ଦୃଷ୍ଟି ଓ ଶବ୍ଦଶିଳ୍ପର କାରୁକାର୍ଯ୍ୟ ସେହିପରି ଉପଭୋଗ୍ୟ ।

୧୨ ବର୍ଷ ବୟସରୁ କବିକର୍ମରେ ଲିପ୍ତ ରହି ଆପଣ ଏ ଜାତିକୁ ଦେଇଯାଇଛନ୍ତି "ପାଥେୟ", "ପଲ୍ଲିଶ୍ରୀ" "ପାଣ୍ଡୁଲିପି" ଓ "କବିତା ୧୯୬୨" ଆଦି ଅସୁମାରି ରସୋତ୍ତୀର୍ଣ୍ଣ କାଳଜୟୀ କୃତି । ଆପଣଙ୍କର ଉପନ୍ୟାସ "ଚିତ୍ରଗ୍ରୀବ" ଏବଂ ଗଳ୍ପଗ୍ରନ୍ଥ "ମଶାଣିର ଫୁଲ" ଓ "ମାଟିର ତାଜ" ମାନବିକ ସମ୍ବେଦନାଭରା ଭାବମୟ ଆଲେଖ୍ୟ । କବିତା, ଗଳ୍ପ, ଉପନ୍ୟାସ ଓ ଆଲୋଚନା ଜଗତକୁ ବିଗତ ସତୁରିବର୍ଷ ଧରି ଆପଣ ଦିଗ୍‌ଦର୍ଶନ ଦେଇଆସିଛନ୍ତି । ଆପଣ ସର୍ବଭାରତୀୟ ସ୍ତରରେ ଅନେକ ସମ୍ମାନ ଲାଭକରି ଓଡ଼ିଶା ଓ ଓଡ଼ିଆଙ୍କ ପାଇଁ ଗର୍ବ ଓ ଗୌରବ ଆଣିପାରିଛନ୍ତି ।

ହେ ମହାନ୍ ସାଧକ ଶିଳ୍ପୀ !

ଆପଣଙ୍କୁ "ଉତ୍କଳ ସାହିତ୍ୟ ସମାଜ"ର ୯୨ତମ ବାର୍ଷିକ ଉତ୍ସବରେ ଜଣେ ଶ୍ରେଷ୍ଠ ଓଡ଼ିଆ ଭାବରେ "ଉତ୍କଳରତ୍ନ" ସମ୍ମାନ ଦେଇ ଆମେ ଗର୍ବିତ । ଏ ଜାତି ନିକଟରେ ଆପଣ ଚିରନମସ୍ୟ । ଆପଣଙ୍କର ସୁଦୀର୍ଘ ଜୀବନପଥ କୁସୁମିତ ହେଉ – ଏହାହିଁ ଆଜିର କାମନା ।

ସତ୍ୟନାରାୟଣ ରେଡ୍ଡୀ
ମୁଖ୍ୟ ଅତିଥି

ଅନାଦି ସାହୁ
ସଭାପତି
ଉତ୍କଳ ସାହିତ୍ୟ ସମାଜ
କଟକ, ତା୭.୬.୯୪ରିଖ ।

**J.N.U. ଛାତ୍ରଙ୍କ ସଂବର୍ଧନା :**

୧୯୮୮ ସାଲ ମାର୍ଚ୍ଚ ମାସରେ ଦିଲ୍ଲୀର J.N.U. ବା ଜବାହରଲାଲ୍ ନେହେରୁ ୟୁନିଭରସିଟିର ଛାତ୍ରମାନେ ଏକ ବିପୁଳ ସଭାରେ ମୋତେ ହାର୍ଦିକ ସଂବର୍ଧନା

ଜଣାଇଥିଲେ । ଏହି ସଭାରେ ବହୁ ଛାତ୍ର ଛାତ୍ରୀ, ଅଧ୍ୟାପକ ଓ ଅଧ୍ୟାପିକା ଯୋଗଦେଇଥିଲେ । ବକ୍ତାମାନେ ମୋ ସାହିତ୍ୟକୃତିର ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ।

**ଦିଲ୍ଲୀ ଜଗନ୍ନାଥ ମଂଦିରରେ ସଂବର୍ଧନା :**

୧୯୮୮ ମସିହା ମାର୍ଚ୍ଚ ମାସ ଦିଲ୍ଲୀସ୍ଥିତ ଓଡ଼ିଆ ନାଗରିକମାନେ ଜଗନ୍ନାଥ ମଂଦିରରେ ଥିବା ଏକ ଅଭ୍ୟର୍ଥନା ସଭାର ଆୟୋଜନ କରିଥିଲେ । ଏଥିରେ ବହୁ ବଡ଼ ବଡ଼ ଓଡ଼ିଆ ଅଫିସର ଏବଂ ପ୍ରବାସୀ ଓଡ଼ିଆ, ବୁଦ୍ଧିଜୀବୀ ଏବଂ ଲେଖକଲେଖିକା ଯୋଗଦେଇଥିଲେ ।

**ଭୁବନେଶ୍ୱରରେ ସଂବର୍ଧନା :**

୧୯୮୭ ମସିହା ଶେଷଭାଗରେ ଭୁବନେଶ୍ୱରସ୍ଥ ସ୍ୱସ୍ତି ହୋଟେଲ୍‌ରେ ଏକ ବଡ଼ଧରଣର ଅଭ୍ୟର୍ଥନାସଭାରେ ମୋତେ ଅଭିନଂଦନ ଜ୍ଞାପନ କରାଯାଇଥିଲା । ଏଥିରେ ଓଡ଼ିଶାର ମୁଖ୍ୟମଂତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ମୋତେ ଶାଲ ଏବଂ ମାନପତ୍ର ପ୍ରଦାନ କରିଥିଲେ । ମୁଖ୍ୟମଂତ୍ରୀ ଓଡ଼ିଆ ସାହିତ୍ୟକୁ ମୋର ମୂଲ୍ୟବାନ୍ ଅବଦାନ ସଂବଂଧରେ ସୂଚନାଦେଇଥିଲେ ।

**ସାରଳା ସାହିତ୍ୟ ସଂସଦ :**

ସାରଳା ସାହିତ୍ୟ ସଂସଦ ମୋତେ ସଂବର୍ଧନା ଦେବାକୁ ନିମଂତ୍ରଣ କରିଥିଲେ, ମାତ୍ର ମୁଁ ଯାଇପାରିନଥିଲି । ଏହି ଅନୁଷ୍ଠାନର ପ୍ରତିଷ୍ଠାତା ଶିଳ୍ପପତି ବଂଶୀଧର ପଂଡା ମୋତେ ଶାଲ ଓ ପୁଷ୍ପମାଲ୍ୟ ପ୍ରଭୃତି ପଠାଇ ଅଭିନଂଦନ ଜଣାଇଥିଲେ ।

**କଲିକତା ପ୍ରବାସୀ ଓଡ଼ିଆଂକ ସଂବର୍ଧନା :**

କଲିକତା ପ୍ରବାସୀ ଓଡ଼ିଆମାନଂକର ସାଂସ୍କୃତିକ ଅନୁଷ୍ଠାନ 'ଉତ୍କଳ ଶିକ୍ଷା ସଂସଦ' ତରଫରୁ ୧୯୮୮ ମସିହାରେ ମୋତେ ସଂବର୍ଧନା ଦିଆଯାଇଥିଲା । ପଶ୍ଚିମ ବଂଗର ରାଜ୍ୟପାଳ ମାନ୍ୟବର ନୁରୁଲ୍ ହାସନ ମୁଖ୍ୟ ଅତିଥିରୂପେ ଯୋଗଦେଇଥିଲେ ଏବଂ ମୋତେ ଶାଲ ଓ ମାନପତ୍ର ପ୍ରଦାନ କରିଥିଲେ । ମୋ ସାହିତ୍ୟକୃତି ସଂବଂଧରେ ସେ ସୂଚନା ଦେଇଥିଲେ । ଏ ଉତ୍ସବରେ ଶ୍ରୀ ସାତକଡ଼ି ହୋତା ଓ ଅନ୍ୟାନ୍ୟ ପ୍ରବାସୀ ଓଡ଼ିଆ ନାଗରିକମାନେ ବିଶେଷ ଅଂଶ ଗ୍ରହଣ କରିଥିଲେ ।

ଏହିପରି ଭାବରେ ଓଡ଼ିଶା ଓ ଓଡ଼ିଶା ବାହାର ବହୁ ଅଭିନଂଦନ ସଭାରେ ମୋତେ ସାରସ୍ୱତ ସଂବର୍ଧନା ଦିଆଯାଇଥିଲା ।

**ପ୍ରମୁଖ ହିଂଦୀ ପ୍ରତିଷ୍ଠାନର ସଂବର୍ଧନା :**

୧୯୮୮ ମସିହାରେ ଦିଲ୍ଲୀର ଦୁଇଟି ପ୍ରମୁଖ ସର୍ବଭାରତୀୟ ହିଂଦୀ ସାହିତ୍ୟ ପ୍ରତିଷ୍ଠାନ ମୋତେ ସାଦର ସଂବର୍ଧନା ଜଣାଇଥିଲେ । ଦିଲ୍ଲୀର ବହୁ ହିଂଦୀ ସାହିତ୍ୟିକ ଓ ସାମ୍ବାଦିକ ଏହି ସଭାମାନଂକରେ ଯୋଗଦେଇଥିଲେ । ମୋ ସାହିତ୍ୟକୃତି ଉପରେ କେତେକ ବିଶିଷ୍ଟ ସାହିତ୍ୟିକ ଭାଷଣ ଦେଇଥିଲେ ।

**କଟକରେ ସଂବର୍ଦ୍ଧନା :**

୧୯୮୭ ମସିହାରେ କଟକରେ ପ୍ରଜାତଂତ୍ର ପ୍ରଚାର ସମିତି ପକ୍ଷରୁ ମୋତେ ଭବ୍ୟ ସଂବର୍ଧନା ଦିଆଯାଇଥିଲା । ଏହି ସଭାରେ ଜଷ୍ଟିସ୍ ହରିହର ମହାପାତ୍ର ପୌରୋହିତ୍ୟ କରିଥିଲେ ଏବଂ ପ୍ରାକ୍ତନ କୁଳପତି ଡଃ ସଦାଶିବ ମିଶ୍ର ମୁଖ୍ୟ ଅତିଥିରୂପେ ଭାଷଣ ଦେଇଥିଲେ । ପ୍ରଜାତଂତ୍ର ସଂପାଦକ ଭର୍ତ୍ତୃହରି ମହତାବ ମୋତେ ଶାଲ ଏବଂ ମୋର ପତ୍ନୀ ଭୂଦେବୀଙ୍କୁ ମୂଲ୍ୟବାନ୍ ସିଲ୍କ ଶାଢ଼ି ଉପହାର ଦେଇଥିଲେ । ଜଷ୍ଟିସ୍ ମହାପାତ୍ର, ଡ. ମିଶ୍ର ଏବଂ ଭର୍ତ୍ତୃହରିବାବୁ ମୋ ସାହିତ୍ୟ ସୃଷ୍ଟି ସଂବଂଧରେ ଭାଷଣ ଦେଇଥିଲେ ।

କଟକ ଶ୍ରୀରାମଚଂଦ୍ର ଭବନରେ ଏକ ସାହିତ୍ୟ ସଭାରେ ମୋତେ ହାର୍ଦ୍ଦିକ ସଂବର୍ଧନା ଦିଆଯାଇଥିଲା । ଏଥିରେ ବହୁ ସାହିତ୍ୟିକ ଓ ସଂପାଦକ, ଯଥା – କାଳିଂଦୀ ଚରଣ ପାଣିଗ୍ରାହୀ, ମନୋରମା ମହାପାତ୍ର, ପଠାଣି ପଟ୍ଟନାୟକ ଏବଂ ବିଚିତ୍ରାନଂଦ କର ପ୍ରମୁଖ ମୋ ସାହିତ୍ୟିକ ଅବଦାନ ବିଷୟରେ ଭାଷଣଦେଇଥିଲେ ।

**କେଂଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର :**

୧୯୬୨ ମସିହା ପାଇଁ ମୋର କବିତା ସଂକଳନ "କବିତା ୧୯୬୨" ପୁସ୍ତକ ନିମଂତେ ମୋତେ କେଂଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ମିଳିଥିଲା । ୧୯୬୪ ମସିହାରେ ଦିଲ୍ଲୀସ୍ଥିତ ଉପରାଷ୍ଟ୍ରପତି ଭବନରେ ତତ୍‌କାଳୀନ ଉପରାଷ୍ଟ୍ରପତି ଶ୍ରୀ ଜାକିର ହୁସେନ୍ (ପରେ ରାଷ୍ଟ୍ରପତି) ଏହି ପୁରସ୍କାର ସ୍ୱରୂପ ଏକାଡେମୀ ଏମ୍‌ବ୍ଲେମ୍ ଏବଂ ଏକ ପ୍ରମାଣପତ୍ର ପ୍ରଦାନ କରିଥିଲେ । ଏହାଛଡ଼ା ପାଞ୍ଚହଜାର ଟଂକାର ଏକ ଚେକ୍ ମଧ୍ୟ ଦିଆଯାଇଥିଲା । ଏହି ଉତ୍ସବରେ ଏକାଡେମୀର ସଚିବ କ୍ରିଷ୍ଣା କୃପାଲିନି ଓ ଉପସଚିବ ଡ. ମାଚୁଏ ଏବଂ ଭାରତର ଅନ୍ୟାନ୍ୟ ଭାଷାର ପୁରସ୍କୃତ ଲେଖକମାନେ ଏବଂ ଦିଲ୍ଲୀର ବହୁ ବିଦ୍ୱାନ୍‌ବ୍ୟକ୍ତି ଉପସ୍ଥିତ ଥିଲେ ।

**ସୋଭିଏତ୍‌ଲ୍ୟାଂଡ ନେହୁରୁ ଆୱାର୍ଡ଼ :**

ମୋ ଦ୍ୱାରା ଅନୂଦିତ "ମାୟାକୋଭସ୍କି" କବିତା ସଂଗ୍ରହ ପାଇଁ ୧୯୬୫ ମସିହାରେ ମୋତେ ସୋଭିଏତ୍ ଲ୍ୟାଂଡ ନେହୁରୁ ଆୱାର୍ଡ଼ ମିଳିଥିଲା । ଏହି ପୁରସ୍କାର ସ୍ୱରୂପ ଏକ ପ୍ରମାଣପତ୍ର ଏବଂ ନଗଦ ଏକହଜାର ଟଂକା ଦିଆଯାଇଥିଲା । ଏହି ଉତ୍ସବ କଲିକତାର University Institute Hallରେ ୧୯୬୫ ମସିହାରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଜାତୀୟ ପ୍ରଫେସର ଡ. ସୁନୀତି କୁମାର ଚାଟାର୍ଜୀ ସଭାପତିତ୍ୱ କରିଥିଲେ । ସୋଭିଏତ୍ ଦୂତାବାସର ରାଷ୍ଟ୍ରଦୂତ ଏବଂ ବହୁ ଅଧିକାରୀ ଏବଂ କଲିକତାର ବହୁଲେଖକଲେଖିକା ଏବଂ ବିଦ୍ୱାନ୍‌ବ୍ୟକ୍ତି ସଭାରେ ଉପସ୍ଥିତ ଥିଲେ ।

**ଓଡ଼ିଶା ସାହିତ୍ୟ ଏକାଡେମୀ ସମ୍ମାନ :**

ଓଡ଼ିଶା ସାହିତ୍ୟ ଏକାଡେମୀ ରଜତ ଜୟଂତୀ ପାଳନ ଅବସରରେ ମୋତେ ସଂବର୍ଧନା ଜଣାଇଥିଲେ ଏବଂ ଏକ ତାମ୍ରପତ୍ର ଓ ଅଂଗବସ୍ତ୍ର ପ୍ରଦାନ କରିଥିଲେ । ତାମ୍ର ପତ୍ରଟି ତଳେ ଉଦ୍ଧୃତ ହେଲା ।

ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର, ରଜତ ଜୟଂତୀ, ୧୯୮୨
ମାନନୀୟ ଡକ୍ଟର ସଚ୍ଚିଦାନନ୍ଦ ରାଉତରାୟ
ମହୋଦୟ,

ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ନୂତନ ଛଂଦ, ଶୈଳୀ, ରୂପକ ଓ ଆଙ୍ଗିକର ପ୍ରବର୍ତ୍ତକ ଭାବରେ ଆପଣଂକ କୃତିତ୍ୱ ଅଗ୍ରଗଣ୍ୟ । ଅର୍ଦ୍ଧ-ଶତାବ୍ଦୀ-ବ୍ୟାପୀ ଆପଣଂକ ନିରଳସ ସାଧନା ଫଳରେ ଓଡ଼ିଆ କବିତା ନୂତନ ଆଭିମୁଖ୍ୟ ଓ ବୈଶିଷ୍ଟ୍ୟସଂପନ୍ନ ହୋଇପାରିଛି ।

ଓଡ଼ିଶା ସାହିତ୍ୟ ଏକାଡେମୀ ରଜତ ଜୟଂତୀ ପାଳନ ଅବକାଶରେ ଆପଣଂକୁ ଅଭିନଂଦନ ଜ୍ଞାପନ କରି ନିଜକୁ ଗୌରବାନ୍ୱିତ ମନେକରୁଛି ।

ରାଇଚରଣ ଦାସ — ସୁରେଂଦ୍ର ମହାଂତି
ସଂପାଦକ — ସଭାପତି

ତା ୧୪.୧୨.୮୨ ଭୁବନେଶ୍ୱର

**ଉତ୍କଳ ପାଠକ ସଂସଦର ସଂବର୍ଧନା :**

ଉତ୍କଳ ପାଠକ ସଂସଦ ୧୪.୩.୮୩ ତାରିଖରେ କଟକ ଶ୍ରୀରାମଚଂଦ୍ର ଭବନରେ ଆୟୋଜିତ ବାର୍ଷିକ ସମାବର୍ତ୍ତନ ଉତ୍ସବରେ ମୋତେ ସଂବର୍ଧନା ଜଣାଇଥିଲେ । ମୋତେ ଏହି ଉପଲକ୍ଷ୍ୟରେ ଶ୍ରୀ ଜଗନ୍ନାଥଂକ ଚିତ୍ରଶୋଭିତ ଏକ ସୁଦୃଶ୍ୟପଟରେ ଲିଖିତ ମାନପତ୍ର ଏବଂ ଅଂଗବସ୍ତ୍ର ପ୍ରଦାନ କରାଯାଇଥିଲା । ସେମାନଂକ ମାନପତ୍ରଟି ତଳେ ଉଦ୍ଧାର କରାଗଲା ।

ସାରସ୍ୱତସାଧକ ପଦ୍ମଶ୍ରୀ ଡକ୍ଟର ସଚ୍ଚିଦାନଂଦ ରାଉତରାୟ ମହୋଦୟ ।
ମହାଶୟ,

ଆପଣ ବଳିଷ୍ଠ ସଂପାଦକ, ସୁଯୋଗ୍ୟ ସମାଲୋଚକ ଏବଂ ଓଡ଼ିଆ କବିତା ରାଜ୍ୟରେ ନବଯୁଗର ସ୍ରଷ୍ଟା । କେବଳ ସାହିତ୍ୟ ନୁହେଁ, ଓଡ଼ିଶାର ସ୍ଥାପତ୍ୟ ଶିଳ୍ପ, ପଟଚିତ୍ରର ଉତ୍ତରୋତ୍ତର ଉନ୍ନତି ଓ ଐତିହାସିକ ଗୌରବ ପ୍ରଖ୍ୟାପନରେ ଜାତୀୟ ତଥା ଆନ୍ତର୍ଜାତୀୟ ସ୍ୱୀକୃତି ଲାଭ କରି, ଆପଣ ଉତ୍କଳଜନନୀର ସୁଯୋଗ୍ୟ ସନ୍ତାନରୂପେ ପରିଗଣିତ । ଆପଣଂକ ଅମୃତଝରା ଲେଖନୀ ଉତ୍କଳଭାରତୀଙ୍କୁ କରିଛି ମହିମାନ୍ୱିତ ଓ ଗୌରବମଣ୍ଡିତ ।

ହେ 'ବାଜିରାଉତ'ର ଅମର ବିନ୍ଧାଣି ! ଦେଶପ୍ରେମବହ୍ନି ପ୍ରଜ୍ୱଳିତ କରି ସ୍ୱାଧୀନତାର ମଧୁ ଚଖାଇବାରେ ମଧ ଆପଣ ଥିଲେ ପୁରୋଧା । ସେହି ଅମରକୃତି ସ୍ମରଣ କରି ଆଜି ଆମେ ଆପଣଂକର ଦୀର୍ଘ ଜୀବନ ଏବଂ ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁଛୁ ।

କଟକ, ୧୪.୩.୮୩ — ଉତ୍କଳ ପାଠକ ସଂସଦ

ଏହି ପ୍ରତିଷ୍ଠାନର ସଭାପତି ଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡ. ସଦାଶିବ ମିଶ୍ର । ସଂସଦର ସଂପାଦକ, ବ୍ରଜମୋହନ ମହାଂତି ପ୍ରାରଂଭ ଭାଷଣ

ଦେଇଥିଲେ । ଏହି ଉପଲକ୍ଷ୍ୟରେ ମୋର ଜୀବନୀସଂକଳିତ ଏକ ପୁସ୍ତକ ପ୍ରକାଶ ପାଇଥିଲା । ଏହି ଜୀବନୀ ଲେଖିଥିଲେ ମହେଶ୍ୱର ମୂଳିଆ । ଏହି ମନୋଜ୍ଞ ଉତ୍ସବରେ ଅଧ୍ୟକ୍ଷତା କରିଥିଲେ ସଂସଦର ସଭାପତି ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡ. ସଦାଶିବ ମିଶ୍ର ।

**ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ସଂବର୍ଧନା :**

୧୯୬୦ ମସିହାରେ ''ଡଗର'' ପତ୍ରିକାର ରୌପ୍ୟଜୟଂତୀ ଅବକାଶରେ ମୋତେ ଏକ ସଂବର୍ଧନା ଦିଆଯାଇଥିଲା ଏବଂ ମାନପତ୍ର ଦିଆଯାଇଥିଲା ।

ଜୀବନରଂଗ ମାସିକ ପତ୍ରିକାର ବାର୍ଷିକ ସମାବର୍ତ୍ତନ ଉତ୍ସବରେ ମୋତେ ବିପୁଳ ସଂବର୍ଧନା ଦିଆଯାଇଥିଲା । ଏକ କାଠର ଅଶ୍ୱତ୍ଥ ପତ୍ରରେ ମାନପତ୍ରଟି ଲେଖାଯାଇଥିଲା ।

**ମହାକବି ଉପାଧି ଲାଭ :**

୩.୮.୧୯୮୬ ତାରିଖରେ ରାଉରକେଲା ସିଭିକ୍ ସେଂଟରରେ ମୋତେ ଏକ ମନୋଜ୍ଞ ସାରସ୍ୱତ ସମାରୋହରେ ସଂବର୍ଧନା ଜ୍ଞାପନ କରାଯାଇଥିଲା ଏବଂ ''ମହାକବି'' ଉପାଧି ପ୍ରଦାନ କରାଯାଇଥିଲା । ସମଗ୍ର ରାଉରକେଲା ସହରରେ ତୋରଣମାନ ସ୍ଥାପନ କରାଯାଇଥିଲା । ମୁଁ ସଭାସ୍ଥଳକୁ ଯିବା ବାଟର ଦୁଇପାଖରେ ସତୁରିଜଣ ତରୁଣୀ ଧଳା ଶାଢ଼ି ପିଂଧି ପ୍ରଦୀପ ଧରି ଛିଡ଼ାହୋଇଥିଲେ । ମୋର ୭୦ ତମ ଜୟଂତୀ ଉପଲକ୍ଷରେ ଏହି ସମାରୋହର ଆୟୋଜନ କରାଯାଇଥିଲା ।

ଏହାର ଉଦ୍ୟୋକ୍ତା ଥିଲେ ସୁସାହିତ୍ୟିକା ଓ ''ସୂର୍ଯସ୍ନାତ'' ପତ୍ରିକାର ସଂପାଦିକା ଅଧ୍ୟାପିକା ଶ୍ରୀମତୀ ମଂଜୁଲତା ବିଶ୍ୱାଳ । ଜନନେତା ସୁରେଂଦ୍ରନାଥ ଦ୍ୱିବେଦୀ ମୁଖ୍ୟ ଅତିଥିରୂପେ ଏବଂ ସୁଂଦରଗଡ଼ ଜିଲ୍ଲାପାଳ ବିଶିଷ୍ଟ ଅତିଥିରୂପେ ଏହି ଉତ୍ସବରେ ଭାଷଣମାନ ପ୍ରଦାନ କରିଥିଲେ । ଏହି ଉତ୍ସବରେ ମୋତେ ''ମହାକବି'' ଉପାଧି ସହ ଦଶହଜାର ଟଂକାର ଏକ ଥଳି ପ୍ରଦାନ କରାଯାଇଥିଲା । ପ୍ରଶସ୍ତିପତ୍ରଟି ତଳେ ଉଦ୍ଧୃତ ହେଲା ।

''ଯୁଗସ୍ରଷ୍ଟା କବି ପଦ୍ମଶ୍ରୀ ସଚ୍ଚିଦାନଂଦ ରାଉତରାୟଂକ କାଳଜୟୀ ସାହିତ୍ୟ ପାଇଁ ରାଉରକେଲାବାସୀ ବୁଦ୍ଧିଜୀବୀ ସାହିତ୍ୟିକ ଓ ନାଗରିକଗଣ ତାଂକୁ ''ମହାକବି'' ଉପାଧିରେ ଭୂଷିତ କରୁଛଂତି ଏବଂ ତାଂକର ଦୀର୍ଘ ନିରାମୟ ଜୀବନ କାମନା କରୁଛଂତି ।
ତା ୩.୮.୮୬ ସଚ୍ଚି ରାଉତରାୟ ସଂବର୍ଧନା ସମିତି, ରାଉରକେଲା

ସାହିତ୍ୟ ସଭା ସହିତ ଏକ ଚିତ୍ରପ୍ରଦର୍ଶନୀ କରାଯାଇଥିଲା । ତରୁଣ ଓ ପ୍ରବୀଣ ଚିତ୍ରଶିଳ୍ପୀମାନଂକର ଚିତ୍ର ପ୍ରଦର୍ଶିତ ହୋଇଥିଲା । ଏହାକୁ ମୁଁ ଉଦ୍‌ଘାଟନ କରିଥିଲି । ସଭାରେ ବହୁ ଜନସମାଗମ ହୋଇଥିଲା । ସଭା ଶେଷରେ ଅଧ୍ୟାପିକା ଘୋଷଂକଦ୍ୱାରା ପ୍ରଯୋଜିତ 'ମୋଗଲ ତାମସା' ଅଭିନୀତ ହୋଇଥିଲା ।

**କଟକରେ ''ମହାକବି'' ଉପାଧି ପ୍ରଦାନ ଉତ୍ସବ :**

୧.୬.୧୯୮୮ ତାରିଖରେ କଟକର ଶ୍ରୀରାମଚଂଦ୍ର ଭବନରେ ଏକ ସ୍ୱତଂତ୍ର ଉତ୍ସବରେ ଓଡ଼ିଶାବାସୀଂକ ପକ୍ଷରୁ ମୋତେ ''ମହାକବି'' ଉପାଧି ପ୍ରଦାନ କରାଯାଇଥିଲା ।

ଏହି ଉତ୍ସବରେ ସଭାପତିତ୍ୱ କରିଥିଲେ ଶ୍ରୀ ବିଘ୍ନରାଜ ପଟେଲ I.A.S. । ବହୁ ତରୁଣ ଓ ପ୍ରତିଷ୍ଠିତ ସାହିତ୍ୟିକ ଏହି ସଭାରେ ଯୋଗଦେଇଥିଲେ । ମୋତେ "ମହାକବି" ଉପାଧି ପ୍ରଦାନର ପ୍ରମାଣପତ୍ର ସହ ୧୬ ହଜାର ଟଂକାର ଏକ ଡ୍ରାଫ୍‌ଟ ପ୍ରଦାନ କରାଯାଇଥିଲା । ତଳେ ପ୍ରମାଣପତ୍ରଟି ଉଲ୍ଲିଖିତ ହେଲା ।

ଶ୍ରୀଯୁକ୍ତ ସଚ୍ଚିଦାନଂଦ ରାଉତରାୟ ମହୋଦୟ

ମାନନୀୟେଷୁ,

ଆପଣ ଦୀର୍ଘ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଧରି ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚଳେଇ ସମସାମୟିକ, ରାଜନୈତିକ, ସାମାଜିକ ତଥା ସାଂସ୍କୃତିକ ଜୀବନକୁ ପ୍ରଭାବିତ କରିବା ସଂଗେ ସଂଗେ ଓଡ଼ିଆ ଭାଷା ଓ ସାହିତ୍ୟକୁ ଆନ୍ତର୍ଜାତିକ ଦରବାରରେ ପ୍ରତିଷ୍ଠିତ କରିଛଂତି । ଓଡ଼ିଶାବାସୀ ଆପଣଂକଠାରେ ଚିରକୃତଜ୍ଞ ଏବଂ ଏହି କୃତଜ୍ଞତାର ନିଦର୍ଶନ ସ୍ୱରୂପ ଆମେ ଓଡ଼ିଶାବାସୀ ଆପଣଂକୁ "ମହାକବି" ଉପାଧିରେ ଭୂଷିତକରି ନିଜକୁ ଧନ୍ୟ ମଣୁଛୁ ।

୧-୬-୮୮ ଶ୍ରୀରାମଚନ୍ଦ୍ର ଭବନ

କଟକ

**ରାଜଭବନରେ ମୋର ଜୟଂତୀ ପାଳନ :**

"ସଚ୍ଚି ରାଉତରାୟ ଆଧୁନିକ ଓଡ଼ିଆ କବିତାର ଜନକ – ରାଜ୍ୟପାଳ"

୧୩.୫.୧୯୯୭ ତାରିଖରେ ଭୁବନେଶ୍ୱରଠାରେ ରାଜଭବନର ଅଭିଷେକ ହଲ୍‌ରେ ମୋର ୮୨ ତମ ଜନ୍ମତିଥି ମହାସମାରୋହରେ ପାଳିତ ହୋଇଥିଲା । ଏଥିରେ ବହୁ ଲବ୍‌ଧ- ପ୍ରତିଷ୍ଠ ସାହିତ୍ୟିକ ଯୋଗଦେଇଥିଲେ । କବି ରାଜକିଶୋର ପଂଡା, ଡ. ଖଗେଶ୍ୱର ମହାପାତ୍ର ଏବଂ ପ୍ରାଧ୍ୟାପକ ମହାପାତ୍ର ନୀଳମଣି ସାହୁ ପ୍ରମୁଖ ମୋର ସାହିତ୍ୟକୃତି ଉପରେ ଭାଷଣ ଦେଇଥିଲେ । ରାଜ୍ୟପାଳ ଶ୍ରୀଯୁକ୍ତ ଜି. ରାମାନୁଜମ୍ ମୁଖ୍ୟଅତିଥି ରୂପେ ମୋତେ ସ୍ୱାଗତ ସଂବର୍ଧନା ଜଣାଇଥିଲେ । ସେ ତାଂକ ଭାଷଣରେ କହିଥିଲେ – ସଚ୍ଚି ରାଉତରାୟ ଆଧୁନିକ ଓଡ଼ିଆ କବିତାର ପିତୃପ୍ରତିମ । ତାଂକ ଇଂରାଜୀ ଭାଷଣଟି ସଂବାଦ ୧୬.୫.୯୭ ତାରିଖ ଦୈନିକ "SUNTIMES" ଓ ଅନ୍ୟାନ୍ୟ ପତ୍ରିକାମାନଂକରେ ପ୍ରକାଶପାଇଥିଲା । ତଳେ "Sun Times" ପତ୍ରିକାର ବିବରଣୀଟି ଉଦ୍ଧୃତ ହେଲା ।

**Governor felicitates Sachi Routray**

By our Correspondent, BHUBANESWAR, May 15 : Jnanapitha awardee, Sachidananda Routray was felicitated by the Governor of Odisha, G. Ramanujam at a literary function organised by the Sachi Routray Institute of Culture and Art at Raj Bhawan here on Tuesday last.

Addressing the function the governor said that the great literatures of the world imprint a significant impact on the mind and consciousness of human beings. A great poet is not merely an unacknowledged legislator of the world, he has the stature and atainment of a seer, Governor said. Such literatures and scholars are worthy of reverence.

Hailing the contribution of Sachi Routray to literature, Ramanujam said that Sachi Routray was one of the makers of Indian literature and has earned international acclaim. Routray in his peotry has spoken of the universal man and potrayed the hope, the anguish, the struggle and ascendance of the humans.

Terming Sachi Routray as father figure of Odia poetry, the governor said, he was creatively active for more than half a century. Infact Routray had been a source of inspriation for generation of younger poets and literatures, he added.

Among others, the director of Sachi Routray Institute of Culture and Arts, Fani Mohanty, Chairman of SIRCA, Rajendra Kishore Panda, Bjghnaraj Patel and Sachi Rautray also spoke on the occasion.

**ସଚ୍ଚି ରାଉତରାୟ ସଂସ୍କୃତି ଓ କଳା ପ୍ରତିଷ୍ଠାନ :**

"Sachi Rautroy Institute of Culture and Arts" – ଏହି ପ୍ରତିଷ୍ଠାନ ୨.୮.୧୯୯୪ ତାରିଖରେ ରେଜିଷ୍ଟ୍ରୀଭୁକ୍ତ ହୋଇଛି । ଏହାର Trustee Boardରେ ଅଛଂତି – ଶ୍ରୀ ରାଜେଂଦ୍ର କିଶୋର ପଂଡା I.A.S. ସଭାପତି, ଶ୍ରୀ ସାତକଡ଼ି ହୋତା – କାର୍ଯକାରୀ ସଭାପତି, ସଂସ୍କୃତି ନିର୍ଦ୍ଦେଶକ ଓଡ଼ିଶା – ଟ୍ରଷ୍ଟି, ଓଡ଼ିଶା ସାହିତ୍ୟ ଏକାଡେମୀ ସଭାପତି – ଟ୍ରଷ୍ଟି, ଶ୍ରୀହର୍ଷ ରାଉତରାୟ – ଟ୍ରଷ୍ଟି । ଏହାର ସଂପାଦକ ଅଛଂତି ଡଃ ଫନି ମହାଂତି । ଏହି ପ୍ରତିଷ୍ଠାନର ପୃଷ୍ଠପୋଷକମଂଡଳୀର ମୁଖ୍ୟ ହେଉଛଂତି ଓଡ଼ିଶାର ମୁଖ୍ୟମଂତ୍ରୀ । ଅନ୍ୟ ପୃଷ୍ଠପୋଷକମାନେ ହେଲେ – ସଂସ୍କୃତି ମଂତ୍ରୀ, ନିର୍ଦ୍ଦେଶକ ସଂସ୍କୃତି ବିଭାଗ । ଏହି ପ୍ରତିଷ୍ଠାନ କବି ରାଉତରାୟଂକର ପୁସ୍ତକାବଳୀ ଏବଂ ତାଂକ ସାହିତ୍ୟର ପ୍ରକାଶ ଓ ପ୍ରସାର କରିବା ପାଇଁ ଉଦ୍ଦିଷ୍ଟ ।

**ମହାମାନ୍ୟ ଗୁରୁଜୀ ପୁଂଜିଂକ ସହିତ ସାକ୍ଷାତ :**

ମୁଁ ୧୯୮୧ ମସିହାରେ ମହାମାନ୍ୟ ଗୁରୁଜୀ ପୁଂଜିଂକ ସହିତ ଧଉଳିଠାରେ ସାକ୍ଷାତ କରିଥିଲି । ବୌଦ୍ଧଦର୍ଶନ ସଂବଂଧରେ କିଛି ସମୟ ଆଲୋଚନା କରିଥିଲି । ଗୁରୁଜୀ ପୁଂଜି ୧୯୭୮ ମସିହା ଅକ୍ଟୋବର ୩୦ ତାରିଖରେ କଟକ ବାରବାଟୀ ପଡ଼ିଆରେ ମୁଁ ବୌଦ୍ଧଗୟା ମଂଦିରରୁ ଆଣିଥିବା ମହାବୋଧି ଦ୍ରୁମ ଚାରା ଏକ ଉତ୍ସବରେ

ରୋପଣ କରିଥିଲେ । ମୋତେ ଦେଖି ଗୁରୁଜୀ ଖୁବ୍ ଆନଂଦିତ ହେଲେ । ଗୁରୁଜୀ ପୁଂଜି କଚ୍ଛିଂଗ ନିପନ ବୌଦ୍ଧସଂଘର ସଭାପତି । ସେ ଧଉଳି ଓ ଭାରତର ଅନ୍ୟାନ୍ୟ ସ୍ଥାନରେ ଏବଂ ସାରା ବିଶ୍ୱର ବିଭିନ୍ନ ସ୍ଥାନରେ ବୌଦ୍ଧସ୍ତୂପମାନ ସ୍ଥାପନ କରିଛଂତି । ସେ ସମଗ୍ର ପୃଥିବୀରେ ବୌଦ୍ଧଧର୍ମର ଗୁରୁ ଭାବେ ଖ୍ୟାତ । ସେ ଜାପାନର ଧର୍ମଗୁରୁ ଭାବେ ସୁପରିଚିତ ।

**ନମିତା ଓ ନିର୍ମଳା :**

ମୋ ସହିତ ନମିତା ବର୍ମଣ ଗୁରୁଜୀ ପୁଂଜିଂକ ନିକଟକୁ ଯାଇଥିଲେ । ସେ ବିବାହିତା ଏବଂ ଦୁଇଟି ସଂତାନର ଜନନୀ । ସେ Employment Exchange ଅଫିସରେ ଜଣେ ଅଫିସର । ସେ ଓଡ଼ିଆରେ ଏମ୍.ଏ. ପାସ୍ କରିଛଂତି । ସେ ମୋ ସାହିତ୍ୟ ଉପରେ ଦୁଇଟି ସମୀକ୍ଷାମୂଳକ ପ୍ରବଂଧ କଲିକତାରୁ ପ୍ରକାଶିତ ''ଆସଂତାକାଲି'' ପତ୍ରିକାରେ ପ୍ରକାଶ କରିଥିଲେ । ସେ ଓଡ଼ିଶାରେ ମୋର ଅଂତରଂଗ ବଂଧୁ ଥିଲେ । ତାଂକ ସହିତ ମୋର ଘନିଷ୍ଠତା ବଢ଼ିଚାଲିଥିଲା । ସେ ଏବେ ମଧ ମୋ ସହିତ ସଂପର୍କ ରଖିଛଂତି ।

କୁମାରୀ ନିର୍ମଳା ପଂଡା ମୋର ପଡ଼ୋଶୀ । ସେ ମୋର କଥାସାହିତ୍ୟ ଉପରେ ଗତବର୍ଷ Ph.D. ପାଇଛଂତି । ସେ ମୋର ସାହିତ୍ୟ ଉପରେ ବିଶଦ ଗବେଷଣା କରିଛଂତି । ତାଂକୁ ଛାଡ଼ି ଆଉ ପ୍ରାୟ ୩୦ ଜଣ ଗବେଷକ ଗବେଷିକା ମୋ ସାହିତ୍ୟ ଉପରେ ଗବେଷଣା କରି Ph.D. ଏବଂ D.Litt ଡିଗ୍ରୀ ପାଇଛଂତି । ନିର୍ମଳା ମୋର ସାହିତ୍ୟ କର୍ମରେ ଦୀର୍ଘଦିନ ଧରି ସାହାଯ୍ୟ କରିଆସୁଛି । ଶ୍ରୁତଲିଖନ ନେବା ଛଡ଼ା, ଓଡ଼ିଆ, ହିଂଦୀ ଓ ସଂସ୍କୃତ ପୁସ୍ତକମାନ ପଢ଼ିବା ଏବଂ ଚିଠିପତ୍ର ଲେଖାଲେଖିରେ ଆଂତରିକତା ସହ ସେ ସାହାଯ କରିଆସୁଛି ।

## ଏକପଂଚାଶତ୍ ଉଲ୍ଲାସ

**ଲଂଡନରେ ଚାରିମାସ :**
**କେଂଦ୍ର ସାହିତ୍ୟ ଏକାଡେମୀର ଫେଲୋ ନିର୍ବାଚିତ :**
**ଦିଲ୍ଲୀ ସାହିତ୍ୟସଭାରେ ଭାଷଣ :**
**ସ୍ୱପ୍ନରେ ଦେବଦେବୀ ଦର୍ଶନ :**

୧୯୮୮ ମସିହାରେ ମୁଁ ଓ ଭୂଦେବୀ ୪ ମାସ ଲଂଡନରେ ଥିଲୁ । ସେପ୍‌ଟେଂବର ମାସରୁ ଆମେ ପରବର୍ଷ ଜାନୁୟାରୀ ପର୍ଯ୍ୟଂତ ଲଂଡନରେ ରହିଗଲୁ । ଆମେ ମଂଜୁଶ୍ରୀ ଘରେ ଅଧିକାଂଶ ସମୟ ରହିଥିଲୁ । ତାର ଏ ନୂଆ ଘରଟି Kings Cross Stationକୁ ଲାଗିକରି Goldens Green Streetରେ ଅବସ୍ଥିତ । ଏହା ଲଂଡନର କେଂଦ୍ରସ୍ଥଳରେ ଅବସ୍ଥିତ । ମୁଁ କେତେଜଣ ଚକ୍ଷୁ ବିଶେଷଜ୍ଞଙ୍କ ଚିକିତ୍ସାରେ ଥିଲି । ଆମେ ପ୍ରାୟ ଦୁଇସପ୍ତାହ ବୁଚି (ଉଦୟନ) ଘରେ ମଧ୍ୟ ଥିଲୁ ।

ବୁଚି ପାଖରେ ୧୦ ଦିନ – ବୁଚି ସେତେବେଳେ ଲଂଡନ ବିଶ୍ୱବିଦ୍ୟାଳୟରେ Business Management ବିଭାଗରେ ଲେକ୍‌ଚରର୍ ଥିଲା । ପରେ ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର Business Management ବିଭାଗକୁ lecture ରୂପେ ବଦଳି ହେଲା । ବର୍ତ୍ତମାନ୍ ସେ ସେହି ବିଭାଗରେ Principal Lecturer । ସେ ପ୍ରାୟ ପ୍ରତିବର୍ଷ ତା' ବିଶ୍ୱବିଦ୍ୟାଳୟଦ୍ୱାରା ପ୍ରେରିତ ହୋଇ ଭାରତ ଆସେ ଏବଂ ଭାରତରେ ବମ୍ବେ, ପୁନା, କଲିକତା, ଦିଲ୍ଲୀ ପ୍ରଭୃତି ଯାଏ । ତା ଗସ୍ତକ୍ରମ ଶେଷରେ ଏକ ସପ୍ତାହରୁ ଦୁଇସପ୍ତାହ ପାଇଁ କଟକ ଆସି ଆମ ପାଖରେ ରହେ । ଥରେଦୁଇଥର ତାର ସ୍ତ୍ରୀ ଡୋମିନିକ୍ ମଧ୍ୟ ଆସିଥିଲା । ତାଙ୍କର ପ୍ରଥମ ସଂତାନ ଗୋଟିଏ ଝିଅର ତା ନାମ ମାଳିନୀ । ଥରେ ସେ ମାଳିନୀ ଓ ସ୍ତ୍ରୀ ଡୋମିନିକ୍‌କୁ ଆଣିଥିଲା । ପରେ ତାଙ୍କର ପୁଅ ନିକେଶ୍ ଜନ୍ମହେଲା ।

ବୁଚି ସେତେବେଳେ ଦକ୍ଷିଣ ଲଂଡନରେ ଗୋଟିଏ ଘର କିଣି ସପରିବାର ରହୁଥିଲା । ବୁଚି ଘର ସାମନାରେ ରାସ୍ତା ଆରପଟେ ଗୋଟିଏ ବଡ଼ ଖେଳପଡ଼ିଆ ଥିଲା । ଖେଳପଡ଼ିଆକୁ ସଂଲଗ୍ନ ହୋଇ ଏକ ସ୍କୁଲ ମଧ୍ୟ ଥିଲା ।

ଆମେ ବୁଚି ପାଖରେ ରହୁଥିଲାବେଳେ ତାର ଶଶୁର ଓ ଶାଶୁ ଆମକୁ ଦେଖିବାପାଇଁ ଲଂଡନ ଆସିଥିଲେ । ବୁଚି ଶଶୁରଙ୍କ ନାମ W. Van denstorme । ସେ ବେଲ୍‌ଜିୟମ୍‌ର ରାଜଧାନୀ ବ୍ରସେଲସ୍ ନିକଟସ୍ଥ Angelus 2758 Hassdonk ସହରର ସ୍ଥାୟୀ ବାସିଂଦା । ସେ ଏକ ଆଫ୍ରିକାନ୍ ଦେଶର ରାଷ୍ଟ୍ରଦୂତରୂପେ ବ୍ରସେଲସ୍‌ରେ କାର୍ଯ୍ୟ କରୁଥିଲେ । ସେ ଏବଂ ତାଂକ ପତ୍ନୀ ଲଂଡନ ଆସି ବୁଚି ଘର ନିକଟସ୍ଥ ଏକ ହୋଟେଲରେ ପ୍ରାୟ

୫/୬ ଦିନ ରହିଥିଲେ । ସେମାନେ ରୋଜ୍ ବୁଚି ଘରକୁ ଆସୁଥିଲେ ଏବଂ ଆମ ସାଂଗରେ ନାନା ବିଷୟରେ ଆଲୋଚନା କରିଯାଉଥିଲେ । ଆମେ ସମସ୍ତେ ଦୁଇବେଳା ଏକତ୍ର ଲଞ୍ଚ ଓ ଡିନର୍ ଖାଉଥିଲୁ । ମିଃ ଓ ମିସେସ୍ Starme ବେଲ୍‌ଜିୟମରୁ ତାଙ୍କ ଗାଡ଼ି ଚଳାଇ ମଝିରେ ମଝିରେ ଲଂଡନ ଆସଂତି ଏବଂ ସେଠାରେ କିଛିଦିନ ରହି ଫେରିଯାଂତି ।

ବୋହୂ ଡୋମିନିକ୍ ଜଣେ ମେଡିକାଲ୍ ନର୍ସ ଥିଲା । ବୁଚି ସୁଇଜରଲ୍ୟାଂଡରେ Business Managementରେ ଏମ୍.ଏ. ପଢୁଥିବାବେଳେ ଡୋମିନିକ୍ ସଂଗେ ତାର ପରିଚୟ ହୋଇଥିଲା । ସେମାନେ ବିବାହ କରିବେ ବୋଲି ସ୍ଥିରକଲାପରେ ବୁଚି ଭାରତ ଆସି ଆମର ଅନୁମତି ନେଇ ଡୋମିନିକୁ ବିବାହକରିଥିଲା । ସେମାନଂକର ବିବାହ ଲଂଡନଠାରେ ୧୯୮୭ ମସିହା August 15 ତାରିଖରେ ଅନୁଷ୍ଠିତ ହୋଇଥିଲା । ସେଦିନ ଥିଲା ଭାରତର ସ୍ୱାଧୀନତା ଦିବସ । ସେହି ବର୍ଷ ସେପ୍‌ଟେବଂର ମାସରେ ମୁଁ ଜ୍ଞାନପୀଠ ସମ୍ମାନ ପାଇବା ବିଷୟ ଘୋଷଣା କରାଯାଇଥିଲା । ତାପରେ ବେଲ୍‌ଜିୟମ୍‌ରେ ତା ଶଶୁର ଘରେ ଏକ ବଂଧୁମିଳନର ଆୟୋଜନ କରାଯାଇଥିଲା । ମୋ ଝିଅ ମଂଜୁଶ୍ରୀ ଏବଂ ତା ସ୍ୱାମୀ ପ୍ରଶାଂତ ବଂଧୁ ମିଳନରେ ଯୋଗଦେଇଥିଲେ ।

**ହିଂଦୀ ଅଧ୍ୟାପକ ଡ. ଜନ୍‌ଂକ ସହିତ ଆଳାପ :**

ଲଂଡନ ବିଶ୍ୱବିଦ୍ୟାଳୟର ସ୍କୁଲ୍ ଅଫ୍ ଓରିଏଂଟାଲ୍ ଆଣ୍ଡ ଆଫ୍ରିକାନ୍ ଷ୍ଟଡିଜ୍‌ର (School of Oriental Studies)ର ହିଂଦୀ ଅଧ୍ୟାପକ ଡ. ଜନଂକ ସହିତ ମୋର ମଂଜୁଶ୍ରୀ ଘରେ ଆଳାପ ହୋଇଥିଲା । ତାଂକୁ ଆମେ ଚା'ଖାଇବାକୁ ନିମଂତ୍ରଣ କରିଥିଲୁ । ସେ ଜଣେ ଅମାୟିକ ବ୍ୟକ୍ତି ଏବଂ ଭାରତୀୟ ଭାଷାରେ ସେ ଅଭିଜ୍ଞତା ଅର୍ଜନ କରିଥିଲେ ।

**ଜାତୀୟ କବିତା ପ୍ରତିଷ୍ଠାନରେ କବିତାପାଠ :**

ଇଂଡନ ହେଉଛି P. National Poetry Society ର କେଂଦ୍ରପୀଠ । ସେଠାରେ Societyର ଏକ ବଡ଼ ଅଫିସ୍ ଓ ସଭାଗୃହ ଅଛି । ଏଠାରେ କବିତାପାଠ ଉତ୍ସବ ଅନୁଷ୍ଠିତ ହୁଏ । ସଭାସମିତି ଓ ଆଲୋଚନାଚକ୍ର ପ୍ରଭୃତି ମଧ୍ୟ ହୁଏ । ବ୍ରିଟିଶ୍ ସରକାର ପୋଏଟ୍ରି ସୋସାଇଟିକୁ ବଡ଼ଧରଣର ଗ୍ରାଣ୍ଟ ଦିଅଂତି । କବିତାପାଠ ଉତ୍ସବରେ ଟିକଟ କିଣିବାକୁ ପଡ଼େ । ମୁଁ ସେମାନଂକ ନିମନ୍ତ୍ରଣକ୍ରମେ କବିତାପାଠ ଆସରରେ ଦୁଇଥର କବିତା ପଢ଼ିଥିଲି । ସେଥିମଧ୍ୟରୁ ଗୋଟିଏ କବିତାର ନାମ ଶାଜାହାନ୍, ଅନ୍ୟଟି "ଉତ୍ତର ତିରିଶ" । ଏହି ଦୁଇଟିଯାକ କବିତା ମୁଁ ଏବଂ କଲିକତାର ବି. ସିହ୍ନା ଇଂରାଜୀରେ ଅନୁବାଦ କରିଥିଲୁ । କବିତା ଦୁଇଟି ଭଲହୋଇଥିଲା ବୋଲି ବହୁ ଶ୍ରୋତା ମତ ବ୍ୟକ୍ତ କରିଥିଲେ ।

**ଟେନସ୍ ନଦୀକୂଳରେ ସନ୍ଧ୍ୟା :**

କେତେଥର ସନ୍ଧ୍ୟାବେଳେ ଆମେ Tense ନଦୀ କୂଳରେ ଏକ ପୋଲନିକଟରେ ବସି କଟାଇଛୁ । ସେଠାରେ ପବନ ଖୁବ୍ ଜୋର୍‌ରେ ବହେ, ମନେହୁଏ ଉଡ଼ାଇନେବ ।

ପୋଲଟି ମଧ୍ୟ ଜାହାଜ ପରି । ତାହା ଉପରେ ଲୋକେ ଓ ଯାନବାହନ ଯିବାଆସିବା କରଂତି । ମାତ୍ର ଜାହାଜ ଗଲାବେଳେ ତାହା ମଝିରୁ ଖୋଲିଯାଏ, ଦୁଇଖଣ୍ଡ ହୋଇ ଦୁଇ ପାଖକୁ ଆଉଜି ଯାଏ । ଆମେ ସେ ପୋଲରେ ମଧ୍ୟ କେତେଥର ଚଲାବୁଲା କରିଛୁ ।

**ଲଂଡନରେ ବଡ଼ଦିନ :**

ଆମେ ଲଂଡନରେ ଥିଲାବେଳେ ବଡ଼ଦିନ ବା ଖ୍ରୀଷ୍ଟମାସ ସମୟରେ ଦୋକାନ ବଜାର ସାଜସଜ୍ଜା ଦେଖି ମୁଗ୍ଧ ହୋଇଥିଲୁ । କାଚ ଶୋ'କେସରେ ସୁଂଦର ବିଗ୍ରହମାନ ଓ ପ୍ରାକୃତିକ ଦୃଶ୍ୟମାନ ଗଢ଼ି କରି ସଜାଇ ରଖିଥାନ୍ତି । କେତେକ ଐତିହାସିକ ଚିତ୍ର ମଧ୍ୟ ବିଗ୍ରହନ୍ୱୀତ ହୋଇଥାଏ । ସମଗ୍ର ନଗରୀଟି ଆଲୋକମାଳାରେ ସଜ୍ଜିତ ହୋଇଥାଏ ।

**ପ୍ୟାରିସ୍ ପରିଭ୍ରମଣ –** ଲଂଡନରୁ ଆମେ ଥରେ କାର୍ ଯୋଗେ ଡୋଭର ଦେଇ ପ୍ୟାରିସ୍ ଯାଇଥିଲୁ । ପ୍ୟାରିସ୍‌ରେ ପହଞ୍ଚିବାକୁ ପ୍ରାୟ ଦେଢ଼ଘଣ୍ଟା ସମୟ ଲାଗେ । ଆମେ ପ୍ୟାରିସ୍‌ରେ କେତେକ ଦର୍ଶନୀୟ ସ୍ଥାନ ବୁଲି ଏବଂ ରାତ୍ରିଭୋଜନ ସାରି କାର୍‌ରେ ଲଂଡନ ଫେରିଆସିଲୁ । ଘରେ ପହଞ୍ଚିଲାବେଳକୁ ରାତି ପ୍ରାୟ ୧୦ଟା ହୋଇଯାଇଥାଏ ।

ପ୍ୟାରିସର ରାସ୍ତାଗୁଡ଼ିକ ବେଶ୍ ଚଉଡ଼ା । ରାସ୍ତା ଦୁଇକଡ଼ରେ ବଡ଼ ବଡ଼ ଗଛ ମାନ ଛିଡ଼ାହୋଇଥାନ୍ତି । ପ୍ୟାରିସ୍ ଲଂଡନ ଅପେକ୍ଷା ବେଶି ପରିଚ୍ଛନ୍ନ ଓ ଶୃଙ୍ଖଳାବଦ୍ଧ ମନେ ହେଲା ।

ଲଂଡନରେ ଚାରିମାସ ରହିଲାପରେ ଆମେ ମସ୍କୋ ହୋଇ ଭାରତ ଫେରିଲୁ । ଆମେ ମାଡ୍ରାସରେ ଓହ୍ଲାଇଥିଲୁ ।

**ମାଡ୍ରାସ୍‌ରେ ଦୁଇଦିନ –** ମାଡ୍ରାସରେ ମୁଁ ଶଂକର ନେତ୍ରାଳୟକୁ ଯାଇ ମୋ ଆଖି ବିଷୟରେ ପରାମର୍ଶ କରିଥିଲି । ପିଠାପୁରମ୍ ରାଜକୁମାରୀ ପଦ୍ମାଘରେ ଆମେ ଦୁଇଦିନ ଥିଲୁ । ପଦ୍ମା ଭୂଦେବୀର ଦାଦାଝିଅ ଭଉଣୀ । ଆମେ ମାଡ୍ରାସ୍ ଗଲେ ପ୍ରାୟ ତାରି ଘରେ ରହୁ । ତା ଘରର ନାମ ଥିଲା Manox । ଭୂଦେବୀର ଆଉ ଜଣେ ଦାଦାଝିଅ ଭଉଣୀ ରାଧା (ପଦ୍ମାର ସାନଭଉଣୀ) ତାଂକ ଘରେ ଆମକୁ ଭେଟିବାପାଇଁ ଏକ ରାତ୍ରିଭୋଜନର ଆୟୋଜନ କରିଥିଲେ । ଏଥିରେ ମାଡ୍ରାସ୍‌ରେ ଥିବା ସମସ୍ତ ଆତ୍ମୀୟସ୍ୱଜନ ଏବଂ ରାଧାର ବଂଧୁବାଂଧବୀମାନେ ଯୋଗଦେଇଥିଲେ । ରାଧା ବିଜୟନଗରର ମହାରାଜାଂକ ସାନ ଭାଇଂକୁ ବାହକରିଛି ।

**ଚକ୍ଷୁ ଅପରେସନ୍ :**

୧୮.୫.୧୯୯୧ ତାରିଖରେ ମାଡ୍ରାସର ଶଙ୍କର ନେତ୍ରାଳୟରେ ମୋର ଚକ୍ଷୁରେ ଅସ୍ତ୍ରୋପଚାର ହେବ ବୋଲି ଦିନ ସ୍ଥିରହୋଇଥିଲା । ମୁଁ ଓ ଭୂଦେବୀ ଓ ପୁଅ ଶ୍ରୀହର୍ଷ ମାଡ୍ରାସ୍‌ରେ ତିନିସପ୍ତାହ ରହିବାକୁ ପଡ଼ିଥିଲା । ମାଡ୍ରାସରେ ସେତେବେଳେ ରାଷ୍ଟ୍ରପତି ଶାସନ ଚାଲିଥିଲା । ରାଜ୍ୟପାଳ ହିଁ ପ୍ରଶାସନର ମୁଖ୍ୟ ଥିଲେ । ମୁଁ ରାଜ୍ୟପାଳଂକୁ State Guest ଭାବରେ ଆମକୁ ରହିବା ପାଇଁ ଅନୁମତି ଦେବାକୁ ଲେଖିଥିଲି । ସେ ଆମ ତିନିଜଣଙ୍କୁ State Guest Houseରେ State Guest ଭାବରେ ରହିବା ପାଇଁ ଅନୁମତି

ଦେଇଥିଲେ । ଆମେ ଯାଇ ଷ୍ଟେଟ୍ ଗେଷ୍ଟହାଉସ୍‌ରେ ରହିଲୁ । ଆମକୁ ଦୁଇକୋଠରିବିଶିଷ୍ଟ ଏକ Suite ଦିଆଯାଇଥିଲା । ସେଥିରେ ଗୋଟିଏ ରୁମ୍ ଶୟନାଗାର ଏବଂ ଆଉ ଗୋଟିଏ ରୁମ୍ ବୈଠକଖାନା ଥିଲା । ଏହା ସହିତ ସ୍ନାନ ଘର ଟୟଲେଟ୍ ଓ ଅନ୍ୟ ଗୋଟିଏ ରୁମ୍ ସଂଲଗ୍ନ ଥିଲା । ଦୁଇଟିଯାକ ରୁମ୍ ଶୀତତାପନିୟଂତ୍ରିତ । ଆମର ଖାଇବାପିଇବା ଖର୍ଚ୍ଚ ସବୁ ମାଡ୍ରାସ୍ ସରକାର ବହନକରୁଥିଲେ । ଆମର ବ୍ୟବହାର ପାଇଁ ଗୋଟିଏ କାର୍ ଓ ଡ୍ରାଇଭର ମହଜୁଦ ଥିଲା । ତାର ଖରଚ ମଧ୍ୟ ଆମକୁ ଦେବାକୁ ପଡୁନଥିଲା । ଅପରେସନ୍‌ର ଦୁଇଦିନ ପୂର୍ବରୁ ମୁଁ ଓ ଶ୍ରୀହର୍ଷ ନେତ୍ରାଳୟରେ ଥିବା କେବିନରେ ରହିଥିଲୁ ।

୧୮.୫.୧୯୯୧ ତାରିଖରେ ଅପରେସନ୍ ହେବାର ଦୁଇଦିନ ପରେ ଆମେ ଷ୍ଟେଟ ଗେଷ୍ଟ ହାଉସକୁ ଫେରିଆସିଲୁ ।

**ରାଜୀବ ହତ୍ୟାକାଣ୍ଡ –** ଷ୍ଟେଟ୍ ଗେଷ୍ଟହାଉସ୍‌ରେ ଥିବାବେଳେ ଦିନେ ସକାଳୁ ହର୍ଷ ଖବର ଦେଲା ରାଜୀବ ଗାଂଧିଙ୍କୁ ହତ୍ୟାକରାଯାଇଛି । ସେ ମାଡ୍ରାସ ନିକଟସ୍ଥ ଏକ ଗ୍ରାମର ନିର୍ବାଚନ ସଭାରେ ଭାଷଣ ଦେବାକୁ ଯାଉଥିଲେ । ଶ୍ରୀଲଂକା ଆତଙ୍କବାଦୀ ଦଳର ସଭ୍ୟା ଜଣେ ମହିଳା ତାଂକୁ ମାନବବୋମାଦ୍ୱାରା ହତ୍ୟାକରିଥିଲା । ସେ ନିଜ ପେଟତଳେ ଶକ୍ତିଶାଳୀ ବୋମା ଖଂଜି ରାଜୀବଂକ ପାଦ ଧୂଳି ନେବା ଛଳରେ ବୋମାଟି ଫୁଟାଇଥିଲା । ଫଳରେ ସେ ନିଜେ ଛିନ୍ନଛତ୍ର ହୋଇଯିବା ସଂଗେ ସଂଗେ ରାଜୀବ ମଧ୍ୟ ମୃତ୍ୟୁମୁଖରେ ପଡ଼ିଥିଲେ । ତାଂକର ମୁହଁ ଓ ନାକ ପ୍ରଭୃତି ଉଡ଼ିଯାଇଥିଲା । ରାଜୀବଂକ ମୃତ୍ୟୁଖବର ପାଇ ମୁଁ ବଡ଼ ବ୍ୟଥିତ ହୋଇପଡ଼ିଲି । ଏହାର ୬/୭ ଦିନ ପରେ ଆଖିର ବ୍ୟାଂଡେଜ୍ ଖୋଲାଯିବା ପରେ ଆମେ କଟକ ଚାଲିଆସିଲୁ ।

ଏହାର ୧୦ ଦିନ ପରେ ଆଖିର ଦୃଷ୍ଟି ଠିକ୍ ଅଛିକି ନାହିଁ ଏବଂ ଚଷମା ପାୱାର ଜାଣିବା ପାଇଁ ମୋତେ ପୁଣି ମାଡ୍ରାସ ଯିବାକୁ ପଡ଼ିଥିଲା । ସେଠାରେ State Guest Houseରେ ବା ରାଜ୍ୟ ଅତିଥି ଭବନରେ ହର୍ଷ ଆଉ ମୁଁ ପ୍ରାୟ ୩/୪ ଦିନ State Guest ଭାବରେ ରହିଥିଲୁ । ସେତେବେଳକୁ ମାଡ୍ରାସରେ ନିର୍ବାଚନ ସରିଥିଲା ଏବଂ ନୂଆ ସରକାର ଗଠିତ ହୋଇଥିଲା ।

## କେଂଦ୍ର ସାହିତ୍ୟ ଏକାଡେମୀର ଫେଲୋ ନିର୍ବାଚିତ :

୧୯୯୬ ମସିହାରେ ମୁଁ କେଂଦ୍ର ସାହିତ୍ୟ ଏକାଡେମୀର ଆଜୀବନ Fellow ନିର୍ବାଚିତ ହୋଇଥିଲି । ଏହା କେଂଦ୍ର ସାହିତ୍ୟ ଏକାଡେମୀର ସର୍ବୋଚ୍ଚ ସମ୍ମାନ । ଏହି Fellowship କେଂଦ୍ର ସାହିତ୍ୟ ଏକାଡେମୀର ସଭାପତି ୟୁ. ଆର୍ ଅନନ୍ତମୂର୍ତ୍ତି ମୋର କଟକ ମିଶନ ରୋଡସ୍ଥ ବାସଭବନ ପରିସରରେ ନିର୍ମିତ ଏକ ସ୍ୱତଂତ୍ର ସଭାମଂଡପରେ Feb 23 1996 ମସିହାରେ ପ୍ରଦାନ କରିଥିଲେ । କେଂଦ୍ର ସାହିତ୍ୟ ଏକାଡେମୀର ସଚିବ Prof. ଇଂଦ୍ରନାଥ ଚୌଧୁରୀ ପ୍ରମାଣପତ୍ରଟି ପାଠକରିଥିଲେ । କେଂଦ୍ର ସାହିତ୍ୟ ଏକାଡେମୀର ଉପସଭାପତି ରମାକାଂତ ରଥ ଓ ଅନ୍ୟ ବହୁ ବିଶିଷ୍ଟ ସାହିତ୍ୟିକ ମୋ ସାହିତ୍ୟକୃତି ଉପରେ ଭାଷଣ ଦେଇଥିଲେ । ମୁଁ ମୋ ଭାଷଣରେ ବର୍ତ୍ତମାନ ସାହିତ୍ୟିକ

ପରିସ୍ଥିତି ଏବଂ ସମାଜରୁ ଦୁର୍ନୀତି ଓ ଭ୍ରଷ୍ଟାଚାର ଦୂରକରିବାରେ ସାହିତ୍ୟର ବଳିଷ୍ଠ ଭୂମିକା ବିଷୟରେ ଭାଷଣଦେଇଥିଲି । ନିମ୍ନରେ ପ୍ରମାଣପତ୍ରଟି ଉଦ୍ଧାର କରାଗଲା ।

**Sahitya Akademi**

"Sacchidananda Raut Roy elected Fellow of Sahitya Akademi for his eminence as Oriya poet.

Feb-23-1996 U.R. Anantamurti

President, Sahitya Akademi.

New Delhi - 110001

ଏହି ଉତ୍ସବରେ କେନ୍ଦ୍ର ସାହିତ୍ୟ ଏକାଡେମୀଦ୍ୱାରା ପ୍ରକାଶିତ ମୋ ଇଂରାଜୀ କବିତା ସଂକଳନ (Varticals of Life) ଗୁରୁଚରଣ ପଟ୍ଟନାୟକଙ୍କଦ୍ୱାରା ଉନ୍ମୋଚିତ ହୋଇଥିଲା । ଏହି କବିତା ସଂକଳନରେ ମୋର କେତେକ କବିତାର ଇଂରାଜୀ ଅନୁବାଦ ସଂକଳିତ ହୋଇଛି । ଅଧିକାଂଶ କବିତା ଡଃ ଜୟନ୍ତ ମହାପାତ୍ର ଅନୁବାଦ କରିଛନ୍ତି । ସେ ମଧ୍ୟ ଏହି ବହିର ସଂପାଦନା କରିଛନ୍ତି ଏବଂ ମୁଁ ଓ ବି. ସିହ୍ନା ଅନୁବାଦ କରିଥିବା କେତେକ କବିତା ମଧ୍ୟ ଏ ପୁସ୍ତକର ସ୍ଥାନପାଇଛି ।

**ଦିଲ୍ଲୀରେ ଉତ୍କଳ ସଂସ୍କୃତି ସମ୍ମିଳନୀ :**

୧୯୯୩ ମସିହାରେ ଦିଲ୍ଲୀଠାରେ ଏକ ବଡ଼ଧରଣର ଉତ୍କଳ ସଂସ୍କୃତି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଉପସ୍ଥିତ ଥିଲେ । ଭାରତର ଉପରାଷ୍ଟ୍ରପତି ଶଙ୍କର ଦୟାଲ ଶର୍ମା (ଯେ କି ପରେ ରାଷ୍ଟ୍ରପତି ହୋଇଥିଲେ) । ଏହି ସମ୍ମିଳନୀ ଉଦ୍‌ଘାଟନ କରିଥିଲେ ଏବଂ ମୁଖ୍ୟଅତିଥିରୂପେ ଯୋଗ ଦେଇଥିଲେ । ଓଡ଼ିଶା ସାହିତ୍ୟ ଏକାଡେମୀର ତତ୍‌କାଳୀନ ସଭାପତି ଏବଂ 'ସମାଜ' ପତ୍ରିକାର ସହଯୋଗୀ ସଂପାଦିକା ମନୋରମା ମହାପାତ୍ର ଏହି ସମ୍ମିଳନୀର ଆୟୋଜନରେ ସକ୍ରିୟ ଭୂମିକା ଗ୍ରହଣକରିଥିଲେ । ଉପରାଷ୍ଟ୍ରପତି ଶଙ୍କର ଦୟାଲ୍ ଶର୍ମା ତାଂକ ଭାଷଣରେ ଭାରତରେ ବିଭିନ୍ନ ସଂସ୍କୃତି ଓ ସାହିତ୍ୟ ମଧ୍ୟରେ ସମନ୍ୱୟ ରକ୍ଷା କରିବା ଦ୍ୱାରା ଜାତୀୟ ସଂହତିର ଅଭିବୃଦ୍ଧି ସାଧିତ ହେବ ବୋଲି ମତ ପ୍ରକାଶ କରିଥିଲେ । ସେ କହିଥିଲେ ଯେ କଳିଂଗର ସଂସ୍କୃତି ଏବଂ ତାର ଶିଳ୍ପ ଭାସ୍କର୍ଯ୍ୟ ଭାରତରେ ଗଭୀର ପ୍ରଭାବ ପକାଇଛି ।

ମୁଁ ଇଂରାଜୀ ଭାଷଣରେ କହିଥିଲି ଯେ ଭାରତୀୟ ସାହିତ୍ୟ ବିଭିନ୍ନ ଭାଷାରେ ଲେଖା ହେଉଥିଲେ ମଧ୍ୟ ଏହା ଏକ ଏବଂ ଅଭିଭାଜ୍ୟ । ଭାରତୀୟ ଚେତନା ତାର ସାହିତ୍ୟ ଓ ସଂସ୍କୃତି ମଧ୍ୟରେ ପ୍ରତିଫଳିତ ହୋଇଛି । ଏକ ଅଖଂଡ ମାନବିକ ଅଦୃଷ୍ଟବୋଧ ସାହିତ୍ୟ ମଧ୍ୟରେ ସୃଷ୍ଟିକରାଯାଇପାରେ । ଭରତୀୟ ସାହିତ୍ୟ ମାଧ୍ୟମରେ ଭାବଗତ ସମନ୍ୱୟ ଏବଂ ସମୀକରଣ ଏକ ଐତିହାସିକ ଆବଶ୍ୟକତା ।

ଏହି ସମ୍ମିଳନୀ ଦୁଇଦିନ ଧରି ଚାଲିଥିଲା । ଏଥିରେ ଦିଲ୍ଲୀର ବହୁ ସାଂବାଦିକ, ସାହିତ୍ୟିକ ଏବଂ ଓଡ଼ିଶାର ବହୁ ଲେଖକଲେଖିକା ଯୋଗଦେଇଥିଲେ । ପ୍ରତିଦିନ ସମ୍ମିଳନୀ ଶେଷରେ ସାଂସ୍କୃତିକ କାର୍ଯକ୍ରମ ବ୍ୟବସ୍ଥା କରାଯାଇଥିଲା । ମୋ ସ୍ତ୍ରୀ ଭୂଦେବୀ ମଧ୍ୟ

ମୋ ସହିତ ଯାଇଥିଲା । ବହୁ କେଂଦ୍ରମଂତ୍ରୀ ଏବଂ ଓଡ଼ିଶାର ସଂସ୍କୃତି ମଂତ୍ରୀ ଏଥିରେ ଭାଷଣଦେଇଥିଲେ ।

**ବିଷୁବ ମିଳନ ସମାବର୍ତନ ଉତ୍ସବ ଉଦ୍‌ଘାଟନ :**

୧୯୯୭ ମସିହା ଏପ୍ରିଲ୍ ୧୨ ତାରିଖରେ କଟକରେ ଅନୁଷ୍ଠିତ ବିଷୁବ ମିଳନର ବାର୍ଷିକ ସମାବର୍ତ୍ତନ ଉତ୍ସବ ମୁଁ ଉଦ୍‌ଘାଟନ କରିଥିଲି । ପୂର୍ବତନ ସୁପ୍ରିମ୍‌କୋର୍ଟ ଚିଫ ଜଷ୍ଟିସ୍ ରଂଗନାଥ ମିଶ୍ର ଓ ବିଶିଷ୍ଟ ଆଡ୍‌ଭୋକେଟ୍ ଗଂଗାଧର ରଥ ଯଥାକ୍ରମେ ବିଶିଷ୍ଟ ଅତିଥି ରୂପେ ସଭାରେ ଭାଷଣଦେଇଥିଲେ । ମୁଁ ମୁଖ୍ୟଅତିଥିଭାବେ ଭାଷଣଦେଇ ବର୍ତ୍ତମାନ ଓଡ଼ିଆ ସାହିତ୍ୟର ଗତି ଓ ପ୍ରକୃତି ଏବଂ ଓଡ଼ିଶାର ସାଂସ୍କୃତିକ ପରଂପରା ସଂବଂଧରେ କହିଥିଲି । ସମ୍ମିଳନୀ ସହିତ ଏକ ଚିତ୍ରକଳା ପ୍ରଦର୍ଶନୀ ମୁଁ ଉଦ୍‌ଘାଟନକରି ଆଧୁନିକ ଚିତ୍ରକଳା ସଂବଂଧରେ ଭାଷଣଦେଇଥିଲି ।

**ଢେଂକାନାଳ ସହରରେ ବାଜିରାଉତର ପୂର୍ଣାବୟବ ପ୍ରତିମୂର୍ତ୍ତି ଉନ୍ମୋଚନ :**

୧୯୯୭ ମସିହା ଏପ୍ରିଲ୍ ମାସ ୧୩ ତାରିଖରେ ଢେଂକାନାଳ ଆଇନ୍ କଲେଜ୍ ସମ୍ମୁଖରେ ମୁଁ ସହିଦ୍ ବାଜିରାଉତର ପୂର୍ଣାବୟବ ପ୍ରତିମୂର୍ତ୍ତି ଉନ୍ମୋଚନ କରିଥିଲି । ବାଜି ରାଉତ ଗୋଟିଏ ଆହୁଲା ଧରି ଛିଡ଼ାହୋଇଛି । ମୁଁ ମୁଖ୍ୟ ଅତିଥି ରୂପେ ଏକ ଦୀର୍ଘ ଭାଷଣ ଦେଲି । ଢେଂକାନାଳରେ ରାଜତଂତ୍ର ଅମଳରେ କିପରି ଅଂଧାରି ଶାସନ ଚାଲିଥିଲା ଏବଂ ଢେଂକାନାଳ ପ୍ରଜାଆଂଦୋଳନ କିପରି ରାଜତଂତ୍ର ବିରୋଧରେ ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇଥିଲା, ତାହା ବର୍ଣନା କରିଥିଲି । ଏହି ଉପଲକ୍ଷ୍ୟରେ ଢେଂକାନାଳ ଲ' କଲେଜର ପ୍ରିନ୍‌ସିପାଲ୍ ଓ ଢେଂକାନାଳର ବିଶିଷ୍ଟ ଜନନେତାମାନଂକ ଉଦ୍ୟମରେ ଏକ ବିରାଟ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ଏଥିରେ ଓଡ଼ିଶାର ବହୁ ତୁଂଗନେତା ଉପସ୍ଥିତ ଥିଲେ । ସେମାନଂକ ମଧ୍ୟରେ ଅରୁଣାଚଳ ରାଜ୍ୟର ପୂର୍ବତନ ରାଜ୍ୟପାଳ ସୁରେଂଦ୍ର ଦ୍ୱିବେଦୀ, ଢେଂକାନାଳ ପ୍ରଜାଆଂଦୋଳନର ନେତା ଓ ପୂର୍ବତନ ସାଂସଦ ବୀର ବୈଷ୍ଣବ ପଟ୍ଟନାୟକ, ଓଡ଼ିଶାର ପୂର୍ବତନ ମୁଖ୍ୟମଂତ୍ରୀ ନଂଦିନୀ ଶତପଥୀ, କମ୍ୟୁନିଷ୍ଟ ନେତା ଗୁରୁଚରଣ ପଟ୍ଟନାୟକ ଓ ଗୋବିଂଦ ମହାଂତି, ସ୍ୱାଧୀନତାସଂଗ୍ରାମୀ ବିଜୟ ପାଣି ପ୍ରମୁଖ ବିଶିଷ୍ଟ ଅତିଥିରୂପେ ଏହି ସଭାରେ ଉଦ୍‌ବୋଧନ ଦେଇଥିଲେ । ବକ୍ତାମାନେ ଢେଂକାନାଳରେ ରାଜଶାସନକାଳରେ କିପରି ଅମାନୁଷିକ ଅତ୍ୟାଚାର, ବ୍ୟାପକ ଶୋଷଣ ଏବଂ ବେଠି, ଭେଟି, ମାଗଣ ଓ ନାରୀଧର୍ଷଣ ପ୍ରଭୃତି ଅବାଧଗତିରେ ଚାଲିଥିଲା, ତାହା ନିଜନିଜର ପ୍ରତ୍ୟକ୍ଷ ଅନୁଭୂତିରୁ ବର୍ଣନା କରିଥିଲେ । ସଭା ଶେଷରେ ସ୍ୱାଧୀନତା ସଂଗ୍ରାମୀମାନଂକୁ ମାନପତ୍ର ଦିଆଯାଇଥିଲା । ମୁଁ ମୁଖ୍ୟଅତିଥିରୂପେ ମାନପତ୍ର ପ୍ରଦାନକରିଥିଲି ।

**ନିଖିଳ ଭାରତ କବିସମ୍ମିଳନୀ, ପ୍ରଥମ ଅଧିବେଶନ, କଲିକତା :**

କେତେକ ସର୍ବଭାରତୀୟ ସଂସ୍ଥାରେ ମୋର ଅବସ୍ଥିତି ବିଷୟରେ ପୂର୍ବରୁ କେଉଁଠି କେଉଁଠି ସୂଚନା ଦିଆଯାଇଛି । ମାତ୍ର ସେସବୁ ବିଷୟ ବିକ୍ଷିପ୍ତ ଭାବରେ ଲେଖାଯାଇଛି । ତେଣୁ ସମୟାନୁକ୍ରମେ ସେସବୁର ବିବରଣୀ ଦେବା ଆବଶ୍ୟକ ହେଉଛି ।

ନିଖିଳ ଭାରତ କବିସମ୍ମିଳନୀର ପ୍ରଥମ ଅଧିବେଶନ କଲିକତା ଠାରେ ୧୯୬୮ ମସିହା ଡିସେଂବର ମାସରେ ଅନୁଷ୍ଠିତ ହୋଇଥିଲା । ଏହା ଥିଲା ଭାରତର ସର୍ବପ୍ରଥମ କବିସମ୍ମିଳନୀ । ଏହା ପୂର୍ବରୁ ଏପରି ଅନୁଷ୍ଠାନ ବିଧିବଦ୍ଧ ଭାବରେ ଗଠିତ ହୋଇନଥିଲା । ସମ୍ମିଳନୀର ଖୋଲା ଅଧିବେଶନରେ ମୁଁ ସଭାପତି ଥିଲି । ମୋର ଦୀର୍ଘ ଇଂରାଜୀ ଭାଷଣଟି ପୁସ୍ତିକା ଆକାରରେ ଛପାଯାଇ ସମ୍ମିଳନୀରେ ବଂଟାଯାଇଥିଲା । ମୁଁ ଏଥିରେ କବିତାର ଉତ୍ସ ଓ ପରିବେଶ ସଂବଂଧରେ ଏବଂ ଏହାର ସ୍ଥିତି ଓ ଭୂୟୋବିକାଶ ସଂବଂଧରେ ଭାରତ ଓ ଆଂତର୍ଜାତିକ ପରିପ୍ରେକ୍ଷୀରେ ଆଲୋଚନା କରିଥିଲି ।

ଏହି ସମ୍ମିଳନୀରେ ଭାରତର ସବୁ ରାଜ୍ୟରୁ ବହୁ ତରୁଣ ଓ ପ୍ରବୀଣ କବି ସ୍ୱରଚିତ କବିତା ପାଠ କରିବା ସଂଗେ ସଂଗେ ଆଲୋଚନାରେ ବିଶେଷ ଅଂଶ ଗ୍ରହଣ କରିଥିଲେ । ଆସାମର ସୁପ୍ରସିଦ୍ଧ କବି ନବକାଂତ ବରୁଆ, ପଶ୍ଚିମବଂଗ କବି ବେଂଗଲୀ ଲିଟ୍ରେଚର ସଂପାଦକ ଆଶିଷ ସାନ୍ୟାଲ୍, ସୁଭାଷ ମୁଖାର୍ଜୀ, ଜଗନ୍ନାଥ ଚକ୍ରବର୍ତ୍ତୀ, ମନିଂଦ୍ର ରାୟ, ଦକ୍ଷିଣାରଂଜନ ବସୁ, ରମେଂଦ୍ର ମିତ୍ର, ଗୁଜୁରାଟର ପ୍ରଖ୍ୟାତ କବି ଉମାଶଂକର ଯୋଷୀ, ଓଡ଼ିଶାର କବି ସତ୍ୟନାରାୟଣ ପ୍ରହରାଜ, କେରଳର ପ୍ରସିଦ୍ଧ କବି ଗୋପାଳନ୍, ମାଡ୍ରାସ୍, କର୍ଣ୍ଣାଟକ, ମହାରାଷ୍ଟ୍ରର ବହୁ ପ୍ରଖ୍ୟାତ କବିଂକ ନାମ ବିଶେଷଭାବରେ ଉଲ୍ଲେଖନୀୟ ।

ଏହି ସମ୍ମିଳନୀର ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ଥିଲେ ସୁପରିଚିତ ସାହିତ୍ୟିକ ସତୀକାଂତ ଗୁହ ଏବଂ ସଂପାଦକ ଥିଲେ ଅଧ୍ୟାପକ ଆଶିଷ ସାନ୍ୟାଲ୍ । ଏହି ସମ୍ମିଳନୀ ଦୁଇଦିନ ଧରି କଲିକତାର ରବୀଂଦ୍ରଭବନରେ ବସିଥିଲା ।

**ନିଖିଳ ଭାରତ କବି ସମ୍ମିଳନୀର ଅଧିବେଶନ, ରାଉରକେଲା :**

୧୯୮୮ ମସିହାରେ ନିଖିଳ ଭାରତ କବି ସମ୍ମିଳନୀର ଅଧିବେଶନ ରାଉରକେଲାରେ ବସିଥିଲା । ଏହାର ଉଦ୍ୟୋକ୍ତା ଥିଲେ ଦକ୍ଷିଣାଂଚଳର କମିସନର୍ ବିଖ୍ୟାତ କବି ରାଜେଂଦ୍ର କିଶୋର ପଂଡା ଏବଂ ଆକାଶବାଣୀ । ମୁଁ ଏଥିରେ ମୁଖ୍ୟ ଅତିଥି ରୂପେ ଯୋଗଦେଇଥିଲି । ମୋର ମୁଦ୍ରିତ ଇଂରାଜୀ ଭାଷଣଟି ପୁସ୍ତିକାକାରରେ ଛାପାଯାଇ ବଂଟାଯାଇଥିଲା । ମୁଁ କବିତାର ଭୂମି ଓ ଭୂମିକା ଏବଂ ସମସାମୟିକ ଚେତନାର ପ୍ରକାଶ ରୂପେ କବିତାର ସାମାଜିକ ଅଂଗୀକାର ସଂବଂଧରେ ଆଲୋଚନା କରିଥିଲି ।

ଏହି ସମ୍ମିଳନୀରେ ଓଡ଼ିଶା, ଆଂଦ୍ର, ପଶ୍ଚିମବଂଗ, ଗୁଜୁରାଟ, ମହାରାଷ୍ଟ୍ର ଏବଂ ଦକ୍ଷିଣ ଭାରତର ବହୁ ପ୍ରଖ୍ୟାତ କବି ଯୋଗଦେଇଥିଲେ ।

**ପୂର୍ବାଂଚଳ ଲେଖକ ସମ୍ମିଳନୀ :**

୧୯୭୨ ମସିହାରେ କଲିକତାଠାରେ ପୂର୍ବାଂଚଳ ଲେଖକ ସମ୍ମିଳନୀର ପ୍ରଥମ ଅଧିବେଶନ ବସିଥିଲା । ମୁଁ ଏହି ଅଧିବେଶନରେ ସଭାପତିତ୍ୱ କରିଥିଲି । ତତ୍‌କାଳୀନ କେଂଦ୍ର ରାଷ୍ଟ୍ରମଂତ୍ରୀ ନଂଦିନୀ ଶତପଥୀ ଏହାକୁ ଉଦ୍‌ଘାଟନ କରିଥିଲେ । ବଂଗୀୟ ସାହିତ୍ୟିକ ସତୀକାଂତ ଗୁହ ଅଭ୍ୟର୍ଥନା ସମିତିର ସଭାପତି ରୂପେ ତାଂକ ଭାଷଣଟି ପାଠ କରିଥିଲେ । ଏଥିରେ ଆସାମର ନବକାଂତ ବରୁଆ, ପଶ୍ଚିମବଂଗର କବି ପ୍ରୀତୀଶ୍

ନଂଦୀ, ସୁଭାଷ ମୁଖାର୍ଜୀ, ଓଡ଼ିଶାର ସୀତାକାଂତ ମହାପାତ୍ର, ପ୍ରସନ୍ନ ପାଟଶାଣୀ, ସଦାଶିବ ଦାସ, ନାଟ୍ୟକାର ରାମଚଂଦ୍ର ମିଶ୍ର ଏବଂ ବିହାରର କେତେକ ଲବ୍ଧପ୍ରତିଷ୍ଠ କବି ଓ ସାହିତ୍ୟିକ ଯୋଗ ଦେଇଥିଲେ ଏବଂ କବିତା ପାଠକରିଥିଲେ ।

ମୁଁ ମୋ ସଭାପତି ଅଭିଭାଷଣରେ ପୂର୍ବାଂଚଳ ତଥା ସମଗ୍ର ଭାରତର ଲେଖକମାନଂକ ମଧ୍ୟରେ ସାହିତ୍ୟିକ ଆଦାନପ୍ରଦାନ ତଥା ସେମାନଂକ କୃତିର ହିଂଦୀ ଓ ଇଂରାଜୀ ଅନୁବାଦମାନ ପ୍ରକାଶର ଆବଶ୍ୟକତା ଉପରେ ଜୋରଦେଇଥିଲି ।

**ସର୍ବଭାରତୀୟ ଅନୁବାଦକ ସଂସଦ :**

ସର୍ବଭାରତୀୟ ଅନୁବାଦକ ସଂସଦର ପ୍ରଥମ ସମ୍ମିଳନୀ କଲିକତାଠାରେ ହୋଇଥିଲା । ଏହି ସଂସଦର ସଭାପତି ଥିଲେ ଲୀଳା ରାୟ । ମୁଁ ଏହାର ଉପସଭାପତି ଥିଲି । ଓଡ଼ିଶାରୁ ଅଧ୍ୟାପକ ଯତୀଂଦ୍ର ମୋହନ ମହାଂତି, ପଦ୍ମାଳୟା ଦାସ ଏବଂ ଅନ୍ୟ କେତେକ ଲେଖକ ଏଥିରେ ଯୋଗଦେଇଥିଲେ । ବିଖ୍ୟାତ ସାହିତ୍ୟିକ ଡ. ସୁନୀତି କୁମାର ଚାଟାର୍ଜୀ ଏହି ସମ୍ମିଳନୀରେ ଉଦ୍‌ବୋଧନ ଦେଇ ଭାରତ ଭଳି ଏକ ବହୁଭାଷୀ ଉପମହାଦେଶରେ ଅନୁବାଦ ମାଧ୍ୟମର ବିଶେଷ ଆବଶ୍ୟକତା ଅଛି ବୋଲି ପ୍ରକାଶକରିଥିଲି ।

ଏହିପରି ବହୁ ସର୍ବଭାରତୀୟ ସଂସ୍ଥା ସହିତ ମୋର ଅଂଗାଂଗୀ ଯୋଗସୂତ୍ର ଥିଲା ।

**ଜୀବନଯାତ୍ରା :**

ଚରୈବତି. . . ଚରୈବତି – ଏହିପରିଭାବରେ ମୋର ଜୀବନଯାତ୍ରା ଚାଲିଛି । ଦୃଷ୍ଟିଶକ୍ତି ଦୁର୍ବଳ ହୋଇପଡ଼ିଲାଣି । ତଥାପି ଲେଖାଲେଖି ଅବିରାମ ଗତିରେ ଚାଲିଛି ଏବଂ ଶେଷ ମୁହୂର୍ତ୍ତ ପର୍ଯ୍ୟଂତ ଚାଲିବ । ନିଜର କର୍ତ୍ତବ୍ୟ କରୁ କରୁ ଶେଷଯବନିକା ପଡ଼ିବା ଏକ ମହାନ୍ ସୌଭାଗ୍ୟର ବିଷୟ । ବହୁ ସଭାସମିତିରେ ଯୋଗଦେବା ଏବଂ ଲେଖାଲେଖି କରିବା ପୂର୍ବ ଗତିରେ ଚାଲିଛି ଏବଂ ବୋଧହୁଏ ଶେଷପର୍ଯ୍ୟଂତ ଚାଲିବ ବୋଲି ମୋର ବିଶ୍ୱାସ । ମୋର ଜୀବନର ଲକ୍ଷ୍ୟ "To die in harness" – ଦେଖାଯାଉ କ'ଣ ହେଉଛି । ସବୁ ଭଗବାନ୍‌ଙ୍କ ଇଚ୍ଛା ।

**ସ୍ୱପ୍ନରେ ଦେବା ଦେବୀଦର୍ଶନ :**

ମଣିଷ ଜୀବନର ଆଦି ଅଂତ କ'ଣ ତାହା କେହି ଜାଣିନାହାଂତି । ତେଣୁ ଜୀବନର ଲକ୍ଷ୍ୟ ସ୍ଥିରକରିବା ଅନେକ ସମୟରେ ସମ୍ଭବ ହୁଏ ନାହିଁ । ଅବଶ୍ୟ ଯେଉଁମାନେ ବଂଧାଗୁଳାରେ ଚାଲିବାରେ ଅଭ୍ୟସ୍ତ ସେମାନଂକ ପକ୍ଷରେ କିଛି ଅସୁବିଧା ନାହିଁ । ମଣିଷ କ'ଣ ଥିଲା, କେଉଁଠୁ ଆସିଲା ଏବଂ କେଉଁଠାକୁ ଯିବ ତାହା ସେ ଜାଣେନାହିଁ । ଏହି ଜୀବନ ଜିଜ୍ଞାସା ମୋତେ ସବୁବେଳେ ଅସ୍ଥିରକରେ ।

ଭଗବାନ୍ ଅବଚେତନର ବସ୍ତୁ । ବୁଦ୍ଧି ଦ୍ୱାରା ତାଂକର କଳ୍ପନା କରି ହୁଏ ନାହିଁ – ଉପଲବ୍ଧି କରିବା ତ' ଦୂରର କଥା । ମୋ ଜୀବନରେ ମୁଁ ଅନେକ ଥର ସ୍ୱପ୍ନରେ ଦେବା ଦେବୀ ଦର୍ଶନ କରିଛି, ସେମାନଂକର ସ୍ପଷ୍ଟ ବାକ୍ୟ ଶୁଣିଛି ଏବଂ ମନେରଖିଛି । ମାତ୍ର ଏହା ଯଥେଷ୍ଟ ନୁହେଁ । ରାଧାକୃଷ୍ଣ ଯୁଗଳମୂର୍ତ୍ତି, ଗରୁଡ଼ାସୀନ, ଲକ୍ଷ୍ମୀନାରାୟଣ,

ଶ୍ରୀଜଗନ୍ନାଥ, କାଳୀ, ମାରୁତି ସ୍ୱପ୍ନରେ ଆର୍ବିଭାବ ହୁଅଂତି । କେବେ କେବେ ଏମାଂନଙ୍କର ସ୍ପଷ୍ଟ ବଚନ ଶୁଣିଛି । ଭଗବାନ୍ ଶ୍ରୀକୃଷ୍ଣ ଓ ମା' କାଳୀ ସ୍ପଷ୍ଟ ଶବ୍ଦରେ କେତେ ପଦ କଥା କହିଥିଲେ, ତାହା ମୋର ମନେରହିଛି । ଏହା ହୁଏତ ବହୁ ଶତାବ୍ଦର ଜାତୀୟ ସ୍ମୃତିର ପରିପ୍ରକାଶ । ଯାହା ସୁପ୍ତ ଚୈତନ୍ୟରେ ସଂଚିତ ହୋଇ ରହିଥାଏ । ଏହାକୁ ଅନେକ ମନୋବୈଜ୍ଞାନିକ ଯଥା – ଜଂଗ୍ colleitive memory ବା ସାମୂହିକସ୍ମୃତି କହିଥାଂତି । ଏହାକୁ ମହାସ୍ମୃତି ମଧ କୁହାଯାଇ ପାରେ । ଏହି ସଂଜ୍ଞାରେ ଭଗବାନ୍‌ର ଠାବ ହୋଇଥାଏ । ବୁଦ୍ଧି ବା ତର୍କରେ ଭଗବାନ୍ ମିଳଂତି ନାହିଁ । ସେ ଯାହାହେଉ ମୁଁ ଏ ବିଷୟରେ କିଛି ନିଶ୍ଚିତ ଭାବରେ କହିପାରିବିନି ।

ମୋର ବୟସ କ୍ରମେ ୮୫ ବର୍ଷ ହେଲାଣି । ତେଣୁ ଏ ଦୀର୍ଘ ସମୟର ଅଭିଜ୍ଞତା ଓ ଅନୁଭୂତି କୌଣସି ଖଂଡିଏ ବହିରେ ଲେଖି ହେବ ନାହିଁ । ଯାହା ଲେଖାହୁଏ ତା'ଠାରୁ ଅଧିକ ଅଲିଖିତ ରହିଯାଏ । ପରିଶେଷରେ ମୁଁ ମୋର ''ମହାସ୍ମୃତି'' କବିତାର ଦୁଇଟି ପଂକ୍ତି ଉଦ୍ଧାରକରି ଏ ପୁସ୍ତକ ସମାପ୍ତ କରୁଛି ।

### ମହାସ୍ମୃତି

ହେ ମେଘବାହନ ମୃତ୍ୟୁ !
ନିଷିଦ୍ଧ ପତାକା ହାତେ ଏ ଦେହକୁ
କବଳିତ କରିବା ଆଗରୁ
ଦେଖାଅ ମୋ' ପୂର୍ବାପରେ
କର ମୋତେ ମହାସ୍ମୃତି
ବିଗତ ଓ ଆଗାମୀ ଦିନର ।
ଖୋଲିଦିଅ ଚିତ୍ରପଟ
ମୋ' ପୂର୍ବ ଜନ୍ମର
କ'ଣ ଥିଲି, କ'ଣ ନାହିଁ, କ'ଣ ହେବି,
ଏବଂ କ'ଣ ହୋଇପାରିଥାଂତି ।
x x x x
ଖୋଲିଦିଅ ତିନୋଟି ଗବାକ୍ଷ
ଭୂତ, ବର୍ତ୍ତମାନ, ଭବିଷ୍ୟତର,
କର ମୋତେ ''ମହାସ୍ମୃତି'' ସମଗ୍ର ସତ୍ତାର ।
ମୋତେ କର ମହାକାଳ, ମହାକାଶଚାରୀ
ମହାମେଘବାହନ ହେ ମୃତ୍ୟୁ,
ତୁମକୁ ସ୍ୱାଗତ ।
ଯେଣୁ ତୁମେ କର ମୁକ୍ତ କାଳର ବଂଧନୁ
ଘେନିଯାଅ କାଳୁ କାଳାଂତର ।

# ଶେଷ ଅଂକ

**ପତ୍ନୀ ଭୂଦେବୀର ବିୟୋଗ :**

ଏ ପୁସ୍ତକ ଲେଖାସରିବା ପରେ ଏବଂ ପାଂଡୁଲିପିଟି ପ୍ରେସ୍‌କୁ ପଠାଇଦେବାପରେ ମୋ ଜୀବନରେ ଦୁଇଟି ମର୍ମଂତୁଦ ଦୁର୍ଘଟଣା ଘଟିଛି । ତାହା ହେଉଛି ମୋର ପ୍ରାଣାଧିକା ପତ୍ନୀ ଭୂଦେବୀର ବିୟୋଗ ଏବଂ ଅନ୍ୟଟି ଶତାବ୍ଦୀର ପ୍ରଳୟଂକରୀ ମହାବାତ୍ୟା । ଗତ ଅକ୍ଟୋବର ୮ ତାରିଖ ୧୯୯୯ ଅପରାହ୍ନ ୫ଟା ବେଳେ ମୋର ପତ୍ନୀ ଭୂଦେବୀ ହଠାତ୍ ଆମ ସମସ୍ତଂକୁ ଛାଡ଼ି ଚାଲିଗଲା । ଆମେ ୫୫ ବର୍ଷ ବୈବାହିକ ଜୀବନ ଯାପନ କରିବା ପରେ ଭୂଦେବୀର ପ୍ରୟାଣ ମୋ ଜୀବନରେ ସବୁଠାରୁ ବଡ଼ ଆଘାତ । ତାର ଜନ୍ମହୋଇଥିଲା ଆଂଧ୍ର ପ୍ରଦେଶର କ୍ରିଷ୍ଣା ଜିଲ୍ଲାର ଗୋଲାପଲ୍ଲୀ ରାଜବଂଶରେ । ମୃତ୍ୟୁ ହେଲା କଟକ ମିଶନରୋଡ଼୍‌ର ମୋ ବାସଭବନରେ । ଦୀର୍ଘ ୫୫ ବର୍ଷ ସେ ମୋ ଜୀବନର ବହୁ ସୁଖଦୁଃଖରେ ଭାଗୀ ଥିଲା । ଖାଲି ଓଡ଼ିଶା, କଲିକତା, କିଂବା ଭାରତବର୍ଷ ନୁହେଁ, ସମଗ୍ର ପୃଥିବୀରେ ବହୁ ଦେଶ ବୁଲି ମୋର ସାଂସ୍କୃତିକ କାର୍ଯକ୍ରମରେ ସେ ସକ୍ରିୟ ସାହାଯ କରିଛି । ଲଂଡନ ବିଶ୍ୱବିଦ୍ୟାଳୟଂକ ଆମଂତ୍ରଣ ଓ ଆନୁକୂଲ୍ୟରେ ମୁଁ School of Oriental and African Studies ଲଂଡନରେ ୧୯୮୨ ମସିହାରେ ଯେଉଁ ଓଡ଼ିଶୀ ପୋଥିଚିତ୍ର ଓ ପଟଚିତ୍ରର ଦୀର୍ଘ ଚାରିମାସ ବ୍ୟାପୀ ପ୍ରଦର୍ଶନୀ କରିଥିଲି ସେଥିରେ ସେ ମୋତେ ଅକୁଂଠ ସାହାଯ କରିଥିଲା । ଲଂଡନ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଂକ ମୁଖପାତ୍ର ତାଂକ ଭାଷଣରେ ଭୂଦେବୀଂକୁ ଗଭୀର କୃତଜ୍ଞତା ଜଣାଇଥିଲେ । ଏହିପରି ନାନା ସ୍ମୃତି, ନାନା କଥା ମନରେ ଅବିସ୍ମରଣୀୟ ରହିଛି । ମୋର ଚାରିଟି ସଂତାନ ଯଥା: ମଂଜୁଶ୍ରୀ, ଚିତ୍ରା, ଶ୍ରୀହର୍ଷ ଏବଂ ଉଦୟନଙ୍କୁ ମଣିଷ କରିବାରେ ତା'ର ମଂଗଳମୟୀ ମାତୃହୃଦୟ ନିରଳସ ଭାବରେ ସଜାଗ ଥିଲା । ଜୀବନର ଶେଷ ମୁହୂର୍ତ୍ତରେ ସେ ପିଲାମାନଂକୁ ଦେଖିବ ବୋଲି ଇଚ୍ଛା ପ୍ରକାଶ କରିଥିଲା ।

ସେ ଯାହାହେଉ ମୋର ସମସ୍ତ ଆବେଗ ଓ ସ୍ମୃତି ମୋ ମନରେ ଚିରଦିନ ଅମ୍ଳାନ ରହିଛି ଏବଂ ରହିବ । ସେସବୁକୁ କଥାରେ ବୁଝାଇବା ଅସଂଭବ । ମୋର ଏକ ସଦ୍ୟଲିଖିତ କବିତାରେ ବରଂ ଅଧିକ ସ୍ପଷ୍ଟ ଭାବରେ କହିହେବ । ସେ କବିତାଟି "ବିୟୋଗ" ୧୫.୧୦.୯୯ ତାରିଖରେ ଲିଖିତ ହୋଇଥିଲା ।

ତାହା ତଳେ ଉଦ୍ଧୃତ କରୁଛି ।

### ବିୟୋଗ

("ନବରବି"ର ଜାନୁୟାରୀ ୨୦୦୦ ସଂଖ୍ୟାରେ ପ୍ରକାଶିତ)

(ମୋର ପତ୍ନୀ ଭୂଦେବୀଂକ ମୃତ୍ୟୁରେ ଲିଖିତ : ସେ ୮.୧୦.୯୯ ତାରିଖ ଅପରାହ୍ନରେ ଏ ସଂସାରରୁ ବିଦାୟ ନିଅଂତି) ।

କେହି ନାହିଁ, କିଛି ନାହିଁ, ସବୁ ଶୂନ୍ୟଶାନ୍
ଶତାବ୍ଦ ହେଇନି ଶେଷ
ତୁମେ କିଆଁ ତରତର ହୋଇ
ଚାଲିଗଲ ସମସ୍ତଙ୍କୁ ଛାଡ଼ି
ନିଷ୍ଠୁର ସନ୍ଧ୍ୟାର ଛାୟା
ବନ୍ଦ କରିଦେଲା ସୂର୍ଯ୍ୟଘଡ଼ି
ସବୁ ପକ୍ଷୀ ଫେରୁଛନ୍ତି ଘରେ
ତୁମେ କିଆଁ ଯାତ୍ରାକଲ ଅଜଣା ସୁଦୂରେ
ସବୁକଥା ପଛରେ ପକାଇ ଅବଶିଷ୍ଟ ଦୂରତ୍ୱ ସେପାରେ
କ'ଣ ସେ ସମ୍ମୁଖ
କୌଣସି ଅଙ୍ଗୁଳି ତାକୁ ପାରେନା ଦେଖାଇ
ମନେହୁଏ ତୁମେ ଅଛ ମୋର ପାଶେ ପାଶେ
ଅନୁଭବ କରେ ମୁହିଁ ତୁମର ନିଶ୍ୱାସ
ସମୟର ବେଳାଭୂଇଁ ପାରେ ।।
ତୁମେ ଥିଲ ଏକାଧାରେ ଷଡ଼ଋତୁଚକ୍ର
ପଞ୍ଚାବନ ବର୍ଷ କାଟିଛେଁ ଏକାଠି,
ପଞ୍ଚାବନ ଫଗୁଣର ପ୍ରସ୍ତୁତ ଭୂମିକା,
ଆଉ ପୁଷ୍ପିତ ବିଳାସ,
ବୈଶାଖର ଖରତାପ
ମୌସୁମୀର ନୀରବ ପ୍ରତୀକ୍ଷା
ପୌଷର ଶୀତାର୍ତ୍ତ ରାତି
ଅକାଳ ଝଡ଼ର ଡେଣାପିଟା
ସବୁ ହୁଏ ଏକ ସ୍ମୃତିଲେଖା
ଭାବେ ମୁହିଁ ପାରଂତି କି ଭୁଲି
ଦୃଶ୍ୟ ଦୃଶ୍ୟାଂତର, ଦୁଷ୍ୟନ୍ତଙ୍କ ଭଳି ।
ସ୍ମୃତି ମୋର ନଦୀଗର୍ଭେ
ରହିଥାଂତା ଲୁଚି,
କିନ୍ତୁ କାହାକୁ ଭୁଲିବି ?
କିପରି ଭୁଲିବି
ଯାହା ମୋର ସତ୍ତାର ଭଗ୍ନାଂଶ
ଭୁଲିବା ସହଜ ନୁହେଁ
ଯେତେ ଭୁଲିବାକୁ ଚେଷ୍ଟା କରେ

ସେତେ ମନେପଡ଼େ
ଆକାଶରେ ଜହ୍ନରାତି ଦିଶୁଅଛି ଫିକା,
କେବେ ଭାବେ ରୁଦ୍ରପରି କାଂଧେ ନେଇ ତାକୁ
କରଂତି ମୁଁ ବିଶ୍ୱ ପ୍ରଦକ୍ଷିଣ
ଦୁର୍ବାର କ୍ରୋଧରେ ଜଳି
ଦିଅଂତି ମୁଁ ମୃତ୍ୟୁକୁ ଆହ୍ୱାନ !
ଥରହର ଧରା – ପ୍ୟାରିସ୍, ଲଂଡନ,
ତେବେ ବା ହୁଅଂତା ଶେଷ ଅଭିଯାନ ।
ସମଗ୍ର ପୃଥିବୀ ଫାଂକା
ଆକାଶରେ ରୁଦ୍ର ଝଡ଼
ଝାଂପ ମାରେ ସ୍ପର୍ଧିତ ଇଗଲ,
ଭାଂଗିପଡ଼େ ପୃଥ୍ୱୀ !
ଦେହକୁ ବିଶ୍ୱାସ ନାହିଁ
ପଂଚ ଭୂତେ କେବେ ହେବ ଲୀନ,
ମାତ୍ର ଆତ୍ମା; ଆତ୍ମା କେଉଁଠାରେ
ସେ ଦେଖେ ସମସ୍ତ, ନିଜ ଛଡ଼ା
ଆଖି ପରି ତା' ଦେଖେ ସମସ୍ତ
ମାତ୍ର ନିଜକୁ ନୁହେଁ ।
ଫେରି ଆସେ ବାର ବାର
ସ୍ମୃତିରେ ସ୍ୱପ୍ନରେ !!
ଭୁଲିଯିବା ମନେରଖା ମଧ୍ୟରେ ସେ
ପାତେ ସିଂହାସନ
ମୁଁ ଡାକେ, ମୁଁ କାଂଦେ
ଯଂତ୍ରଣାର କିଛି ଅବସାନ
ମୁଁ ହୁଏ ନିବୃତ୍ତାଚାରୀ
ନିଜ ମଧ୍ୟେ କରେ ଅନ୍ୱେଷଣ
ଯାହା ନୁହେଁ ନିଜର
ଯାହା ଏବେ ଶୂନ୍ୟକକ୍ଷ
ଦୂର ଦୂର ଦୂରାଂତର,
ଯାହା କରେ ମୋତେ, ଆଉ ତାରେ
ଏକ ଆତ୍ମା ନ' ଥାଇ ଆକାର;
ନୁହେଁ ସେତ ସୁବର୍ଣ ପ୍ରତିମା
କେଉଁ ଯଜ୍ଞଶାଳେ,

ସେ ଏହି ମାଟିର ତନୟା
ତାର ନାମ ପରି,
ସେ ଚିର ମମତାମୟୀ
ତ୍ୟାଗପୂତ ପ୍ରଣୟର ସେ ଯେ ଶେଷସୀମା
ପୃଥ୍ୱୀ ପରି ସେ ତ ସର୍ବଂସହା ।।
ମୁଁ ଚାହେଁ ଗଭୀର ନିଦ୍ରା
ଭୁଲିବାକୁ ସେ ଶୋକର ଜ୍ୱାଳା,
ମୋର ଲୋଡ଼ା ସ୍ୱଚ୍ଛନୀଳ ଚିଲିକାର ଜଳ
ଧୋଇବାକୁ ମୋ ଆଖିରୁ ଲୁହର ଅସରା ।
ଜଣେ ବଂଧୁ ଲେଖିଛନ୍ତି –
"ସାଂତ୍ୱନା ଦୁର୍ବଳଂକୁ ସାଜେ,
ଯାହାର ପ୍ରତି କାମ ଜୀବଂତ, ସମୃଦ୍ଧ
ସାଂତ୍ୱନା ତା ଆବଶ୍ୟକ ନାହିଁ" ।
ମୁଁ କ'ଣ ଦୁର୍ବଳ ନୁହେଁ ?
କ୍ରୌଂଚ ମିଥୁନର ଶୋକେ ଭାଂଗିପଡ଼େ କିଆଁ
ଲକ୍ଷ ଲକ୍ଷ ମଣିଷଂକ ଦୁଃଖ ମୋତେ କରେ ଅସ୍ଥିର, କାତର
ଶତାବ୍ଦୀର ମହାବାତ୍ୟା ଚୂର୍ଣ କରେ ଅଜସ୍ର ଜୀବନ
ସେ ଦୁଃଖରେ କାଂଦେ ପୃଥ୍ୱୀ
ସେ ସମୂହ ଲୁହର ପ୍ଳାବନେ ଢାଳିଦିଏ ନିଜ ଦୁଃଖ
ନିଜ ଅଶ୍ରୁକଣା
ସବୁରିର ମହାଦୁଃଖେ ଢାଳିଦେବା ନିଜ ଦୁଃଖଶୋକ
ଦେଇପାରେ କିଛି ମୁକ୍ତି ଏବଂ ଶାଂତିର ସଂଦେଶ
ଅଜସ୍ର ଯଂତ୍ରଣା ମଧ୍ୟେ ଆଣିପାରେ ମୁକ୍ତିର ବିଶ୍ୱାସ

କଟକ, ମିଶନରୋଡ୍

**ମହାବାତ୍ୟା :**

୧୯୯୯ ଅକ୍ଟୋବର ମାସ ୨୮ ତାରିଖ ମଧ୍ୟରାତ୍ରିରୁ ଶତାବ୍ଦୀର ସବୁଠାରୁ ଭୟଂକର ମହାବାତ୍ୟା ଆରଂଭ ହୋଇଥିଲା । ଏହି ଘୂର୍ଣିବାତ୍ୟା ପ୍ରବଳ ବର୍ଷା ସହ ୩ ଦିନ ଅବିଶ୍ରାଂତ ଭାବରେ ଲାଗିରହିଥିଲା । ଏଭଳି ପ୍ରଳୟଂକରୀ ବାତ୍ୟା ବହୁ ଶତାବ୍ଦୀ ଧରି ଓଡ଼ିଶାରେ ହୋଇନଥିଲା ବୋଲି ବିଶେଷଜ୍ଞମାନଂକ ମତ । ଏହି ମହାବାତ୍ୟା ପାରାଦୀପ ବଂଦର ନିକଟସ୍ଥ ସମୁଦ୍ର ଗର୍ଭରୁ ଆରଂଭ ହୋଇଥିଲା । ପ୍ରବଳ ଜୁଆର ମାଡ଼ିଆସି ପାରାଦୀପ ବଂଦର ଓ ସହର ଏବଂ ଜଗତସିଂହପୁରରେ ଅଧିକାଂଶ ଅଂଚଳ ଯଥା – ଏରସମା, କୁଜଂଗ ଏବଂ ଏହାର ଆଖପାଖ ଗ୍ରାମକୁ ଧୋଇ ନେଇ ଯାଇଥିଲା ।

କଟକ, ଭୁବନେଶ୍ୱର, ଖୋର୍ଦ୍ଧା ପ୍ରଭୃତି ଏହି ଝଡ଼ରେ ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଥିଲେ । ବହୁ ନରନାରୀ ଓ ଶିଶୁ ଏବଂ ଗାଈଗୋରୁ ପ୍ରଭୃତି ବନ୍ୟାରେ ଭାସିଯାଇ ପ୍ରାଣହରାଇଥିଲେ; ଏବଂ ଧାନଜମି ଓ ଫସଲ, ଲୁଣିପାଣି ମାଡ଼ିଯାଇ ନଷ୍ଟଭ୍ରଷ୍ଟ ହୋଇଯାଇଥିଲା । ବାଂଗଲାଦେଶର ହଜାର ହଜାର ଶରଣାର୍ଥୀ ଯେଉଁମାନେ ମାହାଂଗା ସମୁଦ୍ର କୂଳରେ ଜଂଗଲ କାଟି ଘର ବନାଇ ପ୍ରାୟ ୪୦ ବର୍ଷ ଧରି ରହିଥିଲେ ସେମାନେ ଭାସିଯାଇଥିବା କଥା ଗଭୀର ଦୁଃଖଦାୟକ ।

ପଶ୍ଚିମ ବଂଗର ଜଣେ ସାଂସଦ ଶ୍ରୀମତୀ ଗୀତା ମୁଖାର୍ଜୀ ଲୋକସଭାରେ ତାଂକ ଅଭିଜ୍ଞତା ବର୍ଣ୍ଣନା କରି କହିଥିଲେ ଯେ ସେ ବାତ୍ୟାକ୍ଲିଷ୍ଟ ଲୋକଂକ ଅବସ୍ଥା ଜାଣିବା ପାଇଁ ମାହାଂଗା ଅଂଚଳକୁ ଯାଇଥିଲେ । ସେ କିଛି ରିଲିଫ୍ ଦେଲାବେଳେ ଜଣେ ମହିଳା କହିଥିଲେ – ''ରିଲିଫ୍ କ'ଣ ହେବ ମା' ? ଟିକେ ବିଷ ଦିଅ'' । ଏକଥା କହିଲାବେଳେ ଶ୍ରୀମତୀ ଗୀତା ମୁଖାର୍ଜୀ ପାର୍ଲାମେଂଟରେ କାଂଦିପକାଇଥିଲେ । ଓଡ଼ିଶାର ସମଗ୍ର ଉପକୂଳବର୍ତ୍ତୀ ଅଂଚଳର ଗଛ ବୃକ୍ଷ, ବିଦ୍ୟୁତ ଖୁଂଟି ଓ ଟେଲି ଯୋଗାଯୋଗ ପ୍ରଳୟଂକରୀ ବାତ୍ୟାର ପ୍ରକୋପରେ ଭାଂଗି ନଷ୍ଟହୋଇଯାଇଥିଲା । କଟକ, ଭୁବନେଶ୍ୱର ନଗରୀରେ ପ୍ରାୟ ୧୫ ଦିନ ପର୍ଯ୍ୟଂତ ବିଜୁଳି ଆଲୁଅ ଏବଂ ଏକ ସପ୍ତାହ ପର୍ଯ୍ୟଂତ ପାନୀୟଜଳ ଯୋଗାଣ ବଂଦହୋଇଯାଇଥିଲା । ଅନ୍ୟ ସ୍ଥାନର ଅବସ୍ଥା ସହଜରେ ଅନୁମେୟ । ବାତ୍ୟାରେ ବହୁ ଗଛବୃକ୍ଷ ଭାଂଗିପଡ଼ି ରାସ୍ତା ଅବରୋଧ କରିଥିଲେ । ସମଗ୍ର ପୂର୍ବଉପକୂଳ ନିଷ୍ପାଦପ ହୋଇଯାଇଛି କହିଲେ ଚଳେ । ଏ ବର୍ଷ ଗ୍ରୀଷ୍ମ ପ୍ରବାହ କିଭଳି ପ୍ରଚଂଡ଼ ହେବ ତାହା ଭାବି ସମସ୍ତେ ଆତଂକିତ ହେଉଛଂତି ।

ନ'ଅଂକ ଦୁର୍ଭିକ୍ଷ ପରେ ଏଭଳି ଦୁର୍ଯୋଗ ଓଡ଼ିଶାକୁ ଗ୍ରାସ କରି ନ ଥିଲା । ଏହି ମହାବାତ୍ୟା ମୋର ପ୍ରିୟପତ୍ନୀ ଭୂଦେବୀର ମୃତ୍ୟୁର ଅବ୍ୟବହିତ ପରେ ଘଟିଥିଲା । ତେଣୁ ମୋର ବ୍ୟକ୍ତିଗତ ଦୁଃଖ ମୋ ଦେଶର ସମୂହ ଦୁଃଖରେ ମିଶିଯାଇଥିଲା । ମହାବାତ୍ୟା ଉପରେ ଲିଖିତ ମୋର ଏକ କବିତାର ଶେଷ ଚାରିଧାଡ଼ି ତଳେ ଦିଆଗଲା ।

''ବାତ୍ୟା ଆସେ ଶତାବ୍ଦୀର ପଂକ୍ତି ଶେଷତମ
ନୂତନର ଅଭିଷେକ ହୋଇବା ଆଗରୁ
ଧ୍ୱଂସ ପାଏ କି'ବା ପୁରାତନ
ବାତ୍ୟା ଆସେ ମୋ ପ୍ରିୟାର ଭସ୍ମ ଦେହେ ବୋଳି
ଯେଉଁପରି ଅଗୁରୁ ଚଂଦନ ।''

—

## (ପରିଶିଷ୍ଟ)

**ଜାପାନରେ ଦଶଦିନ : ଆଣବିକ ବୋମା ବିଧ୍ୱସ୍ତ ହିରୋସିମା ଓ ନାଗାସାକି ପରିଦର୍ଶନ :**

୧୯୫୫ ମସିହାରେ ଆମେରିକାରେ ଥିବା ସମୟରେ ମଝିରେ କିଛିଦିନ ଫାଂକା ମିଳିବାରୁ ମୁଁ କେତେକ ଜାପାନୀ ଲେଖକବଂଧୁଂକ ଅନୁରୋଧକ୍ରମେ ଜାପାନ ଯାଇଥିଲି । ଜାପାନର ରାଜଧାନୀ ଟୋକିଓ ନଗରୀରେ ଏକ ପ୍ରସିଦ୍ଧ ବୌଦ୍ଧ ମଂଦିରର ଅତିଥିଶାଳାରେ ୧୦ ଦିନ କାଳ ଅବସ୍ଥାନ କରିଥିଲି । ଟୋକିଓ ଜାପାନର ରାଜଧାନୀ । ହଂସୁ ପ୍ରଦେଶର ଦକ୍ଷିଣ ପଶ୍ଚିମ ଉପକୂଳରେ ସୁମିଦା ନଦୀର ଉଭୟ କୂଳରେ ଏହି ସୁରମ୍ୟ ନଗରଟି ଅବସ୍ଥିତ । ଏହା ବହୁ ରେଲୱେର ସଂଯୋଗ ସ୍ଥଳ । ଏହାର ପୂର୍ବନାମ ଥିଲା Ye do ବା Jeddo । ୧୮୬୮ ଖ୍ରୀଷ୍ଟାବ୍ଦରେ ଏହାର ନାମକରଣ TOYKO ହେଲା । ଏହା ପୃଥିବୀର ତୃତୀୟ ବୃହତ୍ତମ ନଗରୀ । ଟୋକିଓର କେଂଦ୍ରସ୍ଥଳୀ ନଦୀର ପଶ୍ଚିମ ପାର୍ଶ୍ୱରେ ଅବସ୍ଥିତ । ଏହା ସର୍ବଦା ପାଣିଘେରରେ ଥାଏ । ଏହା ବହୁ କେନାଲ ଓ ସେତୁଦ୍ୱାରା ପୂର୍ବାଂଚଳ ସହିତ ସଂଯୁକ୍ତ ରହିଛି । ଟୋକିଓରେ ଜାପାନୀ ଶୈଳୀରେ ନିର୍ମାୟିତ ବହୁ ମଂଦିର ଶୋଭାପାଉଛି । ତନ୍ମଧ୍ୟରେ Hachiman ବା ଯୁଦ୍ଧର ଦେବତା ମଂଦିରଟି ପ୍ରଧାନ । ଅନ୍ୟ ଏକ ଉଲ୍ଲେଖନୀୟ ମଂଦିର ହେଉଛି Gohyaku Rakanji – ଏଥିରେ ପାଂଚଶହ ସୁଂଦର ପ୍ରତିମା ରହିଛି । ଜାପାନ ସମ୍ରାଟଂକ ରାଜପ୍ରାସାଦଟି ନଗରୀର କେଂଦ୍ରସ୍ଥଳରେ ଅବସ୍ଥିତ । ଜାପାନର ରାଜପଥଗୁଡ଼ିକ ବହୁ ବୃକ୍ଷରେ ସମାବୃତ ଏବଂ ବହୁ Park ବା ଉଦ୍ୟାନରେ ସୁଶୋଭିତ ।

ଟୋକିଓ ନଗରୀ ବହୁ ୱାର୍ଡ଼ରେ ବିଭକ୍ତ । ଜାପାନ ସମ୍ରାଟଂକ ପ୍ରାସାଦଟି ସୁଂଦର ଜାପାନୀ ଶୈଳୀରେ ୧୮୮୮ ସାଲ୍‌ରେ ନିର୍ମିତ ହୋଇଥିଲା ଓ ଗତ ଦ୍ୱିତୀୟ ମହାଯୁଦ୍ଧ ବେଳେ ୧୯୪୫ ସାଲ୍ ମଇ ମାସ ୨୬ ତାରିଖରେ ବୋମାମାଡ଼ରେ କ୍ଷତିଗ୍ରସ୍ତ ହୋଇଥିଲା ।

ଟୋକିଓର ଶିଳ୍ପାୟନ ଅତି ଦ୍ରୁତଗତିରେ ୧୯୩୦ ଠାରୁ ୧୯୪୦ ମଧ୍ୟରେ ବୃଦ୍ଧି ପାଇଥିଲା । ଏହା ବିପୁଳ ପରିମାଣରେ ଯୁଦ୍ଧସାମଗ୍ରୀ ଉତ୍ପାଦନ କରୁଥିଲା । ବାଣିଜ୍ୟ କ୍ଷେତ୍ରରେ ପୁସ୍ତକ ଏବଂ ସମ୍ବାଦପତ୍ର ପ୍ରକାଶନ ପ୍ରଧାନ ଥିଲା । ଜାପାନର ସର୍ବଶ୍ରେଷ୍ଠ ଧନୀ ବ୍ୟକ୍ତିଙ୍କ ମଧ୍ୟରେ ଦୁଇଜଣ ଲେଖକ ଥିଲେ । ଭାରତରେ ଏହା କଳ୍ପନା କରିବା ମଧ୍ୟ ଅସମ୍ଭବ । ଜାପାନୀ କବିତା କ୍ଷୁଦ୍ରକାୟ । ଏହା ରୂପକ ଓ ଉପମା ପ୍ରଭୃତିରେ ଭରପୂର ଏବଂ ଐଶ୍ୱର୍ଯ୍ୟମାନ୍ । ଜାପାନରେ ବହୁ ଲାଇବ୍ରେରି, ବିଶେଷକରି Imperial Cabinet Library ଏବଂ ବିଶ୍ୱବିଦ୍ୟାଳୟ ଲାଇବ୍ରେରି ବିଶେଷ ଗୁରୁତ୍ୱପୂର୍ଣ୍ଣ । ଟୋକିଓ Imperial ବିଶ୍ୱବିଦ୍ୟାଳୟ ମହାଯୁଦ୍ଧ ପୂର୍ବରୁ ପୃଥିବୀର ବୃହତ୍ତମ ବିଶ୍ୱବିଦ୍ୟାଳୟମାନଂକ ମଧ୍ୟରେ ଅନ୍ୟତମ ବୋଲି ଗଣ୍ୟ ହେଉଥିଲା । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଜାପାନ

ଫାସିବାଦୀ Axis ମେଂଟରେ ଯୋଗଦେଇଥିଲା । ଜାପାନ ପର୍ଲ ହାର୍‌ବର୍‌ରେ ୧୯୪୧ ନଭେଂବର ମାସରେ ବହୁ ଆମେରିକାନ୍ ଜାହାଜ ବୋମାପକାଇ ନଷ୍ଟକରିଦେଇଥିଲା । ଜାପାନ ସମ୍ରାଟ ହିରୋହିଟୋ ଯୁଦ୍ଧ ଘୋଷଣାରେ ସ୍ୱାକ୍ଷର କରିଥିଲେ ।

ଜାପାନ ଏକ ସାମ୍ରାଜ୍ୟବାଦୀ ରାଷ୍ଟ୍ର ବୋଲି ଜଣାଥିଲା । ୧୯୩୦ ଦଶକରେ ଜାପାନ ଜାତୀୟତାବାଦୀ ଚାଇନାର କେତେକ ଅଂଶ ଦଖଲ କରିନେଇଥିଲା ଏବଂ ଚାଇନା ସଂଗେ ଯୁଦ୍ଧ ଚଳାଇଥିଲା ।

ମୁଁ ଟୋକିଓରେ ଥିଲାବେଳେ ଟୋକିଓ ହୋଟେଲ୍‌ରେ ଅନୁଷ୍ଠିତ ଦୁଇଟି ରାତ୍ରିଭୋଜନ ସଭାରେ ଭାରତୀୟ କଳା ଓ ସାହିତ୍ୟ ଉପରେ ଭାଷଣ ଦେଇଥିଲି । ବହୁ ବିଶିଷ୍ଟ ଲେଖକ, ଲେଖିକା ସଭା ଓ ବଂଧୁମିଳନରେ ଯୋଗଦେଇଥିଲେ ।

ଜାପାନର ପ୍ରସିଦ୍ଧ କବି ନାଗୁଚି ଓ ରବୀଂଦ୍ରନାଥଂକ ମଧ୍ୟରେ ଘନିଷ୍ଠ ବଂଧୁତ୍ୱ ସ୍ଥାପିତ ହୋଇଥିବା କଥା ଦର୍ଶାଇ ମୁଁ ସେମାନଂକ ମଧ୍ୟରେ ବିନିମୟ ହୋଇଥିବା କେତେକ ଚିଠି ପତ୍ରର ଅଂଶ ଉଦ୍ଧାରକରିଥିଲି ।

ହିରୋସିମା ଦର୍ଶନ – ହିରୋସିମା ନଗରୀଟି ଉପସାଗର କୂଳରେ ଅବସ୍ଥିତ – ଏକ ସୁଂଦର ଚିତ୍ରଶାଳା ପରି ଦେଖାଯାଏ । ଏହା ରେଳପଥରେ Kobeର ଦକ୍ଷିଣ ଦିଗରେ ୧୯୦ ମାଇଲ୍ ଦୂରରେ ଅବସ୍ଥିତ । ନିକଟରେ ପବିତ୍ର ଦ୍ୱୀପ Itsukushma ଯେଉଁଠାରେ ସୁଂଦର କାରୁକାର୍ଯପୂର୍ଣ ସିନ୍‌ଟୋ ମଂଦିର ରହିଛି । ହଜାର ହଜାର ତୀର୍ଥଯାତ୍ରୀ ଏହି ମଂଦିର ପରିଦର୍ଶନ କରିଥାଂତି । ଏହାର ଅନ୍ୟ ନାମ ଆଲୋକଦ୍ୱୀପ । ହିରୋସିମା ନଗରୀରେ ମଧ୍ୟ ବହୁ ସୁଂଦର ମଂଦିର ଓ ଧର୍ମପୀଠ ରହିଛି । ବହୁତ ବଡ଼ ବଡ଼ ଚା' ଦୋକାନ ମଧ୍ୟ ରହିଛି । ୧୯୪୫ ସାଲ୍ ଅଗଷ୍ଟ ମାସ ୬ ତାରିଖ ସକାଳ ୮ଟା ବେଳେ ପ୍ରଥମ ପରମାଣୁ ବୋମା ଆମେରିକାର ବାୟୁସେନା ହିରୋସିମା ଉପରେ ନିକ୍ଷେପ କରଂତି । ସେତେବେଳକୁ ମହାଯୁଦ୍ଧ ପ୍ରାୟ ସରିଆସିଲାଣି । ତେଣୁ ଏଭଳି ଏକ ଭୟାନକ ମାରଣାସ୍ତ୍ର ପକାଇ ଲକ୍ଷ ଲକ୍ଷ ନିରୀହ ଲୋକଂକୁ ହତ୍ୟାକରିବା ଆଦୌ ଆବଶ୍ୟକ ନଥିଲା । ସେତେବେଳେ ଆମେରିକାର ପ୍ରେସିଡେଂଟ ଥାଂତି ଟ୍ରୁମ୍ୟାନ । ଏହି ବୋମାପାତ ଫଳରେ ବିସ୍ତୀର୍ଣ ଭୂଖଂଡରୁ ସମସ୍ତ ଗଛପତ୍ର ଓ ପନିପରିବା ଫସଲ ଜଳିଯାଇଥିଲା । ପ୍ରାୟ ୭୮ ହଜାର ନିରୀହ ନାଗରିକ ନିହତ ହେଲେ ଏବଂ ୫୮ ହଜାର ଲୋକ ଗୁରୁତର ଭାବେ ଆହତ ହେଲେ । ଆହତ ବ୍ୟକ୍ତିମାନଂକ ମଧ୍ୟରୁ ବହୁ ସହସ୍ର ଲୋକ gamma-ray ଦ୍ୱାରା ଆକ୍ରାଂତହୋଇ ମୃତ୍ୟୁମୁଖରେ ପଡ଼ିଲେ । ଏହାଛଡ଼ା ହଜାର ହଜାର ଲୋକ ଯେଉଁମାନେ କି ନିକଟବର୍ତ୍ତୀ Ninoshima ଦ୍ୱୀପରେ ଆଶ୍ରୟନେଇଥିଲେ ସେମାନେ ସମସ୍ତେ ମୃତ୍ୟୁମୁଖରେ ପଡ଼ିଲେ । ସେମାନଂକ ମୃତଦେହ ୨ ବର୍ଷ ପରେ କବରସ୍ଥାନ ପାଇଁ ଜାଗା ଖୋଳାହେଲାବେଳେ ଜଣାପଡ଼ିଲା । ହିରୋସିମାର ଗୋଟିଏ ହସପିଟାଲରେ ବହୁ ବିକଳାଂଗ ରୋଗୀଂକୁ ଦେଖିଲି । ସେମାନେ କେବଳ ହାମୁଡେଇ ହାମୁଡେଇ ଚାଲଂତି ଏବଂ କଥାବାର୍ତ୍ତା କରିପାରୁନାହାଂତି ।

**ନାଗାସାକି** – ନାଗାସାକି ଜାପାନର ଏକ ସାମୁଦ୍ରିକ ବଂଦର । ଏହା Kyushu ଦ୍ୱୀପର ଅଂତର୍ଗତ । ୧୯୪୫ ମସିହା ଅଗଷ୍ଟ ୯ ତାରିଖରେ ମାର୍‌କିନ୍ ବାୟୁସେନା ନାଗାସାକି ଉପରେ ଦ୍ୱିତୀୟ ପରମାଣୁ ବୋମା ପକାଇଥିଲେ । ପ୍ରଥମ ବୋମା ତିନିଦିନ ପୂର୍ବରୁ ମାର୍‌କିନ୍ ଗଣହଂତାମାନେ ହିରୋସିମା ଉପରେ ପକାଇ ଏହାକୁ ଧ୍ୱଂସସ୍ତୂପରେ ପରିଣତ କରିଥିଲେ । ବର୍ତ୍ତମାନ୍ Urakami ଶିଳ୍ପାଂଚଳ ଧ୍ୱଂସସ୍ତୂପରେ ପରିଣତ ହେଲା । ପ୍ରାୟ ୩୭ ହଜାର ଲୋକ ବୋମାପାତରେ ନିହତ ହୋଇଥିବାବେଳେ ପ୍ରାୟ ୫୧ ହଜାର ଜଣ ଆହତ ହୋଇଥିବା କଥା ଘୋଷଣା କରାଯାଇଥିଲା । ଆଣବିକ ବୋମା ସଭ୍ୟତାର ଚରମ ବିପର୍ଯ୍ୟୟ । ଇତିହାସରେ ଏପରି ବର୍ବରତମ ଗଣସଂହାର ପୂର୍ବରୁ କେବେ ଘଟିନଥିଲା ।

ଜେନିଭାରେ I.L.O.ଶ୍ରମିକ ମଂଗଳ ବିଷୟରେ ଅଧ୍ୟୟନ କରିବାର କାର୍ଯ୍ୟସୂଚୀ ଥିଲା । ତେଣୁ ମୁଁ ଜାପାନ୍‌ରୁ ଆମେରିକା ଫେରିଆସିଥିଲି । କାରଣ ସେଠାରେ ମୋର କେତେକ ସାଂସ୍କୃତିକ କାର୍ଯ୍ୟକ୍ରମ ଆହୁରି ବାକି ଥିଲା ।

**ଆଣବିକ ବୋମାର ଇତିବୃତ୍ତ :**

ଆଣବିକ ବୋମାର ମୂଳତତ୍ତ୍ୱ Albert Einsteinଙ୍କ (୧୮୭୯-୧୯୫୫) Thoery of Relativity ବା ଆପେକ୍ଷିକବାଦରେ ନିହିତ ଥିଲା । ସେଥିରୁ ସୂଚନା ମିଳିଥିଲା ଯେ matter ବା ବସ୍ତୁକୁ Energy ବା ଶକ୍ତିରେ ପରିଣତ କରାଯାଇପାରେ ଏବଂ ଅଣୁର ବିଭାଜନ ପ୍ରଚଂଡ ଶକ୍ତି ଉତ୍ପାଦନ କରିବାକୁ ସକ୍ଷମ । ଆଇନ୍‌ଷ୍ଟାଇନ୍ ୧୯୩୩ ମସିହାରେ ହିଟଲରର ଜୁ ନିଧନ ବା ଇହୁଦୀ ସଂହାର ଲୀଳାରୁ ରକ୍ଷା ପାଇବା ପାଇଁ ମାତୃଭୂମି ଜର୍ମାନୀ ଛାଡ଼ି ଆମେରିକା ପଳାଇ ଆସଂତି, ଏବଂ ଆମେରିକାର ନାଗରିକତ୍ୱ ଗ୍ରହଣ କରଂତି । ସେ ପ୍ରିନସିଟନ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରଂତି । ସେହି ସମୟରୁ ଆମେରିକାରେ ଅଣୁ ଅସ୍ତ୍ର ନିର୍ମାଣର ପ୍ରୋଗ୍ରାମ୍ ଦ୍ରୁତଗତିରେ ଆଗେଇଚାଲେ । ଆଣବିକ ବୋମା ପାଇଁ ପ୍ରଚୁର Uraniumର ଆବଶ୍ୟକ ଥିଲା । କାନାଡ଼ା ଓ ବେଲ୍‌ଜିୟମ୍ କଂଗୋରେ Uranium ପର୍ଯ୍ୟାପ୍ତ ପରିମାଣରେ ରହିଥିଲା । ଆଣବିକ ଅସ୍ତ୍ର ପ୍ରସ୍ତୁତି କାର୍ଯ୍ୟକ୍ରମରେ ଇଂଲଣ୍ଡ ମଧ୍ୟ ମୂଳରୁ ଆମେରିକା ସହିତ ସହଯୋଗ କରି ଆସୁଥିଲା । ୧୯୪୫ ମସିହା ଜୁଲାଇ ୧୬ ତାରିଖ ସକାଳ ୫.୩୦ ସମୟରେ ମଣିଷ ଜାତିର ଇତିହାସରେ ପ୍ରଥମ ଆଣବିକ ବୋମା ନିୟୁ ମେକ୍ସିକୋ ମରୁଭୂମିରେ ଥିବା Albuquenrque ସ୍ଥିତ ଆମେରିକାନ୍ ବିମାନ୍‌ଘାଟିରେ ପ୍ରୟୋଗ କରାଯାଇଥିଲା । ଏକ ଇସ୍ପାତ୍ ନିର୍ମିତ ଟାୱାର ଉପରୁ ଏହାକୁ ବିସ୍ଫୋରଣ କରାଯାଇଥିଲା । ପର୍ଯ୍ୟବେକ୍ଷଣକାରୀ ବୈଜ୍ଞାନିକ ଓ ସାମରିକ ଉଚ୍ଚ ଅଧିକାରୀମାନେ ଏହି ଇସ୍ପାତ୍ ଟାୱାରଠାରୁ ୧୭,୦୦୦ ଗଜ ଦୂରରେ ରହି ଏହାର ମାରାତ୍ମକ ଧ୍ୱଂସଲୀଳା ନିରୀକ୍ଷଣ ଓ ପରିମାପ କରିଥିଲେ ।

------